# ସଚିତ୍ର ଓ ବୃହତ

# କୂର୍ମ ପୁରାଣ

## ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଖଣ୍ଡ ଏକତ୍ର

ପଣ୍ଡିତ ୰ ଗୋପୀନାଥ କରଙ୍କ ଦ୍ୱାରା ମୂଳ ସଂସ୍କୃତରୁ ଅନୁବାଦିତ

(ନୂତନ ମୁଦ୍ରଣ)




: ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

## ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ : ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ -୨, ଫୋନ୍ : ୨୫୦୮୨୯୬

ମୂଲ୍ୟ : ଏକଶହ ଟଙ୍କା ମାତ୍ର

# କୂର୍ମ ପୁରାଣ ପ୍ରଥମ ଖଣ୍ଡର ସୂଚିପତ୍ର

## କୂର୍ମ ପୁରାଣ ଦ୍ୱିତୀୟ ଖଣ୍ଡର ସୂଚିପତ୍ର

# କୂର୍ମ ପୁରାଣ ତୃତୀୟ ଖଣ୍ଡର ସୂଚିପତ୍ର

| ବିଷୟ | ପୃଷ୍ଠା |
|---|---|
| ରଘୁରାଜୋପାଖ୍ୟାନ | ୧୯୬ |
| ଗାଲୋବୋପ୍ୟାଖ୍ୟାନ | ୨୦୦ |
| ହେତୁ ପ୍ରହେତୁ ଅସୁର ବଧ | ୨୦୩ |
| ଭୀମର କ୍ରୋଧ, ପ୍ରଦ୍ୟୁମ୍ନର ଦ୍ୱାରକା ଗମନ, ଶ୍ରୀକୃଷ୍ଣର ତ୍ରିଭୁବନ ସୈନ୍ୟସଂଗ୍ରହ | ୨୦୮ |
| ମାତଳିର ଅର୍ଜ୍ଜୁନ ନିକଟେ ଓ ପାଣ୍ଡବଙ୍କ ସହିତ ମନ୍ତ୍ରଣା | ୨୧୦ |
| ରୁକ୍ମିଣୀଙ୍କର ଦ୍ରୌପଦୀପୁରେ ପ୍ରବେଶ ଓ ସୁଭଦ୍ରା ସହିତ ମନ୍ତ୍ରଣା | ୨୧୨ |
| ଶ୍ରୀକୃଷ୍ଣଙ୍କର ବୀରବେଶ ଓ ରୁକ୍ମିଣୀ ସହିତ ଦୁର୍ଗାଙ୍କର ମନ୍ତ୍ରଣା | ୨୧୪ |
| ପାଣ୍ଡବଙ୍କର ସୈନ୍ୟ ସଂଗ୍ରହ | ୨୧୬ |
| ସୈନ୍ୟ ସହିଦ ଦୁର୍ଯ୍ୟୋଧନର କୁରୁକ୍ଷେତ୍ରେ ପ୍ରବେଶ | ୨୧୭ |
| ବଳରାମ ଦୁର୍ଯ୍ୟୋଧନର ମନ୍ତ୍ରଣା | ୨୧୯ |
| ଶ୍ରୀକୃଷ୍ଣଙ୍କ ସହିତ କୁନ୍ତୀଙ୍କର ପରାମର୍ଶ | ୨୨୦ |
| ସଞ୍ଜୟ ସହିତ ଧୃତରାଷ୍ଟ୍ରର ପରାମର୍ଶ ଓ ଯୁଦ୍ଧାରମ୍ଭ | ୨୨୧ |
| ଯାଦବଙ୍କ ସହ କୁରୁପାଣ୍ଡବଙ୍କ ଯୁଦ୍ଧ ସମାଗମ | ୨୨୨ |
| ଭୀଷ୍ମଙ୍କ ସହିତ ଶିବଙ୍କର ଯୁଦ୍ଧ ଓ ପରାଜୟ | ୨୨୪ |
| କର୍ଣ୍ଣ ସହିତ ପ୍ରଦ୍ୟୁମ୍ନର ଯୁଦ୍ଧ ଓ ପରାଜୟ | ୨୨୫ |
| ଅଭିମନ୍ୟୁ ସହିତ ଶାମ୍ବର ଯୁଦ୍ଧ ଓ ପରାଜୟ | ୨୨୬ |
| ବୃଷକେତୁ ସହିତ ସାତ୍ୟକିର ଯୁଦ୍ଧ ଓ ପରାଜୟ | ୨୨୮ |
| ଦ୍ରୋଣଙ୍କ ସହିତ ଇନ୍ଦ୍ରଙ୍କର ଯୁଦ୍ଧ ଓ ପରାଜୟ ଏବଂ ଗୋଳଯୁଦ୍ଧ | ୨୨୯ |
| ଅଷ୍ଟଶକ୍ତିଙ୍କର ଆଗମନ | ୨୩୦ |
| ଅର୍ଜ୍ଜୁନଙ୍କ ସହିତ କୃଷ୍ଣ ପ୍ରଭୃତିଙ୍କର ଯୁଦ୍ଧ ଓ ପରାଜୟ | ୨୩୧ |
| ଉର୍ବଶୀ ଶାପ ମୋଚନା | ୨୩୩ |

**କୂର୍ମ ପୁରାଣ ସୂଚିପତ୍ର**

**:ସମାପ୍ତ :**

# କୂର୍ମ ପୁରାଣ

## ପ୍ରଥମଖଣ୍ଡ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୂଦୀରୟେତ୍ ।।
ଅହଂ ହରେ ତବ ପାଦୈକମୂଳ ଦାସାନୁଦାସେ ଭବିତାସି ଭୂୟଃ ।
ମନଃ ସ୍ମରେତାସୁପତେ ଗୁଣାଂସ୍ତେ ଗୃଣୀତ ବାକ୍‌କର୍ମ କରୋତୁ କାୟଃ ।।

### ବନ୍ଦନା

ଜୟ ତୁ ଜୟ ତୁ ଦେବ ଅନାଦି କାରଣ
ଜୟ ତୁ ଜୟ ତୁ ଦେବ ଦେବ ନାରାୟଣ ।
ଜୟ ତୁ ଜୟ ତୁ ଦେବ କୂର୍ମ ଅବତାର
ଜୟ ତୁ ଜୟ ତୁ ଦେବ କରୁଣାସାଗର ।
ଜୟ ତୁ ଜୟ ତୁ ଦେବ ନରନାରାୟଣ
ଜୟ ତୁ ଜୟ ତୁ ଦେବ ପୁରୁଷ ପୁରାଣ ।
ଜୟ ତୁ ଜୟ ତୁ ଦେବ ଦୀନଜନବନ୍ଧୁ
ଜୟ ତୁ ଜୟ ତୁ ଦେବ ଯଦୁବଂଶ ଇନ୍ଦୁ ।
ଜୟ ତୁ ଜୟ ତୁ ଦେବ ଇକ୍ଷ୍ୱାକୁ ନନ୍ଦନ
ଜୟ ତୁ ଜୟ ତୁ ଦେବ ରାବଣ ନିଧନ ।
ମୋଠାରେ କରୁଣା କର କରୁଣା ବାରିଧି
ଏ ପୁରାଣ ଲେଖିବାକୁ ଦିଅ ସଦବୁଦ୍ଧି ।
ଜୟ ତୁ ଜୟ ତୁ ମାଗୋ ଦେବୀ ସରସ୍ୱତୀ
ଜୟ ତୁ ଜୟ ତୁ ମାଗୋ ଦିଅ ସଦଗତି ।
ଜୟ ତୁ ଜୟ ତୁ ମାଗୋ ବ୍ରହ୍ମାର ନନ୍ଦିନୀ
ଜୟ ତୁ ଜୟ ତୁ ମାଗୋ ଜଗତଜନନୀ ।
କୃପା କଲେ ଲେଖିବି ମୁଁ ଏ କୂର୍ମ ପୁରାଣ
ଏଣୁ ପଶିଲି ତୋହର ଚରଣେ ଶରଣ ।
କଣ୍ଠେ ବସି ପଦ ମୋତେ କହିଦିଅ ମାତ
କର୍ଣ୍ଣେ ଶୁଣି ଅର୍ଥ କଲେ ଲାଗିବ ଅମୃତ ।

## ଇନ୍ଦ୍ରଦ୍ୟୁମ୍ନ କଥା

ବ୍ୟାସ ମାରକଣ୍ଡ ପରାଶର ଆଦି ଋଷି
ନଇମିଷ ଅରଣ୍ୟରେ ଯାଗ କଲେ ବସି ।
ଯାଗ ଶେଷେ ସଙ୍ଗ କଲେ ଋଷିମାନେ ତହିଁ
ସୁତନାମେ ଋଷି ତହିଁ ପୁରାଣ କହଇ ।
ସୂତଙ୍କ ଚାହିଁ ବୋଇଲେ ସର୍ବ ଋଷିଗଣ
ତୁମ୍ଭ ନାମ ଅଟଇ ଯେ ରୋମ ହରଷଣ ।
ତୁମେ ମହା ବୁଦ୍ଧିମନ୍ତ ଅଟ ଆହେ ସୁତ
ଇତିହାସ ପୁରାଣ ଯେ ଅଟଇ ବହୁତ ।
ତୁମ୍ଭେ ତାହା ଭଲରୂପେ ଜାଣିଅଛ ପୁଣି
ଋଷିଗଣ ଶିରୋମଣି ବ୍ୟାସ ମହାମୁନି ।
ତୁମ୍ଭେ ସେ ବ୍ୟାସଙ୍କୁ ସେବା କରିଛ ଅନେକ
ତେଣୁ ତୁମ୍ଭେ ବୋଲାଉଛ ସୂତ ପୌରାଣିକ ।
ବ୍ୟାସ ମୁନିଙ୍କର କଥାଯାକ ଶୁଣି ଶୁଣି
ଦେହର ରୋମ ଟାଙ୍କୁରି ଉଠେ ପୁଣି ପୁଣି ।
ତେଣୁ ରୋମହରଷଣ ବୋଇଲେଟି ତୋତେ
ତୁ ପୁଣି ଯାଇଁ ପଡ଼ିଲୁ ତାଙ୍କ ପାଦଗତେ ।
ସେ ବ୍ୟାସମୁନି ବୋଇଲେ ହୋଇ ସୁପ୍ରସନ୍ନ
ତୋ ଆଗେ କହିଲି ମୁହିଁ ଯେତେକ ପୁରାଣ ।
ବ୍ରହ୍ମଯଜ୍ଞ ଶେଷ ଅନ୍ତେ ନଇମିଷ ବନେ
ସଭାକରି ବସିଥିବେ ମହାଋଷିମାନେ ।
ପୁରାଣ କହିବାପାଇଁ ବୋଲିବେ ସେ ତୋତେ
ପୁରାଣସାର କହିବୁ ତାହାଙ୍କ ଅଗ୍ରତେ ।
ପୁରୁଷଉତ୍ତମ ତୁହି ହୁଅ ମୋର ବରେ
ପୁରାଣ ସଂହିତାମାନ ପଢ଼ି ଏ ସଂସାରେ ।
ଲୋକମାନଙ୍କୁ ତାରି ତୁ ଆପେ ଯିବୁ ତରି
ଏମନ୍ତ ବର ପାଇଛୁ ତୁ ହୋ ତପଚାରୀ ।
ଏ କାରଣେ ଆମ୍ଭେମାନେ କହୁଅଛୁ ତୋତେ
କୂର୍ମ ପୁରାଣ ବଖାଣ ଆମ୍ଭର ଅଗ୍ରତେ ।
ପୁରାଣସାର ତାହାକୁ ବୋଲିଛନ୍ତି ବ୍ୟାସ
ଏଠାରେ ତା ଆଦ୍ୟପ୍ରାନ୍ତ କର ହୋ ପ୍ରକାଶ ।
ମୁନିଙ୍କ ମୁଖରୁ ଏହା ଶୁଣି ସୂତମୁନି
ସତ୍ୟବତୀ ନନ୍ଦନଙ୍କୁ ମନେ ମନେ ଗୁଣି ।
ପ୍ରଣାମ କରି ତାହାଙ୍କ ଚରଣ ତଳରେ
ପୁରାଣ ଆରମ୍ଭ କଲେ ବସି ଆସନରେ ।
ବୋଇଲେ ଯେ କୂର୍ମରୂପୀ ଜଗତକାରଣ
ସେ ହରି ଚରଣେ ମୁହିଁ ପଶୁଛି ଶରଣ ।
ଏମନ୍ତ ବୋଲି ପୋଥିକି ଦେଲେ ସେ ଫିଟାଇ
ଖେଦାଏ ବାହାର କରି ବ୍ୟାସାସନେ ଥୋଇ ।
ବୋଲନ୍ତି ଏହି ପୁରାଣ କଥା ଯେ ଶୁଣିବ
ତାହାର ଦେହୁ ପାତକ ଛାଡ଼ି ପଳାଇବ ।
ମହାପାପୀ ଶୁଣିଲେ ତ ପାଇବ ମୁକତି
ଶ୍ରୋତା ବକତା ଏ ବେନି ସୁଖେ ତରିଯାନ୍ତି ।
ନାସ୍ତିକ ଜନ ଏ ସଭା ମଧ୍ୟରେ ତ ନାହିଁ
ଥିଲେ ନ କହି ଏ ପୋଥିଗୋଟା ଦେବି ଥୋଇ ।
ଗୁରୁଙ୍କର ମନା ତାହା ଲଙ୍ଘିବି କେମନ୍ତେ
କହିଛନ୍ତି ନ ପଢ଼ିବୁ ନାସ୍ତିକ ଅଗ୍ରତେ ।
ଯେହୁ ପୁଣି ଶ୍ରଦ୍ଧାବନ୍ତ ଶାନ୍ତଶୀଳ ଜନ
ଧର୍ମରେ ଯାହାର ସଦା ଥିବ ପୁଣି ମନ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟଜାତି ହୋଇଥିବ
ତାହା ଆଗେ ଏ ପୁରାଣ ପୋଥି ଫିଟାଇବ ।
ନାରାୟଣ ଏ ପୁରାଣ କହିଛନ୍ତି ମୁଖେ
ନ୍ୟୁନ ଅଧିକ କଲେ ତୁ ପଡ଼ିବୁ ନରକେ ।
କେମନ୍ତେ ସୃଷ୍ଟି ହୋଇଲା କହିବୁ ତୁ ଆଗ
ବ୍ରହ୍ମା କେମନ୍ତେ ହୋଇଲେ ବେଦରେ ପାରଗ ।
ମନରୁ କେମନ୍ତେ ଜାତ କଲେ ପୁତ୍ରଗଣ
ଗୋଟି ଗୋଟି କରି ନାମ କରିବୁ ବଖାଣ ।
ସେମାନେ କେମନ୍ତେ ସୃଷ୍ଟି କଲେ ତା କହିବୁ
ତଦନ୍ତେ ରାଜବଂଶର କଥା ବଖାଣିବୁ ।
ମନ୍ୱନ୍ତର କଥାଯାକ କହିବୁ ବୁଝାଇ
ପୁରାଣ ଲକ୍ଷଣ ଜାଣ ଏହାକୁ ବୋଲଇ ।
ପ୍ରଥମେ ବ୍ରହ୍ମ ପୁରାଣ କରିବୁ ବଖାଣ
ତଦନ୍ତେ ପଦ୍ମପୁରାଣ ଶ୍ରୀବିଷ୍ଣୁ ପୁରାଣ ।
କହିବ ଶିବ ପୁରାଣ ଆଦ୍ୟ ପ୍ରାନ୍ତ କରି
ଭାଗବତ ପୁରାଣକୁ କହିବ ବିସ୍ତାରି ।
ଭବିଷ୍ୟ ପୁରାଣ ପୁଣି ନାରଦ ପୁରାଣ
ମାରକଣ୍ଡ ପୁରାଣକୁ କରିବ ବଖାଣ ।
ଅଗ୍ନି ପୁରାଣ ତଦନ୍ତେ ବ୍ରହ୍ମ ବଇବର୍ତ୍ତ
ଲିଙ୍ଗ ପୁରାଣ କହିବ କରି ଆଦ୍ୟପ୍ରାନ୍ତ ।
ବରାହ ପୁରାଣ ସ୍କନ୍ଦ ପୁରାଣ ପଢ଼ିବ
ବାମନ ପୁରାଣ ପଢ଼ି ପୋଥି ବାନ୍ଧିଦେବ ।

ତଦନ୍ତେ କୂର୍ମ ପୁରାଣ କହିବ ବିସ୍ତାରି
ମତ୍ସ୍ୟ ପୁରାଣ ପଢ଼ିବ ଗୋଟି ଗୋଟି କରି ।
ଗରୁଡ଼ ପୁରାଣ ବାୟୁ ପୁରାଣ ପଢ଼ିବ
ବ୍ରହ୍ମାଣ୍ଡ ପୁରାଣ ପଢ଼ି ପୋଥିକି ବାନ୍ଧିବ ।
ଏହି ଅଷ୍ଟାଦଶ ମହା ପୁରାଣ ଅଟଇ
ଏହି କ୍ରମରେ ପଢ଼ିଲେ ଫଳ ସିନା ପାଇ ।
ଏମନ୍ତ ଏ ଅଷ୍ଟାଦଶ ପୁରାଣକୁ ଶୁଣି
ଉପପୁରାଣମାନଙ୍କୁ କହିଛନ୍ତି ମୁନି ।
ତାହାଙ୍କର ନାମ ଏବେ କହୁଅଛି ଶୁଣ
ସନତକୁମାର ଋଷି ବ୍ରହ୍ମା ପୁତ୍ର ଜାଣ ।
ଆଦିପୁରାଣ ବଖାଣି ଅଛନ୍ତିଟି ସେହି
ତଦଅନ୍ତେ ନରସିଂହ ପୁରାଣଟି ଯେହି ।
ସ୍କନ୍ଦପୁରାଣ ତଦନ୍ତେ କାର୍ତ୍ତିକେୟ କଲେ
ଶିବ ଧର୍ମ ପୁରାଣକୁ ନନ୍ଦୀ ବଖାଣିଲେ ।
ଦୁର୍ବାସା ଋଷି କଲେ ଯେ ଆଶ୍ଚର୍ଯ୍ୟ ପୁରାଣ
ନାରଦୀୟ ପୁରାଣେକ ହେଲା ତହୁଁ ଜାଣ ।
କପିଳ ନାମେ ପୁରାଣ ତହୁଁ ବାହାରିଲା
ବାମନ ନାମେ ପୁରାଣ ଶୁକ୍ର ବଖାଣିଲା ।
ତଦନ୍ତେ ହେଲା ପବିତ୍ର ବ୍ରହ୍ମାଣ୍ଡ ପୁରାଣ
ବରୁଣ ପୁରାଣ ତହୁଁ ହେଲା ପୁଣି ଜାଣ ।
କାଳିକା ପୁରାଣ ତହୁଁ ହେଲା ମୁନିଗଣେ
ବହୁଫଳ ମହେଶ୍ୱର ପୁରାଣ ଶ୍ରବଣେ ।
ଶାମ୍ବ ପୁରାଣ ନାମରେ ପୁରାଣେକ ହେଲା
ସୌର ପୁରାଣେକ ତହୁଁ ପୁଣି ବାହାରିଲା ।
ପରାଶର ପୁରାଣ ଯେ ତହୁଁ ହେଲା ଜାଣ
ମରୀଚି ପୁରାଣ ନାମେ ପୁରାଣ ବଖାଣ ।
ଭାର୍ଗବ ପୁରାଣ ନାମେ ପୁରାଣେକ ହେଲା
ଏମନ୍ତେ ଏ ଅଷ୍ଟାଦଶ ପୁରାଣ ହୋଇଲା ।
ଏହାକୁ ଉପ ପୁରାଣ କହନ୍ତି ସମସ୍ତେ
ପବିତ୍ର କୂର୍ମ ପୁରାଣ ସାର ଏ ଜଗତେ ।
ସେହି ପୁରାଣ ଖଣ୍ଡିକ କଲେ ଚାରିଖଣ୍ଡ
ତାହା କହୁଅଛୁ ଶୁଣ ସର୍ବେ ହୋଇ ରୁଣ୍ଡ ।
ଚାରିଖଣ୍ଡ ଚଉବର୍ଗ ଫଳକୁ ଦିଅଇ
ଚାରି ବେଦରୁ ସେ ଚାରିଖଣ୍ଡ ଉପୁଜଇ ।
ପ୍ରଥମ ବ୍ରହ୍ମ ସଂହିତା ଋକବେଦୁଁ ଜାତ
ତହିଁରେ ଯେ ଧର୍ମ କଥା ଅଛଇ ବହୁତ ।
ଷଡ଼ ସହସ୍ର ଶ୍ଳୋକରେ ହୋଇଛି ସେ ଗଢ଼ା
ଏଥିରୁ ଆଉ ଯେ କିଛି ଶ୍ଳୋକ ନାହିଁ ବଢ଼ା ।
ଦ୍ୱିତୀୟ ସେ ଭାଗବତୀ ସଂହିତା ଅଟଇ
ଯଜୁର୍ବେଦରୁ ସେ ଖଣ୍ଡ ଜାଣ ଉପୁଜଇ ।
ଅର୍ଥ ଫଳହିଁ ବହୁତ ଦିଅଇ ସେ ଜାଣ
ତୃତୀୟ ଖଣ୍ଡ ସଉରୀ ସଂହିତା ବଖାଣ ।
ସାମ ବେଦରୁ ସମ୍ଭୂତ ପବିତ୍ର ସେ ଗ୍ରନ୍ଥ
କାମନା ଫଳ ପୁଣି ସେ ଦିଅଇ ବହୁତ ।
ଚତୁର୍ଥ ଖଣ୍ଡ ବୈଷ୍ଣବୀ ସଂହିତା ଅଟଇ
ଅଥର୍ବ ବେଦୁଁ ଉପୁଜି ମୋକ୍ଷକୁ ଦିଅଇ ।
ଦିବ୍ୟ ପୁଣ୍ୟ କଥାମାନ ଅଛଇ ତହିଁରେ
ବ୍ରହ୍ମକୁ ଦେଖି ପାରିବ ତହିଁ ମୁନିବରେ ।
ସ୍ୱର୍ଗ ପ୍ରତିସ୍ୱର୍ଗ ବଂଶ ମନ୍ୱନ୍ତର କଥା
ତହିଁରେ ଅଛି ଆବର ପୁରାଣ ବାରତା ।
ବ୍ୟାସ ଯେଉଁ ପୁରାଣକୁ କହିଛନ୍ତି ମୋତେ
ବିପ୍ର କଣ୍ଠମାଳା ବୋଲି ବିଦିତ ଜଗତେ ।
କହୁଅଛି ସେହି କୂର୍ମ ପୁରାଣକୁ ଶୁଣ
ବହୁତ କାଳର କଥା କରୁଛି ବଖାଣ ।
ଦେବତା ଦାନବ ପୂର୍ବେ ହୋଇ ଏକମେଳ
ଅମୃତ ପାଇ ମନ୍ଥିଲେ କ୍ଷୀର ସିନ୍ଧୁ ଜଳ ।
ମନ୍ଦର ଗିରି ପକାଇ କଲେ ତହିଁ ଖୁଆ
ବାସୁକିକି ରଜ୍ଜୁକରି ଧରି ହେଲେ ଠିଆ ।
ବୁଡ଼ନ୍ତେ ମନ୍ଦର ଗିରି ସମୁଦ୍ର ମଧ୍ୟରେ
ଶ୍ରୀବିଷ୍ଣୁଙ୍କୁ ସ୍ତୁତି କଲେ ସମସ୍ତେ କାତରେ ।
ଭାବଗ୍ରାହୀ ନାଥ ତହିଁ ହେଲେ କୂର୍ମରୂପ
ଟେକି ଧରିଲେ ଗିରିକି ଧରେ ଯେହ୍ନେ ଚାପ ।
ପୃଷ୍ଠେ ରହିଲା ମନ୍ଦର ନ ବୁଡ଼ିଲା ଯହୁଁ
କୁସୁମ ପ୍ରାୟ ମଣିଲେ ତାହା ମହାବାହୁ ।
ଦେବ ଦାନବେ ଦଉଡ଼ିଧରି ବୁଲାଇଲେ
ଆନନ୍ଦ ହୋଇ ସମୁଦ୍ର ଜଳକୁ ମନ୍ଥିଲେ ।
କୂର୍ମରୂପେ ବିରାଜନ୍ତି ଜଳେ ନାରାୟଣ
ଦେଖି ନାରଦ ସହିତେ ମହାଋଷିଗଣ ।
ଆନନ୍ଦ ମନରେ କଲେ କରଯୋଡ଼ି ସ୍ତୁତି
ଲକ୍ଷ୍ମୀ ଉପୁଜିଲେ ଧରି ଅପୂର୍ବ ମୂରତି ।
ବିଷ୍ଣୁଙ୍କର ପାଟରାଣୀ ସେହି ଠାକୁରାଣୀ
ଶ୍ରୀହରି ଧଇଲେ ଯାଇଁ ସେ ଦେବୀର ପାଣି ।

ସେହି ମହାଲକ୍ଷ୍ମୀଙ୍କର ଅପୂର୍ବ ଯେ କାନ୍ତି
ଦେଖି ମୋହିତ ହୋଇଲେ ଋଷିମୁନି ଯତି ।
ଦେବ ଦାନବ ଯେ ଦେବୀ ରୂପକୁ ଅନାଇ
ରହିଲେ ପିତୁଳାପରି ରଜ୍ଜୁ ଛାଡ଼ି ଦେଇ ।
ବହୁତ କ୍ଷଣ ଉତ୍ତାରୁ ବୋଇଲେ ହେ ହରି
ତୁମ୍ଭ ତ ଜଗତନାଥ କଉସ୍ତୁଭ ଧାରୀ ।
ଦେବାଧି ଦେବରାୟ ହେ ପ୍ରଭୁ ନାରାୟଣ
ବିଶାଳନୟନା ଏହି ଦେବୀ କିଏ ଜାଣ ।
ଯେବେ ଜାଣ ଆମ୍ଭ ଆଗେ କୁହ ତା ବିସ୍ତାରି
ଶୁଣି ଶ୍ରୀବତ୍ସଲାଞ୍ଛନା ପ୍ରଭୁ ଦଇତାରି ।
ବୋଇଲେ ଶୁଣ ନାରଦ ଆଦି ମୁନିବରେ
ଏହି ଯେ ଆଦି ଶକତି ବୋଲାଇ ସଂସାରେ ।
ଏହି ପଞ୍ଚଭୂତ ଆତ୍ମା ଅଟଇ ମୋହର
କିଛି ଭିନ୍ନା ଭିନ୍ନ ନାହିଁ ବ୍ରହ୍ମାର ଏହାର ।
ଏ ମୋହର ମାୟାଗୋଟି ଜାଣ ଭଲକରି
ଏହି ଚଉଦ ବ୍ରହ୍ମାଣ୍ଡ ଅଛି ସିନା ଧରି ।
ଏହାର ଯେ ଆଦିଅନ୍ତ ନ ପାରିବ କହି
ଏହି ମହାମାୟାକୁ ମୁଁ ସଙ୍ଗତରେ ନେଇ ।
ଦେବ ଦାନବ ମାନବ ସହିତ ଏ ଜୀବ
ଜଗତ ମଧ୍ୟେ ଅଛନ୍ତି ଜାଣ ଖର୍ବ ଖର୍ବ ।
ତାହାଙ୍କୁ ମୋହିତ କରି ସୃଜଇ ପାଳଇ
ପୁଣି ଆପଣା ଶରୀରେ ନେଇ ସମ୍ଭାଳଇ ।
କେବଳ ଜ୍ଞାନୀଏ ପଡ଼ି ନ ପାରନ୍ତି ଫାନ୍ଦେ
ହର ମାୟା ସହିତରେ ବୃନ୍ଦାରକ ବୃନ୍ଦେ ।
ମୋହର ମାୟାରେ ପଡ଼ି ହେଉଥାନ୍ତି ଧନ୍ଦି
କେହି ଏହାକୁ ମୋହର ଶକ୍ତି ରୂପେ ବନ୍ଦି ।
କେହି ଏହାକୁ ମୋହର ପ୍ରକୃତି କହନ୍ତି
କେହି ଏହାକୁ ତ୍ରିଗୁଣ ବୋଲି ବଖାଣନ୍ତି ।
ପୂର୍ବକଳ୍ପେ ଏହି ଦେବୀ ମୋ ଶରୀରୁ ଜାତ
ଚାରି ଭୁଜ ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତ ।
କୋଟି ସୂର୍ଯ୍ୟ କିରଣକୁ ନିନ୍ଦେ ଏହା କାନ୍ତି
ପଦ୍ମ ଆସନରେ ବସି ଏହି ରୂପବତୀ ।
ଦେବତା ପିତୃ ଦାନବ ମାନବ ଯେତେକ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଅନେକ ।
ଜାତ କଲା କ୍ଷଣକରେ ଏ ମୋର କିଆରୀ
ଏହାର ମାୟାରୁ କେହି ନ ଯିବେ ଉବୁରି ।

ବାସୁଦେବ ମୁଖୁଁ ଶୁଣି ଋଷି ମୁନିଗଣ
କହିଲେ ହେ ଶ୍ୱେତପଦ୍ମ ନେତ୍ର ନାରାୟଣ ।
କଳପାନ୍ତେ କି ହୋଇବ ତାହା ତୁମ୍ଭେ କହ
ଏହା କହି ଶ୍ରୀପୟରେ ଲଗାଇଲେ ଲୟ ।
ଶ୍ରୀହରି ବୋଇଲେ ଶୁଣ ବିପ୍ର ଦେଇମନ
ଇନ୍ଦ୍ରଦ୍ୟୁମ୍ନ ନାମେ ଥିଲା ଏକଇ ରାଜନ ।
ପୂର୍ବ ଜନମରେ ହୋଇଥିଲା ନରପତି
ଦେବତାମାନଙ୍କଠାରେ କରଇ ଭକତି ।
ମହାଦେବ ଭକତ ସେ ଗୁଣବନ୍ତ ରାଜା
ଧର୍ମରେ ଯେ ପାଳୁଥାଇ ତାହାର ପରଜା ।
ମୋର କୂର୍ମରୂପ ଦେଖିସେହି ନୃପବର
ପଚାରିଲା ମୋତେ ଏହି ପୁରାଣ ଯେ ସାର ।
ମୋହର ମୁଖରୁ କରି ପୁରାଣ ଶ୍ରବଣ
ବୁଝିଲା ସେ ହର ବ୍ରହ୍ମା ଆଦି ଦେବଗଣ ।
ଋଷି ମୁନି ଆଦି ଯେତେ ଚରାଚର ପ୍ରାଣୀ
ମୋହର ଶକତି ମଧ୍ୟେ ଦେଖି ନୃପମଣି ।
ଶରଣ ପଶିଲା ଆସି ମୋହର ଚରଣେ
ତାହାର ଭକତି ଦେଖି ହୋଇଲି ପ୍ରସନ୍ନେ ।
ଏ ଜନମ ଅନ୍ତେ ହେବୁ ତୁ ଯାଇ ବ୍ରାହ୍ମଣ
ଏହି ଇନ୍ଦ୍ରଦ୍ୟୁମ୍ନ ନାମ ରହିବଟି ଜାଣ ।
ନୃପତି ହୋଇ ପାଳିବୁ ଚରାଚର ମହୀ
ଜାତିସ୍ମର ହୋଇ ସବୁ ଜାଣିବୁରେ ତୁହି ।
ପୁଣ୍ୟବନ୍ତ ପ୍ରାଣୀ ତୁହି ଅଟୁ ହୋ ରାଜନ
ଏଣୁ ମୁଁ ତୋତେ କହିଲି ଏ ଗୁପତ ଜ୍ଞାନ ।
ଏହା ତୁହି ପାଇ ଅନ୍ତେ ଆମ୍ଭଙ୍କୁ ପାଇବୁ
ଅଂଶ ଅବତାରୀ ହୋଇ ପୃଥିବୀରେ ଥିବୁ ।
ବୈବସ୍ୱତ ମନ୍ୱନ୍ତରେ ହେବୁ ଯାଇଁ ଲୀନ
ଇନ୍ଦ୍ରଦ୍ୟୁମ୍ନ ରାଜା ପାଇ ଆମ୍ଭଠାରୁ ଜ୍ଞାନ ।
କିଛିକାଳ ଅନ୍ତେ ରାଜା ସେ ଦେହ ଛାଡ଼ିଲା
ବ୍ରାହ୍ମଣ ହୋଇ ପୃଥିବୀ ଧର୍ମରେ ପାଳିଲା ।
ଜାତିସ୍ମର ହୋଇ ଆମ୍ଭଠାରୁ ପାଇ ଜ୍ଞାନ
ଦେହ ଛାଡ଼ି କଲା ଶ୍ୱେତଦ୍ୱୀପକୁ ଗମନ ।
ବିଷ୍ଣୁ ଭକତଙ୍କ ପାଇଁ ଅଛି ଯେଉଁ ଭୋଗ
ତାହାପାଇଁ ପୁଣି ଆସି କଲା ରାଜ୍ୟଭୋଗ ।
ପରମବ୍ରହ୍ମରେ ଲୟ ରଖି ନୃପମଣି
ଆମ୍ଭ କୃପାରେ ବ୍ରାହ୍ମଣ ହୋଇଲା ସେ ପୁଣି ।

ବ୍ରତ ଉପବାସ ହୋମ ସନ୍ଧ୍ୟା ଆଦିକରି
ଆମ୍ଭ ଚରଣ ସେବାରେ ଦିନରାତି ସାରି ।
ଜପ ହୋମ ନମସ୍କାର ଯାହା କି କରଇ
ଲୟ ରଖି ମୋର ପାଦେ ତାହା ଅରପଇ ।
ମହାଦେବଙ୍କୁ ପୂଜଇ ବିପ୍ର ପ୍ରତିଦିନ
ଏହିରୂପେ ତାର ଦିନ ଯାଏ ଋଷିଗଣ ।
ଏକଦିନେ ବିଷ୍ଣୁ କଳା ଦେଖି ବିପ୍ରମଣି
ଚରଣେ ପ୍ରଣମି ସ୍ତୁତି କଲା ଯୋଡ଼ି ପାଣି ।
ବୋଇଲା ତୁହି ବିଶାଳ ନୟନା ଗୋ କିଏ
ବିଷ୍ଣୁର ଚିହ୍ନ ବିରାଜୁଅଛି ତୋର କାୟେ ।
ସତକରି କହିବୁ ତୁ କପଟ ନ କରି
ମହାଲକ୍ଷ୍ମୀ ଶ୍ରୀବିଷ୍ଣୁଙ୍କୁ ମନରେ ସୁମରି ।
ଅଳପ ଅଳପ ହସି ବୋଇଲେରେ ଦ୍ୱିଜ
ମୋର ଦରଶନ ପାଇ ସ୍ୱର୍ଗେ ଦେବରାଜ ।
ଜପତପ କରି ପୁଣି ନ ପାଇଲା ମୋତେ
ଆରେ ଦ୍ୱିଜ କି କହିବି ମୁଁ ତୋର ଅଗ୍ରତେ ।
ସୁରାସୁର ମୁନି ତପୀ ଅଛନ୍ତି ଯେତେକ
ମୋର ରୂପ ଦେଖିବାକୁ ନୁହନ୍ତି ତ ଶକ୍ୟ ।
ମୁହିଁ ମହାଲକ୍ଷ୍ମୀ ମୁହିଁ ମହାମାୟୀ ଜାଣ
ମୁହିଁ ବିଷ୍ଣୁର ଶକତି ଜଗତ କାରଣ ।
ବିଷ୍ଣୁର ମୋହର ଆତ୍ମା ଏକ ନୋହେ ଦୁଇ
ଜ୍ଞାନମାର୍ଗେ କର୍ମମାର୍ଗେ ଯେ ବିଷ୍ଣୁ ପୂଜଇ ।
ତାହାର ମୁଁ କିଛି କରି ନ ପାରଇ ଦ୍ୱିଜ
ଏଣୁ ଜ୍ଞାନମାର୍ଗେ ଭଜ ଶ୍ରୀବିଷ୍ଣୁ ପଙ୍କଜ ।
ପୁରୁଷ ଉତ୍ତମ ସେହି ଜଗତର ପତି
ଏମନ୍ତ ଶୁଣି ତାହାଙ୍କ ମୁଖୁ ସେ ନୃପତି ।
ଉଠି ପୁଣି ଦେବୀଙ୍କର ଚରଣେ ଲୋଟିଲା
ପୁଣି ଉଠି କରଯୋଡ଼ି ଏମନ୍ତ ବୋଇଲା ।
ଏହି ବିଷ୍ଣୁ ବୋଲି ଆମ୍ଭେ ଜାଣିବା କେମନ୍ତେ
ତହିଁର ପଥ ଦେଖାଇ ଦିଅ ମାତା ମୋତେ ।
ମହାଲକ୍ଷ୍ମୀ ବୋଇଲେ ହୋ ଶୁଣ ଦ୍ୱିଜବର
ଯେତେବେଳେ ଆସି ପ୍ରଭୁ ଜଗତ ଈଶ୍ୱର ।
ପ୍ରସନ୍ନ ହୋଇ ଗୁପତ ଜ୍ଞାନ ଦେବେ କହି
ତେତେବେଳେ ତୁ ଚିହ୍ନିବୁ ସିନା ଭାବଗ୍ରାହୀ ।
ଏମନ୍ତ କହି ଆଉଁଷି ଦେଇ ସେ ଦ୍ୱିଜକୁ
ଅନ୍ତର ହୋଇଗଲେ ସେ ଆପଣା ପୁରକୁ ।

ତହୁଁ ଦ୍ୱିଜବର ଯାଇ ସମାଧିରେ ବସ
ମନକୁ ମନ ଶ୍ରୀହରି ପୟରେ ନିବେଶି ।
ବିଷ୍ଣୁ ସେବାରେ ତାହାର ପୁଣି ଗଲା ଦିନ
ପ୍ରସନ୍ନେ ଶ୍ରୀବିଷ୍ଣୁ ଆସି ଦେଲେ ଦରଶନ ।
କଟୀତଟେ ପୀତପଟ ଦିଶେ ଝଟଝଟ
କଉସ୍ତୁଭମଣିରେ ଯେ ଶୋହେ କଣ୍ଠତଟ ।
ଶ୍ରୀବତ୍ସ ବିପ୍ରର ପାଦଚିହ୍ନ ବିରାଜଇ
ଦେଖି ଇନ୍ଦ୍ରଦ୍ୟୁମ୍ନ ରାଜା ପାତି ଜାନୁ ଦୁଇ ।
କରଯୋଡ଼ି ଆରମ୍ଭିଲା ଶ୍ରୀ ବିଷ୍ଣୁର ସ୍ତୁତି
ଜୟ ଯଜ୍ଞେଶ୍ୱର ଜୟ ଅପୂର୍ବ ମୂରତି ।
ଜୟ ତୁ ଜଗତନାଥ କମଳାର ପତି
ଜୟ ଅଚ୍ୟୁତ ଗୋବିନ୍ଦ ମାଧବ ଶ୍ରୀପତି ।
ଅନନ୍ତ କେଶବ କୃଷ୍ଣ ବିଷ୍ଣୁ ହୃଷୀକେଶ
ନମସ୍ତେ ନମସ୍ତେ ପ୍ରଭୁ ପୁରାଣ ପୁରୁଷ ।
ବିଶ୍ୱରୂପୀ ବିଶ୍ୱମୂର୍ତ୍ତି ହରି ଜନାର୍ଦ୍ଦନ
ସୃଷ୍ଟି ସ୍ଥିତି ପ୍ରଳୟର ଅଟୁ ତୁ କାରଣ ।
ଶକତି ଅନେକ ତୋର କେ ପାରିବ କହି
ନମସ୍ତେ ନମସ୍ତେ ଦେବ ଦେବ ଭାବଗ୍ରାହୀ ।
ଗୁଣମୟ ପୁରୁଷ ତୁ ଅକଳଙ୍କ ଦେହୀ
ନମସ୍ତେ ନମସ୍ତେ ସ୍ୱାମୀ ଶଯ୍ୟା ତୋର ଅହି ।
ନମସ୍ତେ ନମସ୍ତେ ସ୍ୱାମୀ ବିଶ୍ୱରୂପ ଧାରୀ
ନମସ୍ତେ ନମସ୍ତେ ସ୍ୱାମୀ ବାସୁଦେବ ହରି ।
ନମସ୍ତେ ନମସ୍ତେ ସ୍ୱାମୀ ବିଷ୍ଣୁ ବିଶ୍ୱଯୋନି
ନମସ୍ତେ ନମସ୍ତେ ସ୍ୱାମୀ ଶଙ୍ଖ ଚକ୍ରପାଣି ।
ଆଦି ନାହିଁ ଅନ୍ତ ନାହିଁ ମଧ୍ୟ ନାହିଁ ତୋର
ଜ୍ଞାନୀ କେବଳ ଜାଣଇ ତୋର କଳେବର ।
ନମୋ ନମୋ ନିର୍ବିକାର ସଦାନନ୍ଦମୟ
ଭେଦାଭେଦ ନାହିଁ ତୋର ଅକଳିତ କାୟ ।
ନମସ୍ତେ ନମସ୍ତେ ପ୍ରଭୁ ଅନନ୍ତ ମୂରତି
ନମସ୍ତେ ନମସ୍ତେ ପ୍ରଭୁ ଲକ୍ଷ୍ମୀଦେବୀ ପତି ।
ନମସ୍ତେ ନମସ୍ତେ ପ୍ରଭୁ ଉଦ୍ଧାର କରତା
ଜୀବର ପରମ ଗତି ପ୍ରଭୁ ପିତା ମାତା ।
ନମସ୍ତେ ନମସ୍ତେ ବ୍ରହ୍ମ ପରମ ଈଶ୍ୱର
ନମସ୍ତେ ନମସ୍ତେ ସ୍ୱାମୀ ଭବ ଭୟ ହର ।
ଏମନ୍ତେ ଅନେକ ସ୍ତୁତି କଲା ବିପ୍ରମଣି
ଆଉଁଷି ଦେଲେ ତାହାକୁ ପ୍ରଭୁ ଚକ୍ରପାଣି ।

ବିଷ୍ଣୁ କର ଲାଗିବାରୁ ହେଲା ମହାଜ୍ଞାନୀ
ଚରଣେ ପ୍ରଣମି ବିପ୍ର ସ୍ତୁତିକରେ ପୁଣି ।
ନମସ୍ତେ ନମସ୍ତେ ପ୍ରଭୁ ପୁରୁଷ ଉତ୍ତମ
ନମସ୍ତେ ନମସ୍ତେ ବାସୁଦେବ ଠୁଳବ୍ରହ୍ମ ।
ଏଥର ମୁଁ କି କରିବି କହ ମୋତେ ହରି
କହିଲେ ଅଳପ ହସି ପ୍ରଭୁ ଦଇତ୍ୟାରି ।
ମୋହର ଅଭୟ ପାଦେ କର ତୁ ଭକତି
ଆହୋ ଦ୍ୱିଜବର ଯେବେ ପାଇବୁ ମୁକତି ।
ପରମ ତତ୍ତ୍ୱରେ ଲୟ ରଖ ରାତିଦିନ
ବିଭୁତି ଯୋଗରେ ଦ୍ୱିଜ ଦିଅ ତୁହି ମନ ।
କାର୍ଯ୍ୟ କଲେ କାରଣ ତୁ ପାଇବୁ ନିୟତ
ଏହା ଶୁଣି ଇନ୍ଦ୍ରଦ୍ୟୁମ୍ନ ବୋଲଇ ଅଚ୍ୟୁତ ।
ପରମତତ୍ତ୍ୱ କାହାକୁ କହନ୍ତି ହେ ହରି
ବିଭୂତି ଯୋଗ କେମନ୍ତେ କହ ତା ବିସ୍ତାରି ।
ପ୍ରବୃତ୍ତିର ମାର୍ଗ ମୋତେ ଦିଅ ତୁ ବୁଝାଇ
କାର୍ଯ୍ୟ କାରଣ କାହାକୁ କହନ୍ତି ଗୋସାଇଁ ।
ଶ୍ରୀହରି ବୋଇଲେ ତାହା ଶୁଣ ଦ୍ୱିଜବର
ପରମତତ୍ତ୍ୱ ମହିମା ଅଟେ ଅଗୋଚର ।
ଜ୍ୟୋତିରୂପେ ବିରାଜଇ ନାହିଁ ବର୍ଣ୍ଣ ଚିହ୍ନ
ସର୍ବଦା ଆନନ୍ଦମୟ ସେ ପରମବ୍ରହ୍ମ ।
ତାହାର ଯେ ଅଇଶ୍ୱର୍ଯ୍ୟ ସେ ଜାଣ ବିଭୂତି
ସୃଷ୍ଟି କରିବା ତାହାର କାର୍ଯ୍ୟ ନରପତି ।
ଅକ୍ଷୟ ବ୍ରହ୍ମ ତହିଁରେ ଅଟଇ କାରଣ
ସୃଷ୍ଟି ସ୍ଥିତି ଲୟ ମୋର ପ୍ରବୃତ୍ତି ଯେ ଜାଣ ।
କର୍ମଯୋଗେ ବ୍ରହ୍ମକୁ ତୁ ଭଜ ଦ୍ୱିଜବର
ଦ୍ୱିଜବୋଲେ କର୍ମଯୋଗ କହ ଚକ୍ରଧର ।
ଜ୍ଞାନଯୋଗ ପ୍ରଭୁ ମୋତେ ଦିଅନ୍ତୁ ବୁଝାଇ
ସୃଷ୍ଟି କେମନ୍ତେ ହୋଇଲା କହିବୁ ଗୋସାଇଁ
ରହିଲା କେମନ୍ତେ ପୁଣି ଗଲା କେଉଁପରି
ସୃଷ୍ଟି କେତେ ବଂଶ କେତେ କହିବୁ ବିସ୍ତାରି ।
କେତେ ମନନ୍ତର ତାର ପରିମାଣ କେତେ
ପୃଥିବୀର ଦୀର୍ଘପ୍ରତି କହିଦେବୁ ମୋତେ ।
ସୂର୍ଯ୍ୟ ଆଦି ଗ୍ରହ ଶୂନ୍ୟେ ରହିଲେ କିପରି
କେତେ ଦ୍ୱୀପ ପୃଥିବୀରେ ଅଛି ଚକ୍ରଧାରୀ ।
ଗିରି କେତେ ନଦୀ କେତେ କହ ପଦ୍ମନେତ୍ର
ନଦୀମାନଙ୍କ ମଧ୍ୟରେ କେ ଅଛି ପବିତ୍ର ।

ଦ୍ୱିଜବର କଥା ଶୁଣି କୂର୍ମରୂପୀ ହରି
ବିପ୍ର ଆଗରେ କହିଲେ ଗୋଟି ଗୋଟି କରି ।
ସେଠାରୁ ଅନ୍ତର ଯହୁଁ ହେଲେ ଭଗବାନ
ବିପ୍ର ବଇରାଗୀ ହୋଇ ସ୍ଥାପିଲା ଆସନ ।
ମୂଳ କମଳକୁ ଥାପି ଟେକିଲା ଉଜାଣି
ଅବନାମନ୍ତ୍ର ଜପିଲା ବସି ବିପ୍ରମଣି ।
ନ ଟଳିଲା ପାଦପାଣି ବଇରୀକି ମାରି
ଯୋଗୀନ୍ଦ୍ର ହୋଇ ବ୍ରହ୍ମକୁ ହୃଦପଦ୍ମେ ଧରି ।
ଅଜ୍ଞାନକୁ ନାଶକରି ପାଇ ଜ୍ଞାନ ଜ୍ୟୋତି
ଦେଖିଲା ସେଠାରେ ବିଜେ ଅପୂର୍ବ ମୂରତି ।
ଉତ୍ତରେ ଦେଖିଲା ଅଛି ମାନସରୋବର
ଅପୂର୍ବ ବିମାନ ତହିଁ ଦେଖେ ଦ୍ୱିଜବର ।
ଗଗନରୁ ଆସି ତହିଁ ହୋଇଅଛି ଉଦେ
ନାଚୁଛନ୍ତିଅପସରାମାନେ ଯେ ଆନନ୍ଦେ ।
ଦେବତା ଗନ୍ଧର୍ବ ସିଦ୍ଧ ଚାରଣ ଅଛନ୍ତି
ସେହି ଯୋଗୀନ୍ଦ୍ରକୁ ତହିଁ ଅନୁସରିଛନ୍ତି ।
ତହିଁର ଅଳପ ଦୂରେ ଅଛି ଏକ ଗିରି
କୋଟି କୋଟି ସୂର୍ଯ୍ୟପ୍ରାୟ ତେଜକୁ ବିସ୍ତାରି ।
ପୁରୁଷେକ ବସିଅଛି ସେ ଗିରି ଉପରେ
ଯୋଗୀନ୍ଦ୍ର ତହିଁ ପରମ ମନ୍ତ୍ର ଜପକରେ ।
ତହିଁରୁ ଅପୂର୍ବ ଏକ ଜ୍ୟୋତି ବିକାଶିଲା
ତା ମଧ୍ୟରେ ଦ୍ୱିଜ ଠୁଳ ବ୍ରହ୍ମକୁ ଦେଖିଲା ।
ସୁନ୍ଦର ରୂପ ତାହାର ଚାରୋଟି ବଦନ
ଚାରିଦିଗେ ଚାରି ଶିଖା ଉଠେ ଘନ ଘନ ।
ପ୍ରଜ୍ୱଳିତ ଅଗ୍ନି ଶିଖା ଉଠିଲା ପରାୟ
ଯୋଗୀନ୍ଦ୍ର ସେ ରୂପ ଦେଖି ଲଗାଇଲା ଲୟ ।
ପରମ ପୁରୁଷ ତାକୁ କୋଳ କଲେ ଆସି
କୋଳ କରିବା ମାତ୍ରକେ ସେହି ବ୍ରହ୍ମରାଶି ।
ଯୋଗୀନ୍ଦ୍ର ଦେହୁଁ କୋଟିଏ ଜ୍ୟୋତି ବାହାରିଲା
ଆଦିତ୍ୟ ମଣ୍ଡଳେ ଯାଇଁ ସେ ଜ୍ୟୋତି ଲାଗିଲା ।
ସେ ଜ୍ୟୋତିର ନାମ ଦେଲେ ଋକ୍ ଯଜୁସାମ
ଅମଳହିରଣ୍ୟ ଗର୍ଭ ବ୍ରହ୍ମାର ଯେ ଧାମ ।
ସେହିଟି ମୁକତି ଦ୍ୱାର ଜାଣ ମୁନିବରେ
ଯୋଗୀନ୍ଦ୍ର ସର୍ବଦା ରହି ଥାଇ ସେହି ଦ୍ୱାରେ ।
ବ୍ରହ୍ମାର ଦୃଷ୍ଟି ପଡ଼ିଲା ତା ଉପରେ ଯହୁଁ
ଜ୍ୟୋତିଯାଇଁ ଜ୍ୟୋତିକି ସେ ଦେଖିଲାକ ତହୁଁ ।

ଜ୍ୟୋତିରେ ଜ୍ୟୋତି ମିଶିଲା ପାଇଲା ମୁକତି
ବର୍ଣ୍ଣ ଆଶ୍ରମରେ ରହି ଜ୍ଞାନୀଜନ ନିତି ।
ମାୟା ଦଉଡ଼ିକି କାଟି ପାରିବ ଅକ୍ଳେଶେ
କହୁଛନ୍ତି ସୁତମୁନି ମୁନିବର ପାଶେ ।
ଇନ୍ଦ୍ର ନାରଦ ସହିତେ ଦେବ ଋଷିଗଣ
ବୋଇଲେ ହେ କୂର୍ମରୂପୀ ଦେବ ନାରାୟଣ ।
ଇନ୍ଦ୍ରଦ୍ୟୁମ୍ନ ରାଜା ଆଗେ କହିଲେ ଯେ ଜ୍ଞାନ
ତାହା ବିସ୍ତାରି କହିବା ହେଉ ଭଗବାନ ।
ଶୁଣି ପ୍ରଭୁ କୂର୍ମରୂପୀ ଦେବ ଜନାର୍ଦ୍ଦନ
କହିଲେ ତାହାଙ୍କ ଆଗେ ଏ କୂର୍ମ ପୂରାଣ ।
ପଢ଼ିଲେ ଶୁଣିଲେ ଯଶ ଆୟୁ ଯିବ ବଢ଼ି
ଗୋଟିଏ ଅଧା ଶୁଣିବ ଯେବେ ସବୁ ଛାଡ଼ି ।
ପାପ ଛାଡ଼ିଯିବ ବ୍ରହ୍ମଲୋକରେ ବସିବ
ଦ୍ୱିଜ ଗୋପୀନାଥ ଭଜେ ହରି ବ୍ରହ୍ମା ଶିବ ।

## ଚାରି ଆଶ୍ରମର କଥା

ବୋଇଲେ ସେ କୂର୍ମ ରୂପୀ ଦେବଦେବ ହରି
ଯାହା ପଚାରିଲ ତାହା କହୁଛୁ ବିସ୍ତାରି ।
ଲୋକହିତେ କହିଥିଲୁ ଇନ୍ଦ୍ରଦ୍ୟୁମ୍ନ ଆଗେ
ଶୁଣଦେବ ଋଷିଗଣ ମନର ସରାଗେ ।
ଯେତେବେଳେ ନିଦ୍ରା ଆସି ଆମ୍ଭଙ୍କୁ ଘାରିଲା
ତେତେବେଳେ ମୋହବିନା କିଛିହିଁ ନ ଥିଲା ।
ରାତିଯାକ ଶୋଇ ପୁଣି ଉଠିଲୁ ପ୍ରଭାତେ
ଭାଳିଲୁ ଆମ୍ଭେ ଏ ସୃଷ୍ଟି କରିବା କେମନ୍ତେ ।
ଯହୁଁ ସେ ସୃଷ୍ଟିର ଚିନ୍ତା ଆମ୍ଭଙ୍କୁ ଘାରିଲା
ତକ୍ଷଣେ ଆନନ୍ଦ ଆମ୍ଭ ହୃଦେ ଉପୁଜିଲା ।
ଲୋକ ପିତାମହ ବ୍ରହ୍ମା ଉପୁଜିଲେ ଯହୁଁ
ତଦନ୍ତେ ମୋ ହୃଦେ କ୍ରୋଧ ଜାତ ହେଲା ତହୁଁ ।
ସେ କ୍ରୋଧରୁ ଉପୁଜିଲେ ମହାଦେବ ରୁଦ୍ର
ତିନିଗୋଟି ନେତ୍ର କି ସେ ଅଗ୍ନି ସୂର୍ଯ୍ୟଚନ୍ଦ୍ର ।
କରେ ଶୂଳ ବିରାଜଇ ସୂର୍ଯ୍ୟସମ ତେଜ
କ୍ରୋଧମୟ ପୁରୁଷ ସେ ଜାଣ ଦେବଦ୍ୱିଜ ।
ଏ ସମୟେ ମହାଲକ୍ଷ୍ମୀ ବସିଲେ ମୋ ପାଶେ
ଜଗତ ଜନ ମୋହିନୀ ମନର ଉଲ୍ଲାସେ ।
ତାହାର ସୁନ୍ଦର ମୁଖ ଦେଖି ବେଦବର
ବୋଇଲେ ହୋ ଦେବଦେବ ଜଗତଈଶ୍ୱର ।
ପ୍ରାଣୀ ମନ ମୋହିବାକୁ ଯାଉ ଏହି ଦେବୀ
ତେବେ ସିନା ମୁହିଁ ନବ ସୃଷ୍ଟି ଭିଆଇବି ।
ଏମନ୍ତ ଶୁଣି ଅଳପ ହସି ଦେଇ ଆମ୍ଭେ
ବୋଇଲୁଁଗୋ ଦେବୀ ଏଥିଯାଇଁ ବେଗେ ତୁମ୍ଭେ ।
ଦେବ ଦାନବ ମାନବ ମନକୁ ମୋହିବ
ଜଗତ ମୋହିନୀ ନାମକୁ ଯେ ବୋଲାଇବ ।
ନ ଯିବ ଗୋ ଜ୍ଞାନବନ୍ତ ପୁଣ୍ୟବନ୍ତ ପାଶେ
ଆମ୍ଭେ ଭକତ ଆବର ଯୋଗୀନ୍ଦ୍ର ପୁରୁଷେ ।
ଏମାନଙ୍କୁ ଛାଡ଼ିଦେଇ ଆନକୁ ମୋହିବ
ଏମନ୍ତ କହିଲେ ଯହୁଁ ପ୍ରଭୁ ଆଦି ଦେବ ।
ମହାଯୋଗ ଆରମ୍ଭିଲେ ତହୁଁ ବେଦବର
ନଅଗୋଟି ପୁତ୍ରହେଲେ ମନରୁ ତାଙ୍କର ।
ତାହାଙ୍କର ନାମ ଏବେ କହୁଅଛି ଶୁଣ
ମରୀଚି ଭୃଗୁ ଅଙ୍ଗିରା ପୁଲସ୍ତ୍ୟ ଏ ପୁଣ ।
ପୁଲହ କ୍ରତୁ ଦକ୍ଷ ଅତ୍ରି ଯେ ବଶିଷ୍ଠ
ମହାଋଷି ବୋଲାଇଲେ ହୋଇ ତପେ ନିଷ୍ଠ ।
ବ୍ରହ୍ମାଙ୍କ ମୁଖୁ ବ୍ରାହ୍ମଣମାନେ ହେଲେ ଜାତ
ବାହୁମୂଳରୁ କ୍ଷତ୍ରିୟେ ହୋଇଲେ ସମ୍ଭୂତ ।
ଉରୁଯୁଗଳୁ ବଇଶ୍ୟେ ହେଲେ ଉତପନ୍ନ
ଶୂଦ୍ରମାନେ ହେଲେ ତାଙ୍କ ପାଦରୁ ଜନମ ।
ତହୁଁ ହେଲେ ବେଦରୂପା ଦେବୀ ସରସ୍ୱତୀ
ଏମନ୍ତ ସୃଷ୍ଟି ଭିଆଣ କଲେ ପ୍ରଜାପତି ।
ଚାରିଗୋଟି ଆଶ୍ରମ ହେ କଲେ ତାଙ୍କ ପାଇଁ
ତାହା ଯେ ତୁମ୍ଭଙ୍କୁ ଆମ୍ଭେ ଦେଉଛୁ ବୁଝାଇ ।
ବ୍ରହ୍ମଚାରୀ ଗୃହୀ ଭିକ୍ଷୁ ବାନପ୍ରସ୍ଥ ଚାରି
ତାହାଙ୍କର ଧର୍ମ କର୍ମ କହୁଛି ବିସ୍ତାରି ।
ଅଗ୍ନି ଦ୍ୱିଜ ଦେବପୂଜା ଯଜ୍ଞ ଦାନ ଧର୍ମ
ଅତିଥି ପାଇଲେ ତାକୁ ଦେବ ଯେ ଆଶ୍ରମ ।
ଗୃହୀର ଯେ ଧର୍ମ ତାହା କହିଲୁ ବୁଝାଇ
ଏବେ ବାନପ୍ରସ୍ଥ ଧର୍ମ ଶୁଣ ମନଦେଇ ।
ନିତ୍ୟ ହୋମ କରୁଥିବ ବେଦ ପଢୁଥିବ
ଫଳମୂଳ ଖାଇ କଷ୍ଟେ ତପ ଆଚରିବ ।
ଭିକ୍ଷୁର ଯେ ଧର୍ମ ତାହା ଶୁଣ ସାବଧାନେ
ଭିକମାଗି ଖାଉଥିବ ରହିବ ମଉନେ ।

ତପସ୍ୟା କରିବ ଧ୍ୟାନେ ହୋଇ ନିମଗନ
ଜ୍ଞାନ ବଇରାଗ୍ୟ ଜାଣ ଭିକ୍ଷୁର ଏ ଧର୍ମ ।
ଭିକ ମାଗୁଥିବ ଗୁରୁସେବା କରୁଥିବ
ନିତ୍ୟ ସନ୍ଧ୍ୟା କରୁଥିବ ବେଦ ପଢୁଥିବ ।
ବ୍ରହ୍ମଚାରୀର ଏ ଧର୍ମ ଜାଣ ସୁରମୁନି
ପୂର୍ବୁଁ ଯାହା କହିଛନ୍ତି ଦେବ ପଦ୍ମଯୋନି ।
ଏ ଚାରିଙ୍କ ମଧ୍ୟେ ଗୃହୀ ଧର୍ମ ସିନା ଶ୍ରେଷ୍ଠ
ନିତ୍ୟ ସ୍ତିରୀସଙ୍ଗ କଲେ ହୁଏ ଧର୍ମ ନଷ୍ଟ ।
ଋତୁକାଳେ ସ୍ତିରୀସଙ୍ଗ କରିବ କେବଳ
ଭାରିଯା ଅଟଇ ସିନା ଧର୍ମ କର୍ମ ମୂଳ ।
ଭାରିଯା ନଥିଲେ ପୁତ୍ର ହୋଇବ ବା କାହୁଁ
ପୁତ୍ର ନ ଥିଲେଟି କୁଳ ଉଦ୍ଧାରିବ କେହୁ ।
କୁଳ ଉଦ୍ଧାରିଲେ ସିନା ପିତୃରଣ ଶୁଝି
ପିତୃରଣ ଶୁଝିଲେଟି ନରକେ ନ ମଜ୍ଜି ।
ନରକେ ନ ପଡ଼ିଲେଟି ଉଦ୍ଧାର ପାଇଲ
କହୁଛନ୍ତି କୂର୍ମରୂପୀ ଦେବ ଆଦିମୂଳ ।
ଋତୁକାଳେ ସ୍ତିରୀସଙ୍ଗ କେଭେ ନ ଛାଡ଼ିବ
ଛାଡ଼ିଲେଟି ଭ୍ରୂଣହତ୍ୟା ପାପରେ ବୁଡ଼ିବ ।
ପାପରେ ବୁଡ଼ିଲେ ଯମଦୂତେ ନେବେ ବାନ୍ଧି
ନରକେ ବୁଡ଼ାଇ ଦେବେ ହାତଗୋଡ଼ ଛନ୍ଦି ।
ଏଣୁ ଧର୍ମପତ୍ନୀ ବୋଲି ଭାରିଯାକୁ କହି
ଭାରିଜା ନ ଥିଲେ କାହୁଁ ହେବ ଅବା ଗୃହୀ ।
ଗୃହୀ ନୋହିଲେ କେମନ୍ତେ ଅତିଥି ପୂଜିବ
ଅତିଥି ପୂଜା ନ କଲେ ଧର୍ମ ଛାଡ଼ିଯିବ ।
ଧର୍ମ ଛାଡ଼ିଗଲେ ଅର୍ଥ ମିଳିବ କେମନ୍ତେ
ଧର୍ମହିଁ ଅର୍ଥର ମୂଳ ଜାଣ ଏ ଜଗତେ ।
ଅର୍ଥ ନ ମିଳିଲେ ତୁଟି ଯିବଟି କାମନା
କାମନା ତୁଟିଲେ ଲୋକ ବିରୋଧିବ ସିନା ।
ବିରୋଧି ହୋଇଲେ ସର୍ବ କର୍ମ ଯିବ ନାଶ ।
କହୁଛନ୍ତି କୂର୍ମ ରୂପୀ ପ୍ରଭୁ ହୃଷୀକେଶ ।
ଘର କଲେ ସିନା ଧର୍ମ ଅର୍ଥ କାମ ପାଇ
ଧର୍ମ ଅର୍ଥ କାମନାକୁ ତିନିଗୁଣ କହି ।
ଘର ଖଣ୍ଡି କରେ ରହି ଭାରିଯାକୁ ଘେନି
ଜପ ତପ କରି ଘରେ ଥାପି ହୋମଅଗ୍ନି ।
ଦେବଦ୍ୱିଜ ସେବାକରୁ ଜ୍ଞାନ ହେବ ଉଦେ
ଜ୍ଞାନ ଉଦେହେଲେ ପାପ ନ ରହିବ ହୃଦେ ।

ପାପ ନ ରହିଲେ ପୁଣ ଦଉଡ଼ି ଛିଣ୍ଡିବ
ଦଉଡ଼ି ଛିଡ଼ିଲେ ସିନା ମୁକତ ହୋଇବ ।
ମୁକତ ହୋଇଲେ ସିନା ହୋଇବ ଭକତ
ଭକତ ହୋଇଲେ ମୋତେ ପାଇବ ଏ ସତ ।
ସବୁ ଧର୍ମ ସବୁ କର୍ମ ଅଛି ଜାଣ ଘରେ
ଘର ଖଣ୍ଡି ଯେହୁ ରଖିପାରେ ଯତନରେ ।
ରଖି ନ ପାରି ଛାଡ଼ିଲେ ହୋଇବ ଭିକାରୀ
ଭିକାରୀ ହୋଇଲେ ମାୟାପାଶୁ ଯିବ ତରି ।
ମାୟା କାଟି ପକାଇଲେ ଶତ୍ରୁ ଯିବେ ମରି
ଶତ୍ରୁ ମଲେ କରିବ ଯେ ପଥର ସଙ୍ଖାଳି ।
ପଥର ସଙ୍ଖାଳି ସିନା ଜ୍ଞାନଦୀପ ଜାଣ
ଜ୍ଞାନଦୀପ ଜାଳିଲେଟି ସୁରମୁନିଗଣ ।
ତତକ୍ଷଣେ ତୁଟିଯିବ ପାତକ ତିମିରି
ତିମିରି ତୁଟିଲେ ଭବୁ ଯିବ ସିନା ତରି ।
ଭିକ ମାଗି ନ ପାରିଲେ ଫଳ ମୂଳ ଖାଇ
ମୂଳ କମଳକୁ ଥାପି ଅବନାକୁ ଧ୍ୟାୟି ।
ପବନ ଉଜାଣି ଟେକି ହଂସକୁ ଧରିବ
ହଂସ ଉଡ଼ିଗଲେ ସବୁ ବିଫଳ ହୋଇବ ।
ହଂସକୁ ନିବିଡ଼େ ଧରି ଲଗାଇବ ଲୟ
ଲୟ ଲଗାଇଲେ ରିପୁମାନେ ଯିବେ କ୍ଷୟ ।
ରିପୁକ୍ଷୟ ଗଲେ ସିନା ପରମ ମିଳଇ
ପରମ ମିଳିଲେ ସିନା ଜୀବ ଗତି ପାଇ ।
ଚାରି ଆଶ୍ରମର କଥା କହିଲୁଁ ତୁମ୍ଭଙ୍କୁ
ଚିହ୍ନି ପାରିବଟି ଯେବେ ଜୀବ ପରମକୁ ।
ତେବେ ସିନା ଏ ସଂସାର ହେବ ଅଜ୍ରାମର
କହୁଛନ୍ତି କୂର୍ମ ରୂପୀ ଜଗତ ଈଶ୍ୱର ।
ଶୁଣୁଛନ୍ତି ସୁରାସୁର ମୁନି ତହିଁ ବସି
ଦୀନ ଗୋପୀନାଥ ସଦା ଭଜେ ବ୍ରହ୍ମରାଶି ।
ଆହେ ହରି ମୁହିଁ ଅଟେ ଅକିଞ୍ଚନ ଜନ
ମୋଠାରେ କୃପା କରିବ ଦେବ ନାରାୟଣ ।

.....❋.....

## ବରାହ ଅବତାର କଥା

ପଚାରନ୍ତି ସୁରମୁନି କହ ଦେବ ହରି
କାହୁଁ ଏ ଭୁବନ ହେଲା କେହୁ ଅଛି ଧରି ।



କେମନ୍ତେ ହୁଅଇ ଲୟ ଏ ବଡ଼ ବିଚିତ୍ର
କପଟ ନ କରି ସବୁ କହ ପଦ୍ମନେତ୍ର ।
କହୁଛନ୍ତି କୂର୍ମରୂପୀ ଜଗତ ଗୋସାଇଁ
ନ ଥିଲା ସପତ ସିନ୍ଧୁ ନ ଥିଲା ଏ ମହୀ ।
ନ ଥିଲା ପର୍ବତ ନଦୀ ନ ଥିଲା ପବନ
ନଥିଲେ ଏ ଚନ୍ଦ୍ର ସୂର୍ଯ୍ୟ ନ ଥିଲା ଭୁବନ ।
ଘୋଟିଲା ତିମିରି ଯାଇଁ ଶୂନ୍ୟକୁ ଆଚ୍ଛାଦି
କାହାକୁ ନ ଦେଖି ଜଳ ଉପରେ ଅନାଦି ।
ନିଶ୍ଚିନ୍ତ ହୋଇ ଶୋଇଲେ ସହସ୍ରେକ ଯୁଗ
ନିଦ୍ରାବତୀ ଦେବୀ କଲା ତାଙ୍କୁ ଉପଭୋଗ ।

ସେ ଅନାଦି ପୁରୁଷର ସହସ୍ରେକ ପାଦ
ନ ଚଳଇ ରହିଅଛି ଘାରିବାରୁ ନିଦ ।
ସହସ୍ର ନୟନ ବୁଜି ଶୋଇଛନ୍ତି ସୁଖେ
ନିଃଶ୍ୱାସ ମାରନ୍ତି ପ୍ରଭୁ ସହସ୍ରେକ ମୁଖେ ।
ସହସ୍ରେକ ବାହୁ ପୁଣି ହୋଇଛି ଅଚଳ
ନିଦ ଭାଙ୍ଗିଯିବାରୁ ସେ ପ୍ରଭୁ ଆଦିମୂଳ ।
ଦେଖିଲେ ପୃଥିବୀ ଅଛି ଜଳ ମଧ୍ୟେ ବୁଡ଼ି
ବରାହ ହୋଇଲେ ଦେବ ସେ ରୂପକୁ ଛାଡ଼ି ।
ପୃଥିବୀକି ଉଦ୍ଧାରିବା ପାଇଁ ନାରାୟଣ
ଜଳରେ ବୁଡ଼ିଲେ ମହା ବରାହ ହୋଇଣ ।

ଥଳ କୂଳ ନାହିଁ ଜଳ ପ୍ରବଳ ଅଚଳ
ତହିଁ ବୁଡ଼ି ବୁଡ଼ି ଗଲେ ପ୍ରଭୁ ଆଦିମୂଳ ।
ରସାତଳେ ଖୋଜି ଖୋଜିପୃଥିବୀକିପାଇ
କାମୁଡ଼ି ଧଇଲେ ଦନ୍ତେ ଜଗତ ଗୋସାଇଁ ।
ବାରା ଦାନ୍ତେ ପଙ୍କ ପ୍ରାୟେ ବିରାଜିଲା ମହୀ
ଜଳ ଉପରେ ରଖିଲେ ଆଣି ଭାବଗ୍ରାହୀ ।
ସୃଷ୍ଟି କରିବାକୁ ପୁଣି ବଳିଲାକ ମନ
ପ୍ରଥମରେ ହେଲା ଗିରି ବୃକ୍ଷ ଉତପନ୍ନ ।
ତଦୁତ୍ତାରୁ ପକ୍ଷୀମାନେ ହେଲେ ଉତପତ୍ତି
ତହୁଁ ପୁଣି ଉପୁଜିଲେ ଜାଣ ପଶୁପତି ।
ଏହାଙ୍କୁ ଅସାର ଭାବି ପ୍ରଭୁ ଆଦିମୂଳ
ଚିନ୍ତା କରନ୍ତେ ହୋଇଲେ ଦେବତା ସକଳ ।
ତହୁଁ ଯେ ସାଧବଗଣ ଉପୁଜିଲେ ଜାଣ
ତଦନ୍ତେ ମାନବ ସୃଷ୍ଟି କଲେ ନାରାୟଣ ।
ତହୁଁ ଭୂତ ସୃଷ୍ଟି ହେଲା ଆହେ ସୁରମୁନି
ତହୁଁ ପୁଣି ଉପୁଜିଲେ ଦେବ ପଦ୍ମଯୋନି ।
ତଦନ୍ତେ ରୁଦ୍ରଙ୍କୁ ଜାତ କଲେ ସେ ପୁରୁଷ
କହୁଛନ୍ତି କୂର୍ମରୂପୀ ଦେବ ହୃଷୀକେଶ ।
ନଅକୋଟି ସୃଷ୍ଟିହେଲା ଶୁଣ ତାଙ୍କ ନାମ
ବ୍ରହ୍ମସୃଷ୍ଟି ଭୂତସୃଷ୍ଟି ଇନ୍ଦ୍ରସୃଷ୍ଟି ଜାଣ ।
ଶ୍ୱପଦ ସୃଷ୍ଟି ତିର୍ଯ୍ୟକ ସୃଷ୍ଟି ଯେ ସ୍ଥାବର
ଦେବତା ସୃଷ୍ଟି ମାନବ ସୃଷ୍ଟି ଯେ ଆବର ।
ପ୍ରାକୃତ ସୃଷ୍ଟି ବିକୃତ ସୃଷ୍ଟି ଏହି ନବ
ଏବେ ପ୍ରଜାପତି ସୃଷ୍ଟି ଶୁଣ ମୁନିଦେବ ।
ରୁଦ୍ରଙ୍କୁ କହିଲେ ବ୍ରହ୍ମା କର ତୁମ୍ଭେ ସୃଷ୍ଟି
ଯାଗରେ ବସିଲେ ରୁଦ୍ର ଦେଖି ପରମେଷ୍ଠୀ ।
ଜଳ ଅଗ୍ନି ଅନ୍ତରୀକ୍ଷ ସର୍ପ ବାୟୁକ୍ଷିତି
ନଦୀ ସମୁଦ୍ର ପର୍ବତ ଲତା ବନସ୍ପତି ।
ଲବ କଳାକାଷ୍ଠା ଆଦିମୁହୂର୍ତ୍ତ ନିମିଷ
ଦିନ ରାତି ପକ୍ଷ ମାସ ଅୟନ ବରଷ ।
ଚାରିଯୁଗ ଚରାଚର ପଦାର୍ଥ ଯେତେକ
ମରୀଚି ଭୃଗୁ ଅଙ୍ଗିରା ଆଦି ମୁନି ଲୋକ ।
ପୁଲହ ପୁଲସ୍ତ୍ୟ କ୍ରତୁ ଦକ୍ଷ ଅତ୍ରି ମୁନି
ବଶିଷ୍ଠ ମୁନି ସହିତେ ଏହି ନବ ଜ୍ଞାନୀ ।
ବ୍ରହ୍ମାଙ୍କ ମାନସ ପୁତ୍ର ଏମାନେ ଅଟନ୍ତି
କିଏ ବ୍ରହ୍ମାଙ୍କର କେଉଁ ଅଙ୍ଗୁ ଉତପତ୍ତି ।

କହୁଅଛୁ ମନଦେଇ ଶୁଣ ସାବଧାନେ
ବ୍ରହ୍ମା ସୃଷ୍ଟି କରିବାରୁ ଭାଳୁଛନ୍ତି ମନେ ।
ପ୍ରାଣ ପବନରୁ ଦକ୍ଷ ମୁନି ହେଲେ ଜାତ
ବ୍ରହ୍ମାଙ୍କ ଦୁଇ ନୟନୁ ମରୀଚି ସମ୍ଭୂତ ।
ମସ୍ତକୁଁ ଅଙ୍ଗିରା ହେଲେ ହୃଦୁଁ ଭୃଗୁ ମୁନି
ନେତ୍ରରୁ ଅତ୍ରିଙ୍କି ଜାତକଲେ ପଦ୍ମଯୋନି ।
ବ୍ୟବସାୟରୁ ଯେ ଧର୍ମ ହେଲେ ଉତପନ୍ନ
ଉଦାନପବନୁ ହେଲେ ପୌଲସ୍ତ୍ୟ ଜନମ ।
ବ୍ୟାନପବନୁଁ ପୁଲହ ମୁନି ଉତପତ୍ତି
ଅପାନପବନୁ କ୍ରତୁ ନାମେ ପ୍ରଜାପତି ।
ସମାନ ପବନୁ ହେଲେ ବଶିଷ୍ଠ ଜନମ
ଏମାନେ ଧର୍ମ ପୁରାଣମାନ କଲେ ଜାଣ ।
ବ୍ରହ୍ମାଙ୍କ ଜଙ୍ଘରୁ ଜାତ ହୋଇଲେ ଅସୁରେ
ସେ ତନୁକୁ ତ୍ୟାଗକଲେ ତହୁଁ ବେଦବରେ ।
ଯାହାକୁ ଛାଡ଼ିଲେ ସେହି ତାକୁ ହେଲା ରାତ୍ରି
ତମ ହେତୁରୁ ପ୍ରାଣୀଏ ତହିଁ ନିଦ୍ରା ଯାନ୍ତି ।
ନବୀନ ଶରୀରୁ ଜାତ ହେଲେ ଦେବଗଣ
ସେ ତନୁକୁ ପରିତ୍ୟାଗ କରନ୍ତେ ସେ ପୁଣ ।
ଯାହାକୁ ଛାଡ଼ିଲେ ସେହି ତନୁ ହେଲା ଦିନ
ଧର୍ମ କରନ୍ତି ତହିଁରେ ଧନବନ୍ତ ଜନ ।
ବ୍ରହ୍ମା ଯେଉଁ ନୂଆ ତନୁ ଧଇଲେକ ପୁଣି
ପିତୃଗଣ ତହୁଁ ଜାତ ହେଲେ ସୁରମୁନି ।
ବ୍ରହ୍ମା ଛାଡ଼ିଥିବା ତନୁ ସନ୍ଧ୍ୟା ହେଲା ଜାଣ
ତହିଁରେ ଲୋକ କରନ୍ତି କାମ୍ୟ କର୍ମମାନ ।
ଦେବତାଙ୍କ ଦିନ ସେହି ଅସୁରଙ୍କ ରାତି
ଦିବସ ମଧ୍ୟେ ସେ ପୂଜାବିଧି ଆଚରନ୍ତି ।
ପିତୃ ପୁରୁଷ ମୂରତି ଅଟଇ ସେ ଜାଣ
ଯେଉଁ ନବୀନ ତନୁକୁ ଧଇଲେ ସେ ପୁଣ ।
ତହିଁରୁ ଯେ ଉପୁଜିଲା ତତ୍କ୍ଷଣେ ଜ୍ୟୋଛନା
ଏହିଟିପ୍ରଭାତକାଳ ଜାଣ ମହାମନା ।
ତହୁଁ ପୁଣି ଉପୁଜିଲେ ନିଶାଚରଗଣ
ଭୂତ ପ୍ରେତ ପିଶାଚ ଯେ ଯକ୍ଷ ରକ୍ଷ ପୁଣ ।
ଗନ୍ଧର୍ବ କିନ୍ନରଗଣ ଜନମିଲେ ପୁଣି
ବୟସରୁ ପକ୍ଷୀ ଜାତ କଲେ ପଦ୍ମଯୋନି ।
ବକ୍ଷସ୍ଥଳୁ ଅଜା ମେଣ୍ଢା ଛାଗ ହୋଇ ଜାତ
ଉଦରୁ ଗୋରୁ ଜନମି ହେଲେ [illegible] ।

ପାଦରୁ ଯେ ଘୋଡ଼ାହାତୀ ଗଧ ଓଟ ବାଘ
ଗବୟ ସିଂହ ଆବର ଅଶ୍ୱତର ମୃଗ ।
ରୋମରୁ ହେଲେ ଔଷଧି ଫଳମୂଳ ଯାକ
ଗାୟତ୍ରୀ ଯେ ବେଦମାତା ପୂର୍ବ ମୁଖୁଁ ରକ ।
ସପତଛନ୍ଦ ଆବର ଜପ ଯଜ୍ଞ ହୋମ
ଯଜୁର୍ବେଦ ଯେ ଦକ୍ଷିଣ ମୁଖରୁ ଜନମ ।
ପଶ୍ଚିମ ମୁଖରୁ ହେଲା ସାମବେଦ ଜାତ
ଉତ୍ତର ମୁଖୁଁ ଅଥର୍ବ ହୋଇଲା ସମ୍ଭୂତ ।
ଉଚ୍ଚନୀଚ ଜାତହେଲା ବ୍ରହ୍ମାଙ୍କର ଦେହୁଁ
ହିଂସା ଅହିଂସା ଦୁଇ ଜାତ ହେଲେ ତହୁଁ ।
କ୍ରୂର ସରଳ ଏ ଦୁଇ ଧର୍ମ ଯେ ଅଧର୍ମ
ସତ୍ୟ ଅସତ୍ୟ ହୋଇଲେ ତଦନ୍ତେ ଜନମ ।
ବ୍ରହ୍ମାଙ୍କର ସୃଷ୍ଟି ଜାଣ ହୋଇଲା ଏମନ୍ତେ
ଦାସ ଗୋପୀନାଥ କୂର୍ମ ପାଦପଦ୍ମ ଚିନ୍ତେ ।

## ନାରୀ ସୃଷ୍ଟି

ବୋଇଲେ ସେ କୂର୍ମରୂପୀ ଦେବ ନାରାୟଣ
ନାରୀଙ୍କ ଜନମ କଥା ମନଦେଇ ଶୁଣ ।
ଅନାଦି ପରମବ୍ରହ୍ମ ବିରାଟ ପୁରୁଷ
ଆପଣାର ବେଦଟିକି କରି ଦୁଇଅଂଶ ।
ଅଧେକ ହେଲା ପୁରୁଷ ଅଧେ ହେଲା ନାରୀ
ତାର ନାମ ଶତରୂପା ସେହି ଆଦିନାରୀ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଘୋଟିଲା ସେ କ୍ଷଣେ
ମୂଳ କମଳକୁ ଥାପି ବସିଲେ ଆସନେ ।
ଯେ ଗଲେ ଲୟ ଲଗାନ୍ତେ ବସି ଆଦିମାତା
ଯୋଗିନୀଗଣ ଯୋଗରୁ ହୋଇଲେ ସମ୍ଭୂତ
ପୁରୁଷର ନାମ ହେଲା ସ୍ୱାୟମ୍ଭୁବ ମନୁ
ସେହି ଆଦି ପୁରୁଷରଅଟଇ ଯେ ସୂନୁ ।
ଶତରୂପା ଦେବୀ ଜାଣ ତାହାଙ୍କ ଦୁହିତା
ସ୍ୱାୟମ୍ଭୁବ ମନୁ ହେଲେ ଶତରୂପା ଭର୍ତ୍ତା ।
ସେହି ଶତରୂପା ଗର୍ଭୁଜାତ ବେନିପୁତ୍ର
ଉତ୍ତାନପାଦ ଆବର ଜାଣ ପ୍ରିୟବ୍ରତ ।
ଆବର ଦୁହିତା ଦୁଇଗୋଟି ଉପୁଜିଲେ
ତା ମଧ୍ୟରୁ ପ୍ରସୂତିକି ଦକ୍ଷ ବିଭାହେଲେ ।

ଆକୂତି କନ୍ୟାକୁ ବିଭା ହେଲେ ରୁଚ୍ଛି ମୁନି
ସେ ଆକୁତି ଜାତକଲେ କନ୍ୟା ପୁତ୍ର ବେନି ।
ଦୁହିତା ନାମ ଦକ୍ଷିଣା ପୁତ୍ର ନାମ ଯଜ୍ଞ
ଦୁହେଁ ବାରପୁତ୍ର ଜାତକଲେ ମୁନି ବର୍ଗ ।
ପ୍ରସୂତି ପ୍ରସବ କଲେ ଚଉବିଂଶ କନ୍ୟା
ତାହାଙ୍କର ନାମ ଶୁଣ ଆହେ ମହାମନା ।
ତହିଁରୁ ଯେ ତେରଗୋଟି କନ୍ୟା ପ୍ରଜାପତି
ଧର୍ମକୁ ପ୍ରଦାନ କଲେ ହୋଇ ତୋଷମତି ।
ଶ୍ରଧା ଲକ୍ଷ୍ମୀ ତୁଷ୍ଟି ପୁଷ୍ଟି ମେଧାକ୍ରିୟା ଧୃତି
ବୁଦ୍ଧି ଲଜ୍ଜା ବପୁ ଶକ୍ତି ସିଦ୍ଧି ଆଉ ଶାନ୍ତି ।
ଏମନ୍ତେ ଏ ତେରକନ୍ୟା ଧର୍ମଙ୍କ ଭାରିଯା
ଏହାଙ୍କର ପୁତ୍ରମାନେ ହେଲେ ମହାତେଜା ।
ନିୟମ ନାମେ ଧୃତିର ହୋଇଲା କୁମର
ସନ୍ତୋଷନାମେ ତୁଷ୍ଟିର ପୁତ୍ର ଯେ ସୁନ୍ଦର ।
ପୁଷ୍ଟି ଗର୍ଭୁ ଉପୁଜିଲା ଲାଭନାମେ ସୁତ
ମେଧା ଗର୍ଭୁ ସମନାମେ ପୁତ୍ର ହେଲା ଜାତ ।
କ୍ରିୟାଗର୍ଭୁ ଜାତଦଣ୍ଡ ନୀତି ପୁତ୍ର ଦୁଇ
ବୁଦ୍ଧି ଦେବୀ ବୋଧନାମେ ପୁତ୍ର ପ୍ରସବଇ ।
ଅପ୍ରବୋଧ ନାମ ପୁତ୍ର ହୋଇଲା ଆବର
ବିନୟ ନାମ ବହିଲା ଲଜ୍ଜାର କୁମର ।
ବପୁଦେବୀ ପୁତ୍ର ନାମ ହେଲା ବ୍ୟବସାୟ
କ୍ଷେତ୍ର ନାମକୁ ବହିଲା ଶାନ୍ତିର ତନୟ ।
ସିଦ୍ଧିର ଉଦରୁ ସୁଖନାମେ ପୁତ୍ର ଜାତ
ଯଶ ନାମକୁ ବହିଲା କୀର୍ତ୍ତିଦେବୀ ସୁତ ।
ଏମାନେ ଧର୍ମଙ୍କ ପୁତ୍ର ଜାଣ ସୁରମୁନି
ଆଉ ଯେ ଏଗାରକନ୍ୟା ତାଙ୍କ ଦକ୍ଷଘେନି ।
ଏଗାର ଋଷିଙ୍କି ବିଭା ଦେଲେ ସେ ଯେମନ୍ତେ
ତାହା କହୁଅଛୁଁ ଶୁଣ କରି ଆଦ୍ୟପ୍ରାନ୍ତେ ।
ଖ୍ୟାତିକନ୍ୟା ବିଭା ହେଲେ ଭୃଗୁମୁନିବର
ଭବଦେବ ହେଲେ ସତୀକନ୍ୟାଙ୍କର ବର ।
ମରୀଚି ଋଷି ଭାରିଜା ହୋଇଲେ ସମ୍ଭୂତି
ଅଙ୍ଗିରା ମୁନି ଭାରିଯା ଅଟଇ ଯେ ସ୍ମୃତି ।
ପୁଲସ୍ତ୍ୟଋଷି ଭାରିଯା ପ୍ରୀତି ଯେ ହୋଇଲା
ପୁଲହ ମୁନି ଭାରିଯା କ୍ଷମା ବୋଲାଇଲା ।
କ୍ରତୁମୁନିର ଭାରିଯା ନାମ ଯେ ସନ୍ନତି
ଅତ୍ରି ନାମେ ମୁନିହେଲେ ଅନସୂୟା ପତି ।

ବଶିଷ୍ଠମୁନି ହୋଇଲେ ଊର୍ଜା କନ୍ୟା ବର
ଅଗ୍ନି ଦେବତା ଧଇଲେ ସ୍ୱାହାଦେବୀ କର ।
ପିତୃ ପୁରୁଷେ ହୋଇଲେ ସ୍ୱାହା ଦେବୀ ପତି
ଅଧର୍ମର ବଂଶ ଏବେ ଶୁଣ ଦେଇ ମତି ।
ହର୍ଷ ଆନନ୍ଦ ଏ ଦୁଇ କାମର ତନୟ
ହିଂସା ଆଉ ଅଧର୍ମର ଦୁଇ ପୁଅ ଝିଅ ।
ତାହାଙ୍କର ନାମ ଦେଲେ ଅନୃତ ବିକୃତି
ଦୁହେଁ ବିଭାହୋଇ ଜାତ କଲେକ ସନ୍ତତି ।
ଭୟ ନରକ ଏ ଦୁଇ ପୁତ୍ର ତାହାଙ୍କର
ମାୟା ବେଦନା ନାମରେ ଦୁହିତା ଆବର ।
ପୁତ୍ର ଝିଅଙ୍କର ସେହି କଲେ ବିଭାଘର
ଭୟ ଯେ ହୋଇଲା ଜାଣ ମାୟାକନ୍ୟାବର ।
ନରକ ହୋଇଲା ପୁଣି ବେଦନାର ପତି
ମାୟା ଗରଭରୁ ମୃତ୍ୟୁ ହେଲା ଉତପତ୍ତି ।
ବେଦନା ଗର୍ଭରୁ ଜାତ ଦୁଃଖନାମେ ପୁଅ
ମୃତ୍ୟୁ ବ୍ୟାଧି ଜରା ଶୋକ ତୃଷ୍ଣା କ୍ରୋଧଛଅ ।
ଏ କେହି ବିପ୍ର ନୋହିଲେ ଅଧର୍ମରେ ଗଲେ
ହରି ହରି ବୋଲ ଦୀନ ଗୋପୀନାଥ ବୋଲେ ।

.....❋.....

## ବ୍ରହ୍ମାଙ୍କ ପୁତ୍ର ଶିବ ହେବା କଥା

ବୋଇଲେକ ସୁତ ମୁନି ଶୁଣ ମୁନିବରେ
ସୁର ମୁନିଗଣ ପଡ଼ି ଶ୍ରୀବିଷ୍ଣୁ ପୟରେ ।
ବୋଇଲେ ଭୋ କୂର୍ମରୂପୀ ପ୍ରଭୁ ଜନାର୍ଦ୍ଦନ
ପଚାରିବୁଁ କଥା ଏକ ଶୁଣ ଦେଇ ମନ ।
ବ୍ରହ୍ମାଙ୍କର ବଡ଼ଭାଇ ଅଟନ୍ତି ତ ଶିବ
କେମନ୍ତେ ବ୍ରହ୍ମାର ପୁତ୍ର ହେଲେ କହିଦେବ ।
ପଦ୍ମରୁ କେମନ୍ତେ ବ୍ରହ୍ମା ହେଲେ ଉତପତ୍ତି
ଏ ସଂଶୟମାନ ଫେଡ଼ ଜଗତର ପତି ।
ଏହାଶୁଣି ବୋଇଲେ ସେ କୂର୍ମରୂପୀ ହରି
ମହାପ୍ରଳୟର କଥା ଶୁଣ କର୍ଣ୍ଣ ଡେରି ।
ଯେତେବେଳେ ସମୁଦ୍ରର ଜଳ ଗଲା ମାଡ଼ି
ଚରାଚର ପ୍ରାଣୀମାନେ ଜଳେ ମଲେ ବୁଡ଼ି ।
ନ ଦିଶିଲା ତରୁ ଗିରି ନ ଦିଶିଲା ମହୀ
ସକଳ ବିନାଶି ଜଳ ଉପରକୁ ବହି ।
ଚନ୍ଦ୍ରଲୋକ ସୂର୍ଯ୍ୟଲୋକ ଗ୍ରାସିଲା ଯେ ଜଳ
ଚଉଦ ଭୁବନଯାକ କରିଣ କବଳ ।
ବ୍ରହ୍ମାବିଷ୍ଣୁ ରୁଦ୍ର କେହି ନ ରହିଲେ ଜଣେ
ଘୋର ଅନ୍ଧକାର ମାଡ଼ି ବସିଲା ତକ୍ଷଣେ ।
ପବନ ନିରୋଧ ହେଲା ନ ଦିଶିଲା କିଛି
ଅଗାଧ ସମୁଦ୍ର ଜଳ ସ୍ଥିର ହୋଇଅଛି ।
ନିଶ୍ଚିନ୍ତହୋଇଲେ ଦେବ ଅନାଦି ନିଧନ
ନିଦ ଆସି ଘାରିବାରୁ ତାହାଙ୍କ ନୟନ ।
ଅନନ୍ତଦେବ ତକ୍ଷଣେ ଦେଖାଇଲେ ପିଠି
ସହସ୍ର ନୟନ ସେହି ମହା ଅହିଗୋଟି ।
ତା ଉପରେ ନିଦ୍ରାଗଲେ ଯେତେବେଳେ ହରି
ସହସ୍ର ଫଣାକୁ ଦେଲା ସେ ଅହି ବିସ୍ତାରି ।
ତା ଉପରେ ଶିର ରଖି ନିଶ୍ଚିନ୍ତେ ଶୋଇଲେ
ସହସ୍ର ବରଷ ଅନ୍ତେ ପୁଣି ସେ ଚେଇଁଲେ ।
ତାଙ୍କ ନାଭି କମଳରୁ କମଳ ଫୁଟିଲା
ଖରାବେଳେ ସୂର୍ଯ୍ୟ ପ୍ରାୟ ତେଜ ବିକଶିଲା ।
ଶତେକ ଯୋଜନ ପୁଣି ବିସ୍ତାର ତାହାର
ତହିଁରୁ ହିରଣ୍ୟଗର୍ଭ ହୋଇଲେ ବାହାର ।
ଦେଖିଲେ ପୁରୁଷ ଏକ ଶୋଇଅଛି ତହିଁ
ଫଣା ବିସ୍ତାରି ରହିଛି ଏକ ମହା ଅହି ।
ହାତରେ ଉଣ୍ଡାଳି ତାଙ୍କୁ ବୋଇଲେ ସେ ବ୍ରହ୍ମା
ଅନ୍ଧାରେ ଶୋଇଛୁ କିଏ ତୁହୋ ମହାତମା ।
କେହି ତ ନାହାନ୍ତି ତୁହି ଶୋଇଛୁ ଏକାକେ
ଡର ନ ମାଡ଼ଇ ମହା ଅହି ଫଣା ଟେକେ ।
ଶୁଣି ସେ ପୁରୁଷ ଗୋଟି ବୋଇଲାକ ହସି
ଆମ୍ଭେ ଯେ ଅନାଦି ଆଦିଦେବ ବ୍ରହ୍ମରାଶି ।
ଆମ୍ଭର ମହିମା ପୁଣି ନ ଜାଣନ୍ତି କେହି
ଆମ୍ଭର ଶେଯ ଅଟଇ ଏହି ମହା ଅହି ।
କୋଟି କୋଟି ବ୍ରହ୍ମାଣ୍ଡ ଯେ ଅଛି ମୋର ଦେହେ
କାହୁଁ ତୁମ୍ଭେ ଅଇଲ ହୋ କହ ତୁମ୍ଭେ କିଏ ।
ବ୍ରହ୍ମା ବୋଇଲେ ମୋ ନାମ ଅଟେ ବେଦବର
ମୁହିଁ ଧାତା ମୁଁ ବିଧାତା ଚତୁର୍ମୁଖ ମୋର ।
ମୁହିଁଟି ସ୍ୱୟଂବ୍ରହ୍ମା ବ୍ରହ୍ମାଣ୍ଡ ସୃଜଇ
ତାହା ଶୁଣି ସେ ଅନାଦି ଦେବ ତହୁଁ ଯାଇଁ ।
ବ୍ରହ୍ମା ଉଦରେ ପଶିଣ ଦେଖିଲେ ସକଳ
ରହିଅଛି ବ୍ରହ୍ମାଣ୍ଡ ଯେ ହୋଇ ମାଳ ମାଳ ।

ବ୍ରହ୍ମା ମୁଖବାଟେ ପୁଣି ଅଇଲେ ବାହାରି
ବୋଇଲେ ମୋ ବୋଲକର ଆହେ ମୁଖଚାରି ।
ମୋହର ଉଦରେ ପଶି ଦେଖ ତୁ ବିଚିତ୍ର
ଅନାଦିର କଥା ଶୁଣି ସେହି ଅଷ୍ଟନେତ୍ର ।
ଗର୍ଭର ଭିତରେ ପଶି ନ ପାଇଲେ ଠାବ
କୋଟି କୋଟି ବ୍ରହ୍ମା ତହିଁ କୋଟି କୋଟି ଶିବ ।
ଅନନ୍ତ ବ୍ରହ୍ମାଣ୍ଡ ଅନ୍ତ କେ ପାରିବ କରି
ଦ୍ୱାରମାନ ନିରୋଧିଲେ ସେ ଅନାଦି ହରି ।
ନାଭି କମଳରେ ରହି ସେହି ବେଦବର
ଯୋଗାସନେ ବସି ଲୟ ଲଗାଇ ସତ୍ୱର ।
ଜ୍ଞାନମାର୍ଗ ପାଇବାରୁ ଫିଟିଗଲା ଦ୍ୱାର
ନାଭି କମଳରୁ ବ୍ରହ୍ମା ହୋଇଲେ ବାହାର ।
ପଦ୍ମଫୁଲେ ବିରାଜିଲେ ସେ କମଳଯୋନି
ବୋଇଲେ ବିଷ୍ଣୁଙ୍କୁ ଚାହିଁ ହୋଇ ବ୍ରହ୍ମଜ୍ଞାନୀ ।
ମୋତେ ଜାତ କରିବାକୁ ନାହିଁ କେହି ପୁଅ
ଦେଖ ଆପେ ଆପେ ହେଲି ପଦ୍ମରେ ଉଦୟ ।
ମୁହିଁ ବଳବନ୍ତ ମୋତେ କେ ପାରିବ ଜିଣି
ନାରାୟଣ ଏ ବଚନ ବ୍ରହ୍ମା ମୁଖୁ ଶୁଣି ।
ବୋଇଲେ କି ଦେଖିଲୁ ତୁ କହ ମୋ ଉଦରେ
କହିଲେ କମଳଯୋନି ଏଥୁ ଅନନ୍ତରେ ।
ଅନନ୍ତ ବ୍ରହ୍ମାଣ୍ଡ ସୃଷ୍ଟି କରିପାରେ ମୁହିଁ
ଜାଣ ଦ୍ୱାର ନିରୋଧିଲ ତୁମ୍ଭେ କାହିଁପାଇଁ ।
କମଳ ଫୁଟାଇ ଗର୍ଭୁ ହୋଇଲି ବାହାର
ଅନାଦିବୋଇଲେ ତୁହୋ ଶୁଣ ବେଦବର ।
ଆଜିଠାରୁ ତୋର ନାମ ହେବ ପଦ୍ମଯୋନି
ମୋରପୁତ୍ର ବୋଲାଇବୁ ହୋଇ ମହାଜ୍ଞାନୀ ।
ଆନନ୍ଦ ହୋଇ ସେ ବ୍ରହ୍ମା ବୋଇଲେ ହେ ହରି
ତୁମ୍ଭେ ତ ଅନାଦି ସୃଷ୍ଟି ସ୍ଥିତି ଲୟକାରୀ ।
ଅନ୍ତର୍ଯ୍ୟାମୀ ନାଥ ତୋର ଆଦିଅନ୍ତ ନାହିଁ
ତୁହି ଠୂଳ ବ୍ରହ୍ମରାଶି ଅଟୁ ଭାବଗ୍ରାହୀ ।
ବ୍ରହ୍ମା ବିଷ୍ଣୁ ଏକ ଆତ୍ମା ନାହିଁ କିଛି ଭିନ୍ନ
ଏକର ମୂରତି ନାମ ମାତ୍ର ହିଁ ବିଭିନ୍ନ ।
ଏହା ଶୁଣି ବାସୁଦେବ୍ ବୋଇଲେକ ହସି
ଯୋଗ ମାର୍ଗେ ନ ଚିହ୍ନିଲୁ ତୁହି ବ୍ରହ୍ମରାଶି ।
ଏ ପ୍ରତିଜ୍ଞା ଗୋଟି ତୋର ମୃତ୍ୟୁର କାରଣ
ମହାଦେବ ଚରଣେ ତୁ ପଶ ଯା ଶରଣ ।

ବ୍ରହ୍ମାକୁ ସେ ଚିହ୍ନିଅଛି ଯୋଗୀଶ୍ରେଷ୍ଠ ସେହି
ବୋଇଲେ ସେ ବ୍ରହ୍ମା ପୁଣି କ୍ରୋଧଭରେ ତହିଁ ।
ପଦ୍ମଦଳ ଲୋଚନ ହେ ଜାଣଇ ମୁଁ ଭଲେ
ଆତ୍ମାହିଁ ପରମବ୍ରହ୍ମ ସେ ପୃଥକ ହେଲେ ।
ଅନେକ ସୃଷ୍ଟି ହୁଅଇ ଅନେକ ଜଗତେ
ଆତ୍ମା ଏକ ହେଲେ ଲୟ ପାଆନ୍ତି ସମସ୍ତେ ।
ତୁମ୍ଭ ଆମ୍ଭ ଛଡ଼ା ଆଉ କେହି ନାହିଁ ଜଣେ
ନିଦ୍ରା ତ୍ୟାଗକରି ଚାହୁଁ କିନା ତୁହି କ୍ଷଣେ ।
ଶ୍ରୀବିଷ୍ଣୁ ବୋଇଲେ ତୁହି ନ କର କୋହଳି
ମାୟାରେ ମୋହିତ ହୋଇ କହୁ ଭଳି ଭଳି ।
ଏମନ୍ତ କହି ସେ ବିଷ୍ଣୁ ହୋଇଲେ ସ୍ତବଧ
ପୁରୁଷେକ ତହୁଁ ଜାତ ହେଲା ମହାନନ୍ଦ ।
ଲଲାଟେ ନୟନ ଗୋଟି ଦିଶେ ଜକ ଜକ
ଚନ୍ଦ୍ର ସୂର୍ଯ୍ୟଠାରୁ ଦୁଇ ନୟନ ଅଧିକ ।
ଶିରେ ଶୋହେ ଜଟାଜୁଟ କରେ ଶୋହେଶୂଳ
ଖଟ୍ୱାଙ୍ଗ ପରଶୁ ଆଦି ଡମ୍ବରୁ ତ୍ରିଶୂଳ ।
ନକ୍ଷତ୍ରମାଳା ଲମ୍ବଇ ପାଦଯାଏ ତାର
ବିଷ୍ଣୁ ମାୟାରେ ମୋହିତ ହୋଇ ବେଦବର ।
ପୁରୁଷ ଗୋଟିକି ଦେଖି ବୋଇଲେ ହେ ହରି
ଏ ପୁରୁଷ ଗୋଟି କିଏ ଆସେ ଶୂଳ ଧରି ।
ତ୍ରିନୟନ ନୀଳବର୍ଣ୍ଣ ତେଜୋବନ୍ତ ଅତି
ଦାନବାରି ହରି ଦେଖି ଅପୂର୍ବ ମୂରତି ।
ବୋଇଲେ ଦେବାଧି ଦେବରାୟ ମହାଦେବ
ଏହିଟି ପରମ ଯୋଗୀ ମହେଶ୍ୱର ଶିବ ।
ଏ ପୁରୁଷ ଗୋଟିକି ତୁ ନ ପାରୁଛୁ ଚିହ୍ନି
ସାକ୍ଷାତରେ ଅଟଇ ଏ ତେଜୋମୟ ବହ୍ନି ।
ଏହାକହି ସେ ଅନାଦି ଦେଲେ ବ୍ରହ୍ମଜ୍ଞାନ
ବିଷ୍ଣୁଠାରୁ ଦିବ୍ୟଚକ୍ଷୁ ପାଇ ପଦ୍ମାସନ ।
ମହାଦେବ ଚରଣରେ ପଶିଲେ ଶରଣ
ବୋଇଲେ ତୁ ନାଥ ଅଟୁ ଅନାଦି କାରଣ ।
ଏମନ୍ତେ ଅନେକ ସ୍ତୁତି କଲେ ଯହୁଁ ବ୍ରହ୍ମା
ପ୍ରସନ୍ନ ହୋଇ ବୋଇଲେ ସେହି ମହାତମା ।
ଆରେବାବୁ ତୁହି ଅଟୁ ମୋହର ସମାନ
ତୁହି ମୋହର ପରମ ଭକତ ହିଁ ଜାଣ ।
ଆଦି ପୁରୁଷ ତୁ ମୋର ଦେହରୁ ସଂଭୂତ
ବରମାଗ ତୋତେ ମୁହିଁ ଦେବଇଁ ତୁରିତ ।

ଶୁଣି ପଦ୍ମଯୋନି ବ୍ରହ୍ମା ହେ ହର
ପ୍ରସନ୍ନ ହୋଇ ତୁ ମୋତେ ଦେବୁ ଯେବେ ବର
ତୁ ମୋହର ପୁତ୍ର ହୁଅ ମାଗୁଛି ଏତିକି
ଅସ୍ତୁ ହେଉ କହିଗଲେ ତହୁଁ ସେ ପିନାକୀ ।
ବ୍ରହ୍ମା ରହିଲେକ ଯାଇଁ ସେ ନାଭିକମଳେ
ବେନି ଦୈତ୍ୟ ଦେଖାଇଲେ ବିଷ୍ଣୁ କର୍ଣ୍ଣମୂଳେ
ବୃହତ୍ତ ପର୍ବତ ପ୍ରାୟ ଦିଶେ ତାଙ୍କ ଦେହ
ମହା ବଳବନ୍ତ ଗିରି ଗୁହା ପ୍ରାୟ ମୁହଁ ।
କୋପମୟ ପୁରୁଷ ସେ ଜାତିରେ ଅସୁର
ମହା ଭୟଙ୍କର କେଶ ଉଡ଼େ ଫର ଫର ।
ସେ ଦୁଇଭାଇଙ୍କି ଦେଖି ଚତୁର୍ମୁଖ ବ୍ରହ୍ମା
ଭୟରେ ବୋଇଲେ ରଖ ରଖ ମହାତମା ।
ଅନାଦିନିଧନ ତୁମ୍ଭେ ପୁରାଣ ପୁରୁଷ
କର ବେଗେ ଏ ଅସୁର ଦୁହିଁଙ୍କି ବିନାଶ ।
ଜଳ ଦୁଇଭାଗ କରି ଆସୁଛନ୍ତି ଧାଇଁ
କୁରାଳର ଚକ ପ୍ରାୟେ ନୟନ ବୁଲାଇ ।
ଦନ୍ତ କଟମଟ କରି ବିକଟ ବଦନେ
ଦେଖିଲା ମାତ୍ରକେ ଭୟ ଜାତ ହୁଏ ମନେ ।
ଏମନ୍ତେ ବ୍ରହ୍ମାର ବାଣୀ ଶୁଣି ସେ ଅନାଦି
ବୋଇଲେ କିଛି ତୁ ଭୟ ନ କରହୋ ବିଧି ।
ଏମନ୍ତ କହି ପୁରୁଷ ଦୁଇ କଲେ ଜାତ
ବିଷ୍ଣୁ ବିଷ୍ଣୁ ତାଙ୍କ ନାମ ଦୀର୍ଘ ତାଙ୍କ ହାତ ।
ମହାବଳବନ୍ତ ସେହି ଆସୁଛନ୍ତି ଧାଇଁ
ଅସୁର ଦୁହିଁଙ୍କି ବାଟେ ଓଗାଳିଲେ ଯାଇ ।
ତାହାଙ୍କର ଘୋର ଯୁଦ୍ଧ ହେଲା ମହାଜଳେ
କଇଟଭଙ୍କୁ ଯେ ବିଷ୍ଣୁ ଧରି ବାହୁବଳେ ।
ମାରି ପକାଇବା ଦେଖି ବିଷ୍ଣୁ କଲେ କ୍ରୋଧ
ମଧୁ ଦଇତକୁ ବଳେ ଧରି କଲେ ବଧ ।
ଅନାଦି ବୋଇଲେ ବ୍ରହ୍ମା ଶୁଣ ମୋ ବଚନ
ଧରି ନ ପାରିବି ତୋତେ କର ତୁ ଗମନ ।
ବେଳୁବେଳ ତୋର ଉଭା ନ ପାରିବ ସହି
ପଦ୍ମ ମଧ୍ୟରୁ ବାହାରି ଯାଅ ବେଗେ ତୁହି ।
ଏମନ୍ତ ଶୁଣି ସେ ବ୍ରହ୍ମା ହୋଇଲେ ବାହାର
ସୃଷ୍ଟି କରିବାକୁ ଇଚ୍ଛା କଲେ ବେଦବର ।
ଅନାଦି ବୋଇଲେ ତୁହି ଶୁଣ ଚଉମଥା
ପାସୋରି କି ପକାଇଲୁ ତୁ ପୂର୍ବର କଥା ।

ଯେଉଁ ବର ମାଗିଥିଲୁ ଶିବଙ୍କୁ ତୁ ପୂର୍ବେ
କହ ସେ ତୋହର ପୁତ୍ର ହେଉ ଆସି ଏବେ ।
ଅନାଦି ବଚନେ ବ୍ରହ୍ମା ପାଇ ଦିବ୍ୟଜ୍ଞାନ
ଶିବଙ୍କୁ ବୋଇଲେ ହୁଅ ମୋହର ନନ୍ଦନ ।
ଏମନ୍ତ ସମୟେ ଜାତ ସନକ କୁମାର
ଉପୁଜିଲେ ସନକାଦି ସପତ କୁମର ।
ଦେଖିଲେ ସେ ଲୋକ ସୃଷ୍ଟି ନ ପାରିବେ କରି
ଯୋଗ ସାଧିଲେ ସେ ବସି ହୋଇ ବ୍ରହ୍ମଚାରୀ ।
ପିତାର କଥା ନ ମାନି ହେଲେ ଯହୁଁ ଯୋଗୀ
ଦେଖି ପଦ୍ମଯୋନି ବ୍ରହ୍ମା ହେଲେ ବଇରାଗୀ ।
ନୟନରୁ ଅଶ୍ରୁବିନ୍ଦୁ ପଡ଼ିଲାକ ଖସି
କହୁଁ ଉପୁଜିଲେ ଭୂତ ପ୍ରେତ ଶୂନ୍ୟବାସୀ ।
ଶିବଙ୍କୁ ଯେ ସୁମରନ୍ତେ କ୍ରୋଧହେଲା ଉଦେ
ସେ କ୍ରୋଧରୁ ଉପୁଜିଲେ ମହାରୁଦ୍ର ବୃନ୍ଦେ ।
ବ୍ରହ୍ମା ମୁଖବାଟେ ହେଲେ ସେ ସବୁ ବାହାର
କୋଟି କୋଟି ସୂର୍ଯ୍ୟସମ ତେଜ ତାହାଙ୍କର ।
ପ୍ରଜ୍ୱଳିତ ଅଗ୍ନି ତୁଲ୍ୟ ତାହାଙ୍କ ନୟନ
ସ୍ୱୟଂ ମହାଦେବ କଲେ ଉଚ୍ଚରେ ରୋଦନ ।
ବ୍ରହ୍ମା ବୋଇଲେ ରୋଦନ ନ କରରେ ବାବୁ
ଆଜିଠାରୁ ରୁଦ୍ରନାମ ତୁହି ବୋଲାଇବୁ ।
ଭବ ସର୍ବ ଈଶାନ ଯେ ପଶୁପତି ଭୀମ
ଉଗ୍ର ମହାଦେବ ଏହି ସାତଗୋଟି ନାମ ।
ତୁମ୍ଭର ହୋଇବ ତୁମ୍ଭେ ରହିବଟି ଯହିଁ
ତାହା ମୁଁ ତୁମ୍ଭଙ୍କୁ ଏବେ ଦେଉଅଛି କହି ।
ସୂର୍ଯ୍ୟ ଜଳ ମହୀ ଅଗ୍ନି ପବନ ଆକାଶ
ଦୀକ୍ଷିତ ବିପ୍ର ଚନ୍ଦ୍ରମା ଏହି ତୁମ୍ଭ ବାସ ।
ସୁବର୍ଚ୍ଚଳା ଉମାଦେବୀ ବିକେଶୀ ଆବର
ଶିବ ସ୍ୱାହା ଦିଗ ଦୀକ୍ଷା ରୋହିଣୀ ତୁମ୍ଭର ।
ଭାରିଯା ହେବେ କରିବ ଘର ଏହା ଘେନି
ମଙ୍ଗଳ ସନ୍ତାନ ଶୁକ୍ର ଛନ୍ଦ ସ୍ୱର୍ଗ ଶନି ।
ବୁଧ ଆଉ ମନୋଜବ ଏ ହେବେ କୁମର
ଏହା କହି ପ୍ରଜା ସୃଷ୍ଟି କଲେ ବେଦବର ।
ଦେବ ଦେବ ମହାଦେବ ପୁତ୍ରଗଣ ଦେଇ
ଯୋଗମାର୍ଗରେ ରହିଲେ ମହାଯୋଗୀହୋଇ ।
ଏମନ୍ତେ କୂର୍ମ କହିଲେ ମୁନିଙ୍କି ବୁଝାଇ
ଦ୍ୱିଜ ଗୋପୀନାଥ ଭଜେ ଅଚ୍ୟୁତ ଗୋସାଇଁ ।

ଅଚ୍ୟୁତ ନାମ ଗୋଟିକୁ ଭଜ ସର୍ବପ୍ରାଣୀ
ଅକ୍ଳେଶରେ ତରିଯିବ ଭବତରଙ୍ଗିଣୀ ।

.....✲.....

## କଳ୍ପ ପରିମାଣ

ପୁନରପି ପଚାରିଲେ ସୁରମୁନିଗଣ
ଅନେକ ପ୍ରକାର ସୃଷ୍ଟି କହିଲ ଆପଣ ।
ଏଥିରୁ ସଂଶୟ ଜାତ ହୋଇଲା ଆହୁରି
ବ୍ରହ୍ମା ସୃଷ୍ଟି ରୁଦ୍ର ସୃଷ୍ଟି ସୃଷ୍ଟି ଆଦିକରି ।
ଏସବୁ ସୃଷ୍ଟିକି ଏକକାଳେ ହେଲାସ୍ୱାମୀ
ଏମନ୍ତ କହି ଶ୍ରୀବିଷ୍ଣୁ ପୟରେ ପ୍ରଣମି ।
ବୋଇଲେ ସନ୍ଦେହ ଦୂର କର ଆମ୍ଭ ମନୁ
ଶ୍ରୀବିଷ୍ଣୁ ବୋଇଲେ ଆଦ୍ୟେ ସ୍ୱାୟମ୍ଭୁବ ମନୁ ।
ଶତବରଷ ଆୟୁଷ ଜାଣ ତାହାଙ୍କର
ପରାର୍ଦ୍ଧ ହୁଅଇ ତାର ଅର୍ଦ୍ଧ ମୁନିବର ।
ପନ୍ଦର ନିମିଷେ ଏକ କାଷ୍ଠ ଯେ ହୁଅଇ
ତିରିଶ କାଷ୍ଠକୁ ଏକ କଳା ଜାଣ କହି ।
ତିରିଶ କଳାରେ ଜାଣ ହୁଅଇ ମୁହୂର୍ତ୍ତେ
ତିରିଶ ମୁହୂର୍ତ୍ତେ ପୁଣି ହୁଏ ଅହୋରାତ୍ରେ ।
ପନ୍ଦର ଦିନରେ ଏକ ପକ୍ଷ ହୁଏ ଜାଣ
ତିରିଶ ଅହୋରାତ୍ରକୁ ମାସ ବୋଲି ଗଣ ।
ଷଡ଼ମାସରେ ଯେ ଏକ ନୟନ ହୁଅଇ
ଉତ୍ତରାୟଣ ଦକ୍ଷିଣାୟନ ଏହି ଦୁଇ ।
ଦକ୍ଷିଣାୟନ ଅଟଇ ଦେବତାଙ୍କ ରାତ୍ରି
ଉତ୍ତରାୟଣକୁ ଦେବ ଦିବସ ବୋଲନ୍ତି ।
ବାର ସହସ୍ର ବରଷେ ହୁଏ ଚାରିଯୁଗ
ସତ୍ୟ ତ୍ରେତା ଦ୍ୱାପର ଯେ କଳି କରେ ଭୋଗ ।
ଏକସ୍ତରି ଯୁଗେ ହୁଏ ଏକ ମନ୍ୱନ୍ତର
ଚଉଦ ମନୁରେ ଏକ ଦିବସ ବ୍ରହ୍ମାର ।
ବ୍ରହ୍ମାଙ୍କୁ ଦିନେ ହୋଇଲେ କଳପ ବୋଲାଇ
ବ୍ରହ୍ମାର ରାତ୍ରିରେ ମହା କଳପ ହୁଅଇ ।
ସହସ୍ର ଯୁଗରେ ହୁଏ ରୁଦ୍ରକଳ୍ପ ପୁଣି
ଚାରି ସହସ୍ର ଯୁଗକୁ ବିଷ୍ଣୁ କଳ୍ପ ଭଣି ।
ତିରିଶ ଷାଠିଏ କଳ୍ପେ ବ୍ରହ୍ମାକୁ ବରଷେ
ଏହା ଶତଗୁଣ କଲେ ଅନାଦିକି ମାସେ ।
ଶ୍ରୀ ବିଷ୍ଣୁକୁ ମାସେ ହେଲେ ହୁଏ ପରା ଜାଣ
ଏହାର ଅର୍ଦ୍ଧ ପରାର୍ଦ୍ଧ କାଳ ପରିମାଣ ।
ଏହାକୁ ମହା ପ୍ରଳୟ ବୋଲନ୍ତି ସକଳେ
ଏଥିରେ ଖଣ୍ଡ ପ୍ରଳୟ ହୁଏ କାଳେ କାଳେ ।
ଦିନେ ଦିନେ ପ୍ରଳୟ ଯେ ହୁଅଇ ଆବର
ପ୍ରଳୟ ହେଲେ ସଂସାର ହୁଏ ପୁନର୍ବାର ।
କଳପେ କଳପେ ହୁଏ ଲୟ ଉତପତି....
କଳପ ସଂଖ୍ୟା ଅନେକ ରୂପେ ବଖାଣନ୍ତି ।
ରୁଦ୍ରକଳ୍ପ ବିଷ୍ଣୁ କଳ୍ପ ଆଦିକଳ୍ପ ପୁଣ
ବରାହ କଳ୍ପ ଆବର ପଦ୍ମକଳ୍ପ ଜାଣ ।
ମାର୍କଣ୍ଡେୟ କଳ୍ପ ଆଦି ଏମନ୍ତେ ବହୁତ
ଭିନ୍ନ କଳ୍ପେ ଭିନ୍ନରୂପେ ଜୀବ ଆତଯାତ ।
ଏମନ୍ତେ ସୃଷ୍ଟି ଭିଆଣ ହୁଅଇଟି ଜାଣ
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ଚରଣ ।
ସେ ଅଚ୍ୟୁତ ନାମଗୋଟି ସଂସାରରେ ସାର
ସେହି ନାମ ଧରି ନରେ ଭବୁଁ ହୁଅ ପାର ।

.....✲.....

## ଋଷିମାନଙ୍କର ବଂଶାନୁଚରିତ

ସୁରମୁନି ପଚାରନ୍ତି ଶ୍ରୀବିଷ୍ଣୁ କହନ୍ତି
କଶ୍ୟପ ଋଷିଙ୍କି ଜାତକଲେ ପ୍ରଜାପତି ।
ତାହାଙ୍କର ଦୁଇପୁତ୍ର ବତ୍ସ ହେ ଅସିତ
ରୈଭ୍ୟ ନଇଧ୍ରୁବ ଦୁଇ ବତ୍ସ ଋଷିସୁତ ।
ଅସିତ ଋଷି ଭାରିଯା ନାମ ଏକପର୍ଣ୍ଣା
ସେହି ମହାସତୀ ତପେ ତୋଷିଲା ଅପର୍ଣ୍ଣା ।
ତାର ଗର୍ଭୁ ଉପୁଜିଲେ ଶାଣ୍ଡିଲ୍ୟ ଦେବଳ
ଏ ଋଷିମାନେ ସମସ୍ତେ କଶ୍ୟପର କୁଳ ।
ପୁଲସ୍ତ୍ୟ ବଂଶ କହିବା ମନଦେଇ ଶୁଣ
ବ୍ରହ୍ମା ମନରୁ ସମ୍ଭୂତ ପୁଲସ୍ତ୍ୟ ବ୍ରାହ୍ମଣ ।
ତୃଣବିନ୍ଦୁ ରାଜକନ୍ୟା ନାମ ଇଳବିଳା
ପୁଲସ୍ତ୍ୟ ମୁନିର ହେଲା ସେ କନ୍ୟା ମହିଳା ।
ବିଶ୍ରବା ଋଷି ଯାହାର ଗର୍ଭୁ ଉପୁଜିଲେ
ସେହି ଋଷି ପୁଣି ମହାଋଷି ବୋଲାଇଲେ ।

ଚାରୋଟି ଭାରିଯା ସେହି ବିଶ୍ରବା ଋଷିର
ଦେବବର୍ଣ୍ଣିନୀ ପ୍ରଥମ ଭାରିଯା ତାଙ୍କର ।
ଦ୍ୱିତୀୟ ଭାରିଯା ନାମ ଅଟେ ନଇକେଶୀ
ତୃତୀୟ ଭରିଯା କାକୀ ଅଟେ ଶୁଭ୍ରକେଶୀ ।
ପୁଷ୍ପୋତ୍କଟା ସୁନ୍ଦରୀ ଯେ ଚତୁର୍ଥ ଅଟଇ
ଏହାଙ୍କର ପୁତ୍ରକନ୍ୟା ଶୁଣ ମନଦେଇ ।
ଦେବବର୍ଣ୍ଣିନୀ ଗର୍ଭରୁ କୁବେର ଜନମ
ରାବଣ ଯେ ନରକେଶୀ ଜ୍ୟେଷ୍ଠପୁତ୍ର ନାମ ।
କୁମ୍ଭକର୍ଣ୍ଣ ବିଭୀଷଣ ଆବର ଏ ଦୁଇ
ଦୁହିତାର ନାମ ସୂର୍ପଣଖା ଯେ ଅଟଇ ।
ପୁଷ୍ପୋତ୍କଟା ରାକ୍ଷସୀର ଗର୍ଭୁ ମହୋଦର
ଆବର ପ୍ରହର ଖର ମହାପାର୍ଶ୍ୱ ବୀର ।
ଦୁହିତା ଗୋଟିର ନାମ ଦେଲେ କୁମ୍ଭୀନସୀ
ତ୍ରିଶିରାଙ୍କୁ ଜାତ କଲା ବାକା ଯେ ରାକ୍ଷସୀ ।
ମହାବଳ ବିଦ୍ୟୁଜ୍ଜିହ ଉପୁଜିଲା ପୁଣ
ତୃତୀୟ ପୁତ୍ରର ନାମ ଅଟଇ ଦୂଷଣ ।
ଏହି ଦଶଗୋଟି ପୁତ୍ର ବିଶ୍ରବା ଋଷିର
ରୁଦ୍ର ଭକତ ସମସ୍ତେ ତପୀବର ବୀର ।
ପୁଲହ ଋଷିର ପୁତ୍ରମୃଗ ବ୍ୟାଳ ଦ୍ରଷ୍ଟୀ
ଭୂତ ପିଶାଚ ଶୂକର ରୁକ୍ଷ ହସ୍ତୀ କ୍ରୋଷ୍ଟୀ ।
ମରୀଚି ଋଷିର ପୁତ୍ର କଶ୍ୟପ ଅଟଇ
ଭୃଗୁପୁତ୍ର ଶୁକ୍ର ଦୈତ୍ୟଗୁରୁ ଯେ ବୋଲାଇ ।
ଅତ୍ରି ଋଷିଙ୍କର ପୁତ୍ର ଅଟଇ ଆତ୍ରେୟ
ଘୃତାଚୀ ଗର୍ଭରୁ ଜାତ ବୈଧ୍ରୁବ ତନୟ ।
ସ୍ୱସ୍ତି ଅଗ୍ନି ନାମେ ପୁତ୍ର ଅତ୍ରିର ଆବର
ହର୍ଯ୍ୟାଶ୍ୱ ନାମେ ଦକ୍ଷର ବହୁତ କୁମର ।
ନାରଦ ମାୟାରେ ତାଙ୍କୁ ପକାଇଲେ ମାରି
ତେଣୁ ଦକ୍ଷ ପ୍ରଜାପତି ତାଙ୍କୁ କୋପକରି ।
ଶାପଦେଲେ ଅପୁତ୍ରିକ ହୁଅ ତୁ ନାରଦ
ଲୋକଙ୍କ ସଙ୍ଗେ ଲଗାଇ ଦିଅ ତୁ ବିବାଦ ।
କଳିପ୍ରିୟ ହୁଅ ମୋର ଶାପେ ତୁ ଆବର
ସେ ଦିନୁ ନାରଦ ଊର୍ଦ୍ଧ୍ୱରେତା ମୁନିବର ।
ନାରଦ ମୁନିର କନ୍ୟା ନାମ ଅରୁନ୍ଧତୀ
ବଶିଷ୍ଠ ମୁନିଙ୍କି ଦେଲେ ସେ ନାରଦ ଯତି ।
ଅରୁନ୍ଧତୀ ଗର୍ଭୁ ଜାତ ଶକ୍ତିନାମେ ପୁତ୍ର
ଶକ୍ତିପୁତ୍ର ପରାଶର ହେଲେ ତପୋବନ୍ତ ।
ପରାଶର ଋଷି ପୁତ୍ର ବ୍ୟାସ ମୁନିବର
ଶୁକମୁନି ଅଟନ୍ତି ଯେ ବ୍ୟାସଙ୍କ କୁମର ।
ସେ ଶୁକ ମୁନିର ହେଲେ ପାଞ୍ଚପୁତ୍ର ଜାଣ
ଭୂରିଶ୍ରବା ପ୍ରଭୁ ଶମ୍ଭୁ କୃଷ୍ଣ ଗୌର ପୁଣ ।
ଆବର ଥିଲେ ତାଙ୍କର ତିନୋଟି ଦୁହିତା
କୀର୍ତ୍ତିମତୀ ଯୋଗମାତା ପୁଣି ଧୃତବ୍ରତା ।
ଏମନ୍ତ ଏ ଋଷିବଂଶ କହିଲୁ ବୁଝାଇ
ଗୋପୀନାଥ ବୋଲେ ହରି ହରି ବୋଲଭାଇ ।
କଳିଯୁଗେ ହରିନାମ ଗୋଟି ଅଟେ ସାର
ଅହ ରହ ସେହି ନାମ ପିଅ ନାରୀ ନର ।

.....※.....

## ସୂର୍ଯ୍ୟବଂଶ ଚରିତ୍ର

କହୁଛନ୍ତି କୂର୍ମରୂପୀ ଜଗତ ଗୋସାଇଁ
ସୂର୍ଯ୍ୟବଂଶ କଥା ଏବେ ଦେଉଛି ବୁଝାଇ ।
କଶ୍ୟପ ଋଷି ଭାରିଯା ଅଟନ୍ତି ଅଦିତି
ଆଦିତ୍ୟ ତାହାଙ୍କ ଗର୍ଭୁ ହେଲେ ଉତପତି ।
ଚାରୋଟି ଭାରିଯା ସେହି ସୂର୍ଯ୍ୟ ଦେବଙ୍କର
ସଂଜ୍ଞା ରାଜ୍ଞୀ ପ୍ରଭା ଛାୟା ନାମ ତାହାଙ୍କର ।
ସଂଜ୍ଞା ଗର୍ଭୁ ବୈବସ୍ୱତ ମନୁ ହେଲେ ଜନ୍ମ
ରାଜ୍ଞୀ ଗର୍ଭୁଁ ଉପୁଜିଲେ ରେବନ୍ତ ଯେ ଯମ ।
ଯମୁନା ନାମେ ହୋଇଲା ଦୁହିତା ଆବର
ଛାୟା ଗର୍ଭରୁ ସମ୍ଭୂତ ସାବର୍ଣ୍ଣି କୁମର ।
ତପତୀ ବିଷ୍ଟି ଏ ଦୁଇ କନ୍ୟା ହେଲେ ପୁଣି
ପୁତ୍ରକେ ପୁଣି ହୋଇଲା ତାର ନାମ ଶନି ।
ପ୍ରଭାର ଯେ ଏକପୁତ୍ର ତା ନାମ ପ୍ରଭାତ
ବୈବସ୍ୱତ ମନରୁ ଯେ ହେଲେ ନବସୁତ ।
ଇକ୍ଷ୍ୱାକୁ ନାଭାଗ ଧୃଷ୍ଟ ଶର୍ଯ୍ୟାତି ଆବର
ନରିଷ୍ୟନ୍ତ ନଭାଗ ଯେ ଅରିଷ୍ଟ କୁମର ।
କରୁଷ ପୃଷଧ୍ର ଘେନି ଏମନ୍ତେ ଏ ନବ
ପନ୍ଦର ପୁତ୍ର ଇକ୍ଷ୍ୱାକୁ କୁଳରେ ଉଦ୍ଭବ ।
ତା ମଧ୍ୟରେ ଜ୍ୟେଷ୍ଠପୁତ୍ର ନାମ ଯେ ବିକୁକ୍ଷି
କାକୁସ୍ଥ ସେ ବୋଲାଇଲା ସ୍ୱର୍ଗ ପୁର ରଖି ।
ତାହାର ପୁତ୍ର ଯେ ପୃଥୁ ତା ପୁତ୍ର ବିଶ୍ୱକ
ତାହାର କୁମର ନାମ ଅଟଇ ଆର୍ଦ୍ରକ ।

ତାର ପୁତ୍ର ଯୁବନାଶ୍ୱ ସେ ବଡ଼ ପ୍ରତାପୀ
ପୁତ୍ରର ନିମନ୍ତେ ସେହି ବୋଲାଇଲା ତପୀ ।
ଗୋକର୍ଣ୍ଣତୀର୍ଥକୁ ଗଲା ଦିନେ ମହୀପତି
ଗଉତମ ଋଷି ତହିଁ ତପ କରୁଛନ୍ତି ।
ଚରଣେ ପ୍ରଣମି ତାଙ୍କୁ ପଚାରିଲେ ପୁଣି
କି କଲେ ମୋହର ପୁତ୍ର ହେବ କହ ମୁନି ।
ଗଉତମ ବୋଇଲେ ତୁ ନାରାୟଣ ଭଜ
ଭଜି ପାରିଲେ ପାଇବୁ ଧାର୍ମିକ ତନୁଜ ।
ଶୁଣି ବିଷ୍ଣୁପାଦେ ରାଜା ଲଗାଇଲେ ଲୟ
ଶ୍ରୀବିଷ୍ଣୁ ପ୍ରସାଦେ ହେଲା ଗୋଟିଏ ତନୟ ।
ତାହାର ନାମ ଶ୍ରୀବନ୍ତୀ ସେହି ମହାବୀର
ଶ୍ରାବନ୍ତୀ ନାମେ ଥାପିଲା ଏକ ମହାପୁର ।
ତାର ପୁତ୍ର ବୃହଦଶ୍ୱ ନାମେ ନରପତି
କୁବଳୟାଶ୍ୱ ନାମରେ ତାହାର ସନ୍ତତି ।
ଧୁନ୍ଧୁ ନାମେ ଥିଲା ଏକ ପ୍ରତାପୀ ଅସୁର
ତାକୁ ମାରିବାରୁ ତାର ନାମ ଧୁନ୍ଧୁମାର ।
କୁବଳୟାଶ୍ୱର ହେଲେ ତିନୋଟି ନନ୍ଦନ
ଜ୍ୟେଷ୍ଠପୁତ୍ର ବୃଢ଼ାଶ୍ୱ ଯେ ହୋଇଲା ରାଜନ ।
ବୃଢ଼ାଶ୍ୱ ପୁତ୍ର ପ୍ରମୋଦ ତା ପୁତ୍ର ହର୍ଯ୍ୟଶ୍ୱ
ତା ପୁତ୍ର ନିକୁମ୍ଭ ତାର ପୁତ୍ର ସଂହିତାଶ୍ୱ ।
ତାହାର ସୁତ କୁଶାଶ୍ୱ ଅରୁଣାଶ୍ୱ ଦୁଇ
ଅରୁଣାଶ୍ୱ ପୁତ୍ର ଯୁବନାଶ୍ୱ ଯେ ବୋଲାଇ ।
ବାସବ ସମାନ ସେହି ବୀର ତେଜୋବନ୍ତ
ବାରୁଣି ନାମରେ ଯାଗ କରି ନୃପନାଥ ।
ମାନ୍ଧାତା ନାମେ ପାଇଲା ବିଷ୍ଣୁ ଭକ୍ତ ପୁତ୍ର
ଅତି ପବିତ୍ର ଅଟଇ ତାହାର ଚରିତ ।
ମାନ୍ଧାତାର ତିନି ପୁତ୍ରଗୁଣବନ୍ତ ଅତି
ଜ୍ୟେଷ୍ଠ ଅମ୍ବରୀକ୍ଷ ରାଜା ହେଲା ମହୀପତି ।
ତାର ପୁତ୍ର ଯୁବନାଶ୍ୱ ତା ପୁତ୍ର ହାରିତ
କୁରୁକୁହ୍ମ ନାମେ ହେଲା ତାହାର ଯେ ସୁତ ।
କ୍ରସମଦ୍ୟୁ ପୁରୁକୁହ୍ମ ରାଜାର ନନ୍ଦନ
ତାହାର ସୁତ ସମ୍ଭୂତି ସେ ହେଲା ରାଜନ ।
ତାର ପୁତ୍ର ବିଷ୍ଣୁବୃଦ୍ଧ ନାମେ ନରପତି
ଅନରଣ୍ୟ ନାମେ ହେଲା ତାହାର ସନ୍ତତି ।
ତାରପୁତ୍ର ବୃହଦଶ୍ୱ ତା ପୁତ୍ର ହର୍ଯ୍ୟଶ୍ୱ
କର୍ଦ୍ଦମ ଋଷିଙ୍କି ତପେ କରିବାରୁ ତୋଷ ।
ସୂର୍ଯ୍ୟସମ ବଳବନ୍ତ ପୁତ୍ରେକ ପାଇଲା
ନରପତି ତାର ନାମ ବସୁମନା ଦେଲା ।

## ବସୁମନା ଚରିତ

ବସୁମନା ସୂର୍ଯ୍ୟ ସେବି ପାଇଲା ନନ୍ଦନ
ତା ନାମ ତ୍ରିଧନ୍ୱା ସେହି ଶତ୍ରୁ ନିସୂଦନ ।
ଦାନଶୂର ମାନଶୂର ରାଜା ବସୁମନା
ପୃଥ୍ୱୀ ରାଜାଙ୍କୁ ଜିଣିଲା ଘେନି ନିଜସେନା ।
ତହୁଁ ଆସି ଅଶ୍ୱମେଧ ଯାଗ କଲା ରାଜା
ନିମନ୍ତ୍ରି ଋଷି ମୁନିଙ୍କି କଲା ତହିଁ ପୂଜା ।
ଅନ୍ନଛତ୍ର ଜଳଛତ୍ର ଦେଲା ସେ ବହୁତ
ନିର୍ବିଘ୍ନରେ କଲା ରାଜା ଯାଗ ସମାପତ ।
ଯାଗ ଶେଷେ ସଭାକରି ବସିଲା ନୃପତି
ଋଷି ମୁନିମାନେ ସେହି ସଭାରେ ଅଛନ୍ତି ।
ସଭାରେ ବିନୟ କରି ବୋଇଲା ରାଜନ
ତୁମ୍ଭେମାନେ ମହାଜ୍ଞାନୀ ସବୁ କଥା ଜାଣ ।
କଥାଏ ମୁଁ ପଚାରିବି ନ ଧରିବ ଦୋଷ
ଇହଲୋକ ଯଜ୍ଞତପ ଆବର ସନ୍ନ୍ୟାସ ।
ଏହାର ମଧ୍ୟେ ପ୍ରଧାନ କେ ପୁଣି ଅଟଇ
ବଶିଷ୍ଠ ମୁନି କହିଲେ ଶୁଣ ନରସାଇଁ ।
ଚାରି ବେଦ ପଢ଼ିସାରି କରିବ ଯେ ଘର
ବିଭା ହୋଇ ପୁତ୍ର ମୁଖ ଦେଖିବ ଆବର ।
ଯାଗ ଯଜ୍ଞ କରି ବନବାସୀ ହେବ ଶେଷେ
ଯୋଗମାର୍ଗେ ତନୁ ତେଜି ଯିବ ବିଷ୍ଣୁପାଶେ ।
ବୋଇଲେ ପୁଲସ୍ତ୍ୟ ମୁନି ଶୁଣ ହେ ରାଜନ
ଯାଗ ଯଜ୍ଞେ ଦେବତାଙ୍କୁ କରି ଆରାଧନ ।
ମହାଯୋଗୀ ହୋଇ ତପେ ଶ୍ରୀହରିଙ୍କି ତୋଷି
ଏ ସଂସାର ତେଜି ପୁଣି ହୋଇବ ସନ୍ନ୍ୟାସୀ ।
ବୋଇଲେ ପୁଲହ ମୁନି ଶୁଣ ନୃପମଣି
ପୁରାଣ ପୁରୁଷ ସେହୁ ଜଗତର ଯୋନି ।
ଘୋରତପେ ତାଙ୍କୁ ଯେବେ ତୋଷି ପାର ତୁମ୍ଭେ
ମୁକତି ପାଇବ ଆଉ ନ ପଡ଼ିବ ଭବେ ।
ବୋଇଲେକ ଯମଦଗ୍ନି ଆହୋ ନୃପବର
ଯେଉଁ ପ୍ରଭୁ ଅନ୍ତର୍ଯ୍ୟାମୀ ଜଗତ ଈଶ୍ୱର ।

ଯାଗ ସାଧି ଯୋଗମାର୍ଗେ କଲେ ଦରଶନ
ଏଥୁଁ ଅଧିକ ମଙ୍ଗଳ ନାହିଁହେ ରାଜନ ।
ବୋଇଲେକ ବିଶ୍ୱାମିତ୍ର ଶୁଣ ନରପତି
ଅନନ୍ତ ମହିମା ଯାର ଅନନ୍ତ ଶକତି ।
ଅନଳ ସ୍ୱରୂପ ମହାରୁଦ୍ର ମନ୍ତ୍ର ଜପି
ତପ ଆରାଧିବ ମୂଳ କମଳକୁ ଥାପି ।
ତେଣେ ଚଉବର୍ଗ ଜାଣ ତୁମ୍ଭଙ୍କୁ ମିଳିବ
ଯାଗ ଯଜ୍ଞ ଦେବ ପୂଜା କିମ୍ପାଇ କରିବ ।
ବୋଇଲେକ ଭରଦ୍ୱାଜ ଆହୋ ମହୀପତି
ବାସୁଦେବ ପାଦପଦ୍ମେ କରିବ ଭକତି ।
ଯାଗ ଯଜ୍ଞ ତପ ଆଦି ଯାହା ତୁମ୍ଭେ କର
ଭଜୁଥିବ ବାସୁଦେବ ଶ୍ରୀରଙ୍ଗା ପୟର ।
ଏଥିରୁ ମଙ୍ଗଳ କିଛି ନାହିଁ ଏ ଜଗତେ
ବୋଇଲେକ ଅତ୍ରି ମୁନି ଶୁଣ ନରପତେ ।
ଯାହାଠାରୁ ଏ ଜଗତ ହୋଇ ଉତପତ୍ତି
ଯାହାର ପୁତ୍ର ଅଟଇ ବିଶ୍ୱ ପ୍ରଜାପତି ।
ସେ ପ୍ରଭୁଙ୍କୁ ଆରାଧିବ ଘୋର ତପକରି
ଏଥିରୁ ମଙ୍ଗଳ ଆଉ ନାହିଁ ଦଣ୍ଡଧାରୀ ।
ବୋଇଲେ ଯେ ଗଉତମ ଶୁଣ ମହୀପାଳ
ଅନାଦି ବ୍ରହ୍ମ ଶକତି ପ୍ରଭୁ ଆଦିମୂଳ ।
ତାହାଙ୍କର ପୂଜାଠାରୁଅଧିକ କି ଅଛି
ଜଗତ କରତା ସେହି ପ୍ରଭୁ ଶିରୀବତ୍ସ ।
କଶ୍ୟପ ବୋଇଲେ ଶୁଣ ଆହେ ମହାରାୟ
ଦେବ ଦେବ ମହାଦେବ ଯେ ଦେବାଧିରାୟ
ସେହି ସମ୍ଭୁ ସେବା କଲେ ମିଳଇ ସର୍ବସ୍ୱ
କ୍ରତୁରଷି ବୋଇଲେ ଯେ ଶୁଣହେ ନରେଶ
ବେଦ ପଢ଼ି ଯୋଗକରି ପାଇଛ ଯେ ପୁତ୍ର
ତପ ସାଧି କୁଳକୁ ହେ କରିଣ ପବିତ୍ର ।
ଯୋଗେ ତନୁ ତେଜି ଅନ୍ତେ ବଇକୁଣ୍ଠେ ଯିବ
ବେଦ ପୁରାଣ ବାଣୀ ଏ ଜାଣ ନରଧବ ।
ନରପତି ବସୁମନା ସବୁ କଥା ଶୁଣି
ଆନନ୍ଦେ ଋଷିମାନଙ୍କୁ ଦେଇଣ ମେଲାଣି ।
ପୁତ୍ର ତ୍ରିଧନ୍ୱାକୁ ଡାକି ବୋଇଲା ଏମନ୍ତ
ଆରେ ବାବୁ ଏ ରାଜ୍ୟକୁ କର ତୁ ପବିତ୍ର ।
ଏକାକ୍ଷର ବ୍ରହ୍ମଅଛି ସୂର୍ଯ୍ୟ ବିମ୍ବେ ରହି
ଘୋର ତପ କରି ତାଙ୍କୁ ଆରାଧିବି ମୁହିଁ ।

ଏ ମହୀମଣ୍ଡଳ ଧର୍ମେ ପାଳୁଥିବୁ ବାବୁ
ଏହା କହି ରାଜା ରାଜ୍ୟ ଧନ ଛାଡ଼ି ସବୁ ।
ହିମାଳୟ ଶିଖେ ଦେବଦାରୁ ବନେ ଯାଇ
ନିତ୍ୟ ତହିଁ ଥିବା କନ୍ଦମୂଳ ଫଳ ଖାଇ ।
ମୂଳ କମଳକୁ ଥାପି ବସିଲା ଆସନେ
ପାଞ୍ଚମନ ପ୍ରକୃତିକି ରଖି ଏକସ୍ଥାନେ ।
ବେଦମାତା ଗାୟତ୍ରୀକୁ ଜପିଲା ସେ ବସି
ଏମନ୍ତେ ଶତ ବରଷ ହୋଇ ଯୋଗଭ୍ୟାସୀ ।
ବ୍ରହ୍ମପୁରେ ବ୍ରହ୍ମାଙ୍କର ଆସନ ଟଳିଲା
ପୁର ସହିତରେ ତାଙ୍କ ସଭାହିଁ କମ୍ପିଲା ।
ଧ୍ୟାନରେ ତା ଜାଣିପାରି କମଳ ଆସନ
ଋଷିଙ୍କୁ ସଙ୍ଗରେ ଘେନି କଲେ ଆଗମନ ।
ଦେବଦାରୁ ବନେ ଯହିଁ ରାଜା କଲେ ତପ
ଚତୁର୍ମୁଖ ବ୍ରହ୍ମା ତହିଁ ବୋଇଲେ ସ୍ୱରୂପ ।
କାହିଁପାଇଁ ଘୋର ତପ କରୁଛୁ ନୃପତି
ଆମ୍ଭେ ପଚାରୁଛୁ ଆସି ତୋତେ ପ୍ରଜାପତି ।
ବରମାଗ ଦେବୁଁ ଆମ୍ଭେ କହୁଅଛୁଁ ସତ୍ୟ
ତୋହରି ଉପରେ ଆମ୍ଭେ ହୋଇଅଛୁଁ ପ୍ରୀତ ।
କର୍ଣ୍ଣେ ଯହୁଁ ସମ୍ଭାଇଲା ଆସି ଶୂନ୍ୟବାଣୀ
ଚକ୍ଷୁ ମେଲି ଉପରକୁ ଚାହିଁ ନୃପମଣି ।
ଦେଖିଲା ଆକାଶ ମାର୍ଗେ ଅପୂର୍ବ ମୂରତି
ଚାରିଗୋଟି ମୁଖ ଉଚ୍ଛେ ବେଦ ଫୁକାରନ୍ତି ।
ସହସ୍ର କିରଣ ତୁଲ୍ୟ ଜ୍ୟୋତି ବିରାଜଇ
ମରାଳ ଚଢ଼ି ଶୂନ୍ୟରେ ବିଜୟ ଗୋସାଇଁ ।
ଚଉପାଶେ ବେଢ଼ି ଋଷି ମୁନି କରଯୋଡ଼ି
ଉଭାହୋଇ ବେଦବର ସ୍ତବ ମୁଖେ ପଢ଼ି ।
ଏମନ୍ତ ଅପୂର୍ବ ରୂପ ଦେଖି ନରପତି
କରଯୋଡ଼ି ଆନନ୍ଦରେ କଲା ଦିବ୍ୟ ସ୍ତୁତି ।
ଦେହ ଉଲ୍ଲସିଲା ରୋମ ଟାଙ୍କୁରି ଉଠିଲା
ଜୟ ଜୟ ବେଦବର ମୁଖରେ ବୋଇଲା ।
ଯେବେ ମୋର ତପେ ଦେଇ ହୋଇଲ ପ୍ରସନ୍ନ
ଅନୁଗ୍ରହ କରିମୋତେ ଦେଲ ଦରଶନ ।
ତୁମ୍ଭେ ତ ଦେବାଧି ଦେବ ରାୟ ପଦ୍ମଯୋନି
ତୁମ୍ଭର ଅଶେଷ ରୂପ ନ ଜାଣନ୍ତି ମୁନି ।
ମୁଁ ହୀନ ପାମର ନର କେତେ ବୁଦ୍ଧିମୋର
ତୁମ୍ଭ ରୂପ ବର୍ଣ୍ଣିବଇଁ ଆହେ ବେଦବର ।

ଶରଣ ପଶିଲି ତବ ଚରଣ କମଳେ
ଏତେ ବୋଲି ନରପତି ଲୋଟି ଭୂମିତଳେ ।
ଉଠି ପୁଣି କର ଦୁଇ ନିବେଶଇ ଶିରେ
ନମସ୍ତେ ନମସ୍ତେ ତାତ ତୁ ଏହି ସଂସାରେ ।
ନମସ୍ତେ ନମସ୍ତେ ତାତ ମରାଳ ବାହନ
ନମସ୍ତେ ନମସ୍ତେ ତାତ କମଳ ଆସନ ।
ନମସ୍ତେ ନମସ୍ତେ ତାତ ଅନେକ ତୋ ମୁଖ
ନମସ୍ତେ ନମସ୍ତେ ତାତ ହରୁ ପ୍ରାଣୀ ଦୁଃଖ ।
ନମସ୍ତେ ନମସ୍ତେ ତାତ କର ମୋତେ ତ୍ରାହି
ନମସ୍ତେ ନମସ୍ତେ ତାତ ବିଶ୍ୱମୁଖ ତୁହି ।
ଏମନ୍ତେ ଅନେକ ସ୍ତୁତି କରନ୍ତେ ନୃପତି
ହସ୍ତରେ ଆଉଁଷି ତାର ଅଙ୍ଗ ପ୍ରଜାପତି ।
ବୋଇଲେ କି ବରେ ଇଚ୍ଛା ମାଗ ତାହା ବେଗେ
ରହି ନ ପାରିବୁ ଆମ୍ଭେ ଯିବୁ ଉଦବେଗେ ।
ନୃପତି ବୋଇଲା ତାତ ଦେବୁ ଯେବେ ବର
ଶତ ବରଷ ରହିବ ଆହୁରି ଶରୀର ।
ବେଦମାତ ଗାୟତ୍ରୀକି ଜପିବି ଏ ଦେହେ
ଆୟୁ ନଥିଲେ କି ଏହି ଦେହ ଗୋଟି ରହେ ।
ଦେହ ନ ରହିଲେ କାହୁଁ ଜପିବି ଏ ମନ୍ତ୍ର
ମନ୍ତ୍ର ନ ଜପିଲେ ସିଦ୍ଧି ହୋଇବ କି ଯନ୍ତ୍ର ।
ଯନ୍ତ୍ର ସାଧି ନ ପାରିଲେ ସମସ୍ତ ବିଫଳ
ଏଣୁ ଶତବର୍ଷ ଆୟୁ ମାଗେ ଆଦିମୂଳ ।
ଅସ୍ତୁ ହେଉ କହି ତହୁଁ ଗଲେ ବେଦବର
ବୁଦ୍ଧିମନ୍ତ ରାଜାପାଇ ବ୍ରହ୍ମାଠାରୁ ବର ।
ତିନିବେଳ ଜଳେ ବୁଡ଼ି ଫଳ ମୂଳ ଭକ୍ଷି
ମନର ମୂଳେ ପଚିଶ ପ୍ରକୃତିକି ରଖି ।
ଯନ୍ତ୍ର ଥାପି ମନ୍ତ୍ର ସିଦ୍ଧ କଲା ବସି ରାଜା
ପ୍ରତି ବର୍ଷ କଲା ପୁଣି ଗାୟତ୍ରୀକି ପୂଜା ।
ଘନ ଘନ ରବି ବିମ୍ବ କମ୍ପିଲା ସେ ତପେ
ପୁରୁଷେକ ବାହାରିଲା ତହୁଁ ଜ୍ୟୋତିରୂପେ ।
ଶୂନ୍ୟେ ଥାଇ ବୋଇଲେ ହେ ରାଜା ହୁଅ ସ୍ଥିର
ଆମ୍ଭେ ଆସିଅଛୁ ତୋତେ ଦେବାପାଇଁ ବର
ଚକ୍ଷୁମୋର ଉପରକୁ ଚାହିଁଲା ନୃପତି
ଦେଖିଲାକ ରୁଦ୍ରରୂପୀ ଦେବ ପ୍ରଜାପତି ।
ଚାରିଗୋଟି ଶିର ତାଙ୍କ ମଉଳିରେ ଜଟା
କଟୀତଟେ ରଙ୍ଗବସ୍ତ୍ର ଭୁଜ ଯେ ଆଠୁଟା ।

ତିନିଗୋଟି ନେତ୍ର ସୂର୍ଯ୍ୟ ଚନ୍ଦ୍ର ଅଗ୍ନି ପ୍ରାୟ
ରକ୍ତ ବର୍ଣ୍ଣ ମାଳା ଏକ ଲମ୍ବିଛି ହୃଦୟ ।
ବାଳସୂର୍ଯ୍ୟ ପ୍ରାୟ କାନ୍ତି କଣ୍ଠ ନୀଳବର୍ଣ୍ଣ
ଝଟ ଝଟ ଦିଶୁଅଛି ଦେହର କିରଣ ।
ଅଧେକ ଯେ ନାରୀ ପୁଣି ଅଧେକ ପୁରୁଷ
ସୋ ଅପୂର୍ବ ରୂପ ଦେଖି ବୋଲଇ ନରେଶ ।
କିଏ ତୁମ୍ଭେ କାହିଁପାଇଁ ରହିଅଛ ଶୂନ୍ୟେ
ଚାହିଁ ନ ପାରଇ ମୁହିଁ ତୁମ୍ଭଙ୍କୁ ନୟନେ ।
ରାଜାର ଏ କଥା ଶୁଣି ବୋଇଲେ ସେ ଦେବ
ଆମ୍ଭେ ଅଟୁ ଅର୍ଦ୍ଧ ନାରୀଶ୍ୱର ମହାଦେବ ।
ତୋହର କଠୋର ତପ ନ ପାରିଲୁ ସହି
ବର ଦେବାପାଇଁ ଶୂନ୍ୟେ ଅଛୁ ଆମ୍ଭେରହି ।
ଆନନ୍ଦରେ କରଯୋଡ଼ି ରାଜା କରେ ସ୍ତୁତି
ଜୟ ଜୟ ନୀଳକଣ୍ଠ ଜୟ ପଶୁପତି ।
ନମୋ ନମୋ ମହାଯୋଗୀ ମହେଶ୍ୱର ହର
ନମୋ ନମୋ ତ୍ରିନୟନ ପାର୍ବତୀର ବର ।
ନମୋ ନମୋ ଶମଶାନବାସୀ ଭୂତପତି
ଦେବ ଦାନବେ ଗୋଚର ନୋହେତୋ ମୂରତି ।
ତୁହି ଦେବ ସନାତନ ଅନାଦି ନିଧନ
ଏମନ୍ତ ବହୁତ ସ୍ତୁତି କରି ସେ ରାଜନ ।
ଭୂମିତଳେ ଲୋଟି ବୋଲେ ତ୍ରାହି ତ୍ରାହି ହର
ତାହାକୁ ଆଉଁସିଦେଇ ବୋଇଲେ ଶଙ୍କର ।
ଉଠ ଉଠ ମହାତମା ମାଗ ଇଚ୍ଛା ଯାହା
ଉଠି କରଯୋଡ଼ି ପୁଣି ବୋଲେ ନରନାହା ।
ଯେବେ କୃପା କଲ ମୋତେ ଦିଅ ଏହି ବର
ଆୟୁ ବୃଦ୍ଧି ହେବ ଶତ ବରଷ ମୋହର ।
ହେଉ କହି ମହାରୁଦ୍ର ହୋଇଲେ ଗୁପତ
ପୁଣି ତପ କଲା ରାଜା ହୋଇ ଶୁଚିମନ୍ତ ।
ଏମନ୍ତେ ଶତ ବରଷ ବହିଗଲା ପୁଣି
ଗାୟତ୍ରୀ ମନ୍ତ୍ରକୁ ଜପ କରେ ନୃପମଣି ।
ଘନ ଘନ କମ୍ପିଲା ଯେ ବଇକୁଣ୍ଠ ପୁର
ରହି ନ ପାରିଲେ ତହିଁ ଦେବ ଦାମୋଦର ।
ଶୂନ୍ୟେଥାଇ ବୋଇଲେରେ କିମ୍ପା କରୁତପ
ଆମ୍ଭାକୁ ତୁ କଷ୍ଟ ଦେଇ ଅରଜିଲୁ ପାପ ।
ଏହାଶୁଣି ଶୂନ୍ୟକୁ ଯେ ଚାହିଁଦେଲା ରାଜା
ଆକାଶରେ ବିରାଜୁଛି ଏକ ମହାତେଜା ।

ବୋଇଲା ହୋ ମହାତମା କହ ତୁମ୍ଭେ କିଏ
ବିରାଜୁଛ ଆକାଶରେ କୋଟି ସୂର୍ଯ୍ୟ ପ୍ରାୟେ ।
ବୋଇଲେ ସେ ଶୂନ୍ୟବାସୀ ଶୁଣ ନୃପବର
ଆମ୍ଭେ ଯେ ଅନାଦିବ୍ରହ୍ମ ଦେବ ଚକ୍ରଧର ।
ତୋହର କଠୋର ତପ ନ ପାରିଲୁ ସହି
ବର ଦେବାପାଇଁ ଆସି ଶୂନ୍ୟେ ଅଛୁଁ ରହି ।
ଯାହା ତୁ ମାଗିବୁ ଆମ୍ଭେ ନିଶ୍ଚେ ଦେବୁ ତାହା
କେମନ୍ତେ ପରତେ ଯିବି ବୋଲି ନରନାହା ।
ଶ୍ରୀହରି ବୋଇଲେ କାହୁଁ ଦେଖିବୁ ମୋରୂପ
ଦେଖି ନ ପାରନ୍ତି ତପୀ କରି ଘୋର ତପ ।
ଯୋଗୀ ଯୋଗ ସାଧି ସାଧି ନ ପାରନ୍ତି ଦେଖି
ମୋହର ଭକତ ମୋତେ ପାରେ ବାନ୍ଧିରଖି ।
ନୃପତି ବୋଇଲା ତେବେ ତୁମେ ଯାଅଫେରି
ରୂପ ନ ଦେଖିଲେ ବର କି ହେବ ମୋହରି ।
ଶ୍ରୀହରି ବୋଇଲେ ରାଜା ଆୟୁ ନାହିଁ ତୋର
ଶତବର୍ଷ ପୂର୍ଣ୍ଣ ହେଲା ପାଇ ହର ବର ।
ତପ କରି ନ ପାରିବୁ ଦେହ ଯିବ ସଢ଼ି
କରିବୁ ଯାତନା ଭୋଗ ନରକରେ ପଡ଼ି ।
ସିଦ୍ଧ ହୋଇଥିଲେ ସିନା ହୁଅନ୍ତୁ ଅମର
ମହା ବୁଦ୍ଧିମନ୍ତ ଅଟେ ସେହି ନୃପବର ।
ଆୟୁଷ ମୋହର ଯେବେ ନାହିଁ ତୁମ୍ଭେ ଜାଣ
କେମନ୍ତ ରଖିଅଛଇ ମୋତେ ଜନ୍ତୁରାଣ ।
ଶ୍ରୀହରି ବୋଇଲେ ତୋର ଅଛି କିଛି ଧର୍ମ
ଧର୍ମ ଥିବା ପ୍ରାଣୀକି ଯେ ନ ଦଣ୍ଡଇ ଯମ ।
ନୃପତି ବୋଇଲା ଧର୍ମବନ୍ତ ପ୍ରାଣୀମାନେ
ମରିଗଲେ ବସନ୍ତି ଯେ ଯାଇଁ କେଉଁସ୍ଥାନେ ।
ଶ୍ରୀହରି ବୋଇଲେ ଯାଗ ଯଜ୍ଞ ଯେ କରଇ
ସ୍ୱର୍ଗପୁରେ ଦେବତାଙ୍କ ପାଖରେ ବସଇ ।
ବ୍ରହ୍ମ ବିଦ୍ୟା ସାଧିଲେଟି ଘୋର ତପକରି
ବ୍ରାହ୍ମଣ ହୋଇ ଗମଇ ଅନ୍ତେ ବ୍ରହ୍ମପୁରୀ ।
ଯୋଗ ସାଧି ଯୋଗୀଜନ ବସେ କଇଳାସେ
ପୁଣି ମର୍ତ୍ତ୍ୟେ ଜନମଇ ଆସି ପୁଣ୍ୟ ଶେଷେ ।
ଏହାଶୁଣି ନରପତି ବୋଇଲେକ ପୁଣି
ମର୍ତ୍ତ୍ୟେ ଜନ୍ମ ନ ହୁଅଇ କହ କେଉଁପ୍ରାଣୀ ।
ଶ୍ରୀହରି ବୋଇଲେ ବ୍ରହ୍ମଜ୍ଞାନୀ ମୋ ଭକତ
ଜନମ ନ ହୋଇ ସେହି ହୁଅଇ ମୁକତ ।

ନୃପତି ବୋଇଲେ କହ ଭକତ ଲକ୍ଷଣ
କେମନ୍ତେ ବ୍ରହ୍ମଙ୍କୁ ଚିହ୍ନି ପାରଇଟି ଜନ ।
ଶ୍ରୀହରି ବୋଇଲେ ଏକ ଅକ୍ଷର ତୁ ଜପ
ଏକାକ୍ଷର ଜପିଲେ ତୁ ଦେଖିବୁ ମୋ ରୂପ ।
ମୋ ରୂପ ଦେଖିଲେ ଜନ୍ମମୃତ୍ୟୁ ତୋର ନାହିଁ
ଭକତ ଲକ୍ଷଣ ତୁ ହୋ ଶୁଣ ନରସାଇଁ ।
ଯେ ମୋର ଭକତ ସେ ମୋ ନାମ ନ ଛାଡ଼ିବ
ରାଗ ହିଂସା ଆଦି ତାର କିଛି ହିଁ ନ ଥିବ ।
ତାହାର କଥାକୁ ମୁହିଁ ଥାଏ ଅନୁସରି
ତା ନିମନ୍ତେ ଚକ୍ରଗୋଟା ଥାଏଁ କରେ ଧରି ।
ନୃପତି ବୋଇଲେ ଏବେ କରିବି ମୁଁ କିସ
ବ୍ରହ୍ମଜ୍ଞାନ ସାଧିବାକୁ ନାହିଁ ମୋ ଆୟୁଷ ।
ଏତେ କଷ୍ଟ ପାଇ ତୁମ୍ଭେ ଅଇଲ କାହିଁକି
ଆସିଥିଲ ଯହୁଁ ତୁମ୍ଭେ ଯାଅ ହୋ ତହିଁକି ।
ଶ୍ରୀହରି ବୋଇଲେ ରାଜା ଶୁଣ ଆମ୍ଭ ବାଣୀ
ଦିବ୍ୟଜ୍ଞାନ ଦେଉଅଛୁଁ ହୁଅ ବ୍ରହ୍ମଜ୍ଞାନୀ ।
ବରଷେ ଆୟୁଷ ଆଉ ଦେଲୁ ଆମ୍ଭେ ତୋତେ
ଜ୍ଞାନ ସାଧିଲେ ତୁ ଦେଖିପାରିବୁ ହୋ ମୋତେ ।
ତୋହରି ଦେହରେ ତୁହି ଦେଖିବୁ ମୋ ରୂପ
ଏକାକ୍ଷର ମନ୍ତ୍ର ଗୋଟି ହୃଦପଦ୍ମେ ଜପ ।
ଜପିଲେ ତୁ ସିଦ୍ଧଯୋଗୀ ହେବୁ ହୋ ରାଜନ
ମନ୍ତ୍ର କର୍ଣ୍ଣେ କହିଦେଲେ ପ୍ରଭୁ ଭଗବାନ ।
ମନ୍ତ୍ର ଜ୍ଞାନ ପାଇ ରାଜା ଥାପିଲା ଆସନ
ଓଲଟି ବହିଲା ପାଣି ଉଜାଣି ପବନ ।
ଷଟ କମଳରେ ମନ୍ତ୍ର ଜପି ଜପି ଗଲା
ଲଲାଟ ଚକ୍ରରେ ହଂସ ଗୋଟିକି ଧଇଲା ।
ତ୍ରିଗୁଣ ଦଉଡ଼ି କାଟି ସାଧିଲା ବଇରୀ
ଜ୍ୟୋତି ବ୍ରହ୍ମରୂପ ଗୋଟି ଦେଖେ ବଳେ ଧରି ।
ଶଙ୍ଖ ଚକ୍ର ଗଦାପଦ୍ମ ଶୋହେ ଚାରି କରେ
ଲକ୍ଷ୍ମୀଠାକୁରାଣୀ ସେବା କରନ୍ତି ପୟରେ ।
କଟୀତଟେ ପୀତାମ୍ବର ଅପୂର୍ବ ମୂରତି
ବକ୍ଷସ୍ଥଳେ କଉସ୍ତୁଭମଣିର ଯେ ଜ୍ୟୋତି ।
ଜଳ ଜଳ ଦିଶିବାରୁ ପାଉଛି କି ଶୋଭା
ଇନ୍ଦ୍ର ନୀଳମଣିକି ଯେ ନିନ୍ଦେ କେଶ ଗଭା ।
ଏମନ୍ତ ଅପୂର୍ବ ରୂପ ଦେଖି ନରପତି
ଆନନ୍ଦେ ବୋଲଇ ଜୟ ଜୟ ଶିରୀପତି ।

ଏମନ୍ତେ ଅନେକ ସ୍ତୁତି କରି ସେ ରାଜନ
ଜ୍ୟୋତିରେ ଦେଇ ଜ୍ୟୋତିକି ମିଶାଇ ବହନ ।
ଜନ୍ମ ମରଣକୁ ଜିଣି ହେଲା ଅକ୍ରାମର
ପରମ ପଦ ପାଇଲା ସେହି ନୃପବର ।
ତାହାର ପୁତ୍ର ତ୍ରିଧନ୍ୱା ପାଳିଲାକ ମହୀ
ପ୍ରଜାଙ୍କୁ ଧର୍ମେ ରଖାଇ ଆପେ ଧର୍ମେ ରହି ।
ତାହାର ନନ୍ଦନ ନାମ ଦେଲା ତ୍ରର୍ଯ୍ୟାରଣ
ତ୍ରର୍ଯ୍ୟାରଣର ନନ୍ଦନ ସତ୍ୟବ୍ରତ ଜାଣ ।
ସତ୍ୟବ୍ରତର ନନ୍ଦନ ହରିଶ୍ଚନ୍ଦ୍ର ରାଜା
ଯଜ୍ଞରେ ଦକ୍ଷିଣା ଦେଲା ବିକି ତା ଭାରିଯା
ତାହାର ନନ୍ଦନ ନାମ ଅଟଇ ରୋହିତ
ଧୃନ୍ଧୁ ନାମରେ ହୋଇଲା ତାର ଏକ ସୁତ ।
ତା ପୁତ୍ର ବିଜୟ ତାର ପୁତ୍ର ଯେ କାରୁକ
କାରୁକ ନୃପତି ହେଲା ପୁତ୍ର ନାମ ବୃକ ।
ବୃକ ପୁତ୍ର ନାମ ବହୁ ତା ପୁତ୍ର ସଗର
ପ୍ରଭା ଭାନୁବତୀ ଦୁଇ ରାଣୀ ସେ ରାଜାର
ଅଗ୍ନି ପୂଜା କରିବାରୁ ରାଣୀ ଭାନୁମତୀ
ଅସମଞ୍ଜି ନାମେ ପୁତ୍ର ହେଲା ଉତପତ୍ତି ।
ଷାଠିଏ ସହସ୍ର ହେଲେ ପ୍ରଭାର କୁମର
ଅସମଞ୍ଜି ପୁତ୍ର ଜାଣ ଅଂଶୁମାନ ବୀର ।
ତା ପୁତ୍ର ଦୀଲ୍ଲିପ ତାର ପୁତ୍ର ଭଗୀରଥ
ତାହାଯୋଗୁଁ ଗଙ୍ଗାଧର ହେଲେ ବିଶ୍ୱନାଥ ।
ଭଗୀରଥ ନୃପତିର ପୁତ୍ର ନାମ ଶ୍ରୁତ
ନାଭାଗ ନାମରେ ହେଲା ଶ୍ରୁତର ଯେ ସୁତ ।
ସିନ୍ଧୁଦ୍ୱୀପ ଅଟଇ ଯେ ନାଭାଗ କୁମର
ସିନ୍ଧୁଦ୍ୱୀପର କୁମର ଅୟୁତାୟୁ ବୀର ।
ଅୟୁତାୟୁର ନନ୍ଦନ ରାଜା ଋତୁପର୍ଣ୍ଣ
ତା ପୁତ୍ର ସୁଦାମ ଅତିଧାର୍ମିକ ସେ ପୁଣ ।
କଲ୍ମଷପାଦ ନୃପତି ସୁଦାମର ପୁତ୍ର
ତା ପୁତ୍ର ଅଂଶକୁ ହେଲା ମହାବଳବନ୍ତ ।
ତାହାର ଭାରିଯା ନାମ ଉକ୍ରଳ ଅଟଇ
ତା ଗର୍ଭୁ ନକୁଳା ନାମେ ପୁତ୍ର ଉପୁଜଇ ।
ପରଶୁରାମର ଡରେ ସେହି ନରସାଇଁ
ନାରୀକବଚ ଧଇଲା ଅରଣ୍ୟକୁ ଯାଇଁ ।
ତାହାର ପୁତ୍ରନାମ ଅଟେ ଶତରଥ
ଇଳିବିଳି ନାମେ ଶତରଥର ସେ ସୁତ ।
କାର ପୁତ୍ର ବୃହଦ୍ଧର୍ମା ନାମେ ମହାବୀର
ବିଶ୍ୱାସହ ଅଟଇ ଯେ ତାହାର କୁମର ।
ବିଶ୍ୱାସହର ନନ୍ଦନ ଖଟ୍ୱାଙ୍ଗ ଅଟଇ
ଖଟ୍ୱାଙ୍ଗ ନନ୍ଦନ ଦୀର୍ଘ ବାହୁ ଯେ ବୋଲାଇ ।
ଦୀର୍ଘବାହୁ ପୁତ୍ର ରଘୁ ରଘୁ ପୁତ୍ର ଅଜ
ଅଜ ପୁତ୍ର ଦଶରଥ ନାମେ ମହାରାଜ ।
ରାମରୂପୀ ବିଷ୍ଣୁ ଦଶରଥର ନନ୍ଦନ
ଶ୍ରୀରାମର ପୁତ୍ର ଲବ କୁଶ ବିଚକ୍ଷଣ ।
କୁଶର ପୁତ୍ର ଅତିଥି ତା ପୁତ୍ର ନିଷଧ
ନିଷଧର ପୁତ୍ର ନଳ ଅଟେ ମହାଯୋଧ ।
ନଳର ନନ୍ଦନ ନଭା ନାମେ ନରପତି
ପୁଣ୍ଡରୀକାକ୍ଷ ନାମରେ ତାହାର ସନ୍ତତି ।
ଚନ୍ଦ୍ରାବଲୋକ ଅଟଇ ତାହାର କୁମର
ତାର ପୁତ୍ର ତାରାପୀଡ଼ା ନାମେ ନୃପବର ।
ତାହାର ନନ୍ଦନ ନାମ ଅଟେ ଚନ୍ଦ୍ରଗିରି
ତାର ପୁତ୍ର ଭାନୁଚିତ୍ତ ନାମେ ଦଣ୍ଡଧାରୀ ।
ଶ୍ରୁତାୟୁ ନାମେ ହୋଇଲା ତାହାର କୁମର
କହିଲୁ ଇକ୍ଷ୍ୱାକୁବଂଶୀ ଯେତେ ନୃପବର ।
ଦୀନ ଗୋପୀନାଥ ବୋଲେ ବୋଲହରିହରି
ହରିନାମ ଧରି ଯିବ ଭବକୂପୁଁ ତରି ।
ହରି ନାମ ଯେ ଭଜଇ ସଂସାରୁ ସେ ତରେ
ଅକ୍ଲେଶରେ ବସଇ ସେ ଯାଇଁ ସ୍ୱର୍ଗପୁରେ ।

.....❋.....

## ଜୟଧ୍ୱଜ ଚରିତ

କୂର୍ମ ବୋଇଲେ ହେ ଶୁଣ ସୁରମୁନିଗଣ
ମନୁର ହେଲା ନନ୍ଦିନୀ ଇଳା ନାମେ ଜାଣ ।
ଇଳାପୁତ୍ର ପୁରରବା ହୋଇଲା ନୃପତି
ପୃଥ୍ୱୀରେ ନଥିଲା ତାର କାହାକୁ ଯେ ଭୀତି ।
ସ୍ୱର୍ଗର ଯେ ଅପସରା ଉର୍ବଶୀ ଅଟଇ
ତାହାର ସଙ୍ଗେ ପୀରତି କଲା ନରସାଇଁ ।
ତାର ଗର୍ଭୁ ଉପୁଜିଲେ ଛଅଗୋଟି ସୁତ
ଜ୍ୟେଷ୍ଠ ପୁତ୍ର ଆୟୁ ଅଟେ ଅତି ବଳବନ୍ତ ।

ରାହୁ ଦୁହିତା ଭାରିଯା ହୋଇଲା ତାହାର
ତା ଗର୍ଭୁରୁ ଉପୁଜିଲେ ପାଞ୍ଚଟି କୁମର ।
ଜ୍ୟେଷ୍ଠ ପୁତ୍ର ନାମ ଜାଣ ଅଟଇ ନହୁଷ
ତାହାର ପୁତ୍ର ଯଯାତି ହେଲା ନରଈଶ ।
ଶୁକ୍ରାଚାର୍ଯ୍ୟ କନ୍ୟା ନାମ ଅଟେ ଦେବଯାନୀ
ବୃଷପର୍ବା ଅସୁରର ଏକଇ ନନ୍ଦିନୀ ।
ତାହାର ନାମ ଶର୍ମିଷ୍ଠା ସେ ଅତି ସୁନ୍ଦରୀ
ଯଯାତି ରାଜାର ହେଲେ ଏହି ଦୁଇ ନାରୀ ।
ଏହାଙ୍କ ଗର୍ଭୁ ସମ୍ଭୂତ ଚାରୋଟି କୁମର
ଚାରିଭାଗ କରି ବାଣ୍ଟି ଦେଲେ ନୃପବର ।
ତୁର୍ବସୁକୁ ପୂର୍ବଦିଗ ଯଦୁକୁ ଦକ୍ଷିଣ
ଦ୍ରୁହ୍ୟ ପୁତ୍ରକୁ ପଶ୍ଚିମ ଦିଗଦେଲେ ଜାଣ ।
ଅନୁକୁ ଉତ୍ତର ଦିଗ ଦେଲେ ନୃପମଣି
ଚାରି ଭାଇ ଚାରିଦିଗ ପାଳୁଥାନ୍ତି ପୁଣି ।
ସହସ୍ରାଜିତ ନାମରେ ଯଦୁର କୁମର
ତାର ପୁତ୍ର ଶତ୍ରୁଜିତ ନାମେ ନୃପବର ।
ଶତ୍ରୁଜିତର ନନ୍ଦନ ହଇହୟ ରାଜା
ଧର୍ମ ଅନୁସାରେ ସେହି ପାଳେ ଜନପ୍ରଜା ।
ତାର ପୁତ୍ର ବେଣୁ ହୟେ ଦେଇ ରାଜ୍ୟଭାର
ଯୋଗମାର୍ଗେ ତେଜିଲା ସେ ଆପଣା ଶରୀର ।
ହଇହୟ ପୁତ୍ର ନାମ ଅଟଇ ଯେ ଧର୍ମ
ଧର୍ମପୁତ୍ରର ହୋଇଲା ଧର୍ମନେତ୍ର ନାମ ।
ଧର୍ମନେତ୍ର ପୁତ୍ର ନାମ ଅଟଇ ଯେ କୀର୍ତ୍ତି
କୀର୍ତ୍ତିର ପୁତ୍ର ସଞ୍ଜିତ ନାମେ ମହୀପତି ।
ସଞ୍ଜିତର ପୁତ୍ର ନାମ ଅଟେ ମହାଷ୍ମାନ
ଭଦ୍ରଶ୍ରେଣ୍ୟ ବୋଲି ଜାଣ ତାହାର ନନ୍ଦନ ।
ତା ପୁତ୍ର ଦୁର୍ମଦ ତାର ପୁତ୍ର ଯେ ଅନ୍ଧକ
ତାର ପୁତ୍ର କୃତବୀର୍ଯ୍ୟ ପୃଥିବୀ ନାୟକ ।
କୃତବୀର୍ଯ୍ୟ ପୁତ୍ର ଜାଣ କାର୍ତ୍ତବୀର୍ଯ୍ୟାର୍ଜୁନ
ଅଠରଗୋଟା ଦ୍ୱୀପର ଅଟଇ ରାଜନ ।
ତାର ସମ ବଳବନ୍ତ ନାହିଁ ତିନିପୁରେ
ପରଶୁରାମ ମାଇଲେ ତାହାକୁ ସମରେ ।
କାର୍ତ୍ତବୀର୍ଯ୍ୟ ନୃପତିର ପାଞ୍ଚଗୋଟି ସୁତ
ପିତାତୁଲ୍ୟ ଅଟନ୍ତି ସେ ମହାବଳବନ୍ତ ।
ରୂପରେ ଗୁଣରେ ତାଙ୍କୁ ନାହିଁ କେହି ସରି
ଅସ୍ତ୍ରଶସ୍ତ୍ର ବିଦ୍ୟାରେ ସେ ଅଟେ ପିତାପରି ।
ମହାରଥୀ ମହାବୀର ବୋଲନ୍ତି ଜଗତେ
ଧାର୍ମିକ ବୋଲି ତାହାଙ୍କୁ କହନ୍ତି ସମସ୍ତେ ।
ତାହାଙ୍କର ନାମ ଏବେ ଶୁଣ ସୁରଦ୍ୱିଜ
ଶୁରସେନ ଶୁରକୃଷ୍ଣ ଧୃଷ୍ଟ ଜୟଧ୍ୱଜ ।
ମାହୀଷ୍ମତୀ ପୁରେ ହେଲା ବଡ଼ଭାଇ ରାଜା
ଚାରିଭାଇ କରୁଥାନ୍ତି ତାର ପାଦପୂଜା ।
ପୃଥିବୀ ରାଜାଙ୍କୁ ଆଣି ଖଟାଇଲେ ପାଦେ
ରାଜ୍ୟେ ରାଜ୍ୟେ ହେଲା ତାଙ୍କ ଯଶ କୀର୍ତ୍ତିଉଦେ ।
ଶୂର ସୁରସେନ କୃଷ୍ଣ କୃଷ୍ଣ ଭାଇ ଚାରି
ଶଙ୍କର ତୋଷିଲେ ହୋଇ ଫଳ ମୂଳାହାରୀ ।
ମହାଦେବ ବରେ ହେଲେ ମହାବଳବନ୍ତ
ତାହାଙ୍କ ଶରୀର ବଜ୍ର କଲେ ଉମାକାନ୍ତ ।
ସାନଭାଇ ଜୟଧ୍ୱଜ ନ ସେବିଲା ହର
ନିରନ୍ତର ଭଜଇ ସେ ଶ୍ରୀବିଷ୍ଣୁ ପୟର ।
ଦିନେ ଚାରିଭାଇ ବସି ବୋଇଲେରେ ଭାଇ
ଧର୍ମ ଛାଡ଼ି ଅଧର୍ମରେ ଯାଉଛ କିମ୍ପାଇ ।
ଆମ୍ଭ ପିତା ବଳବନ୍ତ ମହାଦେବ ବରେ
ଯଶ କୀରତି ଥୋଇ ସେ ଗଲେ ସ୍ୱର୍ଗପୁରେ ।
ସମ୍ମୁଖ ସଂଗ୍ରାମେ ଦେଲେ ଆପଣା ଜୀବନ
ନ ଭୁଞ୍ଜନ୍ତି ନ କଲେ ସେ ଶିବ ଦରଶନ ।
ତୁହି ସେ ଶିବଙ୍କୁ ଛାଡ଼ି ଭଜୁଅଛୁ ହରି
ଏ ଅଧର୍ମ ମାର୍ଗେ ମନ ଦେଉଛୁ କିପରି ।
ଭାଇମାନଙ୍କର କଥା ଶୁଣି ଜୟଧ୍ୱଜ
ବୋଇଲା ମୋହର ପ୍ରଭୁ ଶ୍ରୀ ଗରୁଡ଼ ଧ୍ୱଜ ।
ଜଗତଜନ ପାଳନ କରନ୍ତି ସେ ହରି
ପୃଥିବୀ ରାଜା ତାହାର ଅଂଶେ ଅବତରି ।
ଏଣୁ ନୃପତି ଏ ନିତ୍ୟ ଶ୍ରୀ ବିଷ୍ଣୁପୂଜିବେ
ବିଷ୍ଣୁଙ୍କୁ ଛାଡ଼ି ଅପର ଦେବ ନ ଭଜିବେ ।
ଏ ଜଗତ ସୃଷ୍ଟିସ୍ଥିତି ପ୍ରଳୟ ନିମନ୍ତେ
ତିନିରୂପେ ବିରାଜନ୍ତି ଶ୍ରୀ ଜଗତନାଥେ ।
ରଜୋଗୁଣ ଧରି ହେଲେ ବ୍ରହ୍ମାରୂପେ ଜାତ
ତମୋଗୁଣ ବହି ପୁଣି ହେଲେ ଉମାକାନ୍ତ ।
ଶ୍ରୀ ବିଷ୍ଣୁରୂପ ଧଇଲେ ସତ୍ୱଗୁଣ ବହି
ନିରତେ ପାଳୁଅଛନ୍ତି ଚରାଚର ମହୀ ।
ବ୍ରହ୍ମା ସୃଷ୍ଟି କରେ ଶିବ କରନ୍ତି ସଂହାର
ତାହାର ଏ କଥା ଶୁଣି ଚାରି ସହୋଦର ।

ବୋଇଲେ ମୋକ୍ଷ ବାଞ୍ଛନ୍ତି ଯେବଣ ପୁରୁଷେ
ରୁଦ୍ର ସେବା କରି ମୋହହେବ ଅବଶେଷେ ।
ଯେଣୁ ଏ ଜଗତ ଯାକ ଅଟେ ଶିବମୟ
କଳପ ଅନ୍ତେ କରଇ ପୁଣି ସବୁ କ୍ଷୟ ।
ତାର ତମୋମୟୀ ମାୟା ଅଟେ ଅଗୋଚର
ନିରତେ କରିବ ଏଣୁ ହରସେବା ନର ।
ଏହା ଶୁଣି ଜୟଧ୍ୱଜ କିଛିକ୍ଷଣ ଭାଳି
ବୋଇଲେ ଜଗତପତି ପ୍ରଭୁ ବନମାଳୀ ।
ମତରେ ମୁକତି ଅଛି କହନ୍ତି ସମସ୍ତେ
ବେଦଶାସ୍ତ୍ର ଭାଗବତ ପୁରାଣେ ଭାରତେ ।
ରାମ ଗୋବିନ୍ଦ ମୁରାରୀ ଶ୍ରୀକୃଷ୍ଣ ଶ୍ରୀହରି
ଭାବ ସମୁଦ୍ରରୁ ସିନା ପାରନ୍ତି ଉଦ୍ଧାରି ।
ଏହାଶୁଣି ବୋଇଲେ ସେ ଚାରି ସହୋଦର
ଯେହୁ ସାତ୍ତ୍ୱିକ ଭାବରେ ପୂଜିବ ଶଙ୍କର ।
ଦେବଦେବ ମହାଦେବ ଦେବ ତାକୁ ମୋକ୍ଷ
ହସି ହସି ଜୟଧ୍ୱଜ ଦେଲା ଉପଲକ୍ଷ ।
ଦେବତା ହରିଙ୍କ ଭଜି ହୋଇଲେ ଅମର
ଦାନବେ ଶିବଙ୍କୁ ଭଜି ଯାନ୍ତି ଯମଘର ।
ହରି ଭକତ ଯେତେକ ଲଭନ୍ତି ମୁକତି
ଯେତେକ ଶିବ ଭକତ ଜନମନ୍ତି କ୍ଷିତି ।
ଋଷି ମୁନିମାନେ ଯାହା କହିଛନ୍ତି ଶୁଣ
ଆପଣାର ଧର୍ମ ଏକା ମୁକତି କାରଣ ।
ପର ଧର୍ମ କଲେ ହୁଏ ଏ ଜୀବ ଅମୋକ୍ଷ
ଏଣୁ ରାଜାଏ ଭଜିବେ ଶ୍ୱେତପଦ୍ମ ଅକ୍ଷ ।
ଏହା ଜାଣି ଶୁଣି ମୁହିଁ ଭଜଇ ମୁରାରି
ତୁମ୍ଭେ କହୁଛ ଅଧର୍ମ କଲି ମୁଁ କିପରି ।
ମହା ବୁଦ୍ଧିମନ୍ତ କୃଷ୍ଣ ବୋଇଲେକ ହସି
ଆମ୍ଭର ପିତା ଅର୍ଜୁନ ହଇହୟ ବଂଶୀ ।
ଯେଉଁ ଧର୍ମ ବାଟ ଯାଇ ଅଛନ୍ତି ଦେଖାଇ
ଆମ୍ଭର ସ୍ୱଧର୍ମ ସେହି ସିନା ଆରେ ଭାଇ ।
ଅପଥେ ଯାଉଛୁ ତୁହି ସେ ପଥକୁ ଛାଡ଼ି
କଥା ନ ମାନି ଅମଡ଼ା ଯାଉଅଛୁ ମାଡ଼ି ।
ଆମ୍ଭ ପିତା କାର୍ତ୍ତବୀର୍ଯ୍ୟ ସେହି ତ୍ରିପୁରାରୀ
ଅଷ୍ଟାଦଶ ଦ୍ୱୀପରେ ଯେ ହେଲା ଅଧିକାରୀ ।
ରାବଣ ପରା ବୀରକୁ ପକାଇଲା ବାଜୀ
କର୍ମ ଅବଳକୁ ହେଲା ବିପ୍ରରେ ବିବାଦୀ ।

ଏକୋଇଶ ବାର ସେହି ବିପ୍ର ଗଲା ହରି
ମହା ପ୍ରତାପୀ ହୋଇଲା ରୁଦ୍ର ସେବା କରି ।
କୃପାକରି ପାଶୁପତ ଅସ୍ତ୍ର ଦେଲେ ହର
ତହିଁରେ କାଟିଲା ଆମ୍ଭ ପିତାଙ୍କର ଶିର ।
ବୋଇଲା ହେ ଜୟଧ୍ୱଜ ହର ବର ପାଇ
ମାରି ନ ପାରିଲା କେଭେ ସେ ବିପ୍ର ଗୋସାଇଁ ।
ବିଷ୍ଣୁ କଳା ପାଇବାରୁ ହେଲା ବଳବନ୍ତ
ବଇଷ୍ଣବ ଧନୁ ତାକୁ ଦେଲେ ଲକ୍ଷ୍ମୀକାନ୍ତ ।
ତେଣୁ ସେ ଆମ୍ଭ ପିତାକୁ ଜିଣିଲା ସମରେ
ବିଷ୍ଣୁ ହସ୍ତେ ମରି ଗଲା ବଇକୁଣ୍ଠ ପୁରେ ।
ଏମନ୍ତେ ଯେ ପାଞ୍ଚ ଭାଇ ବସିକଲେ କଳି
ବୋଲଇ ସେ ଶୂରସେନ କିଛିକ୍ଷଣ ଭାଳି ।
ଋଷି ମୁନିଙ୍କି ଅଣାଇଁ ସଭାଏ ଥାପିବା
ଯେ ଯାହା କହିବେ ଆମ୍ଭେ ତାହାହିଁ କରିବା ।
ସମସ୍ତଙ୍କ ମନକୁ ଯେ ଅଇଲା ସେ କଥା
ଆସ୍ଥାନ ସ୍ଥାପିଲେ ତହିଁ ପଞ୍ଚ ମହାରଥା ।
ଦୂତ ବରଗି ଡକାଇ ଆଣିଲେକ ବରି
ଅଇଲେକ ଗୋଟି ଗୋଟି ହୋଇ ତପଚାରୀ ।
ବଶିଷ୍ଠ ଯେ ମାରକଣ୍ଡ ଋଷି ପରାଶର
ଅସିତ ଦେବଳ ଦକ୍ଷ କ୍ରତୁ ପରାଶର ।
କଶ୍ୟପ ଶକତି ମୁନି ଅଗସ୍ତି ଗୌତମ
ସତ୍ୟବତୀ ସୁତ ବ୍ୟାସ ଋଷିଙ୍କ ଉତ୍ତମ ।
ସମସ୍ତେ ଶିଷ୍ୟ ସହିତେ ମିଳିଲେ ସଭାରେ
ପାଞ୍ଚଭାଇ ଅର୍ଘ୍ୟ ନେଇ ଦେଲେ ତାଙ୍କ ଶିରେ ।
ଧୂପ ଦୀପ ଗନ୍ଧ ପୁଷ୍ପେ ପୂଜିଲେ ପୟର
ବୋଇଲେ ସଭାରେ ଶୂରସେନ ଯୋଡ଼ିକର ।
ଅଷ୍ଟାଦଶ ପୁରାଣ ଯେ ନବ ବ୍ୟାକରଣ
ରାମାୟଣ ଭାରତହିଁ କରିଛ ଆପଣ ।
ଚାରିବେଦ ଜାଣ ଶାଖା ସହିତରେ ପୁଣି
ଜଣେ ଜଣେ ଅଟ ତୁମ୍ଭେ ବ୍ରହ୍ମା ତୁଲ୍ୟ ମୁନି ।
ଆମ୍ଭ ପାଞ୍ଚ ଭାଇଙ୍କର ଭାଙ୍ଗିଦିଅ କଳି
ଆମ୍ଭେ ଚାରିଭାଇ କେହୁ ପୂଜିବା ତ୍ରିଶୂଳୀ ।
ଏକା ଜୟଧ୍ୱଜ କହେ ହରି ସେବା ମୂଳ
ଆନ ଦେବତା ପୂଜିଲେ ନାହିଁ କିଛି ଫଳ ।
ସକଳ ମୁନି କହିଲେ ସଭାରେ ବିଚାରି
ବ୍ରହ୍ମାଙ୍କ କଥା ଅନ୍ୟଥା କେହୁ କରିପାରି ।

ରାଜାମାନଙ୍କର ଇଷ୍ଟ ବିଷ୍ଣୁ ପୁରନ୍ଦର
ବ୍ରହ୍ମା ରୁଦ୍ର ସୂର୍ଯ୍ୟ ଅଗ୍ନି ଇଷ୍ଟ ଦ୍ୱିଜବର ।
ଦେବତାମାନଙ୍କ ଇଷ୍ଟ ନାରାୟଣ ଦେବ
ଦାନବ ମାନଙ୍କ ଇଷ୍ଟ ଦେବ ମହାଦେବ ।
ଯକ୍ଷ ଗନ୍ଧର୍ବଙ୍କ ଇଷ୍ଟ ଚନ୍ଦ୍ରମା ଅଟଇ
ବ୍ରହ୍ମା ଯାହା କହିଛନ୍ତି ଶୁଣ ମନଦେଇ ।
ଏ ସଭାରେ ବସିଛନ୍ତି ଋଷି ମୁନିଯେତେ
ସେମାନେ ବିଚାରି ଯାହା କହିଛନ୍ତି ମୋତେ ।
କହୁଅଛି ଶୁଣ ତାହା କହିଲେ ବଶିଷ୍ଠ
ବିଦ୍ୟାଧର ଗଣଙ୍କର ସରସ୍ୱତୀ ଇଷ୍ଟ ।
ସିଦ୍ଧଗଣଙ୍କର ଇଷ୍ଟ ଦେବତା ଶ୍ରୀହରି
ରାକ୍ଷସଙ୍କ ଇଷ୍ଟ ରୁଦ୍ର ଜାଣ ଦଣ୍ଡଧାରୀ ।
କିନ୍ନର ମାନଙ୍କ ଇଷ୍ଟ ଦେବତା ପାର୍ବତୀ
ଋଷିଙ୍କର ଇଷ୍ଟଦେବ ବ୍ରହ୍ମା ପଶୁପତି ।
ଉମାଦେବୀ ଅଟନ୍ତି ଯେ ସ୍ତିରୀଙ୍କର ଇଷ୍ଟ
ଶୁଣନ୍ତି ନୃପତିମାନେ କହନ୍ତି ବଶିଷ୍ଠ ।
ଗୃହୀମାନଙ୍କର ଇଷ୍ଟ ସୂର୍ଯ୍ୟ ହରିହର
ବ୍ରହ୍ମାହିଁ ଇଷ୍ଟଦେବତା ବ୍ରହ୍ମଚାରୀଙ୍କର ।
ସୂର୍ଯ୍ୟଦେବତା କେବଳ ଇଷ୍ଟ ସନ୍ନ୍ୟାସୀର
ଯତିମାନଙ୍କର ଇଷ୍ଟ ଦେବ ମହେଶ୍ୱର ।
ଭୂତମାନଙ୍କର ଇଷ୍ଟ ରୁଦ୍ର ଏକା ଜାଣ
କୁଷ୍ମାଣ୍ଡଗଣର ଇଷ୍ଟ ବିନାୟକଗଣ ।
ସବୁ ଲୋକମାନଙ୍କର ଇଷ୍ଟ ଗଣପତି
ମନର ମୂଳେ ଜଗତ ଜାଣ ନରପତି ।
ଯାହାର ମନ ଯହିଁକି ଗଲା ସେ ତା ଇଷ୍ଟ
ସବୁ ଦେବତାଙ୍କ ମଧ୍ୟେ ନାରାୟଣ ଶ୍ରେଷ୍ଠ ।
ରାଜାମାନେ ମୁନିଙ୍କର ମୁଖୁଁ ଏହା ଶୁଣି
ଗଉରବ କରି ତାଙ୍କୁ ଦେଲେକ ମେଲାଣି ।
ଆନନ୍ଦରେ ଗଲେ ସର୍ବେ ଗଉରବ ପାଇ
ଯେ ଯାହା ପୁରକୁ ଉଠିଗଲେ ନରସାଇଁ ।
ଶୂର ଶୂରସେନା କୃଷ୍ଣ ଧୃଷ୍ଟ ଏହି ଚାରି
କଇଳାସ ପର୍ବତରେ ହର ସେବା କରି ।
ମହାବଳବନ୍ତ ହେଲେ ମହେଶ୍ୱର ବରେ
ଚାରିଦିଗ ସାଧି କଲେ ସେହି ଚାରିବୀରେ ।
ଚାରିଦିଗେ ଚାରିଭାଇ ହୋଇଲେ ନୃପତି
ମହା ପ୍ରତାପୀ ହୋଇଣ ପାଳିଲେ ସେ କ୍ଷିତି ।

ଜୟଧ୍ୱଜ ଅଟଇ ଯେ ଶ୍ରୀବିଷ୍ଣୁ ଭକତ
ନିରତେ ଶ୍ରୀହରି ପାଦପଦ୍ମେ ଥାଇ ଚିତ୍ତ ।
ନାରାୟଣ ପ୍ରତିମାକୁ ରଖିଥାଇ ଘରେ
ଗନ୍ଧ ପୁଷ୍ପଧୂପ ଦୀପ ଦେଇ ପୂଜାକରେ ।
ଦିନେ ଭକତବାନ୍ଧବ ପ୍ରଭୁ ଭାବଗ୍ରାହୀ
ଲକ୍ଷ୍ମୀଙ୍କି ଘେନି ଗରୁଡ଼ ପୃଷ୍ଠରେ ଆରୋହୀ ।
ଶଙ୍ଖ ଚକ୍ର ଗଦା ଧରି ତହିଁ କଲେ ବିଜେ
ଦେଖିଲେ ବିଷ୍ଣୁ ପ୍ରତିମା ଜୟଧ୍ୱଜ ପୂଜେ ।
ପାଞ୍ଚ ମନ ପ୍ରକୃତିକି ରଖି ଏକଠାବେ
ଗନ୍ଧ ପୁଷ୍ପ ଧୂପ ଦୀପ ଦେଇ ଶ୍ରଦ୍ଧାଭାବେ ।
କରଦୁଇ ଯୋଡ଼ି କରେ ଶ୍ରୀବିଷ୍ଣୁଙ୍କୁ ସ୍ତୁତି
କାହିଁ ଅଛ ହେ ମାଧବ କମଳାର ପତି ।
କାହିଁ ପାଇଁ ମୋତେ କଥା ନ କହୁଛ ହରି
ପୁରାଣ କଥା କି ମିଛ ଆହେ ଚକ୍ରଧାରୀ ।
ପ୍ରହ୍ଲାଦ କଥାରେ ଖମ୍ବୁ ହୋଇ ଅବତାର
ମହା ପ୍ରତାପୀ ଦଇତ ତାହାର ପିଅର ।
ତିନି ଭୁବନ କଣ୍ଟକ ବଳବନ୍ତ ଅତି
ମେରୁଗିରି ତୁଲ୍ୟ ଯାର ଅଟଇ ମୂରତି ।
ନଖେ ବିଦାରି ଧଇଲୁ ତାହାକୁ ତୁ ନଖେ
ପୁଷ୍ପପ୍ରାୟ ବିରାଜିଲା ଦେଖି ଚତୁର୍ମୁଖେ ।
ବେଦବର ତୋତେ ସ୍ତୁତି କଲା କରଯୋଡ଼ି
ପ୍ରହ୍ଲାଦ ଅସୁର ତୋର ପାଦତଳେ ପଡ଼ି ।
କହିବାରୁ ଶାନ୍ତମୂର୍ତ୍ତି ହୋଇଲୁ ତୁ ପୁଣ
ବିଶ୍ୱବ୍ୟାପି ବୋଲାଇଲୁ ପ୍ରଭୁ ନାରାୟଣ ।
ତୁ ସ୍ୱାମୀ କାଷ୍ଠ ପାଷାଣେ ଥାଉ ବୋଲି ତୋତେ
ସର୍ବଜ୍ଞ ବୋଲି ବୋଲନ୍ତି ଜଗତେ ସମସ୍ତେ ।
ଏମନ୍ତେ ବହୁତ ସ୍ତୁତି କଲେ ଜୟଧ୍ୱଜ
ଭକତ ଭାବରେ ମଜ୍ଜି ପ୍ରଭୁ ଦେବରାଜ ।
ଦରଶନ ଦେଲେ ତହିଁ ନିଜରୂପ ଧରି
ଦେବାର୍ଚ୍ଚନ ମନ୍ଦିରକୁ ଜ୍ୟୋତିରେ ବିସ୍ତାରି ।
କଟୀତଟେ ପୀତପଟ ଦିଶେ ଜକ ଜକ
ବକ୍ଷସ୍ଥଳେ ଶୋଭାପାଏ ଶ୍ରୀବତ୍ସ ପଦକ ।
କଉସ୍ତୁଭମଣି ଗୋଟି ଦିକି ଦିକି ଜଳେ
ଲକ୍ଷ୍ମୀଦେବୀ ବିରାଜନ୍ତି ଶ୍ରୀପଦକମଳେ ।
ଈଷତ୍ ହାସରେ ଶୋଭା ବଦନ ମଣ୍ଡଳ
ତହିଁରେ ବିରାଜୁ ଅଛି ନୟନ କମଳ ।

ରଙ୍ଗିମା ଅଧର ବିମ୍ବ ଫଳକୁ ନିନ୍ଦଇ
ଶଙ୍ଖ ଚକ୍ର ଗଦା ପଦ୍ମ କରେ ବିରାଜଇ ।
ଦେଖି ସେ ଅପୂର୍ବ ରୂପ ରାଜା ଜୟଧ୍ୱଜ
ମନେ ବିଚାରଇ ଏତ ଶ୍ରୀ ଗରୁଡ଼ ଧ୍ୱଜ ।
ଏମନ୍ତ ଭାଳି ଭୂମିରେ ଲୋଟାଇଲା ଶିର
ଉଠି ବୋଇଲେ ହେ ପ୍ରଭୁ କରୁଣା ସାଗର ।
ଦୀନଜନ ବାନ୍ଧବ ହେ ଶ୍ରୀବତ୍ସଲାଞ୍ଛନ
ଏମନ୍ତବହୁତ ସ୍ତୁତି କରନ୍ତେ ରାଜନ ।
ଶ୍ରୀହରି ବୋଇଲେ ବାବୁ କି ଇଚ୍ଛା ତୋହର
ପରମ ଭକତ ତୁହି ଅଟୁରେ ମୋହର ।
ଏହା କହିଣ ଆଉଁସି ଦେଲେ ଆପେ ଆସି
ଲକ୍ଷ୍ମୀ ଘେନି ସିଂହାସନେ ବିଜେ ବ୍ରହ୍ମରାଶି ।
ବୋଇଲେରେ ଜୟଧ୍ୱଜ ମାଗି ଘେନବର
କରଯୋଡ଼ି ଶିରେ ଦେଇ ବୋଲେ ନୃପବର ।
ଏହି ବର ଦିଅ ମୋତେ ହେବି ତବ ଦାସ
ଜନ୍ମେ ଜନ୍ମେ ଭଜୁଥିବି ମୁହିଁ ପୀତବାସ ।
ଶ୍ରୀହରି ବୋଇଲେ ତାହା ଦେଲି ବାବୁ ତୋତେ
ଏ ମହୀମଣ୍ଡଳେ ତୁହି ରହି ଦିନାକେତେ ।
ପୁଣି ଜନ୍ମ ହୋଇ ରାଜକୁଳେ ହେବୁ ରାଜା
ଜଗତଜନ କରିବେ ତୋର ପାଦପୂଜା ।
ଏହିରୂପେ ସାତଜନ୍ମ ଗଲେ ହେବୁ ମୋକ୍ଷ
ରହିବୁ ମୋହର ପୁରେ ହୋଇ ଭକ୍ତମୁଖ୍ୟ
ଯେତେ ଦିନଯାଏ ବାବୁ ଥିବୁ ଏହି ଦେହେ
ଲକ୍ଷ୍ମୀଦେବୀ ସର୍ବଦା ଯେ ଥିବେ ତୋର ଗୃହେ ।
ଆମ୍ଭ ବୋଲେ ବୋଲାଇବୁ ତୁହି ମହାବୀର
ହୋଇବୁ ତୁ ଏ ପୃଥିବୀ ମଧ୍ୟରେ ଈଶ୍ୱର ।
ଦେବ ଦାନବ ମାନବ ଗନ୍ଧର୍ବ କିନ୍ନରେ
ଜିଣି ନ ପାରିବେ ବାବୁ ତୋତେ ସଂଗ୍ରାମରେ ।
ନିମିଷକେ ତିନିପୁରେ ଯିବ ତୋର ରଥ
ନିରୋଧି ନ ପାରିବ କେ ତୋର ରଥ ପଥ ।
ବଜ୍ରହୁଁ କଠିନ ହେବ ତୋହର ଶରୀର
ଅସ୍ତ୍ର ଶସ୍ତ୍ର ନ ଭେଦିବ ଦେହରେ ତୋହର ।
ଦେବ ଅସୁର ଗନ୍ଧର୍ବ ନାଗଙ୍କର ମାୟା
ଛୁଇଁ ନ ପାରିବ ବାବୁ ଏ ତୋହର କାୟା ।
ବ୍ରହ୍ମଅଗ୍ନି ସୂର୍ଯ୍ୟସମ ହେବ ତୋର ବାଣ
ତୋହର ହୃଦୟ ହେବ ଲୁହାଠାରୁ ଟାଣ ।
ଦେବଶର ନାଗପାଶ ଅସୁରଙ୍କ ଶର
ଯମ କାଳପାଶ ବିଷ୍ଣୁ ଚକ୍ର ବ୍ରହ୍ମଶର ।
ପାଶୁପତ ବଜ୍ରଶର ପ୍ରାପ୍ତ ତୋତେ ହେଉ
ଏମନ୍ତ କହି କବଚ ଦେଲେ ମହାବାହୁ ।
ନାରାୟଣ କବଚରେ ହେଲା ମହାବଳୀ
ବର ଦେଇ ଅନ୍ତର୍ଦ୍ଧାନେ ଗଲେ ବନମାଳୀ ।
କହୁଛନ୍ତି କୂର୍ମରୂପୀ ଦେବ ଚକ୍ରଧାରୀ
ଶୁଣୁଛନ୍ତି ସୁର ମୁନିମାନେ ହେତୁକରି ।

.....❋.....

## ପରଶୁରାମର ଯୁଦ୍ଧ ଓ ଶୂରସେନ ପ୍ରଭୃତି ରାଜାଙ୍କର ପରାଜୟ

ଦିନେ ସଭା କଲେ ବସି ଚାରି ସହୋଦର
ଡକାଇ ଆଣି ସେ ଚାରିଦିଗୁ ନୃପବର ।
ଶୂରସେନ ବୋଲେ ଶୁଣ ନରପତିମାନେ
ଧାର୍ମିକ ନ ଥିଲା କେହି ମୋ ପିତା ସମାନେ ।
ବଳବନ୍ତ ପଣେ ତାକୁ ମେରୁ ନୋହେ ସରି
ବିଷ୍ଣୁର ସମାନ ସେହୁ ଅଟେ ଶସ୍ତ୍ରଧାରୀ ।
ବାସବ ତୁଲ୍ୟ ସେ ପୁଣି ଅଟେ ମହାବୀର
ଧନବନ୍ତପଣେ ସମ ନୋହିବ କୁବେର ।
ତରୁତୁଲ୍ୟ ଅଟଇ ସେ ପର ଉପକାରୀ
ସମୁଦ୍ର ସମାନ ଥାଟ ଥିଲାହିଁ ତାହାରି ।
ଯମର ପରାୟ ତାର ଶତ୍ରୁଠାରେ ଧାଡ଼ି
ଶତ୍ରୁ ଶରଣ ପଶିଲେ ଦିଏ ତାକୁ ଛାଡ଼ି ।
ସଭା ଯାହାର ସୁଧର୍ମା ସମାନ ଅଟଇ
ସୂର୍ଯ୍ୟ ତୁଲ୍ୟ ଯା ପ୍ରତାପ ନ ପାରନ୍ତି ସହି ।
ଦାନୀପଣେ ଶିବିରାଜା ନୋହିବ ସମାନ
ବଳିରାଜା ତୁଲ୍ୟ ସେହି ଯଜ୍ଞକାରୀ ଜନ ।
ପୃଥିବୀ ତୁଲ୍ୟ ଭୃତ୍ୟର ଦୋଷକୁ ସହଇ
ସୁରଗୁରୁ ତୁଲ୍ୟ ସେହୁ ପଣ୍ଡିତ ଅଟଇ ।
ଶୁକ୍ରପ୍ରାୟ ନୀତିଶାସ୍ତ୍ରେ ଅଟଇ ପଣ୍ଡିତ
ମୟଦୈତ୍ୟ ତୁଲ୍ୟ ମାୟା ଜାଣଇ ବହୁତ ।
ବୁଦ୍ଧିରେ ସେ ବ୍ରହ୍ମା ତୁଲ୍ୟ ବିଚାରକ ଜଣେ
ସଂଗ୍ରାମରେ ତିନିପୁରେ କାହାକୁ ନ ଗଣେ ।
ଟାଣପଣେ ଭାଙ୍ଗିଯିବ ନ ଯିବ ସେ ନଇଁ
ଅଷ୍ଟାଦଶ ଦ୍ୱୀପରେ ସେ ଥିଲା ନରସାଇଁ ।

ସାମାନ୍ୟ ବ୍ରାହ୍ମଣ ଟୋକା ହାତେ ଦେଲା ପ୍ରାଣ
ଆମ୍ଭର ପିତୃ ବଇରୀ ଅଟେ ସେ ବ୍ରାହ୍ମଣ ।
ପିତୃ ବଇରୀ କି ସାଧି ନ ପାରେ ଯେ ପୁତ୍ର
ତାହାର ସେ ଜନ୍ମଗୋଟା ଜାଣ ଅପବିତ୍ର ।
ଅନ୍ତେ ସେ ନରକ ଭୋଗ କରେ ପୁଣି ଯାଇଁ
କୁପୁତ୍ର ମଧ୍ୟେ ଗଣନା ସେ ପୁଣି ହୁଅଇ ।
ଏଣୁକରି ସଭାରେ ମୁଁ କହୁଛି ତୁମ୍ଭଙ୍କୁ
ତୁମ୍ଭେମାନେ ସାହାହେବ ସଂଗ୍ରାମେ ଆମ୍ଭଙ୍କୁ ।
ଶୂରସେନ କଥା ଶୁଣି ସଭାର ନୃପତି
ଧନ୍ୟ ଧନ୍ୟ ଶୂରସେନ ବୋଲି ପ୍ରଶଂସନ୍ତି ।
ମଗଧ ଦେଶର ରାଜା ନାମ ବୃହଧ୍ୱଜ
ସେ ବୋଇଲା ତୁମ୍ଭ ପିତା ଥିଲେ ମହାରାଜ ।
ଯମଦଗ୍ନି ଋଷି ଘରେ ହୋଇଲେ ଅତିଥି
ଏକାକେ ନୁହଇ ସଙ୍ଗେ ଅଛି ଘୋଡ଼ା ହାତୀ ।
ଅରଣ୍ୟରେ ଫଳମୂଳେ ରହି ରାତିଯାକ
ଝଡ଼ ବରଷାରେ ଥରି ଥରି ରାଜାଲୋକ ।
ଋଷି ମଢ଼ିଆରେ ରହି କ୍ଷୁଧା ତୃଷା ହରି
ବିପ୍ରର ଧେନୁକୁ ବଳେ ଆଣିଲେକ ଧରି ।
ସେ କାନ୍ଦି କହିଲେ ଯେତେ ନ ଶୁଣିଲେ କାନେ
ଧେନୁ ବିହୁନେ ସେ ଋଷି ବଞ୍ଚନ୍ତା କେସନେ ।
ଏଥିଯୋଗୁଁ ଋଷି କଲା ତା ସଙ୍ଗେ ସମର
ଚୋରକୁ ଯେ ଶାସ୍ତି ଆଜି ଶାସ୍ତ୍ରର ବେଭାର ।
ତଥାପି ନ ଦେଲା ଗାଈ ଲୋଭେ ତୋର ପିତା
ଧର୍ମକୁ ଛାଡ଼ି ଅଧର୍ମ କଲା ବଳବନ୍ତା ।
ସାତବାର ହାରି ତହୁଁ ଅଇଲା ପଳାଇ
ବ୍ରହ୍ମ ଅସ୍ତ୍ର କଲା ଧର୍ମ ଛାଡ଼ି ନରସାଇଁ ।
କେଡ଼େ ବଡ଼ ଋଷି ଗୋଟା ପକାଇଲା ମାରି
ତେଣୁ ତା ପୁତ୍ର ହସ୍ତରେ ମଲା ଦଣ୍ଡଧାରୀ ।
ଶୂରସେନ ବୋଇଲା ଯେ କହିଲ ଅନୀତି
ଗାଈରେ କି ଅଧିକାରୀ ନୁହଇ ନୃପତି ।
ଧନଧାନ୍ୟ ଗୋପଲକ୍ଷ୍ମୀ ରାଜ୍ୟେଅଛି ଯେତେ
ସେ ସମସ୍ତ ନୃପତିର ଜାଣ ଶାସ୍ତ୍ରମତେ ।
ମୋ ପିତା ମାଗିଲା ଯେବେ ଋଷି କି ସେ ଗାଈ
ନ ଦେଇ ସେ ଋଷି କିମ୍ପା ଦ୍ୱନ୍ଦ୍ୱକଲା ଯାଇଁ ।
ବିପ୍ର ହୋଇ ଧର୍ମ ହୁଡ଼ି ଅଧର୍ମକୁ ଗଲା
କରେ ଧନୁଶର ଧରି ଯୁଦ୍ଧ ଯାଇଁ କଲା ।

ଅଧର୍ମ ବିପ୍ର ଅଟଇ ଚାଣ୍ଡାଳ ସମାନ
ନୃପତିର ଧର୍ମ ତାକୁ କରିବ ନିଧନ ।
ଯେଣେ ସାଧ୍ୟ ହେବ ଦୁଷ୍ଟଜନକୁ ସାଧିବ
ଧର୍ମ ଅଧର୍ମ ତହିଁରେ କିଛି ନ ଭାଳିବ ।
ଯୁଦ୍ଧେ ଗୋ ବ୍ରାହ୍ମଣ ଶିରଚ୍ଛେଦ ନାହିଁ ଦୋଷ
କ୍ଷତ୍ରିୟର ଧର୍ମ ଏହା ଜାଣ ନରଈଶ ।
ଦୁଷ୍ଟଜନଙ୍କୁ ସଂହାରି ସନ୍ଥକୁ ପାଳିବ
ଦୁଷ୍ଟ ବିପ୍ରକୁ ଆପଣା ଦେଶେ ନ ରଖିବ ।
ରାଜାର ଯୋଗ୍ୟ ହୋଇବ ରାଜ୍ୟେ ଯେଉଁନାରୀ
ତାହାକୁ ବଳେ ଆଣଇ ଯେବେ ଦଣ୍ଡଧାରୀ ।
ତହିଁରେ ତାହାର ଦୋଷ ନ ହୁଅଇ ଜାଣ
ଋଷି ମୁନି କହିଛନ୍ତି ପୁରାଣେ ବଖାଣ ।
ଦୁହାଁଳିଆ ଗାଈ ରାଜ୍ୟେ ପାଇଲେ ରାଜନ
ଯାହାର ତାହାର ହେଉ ଅବା ସେ ଗୋଧନ ।
ବିପ୍ର କ୍ଷତ୍ରୀ ବୈଶ୍ୟ କିଛି ବାରଣ ନ କରି
କଳେ ବଳେ କଉଶଳେ ଆଣିପାରେ ହରି ।
ଯାହାର ଘରେ ବହୁତ ଥିବ ପୁଣି ଧନ
ସେ ଧନକୁ ବଳେ ଆଣି ପାରଇ ରାଜନ ।
ଏହି ରାଜନୀତି କଥା ନ ଛାଡ଼ିଲା ପିତା
ତହିଁରେ ତାକୁ ନ ଲାଗେ ଦୋଷ ବ୍ରହ୍ମହତ୍ୟା ।
କର୍ମ ଅବଳକୁ ସିନା ଏ କଥା ଘଟିଲା
ବ୍ରାହ୍ମଣ ଟୋକାଟା ଆସି ତା ମୁଣ୍ଡ କାଟିଲା ।
ସେ ଟୋକା ଖଣ୍ଡକ ପୁଣି ଏଡ଼େକ ପ୍ରଚଣ୍ଡ
ଯହିଁ ଦେଖିଲା କ୍ଷତ୍ରିୟ କାଟିଲା ତା ମୁଣ୍ଡ ।
ଭ୍ରୂଣ ହତ୍ୟା ଶିଶୁ ହତ୍ୟା ପାପକୁ ନ ଡରି
ଗର୍ଭେ ଥିବା ବାଳକକୁ ପକାଇଲା ମାରି ।
ଗର୍ଭିଣୀ ନାରୀ ମାରିଛି ପୁଣି ସେ ଯେତେକ
କ୍ଷତ୍ରୀ କୁଳର ହୋଇଛି ସେ ବିପ୍ର ଅନ୍ତକ ।
ବାଳବୃଦ୍ଧ ଯୁବା ଶିଶୁ ବିଚାରହିଁ ନାହିଁ
ମାରିଲା ଧରି ଯାହାକୁ ପାଇଲା ସେ ଯହିଁ ।
ବାରେ ନୁହେଁ ଏକୋଇଶ ବାର ଏହିପରି
ପୃଥ୍ୱୀଯାକ ଖୋଜି ଖୋଜି ସେ ବିପ୍ର ସଂହାରି ।
ଗର୍ଭିଣୀ ନାରୀ ଯେ ସବୁ ଥିଲେ ଅନ୍ତଃପୁରେ
ସେ ଯାଇଁ ଡରେ ଲୁଚିଲେ ବିପ୍ରଙ୍କର ଘରେ ।
ଏଡ଼େ ଅବିଚାର କଥା କେ କରିଛି କାହିଁ
କ୍ଷତ୍ରିୟକୁଳେ କଳଙ୍କ ପୋଡ଼ି [illegible] ।

ସେ ବିପ୍ରକୁ ଯେବେ ଶାସ୍ତି ଦେଇ ନ ପାରିବ
ଆମ୍ଭେ ଆଉ ଧନୁଶର କିମ୍ପାଇଁ ବହିବା ।
ଶୂରସେନ କଥା ଶୁଣି ନରପତିଗଣ
ବୋଇଲେ ତୁ ଧନ୍ୟ ଧନ୍ୟ ଶୂରସେନରାଣ ।
ଏକାଠି ନ ହେବା ହେତୁ ପାଉଥାଏଁ ଶାସ୍ତି
ବ୍ରାହ୍ମଣ ଟୋକାଟା ତାର କେତେ ଅବା ଛାତି ।
ଆମ୍ଭ ବଳ କଳ ଯାକ କଳିବାରୁ ସିନା
ଘରେ ଘରେ ପଶି କରେ ହାଡ଼ ଗୋଡ଼ଚୂନା ।
ଏମନ୍ତ ବିଚାରି ସବୁ ରାଜା ହେଲେ ଏକ
ରଥ ଗଜ ଅଶ୍ୱ ସଙ୍ଗେ ଅଛନ୍ତି ପାଇକ ।
ଚୋଖା ଚୋଖା ତୁରଙ୍ଗମସାଜି ପଟୁଆରେ
ଆଗଭର ହେଲେ ଆସି କୁନ୍ତ ଘେନିକରେ ।
ରଥ ସାଜି ସାରଥିଏ ରଥ ଦେଲେ ଆଣି
ଧନୁ ଧରିଣ ବସିଲେ ତହିଁ ନୃପମଣି ।
ବାଜିଲା ବିବିଧ ବାଦ୍ୟ କମ୍ପିଲା ଧରଣୀ
ଅଶ୍ୱଙ୍କର ହ୍ରେସାରବ ସିନ୍ଧୁଘୋଷ ଜିଣି ।
ହସ୍ତୀଙ୍କର ଗରଜନ ନିର୍ଘାତ ପରାୟ
ଦେବ କି ଦାନବ ମନେ ଉପୁଜଇ ଲୟ ।
ଯୋଦ୍ଧାମାନେ ଛାଡୁଛନ୍ତି ଘନ ଘନ ରଡ଼ି
କକଡ଼ା ମାସରେ ଯେହ୍ନେ ମେଘ ଘଡ଼ଘଡ଼ି ।
ବୀରବାଦ୍ୟ ଟମକରେ ପୃଥିବୀ ଚମକେ
ସଂଗ୍ରାମରେ ମହାବଳୀ ଜାଣ ଏକୁଁ ଏକେ ।
ବାହାସ୍ଫୋଟ ମାରି ଶୂନ୍ୟେ ମାରୁଛନ୍ତି ଚିରା
ପ୍ରତିଜ୍ଞା କରନ୍ତି ଏକୁଁ ଏକ ମହାବୀରା ।
ଯମଦଗ୍ନି ଆଶ୍ରମରେ ରେଣୁକା ନନ୍ଦନ
ଟମକ ଶୁଣି ଚମକି ପଡ଼ିଲେ ବହନ ।
ଯଷ୍ଟି ପ୍ରହାରିଲେ ଯେହ୍ନେ ଗର୍ଜଇ ପନ୍ନଗ
କ୍ରୋଧେ ତାହାଙ୍କର ବେନି ଚକ୍ଷୁ ହେଲା ରଙ୍ଗ ।
ଥରିଲା ଅଧର ଦୁଇ ନାଚିଲା ଭ୍ରୂଲତା
ମନେ ପଡ଼ିଗଲା ଯମଦଗ୍ନି ମୁନି କଥା ।
ତପ ତେଜି ବଇଷ୍ଣବ ଧନୁକୁ ଧଇଲେ
ହସ୍ତରେ ପରଶୁ ଧରି ବାହାରି ଅଇଲେ ।
ରେରେକାର ଶବଦରେ କମ୍ପଇ ବ୍ରହ୍ମାଣ୍ଡ
ମେରୁ ଗିରି ଶୃଙ୍ଗ କିବା ହେବ ଖଣ୍ଡ ଖଣ୍ଡ ।
ଆକାଶ ଛିଡ଼ି କି ଅବା ପଡ଼ିବ ପାତାଳେ
ଭୂମି କି ରହିବ ଯାଇଁ ଗଗନ ମଣ୍ଡଳେ ।
କୂଳକୁ ଲଙ୍ଘିବ କିବା ସାତସିନ୍ଧୁ ଜଳ
ଧାଆଁନ୍ତେ ତାହାଙ୍କ ମୁଖ ଦିଶେ ବିକଟାଳ ।
ପାଦ ଭାରେ ଦଲ ଦଲ ହୁଅଇ ମେଦିନୀ
ଦେଖି ମହା ଭୟ କଲେ ସ୍ୱର୍ଗେ ସୁରମୁନି ।
ମହୀଷ୍ମତୀପୁରେ ଆସି ହୋଇଲେ ପ୍ରବେଶ
ରୂପ ଦେଖି ରାଜାମାନେ ପାଇ ମହାତ୍ରାସ ।
କେ ବୋଲଇ କାଳଯମ କେ ବୋଲେ ଅନଳ
କେବୋଲେ ଆଦିତ୍ୟ କେହିବୋଲେ ଆଖଣ୍ଡଳ ।
ଭୟେ ଲଣ୍ଡଭଣ୍ଡ ହେଲେ ଭାଙ୍ଗିଗଲା ଟାଣ
ହସ୍ତୁ ଖସି ତଳେ ପଡ଼େ ଧରିଥିବା ବାଣ ।
ସିଂହ ଦେଖି ମୃଗ ଯୂଥ ହୁଅନ୍ତି ଯେସନେ
ବ୍ୟାଘ୍ର ଦେଖି ଛାଗପଲ ଯେହ୍ନେ ଛନ୍ନ ଛନ୍ନ ।
ଶୂରସେନ ବୋଲେ ତୁମ୍ଭେ କାହାକୁ ରେ ଡର
ଏହା କହି ଆଗ ହେଲେ ଚାରି ସହୋଦର ।
ଚକ୍ରବ୍ୟୂହ କରି ରଣ କଲେ ଚାରିଭାଇ
ପରଶୁରାମଙ୍କ ଅଙ୍ଗ ବାଣେ ଦେଲେ ଛାଇ ।
ମହାଦେବ ବରେ ମହାବଳବନ୍ତ ଚାରି
ବେଢ଼ି ଗଲେ ତାହାଙ୍କୁ ଯେ ସାତପୁର କରି ।
ଘେରରେ ପଡ଼ିଲେ ସେହି ଯମଦଗ୍ନି ସୁତ
କେହି ମାରେ ବାଣ କେହି ମାରେ ଧରି କୁନ୍ତ ।
କେ ପରିଘ ଘେନି ପିଟେ କେ ପିଟଇ ଗଦା
ଆନନ୍ଦଭରେ କେ ବୀର ଶୂନ୍ୟେ ମାରେ କୁଦା ।
ବାଣଙ୍କର ଆତଯାତେ ଦିଗ ନ ଦିଶଇ
ମୁଖରାବ ଶବଦରେ ସିନ୍ଧୁ ଉଛୁଳଇ ।
ଧର ଧର ମାର ମାର ନ କର ବିଚାର
ପଳାଇ ନ ଯିବ ଯେହ୍ନେ ଆଚ୍ଛାକରି ଘେର ।
କ୍ଷତ୍ରିକୁଳ ଧୂମକେତୁ ସେ ପରଶୁରାମ
ଯମର ଉପରେ ସେହୁ ଅଟେ କାଳଯମ ।
ପରଶୁ କୁଠାର ଧରି ପକାଇଲା ଛେଦି
ବାନରପଲକୁ ଯେହ୍ନେ ଶ୍ୱାନ ଯାଏ ଖେଦି ।
କାହା ଶିର କାହା କର କାହାର ଚରଣ
କାଟନ୍ତେ କାତର ହେଲେ ନରପତିଗଣ ।
ଲଣ୍ଡଭଣ୍ଡ ହୋଇ ଭୟେ ହେଲେ ଏଣେତେଣେ
କେଡ଼େବଡ଼ ବ୍ୟୂହଗୋଟା ଭାଙ୍ଗିଲା ତକ୍ଷଣେ ।
ଆଗେ ରହି ନ ପାରିଲେ ମହାଭୟ ପାଇ
ବାସଭଗ୍ନ ପକ୍ଷୀ ପ୍ରାୟ ଗଲେକ ପଳାଇ ।

ପଛରେ ଗୋଡ଼ାଇ ଯାଇଁ କ୍ଷତ୍ରିକୁଳ ଷଣ୍ଢ
ଶିର କର ପାଦ କାଟି କଲେ ଖଣ୍ଡ ଖଣ୍ଡ ।
ଦେଖି ଶୂରସେନ ବୋଲେ ରହ ରହ ଭାଇ
ଏହିକ୍ଷଣି ଦେବି ଯମପୁରକୁ ପଠାଇ ।
ସାରଥିକି ବୋଲେ ମୋର ରଥ ବାହାବେଗେ
ସାରଥି ରଥକୁ ନେଇ ଗଲା ତାର ଆଗେ ।
ପବନ ପରାୟେ ରଥ କରଇ ଗମନ
ପରଶୁରାମକୁ ଚାହିଁ ରାଜା ଶୂରସେନ ।
ବୋଇଲାରେ ଦ୍ୱିଜ ତୋର ପୂରିଲାଣି କାଳ
ରଖି ନ ପାରିବେ ତୋତେ ଦେବ ଆଖଣ୍ଡଳ ।
ତୋତେ ମାରି ପିତୃଋଣ ଶୁଝିବିରେ ଦ୍ୱିଜ
ଦେଖିବାକେ ତୋତେ ଆସି ରଖିବରେ ଆଜ ।
ବୋଇଲେ ପରଶୁରାମ ରେ କ୍ଷତ୍ରିୟ ଡିମ୍ଭ
ଛାଡ଼ିଯିବ ଏହିକ୍ଷଣି ତୋର ଏହି ଦମ୍ଭ ।
ବାପ ତୋର ଦମ୍ଭକରି ମଲା ମୋର ହାତେ
ତୋତେ ନେଇ ଭେଟାଇବି ତାହାର ସଙ୍ଗତେ
ଏମନ୍ତେ ସେ ଗାଳି ଦିଆଦେଇ ହୋଇ ଦୁହେଁ
ଧନୁଧରି ବାଣ ବିନ୍ଧାବିନ୍ଧି ହେଲେ ଦୁହେଁ ।
ଦୁହିଁଙ୍କର ବାଣ ଦୁହେଁ ପକାନ୍ତି ଯେ ଛେଦି
କୋପେ ଶୂରସେନ ଦେଲା ଅଗ୍ନିବାଣ ବିନ୍ଧି ।
ଜଳ ଶରେ ନିବାରିଲେ ଯମଦଗ୍ନି ସୁତ
ଶୂରସେନ ବୀର କୋପେ ମାଇଲା ପର୍ବତ ।
ଆକାଶୁ ଆସିଲେ ଗିରି ଅନ୍ଧକାର କରି
କାଟିଲେ ପରଶୁରାମ ବଜ୍ରଶର ମାରି ।
ପବନ ଶର ମାଇଲେ ରାଜା ଶୂରସେନ
ଅଣଚାଶ ମୂରତି ଯେ ଧଇଲା ପବନ ।
ଆସନ୍ତେ ପରଶୁରାମ ଦୂରୁ ଦେଖିକରି
କ୍ରୋଧେ ସେ କୁବେର ଶର ଗୋଟା ଦେଲେ ମାରି ।
ଅଧବାଟୁ କାଟି ତାହା କଲା ଖଣ୍ଡ ଖଣ୍ଡ
ବେଳୁଁ ବେଳ ଶୂରସେନ କୋପରେ ପ୍ରଚଣ୍ଡ
ବ୍ରହ୍ମଶର ଗଲା ଶୂନ୍ୟପୁର ଆଚ୍ଛାଦିଲା
ଗଗନୁ ଉଲକା ଖସି ଭୂମିରେ ପଡ଼ିଲା ।
ଦେବେ ରଣ ଦେଖୁଥିଲେ ପଳାଇଲେ ଡରେ
କହିଲେ ଯାଇଁକାତରେ ବ୍ରହ୍ମାଙ୍କ ଆଗରେ ।
ଶୂରସେନ ହେତୁ ତୋର ସୃଷ୍ଟି ଗଲା ନାଶ
ବ୍ରହ୍ମଶର କଲା ଘୋଟି ଅଛଇ ଆକାଶ ।

ଏହିକ୍ଷଣି ନାଶଯିବ ଯମଦଗ୍ନି ସୁତ
ଏଥିର ବିଚାର କର ଆହେ ଲୋକତାତ ।
ଏମନ୍ତ ବିଚାରୁ ଶୂନ୍ୟୁ ଘୋଟି ଆସେ ଶର
କ୍ଷତ୍ରିୟ ଅନ୍ତକ ଯମଦଗ୍ନିର କୁମର ।
ନାରାୟଣ ଶରନେଇ ବସାଇଲେ ଗୁଣେ
ବହୁତ ତିଆରି ତାକୁ ବୋଇଲେ ଆପଣେ ।
ବ୍ରହ୍ମବାଣକୁ ତୁ ବାଟ ନ ଦେବୁ ଯେ ଛାଡ଼ି
ପ୍ରତିଜ୍ଞାବନ୍ତ ସେ ବାଣ କରି ଘୋର ରଡ଼ି ।
କାଟେ ବ୍ରହ୍ମଶର ସଙ୍ଗେ ଲଗାଇଲା କଳି
ଦୁହେଁ ପୁଣିତେଜୋବନ୍ତ ଦୁହେଁ ମହାବଳି ।
ସଂଗ୍ରାମ କଲେ ଆକାଶ ମଣ୍ଡଳରେ ରହି
ତାହାଙ୍କ ତେଜରେ କମ୍ପମାନ ହେଲା ମହୀ ।
ଆକାଶ କମ୍ପିଲା ଦେଖି ବେଦବର ଆସି
ବୋଇଲେ ହେ ବାଣରୂପୀ ପ୍ରଭୁ ବ୍ରହ୍ମରାଶି ।
ତୁମ୍ଭେ ଇଚ୍ଛାକଲେ କରି ପାରିବ ପ୍ରଳୟ
ଶାନ୍ତମୂର୍ତ୍ତି ଧରି ଯାଅ ଯେ ଯାହା ଆଳୟ ।
ବ୍ରହ୍ମାର ବଚନେ ଦୁଇ ବାଣ ଛାଡ଼ି କଳି
ଯେ ଯାହା ସ୍ଥାନକୁ ତହୁଁ ବେଗେଗଲେ ଚଳି ।
ଦେଖି ଶୂରସେନ ମନେ କରି ଗୁରୁ କୋପ
ବୋଇଲା ଦେଖିବା ତୋର ରଖିବକେ ବାପ ।
ବ୍ରାହ୍ମଣ ହୋଇ କରୁଛୁ କ୍ଷତ୍ରି ତୁଲେ ରଣ
ଜାଣିଲି ନିକଟ ତୋର ହେଲାଣି ମରଣ ।
ଶୁଣିଣ ପରଶୁରାମ ବୋଇଲେକ ହସି
ବାପ ତ ତୋହର ତୋତେ ଡାକୁଅଛି ଆସି ।
କିବା ଦେହେ ପିତ୍ତ ଉଗ୍ର ହେବାରୁ ତୋହର
କହୁଛି ପ୍ରଳାପ ବାଣୀ ସଂଗ୍ରାମ ଭିତର ।
ପତଙ୍ଗ ଯେହ୍ନେ ଅଗ୍ନିରେ ଆପେ ଦିଏ ଝାସ
ତେସନ ମୋ ବାଣାନଳେ ଯିବୁ ଯମ ପାଶ ।
ଏମନ୍ତେ ସେ ଦୁଇବୀର ହେଲେ ବୋଲାବୋଲି
ବାଣ ମରାମରି ହେଲେ ଶରାସନ ତୋଳି ।
ଦୁହେଁ ତ ସମାନ ବୀର ନ ଘୁଞ୍ଚନ୍ତି ରଣେ
କାଟନ୍ତି ଦୁହିଁଙ୍କ ବାଣ ଦୁହେଁ ପ୍ରତିବାଣେ ।
କେ ମାରେ ତୋମର କେହି ମାରଇ ଶକତି
କେ ଚକ୍ର ମାରଇ କେହି ମାରେ ଶଲ୍ୟ କାଟି ।
କେହି ଗଦା ମାଇଲେ କେ ମାରଇ ମୁଦ୍‌ଗର
ଏମନ୍ତେ ସେ ଦୁଇବୀର କରନ୍ତି ସମର ।

ସ୍ୱର୍ଗେ ଦେବତାଏ ଥାଇ ବୋଲନ୍ତିରେ ଧନ୍ୟ
ଦୁହେଁ ତୁମ୍ଭେ ଅସ୍ତ୍ରଧାରୀ ମଧ୍ୟରେ ପ୍ରଧାନ ।
ରାଜାମାନେ ଚାହିଁଛନ୍ତି ଆଚମ୍ବିତ ହୋଇ
କିବା ଯୁଦ୍ଧ କରନ୍ତି ସେ ରୁଦ୍ର ବିଷ୍ଣୁ ଦୁଇ ।
କିବା ଇନ୍ଦ୍ର ଗୋବିନ୍ଦର ହୁଅଇ ସମର
କାର୍ତ୍ତିକେୟ ସଙ୍ଗରେ କି ତାରକ ଅସୁର ।
ଏମନ୍ତେ ଅନେକ କଥା ବୋଲନ୍ତି ନୃପତି
ପରଶୁରାମ ଧଇଲେ ଅପୂର୍ବ ଶକତି ।
ଧରୁ ଧରୁ ହେଲା ସେହି ସହସ୍ରେକ ମୁଖ
ବୁଲାନ୍ତେ ତହୁଁ ବାହାର ହୋଇଲା ବିଶିଖ ।
ଚକ୍ରକାଦି ଶୂଳ କୁନ୍ତ ପରିଘ ବାହାରେ
ଦେଖି ଶୂରସେନ ଶୂଳ ଶକତିକି ଧରେ ।
ଧରୁ ଧରୁ ବାହାରିଲା ତା ମୁଖୁ ଅନଳ
ପ୍ରଜ୍ୱଳିତ ହୋଇ ଶିଖା ସବୁ ହେଲା ଠୁଳ ।
ପୋଡ଼ିଦେଲା ଯମଦଗ୍ନି ସୁତର ଶକତି
କୋପେ ପ୍ରଜ୍ୱଳିତ ହେଲେ ଭୃଗୁମୁନି ନାତି ।
ନାରାଚରେ ଛାଇ ଦେଲେ ଗଗନମଣ୍ଡଳ
କାଟିଦେଲା ଶୂରସେନ ସେହି ଶରଜାଲ ।
ଏମନ୍ତେ ଯେ ସାତଦିନ ସାତରାତି ଗଲା
କେହି ଯେ କାହାକୁ ରଣେ ଜିଣି ନ ପାରିଲା ।
ଶୂରସେନ ରୁଦ୍ର ଶର ବିନ୍ଧିଦେଲା କୋପେ
ପର୍ଶୁରାମ ବିଷ୍ଣୁଶର ବସାଇଲା ଚାପେ ।
ଦୁହିଁଙ୍କ ବାଣକୁ ଦୁହେଁ ପକାଇଲେ କାଟି
ଏକାଳେ ପରଶୁରାମ କୁରାଢ଼ିରେ ପିଟି ।
ଚୂନା କରିଦେଲେ ଶୂରସେନ ରଥଗୋଟା
ଡେଇଁ ତଳେ ଉଭାହେଲେ ଅର୍ଜ୍ଜୁନର ବେଟା ।
ସାରଥି ପଳାଇ ଯାଇ ଯୋଗାଇଲା ରଥ
ସେ ରଥରେ ବସି ପୁଣି ସେହି ମହାରଥ ।
ଧନୁଧରି ଶର ବୃଷ୍ଟି କଲା ଘନ ଘନ
ଯେସନେ ଶ୍ରାବଣ ମାସେ ବରଷଇ ଘନ ।
ପରଶୁରାମ ତା କାଟି କଲେ ଛିନ୍ନଭିନ୍ନ
ସାରଥିକି ମାଇଲେ ସେ ଦଶଗୋଟା ବାଣ ।
ଚାରି ଅଶ୍ୱକୁ ଯେ ଚାରି ଚାରି ବାଣ ମାରି
କାଟି ପକାଇଲେ କୋପେ ସେ ପରଶୁଧାରୀ ।
ଧନୁକୁ କାଟିଲେ ତାର ପାଞ୍ଚଗୋଟା ବାଣେ
ନିସତ ବିରଥ ହେଲା ଶୂରସେନ ରଣେ ।

ଏ ସମୟେ ଶକତିଏ ମାଇଲେ ନିଠାଇ
ଶୂରସେନ ପଡ଼ିଲାକ ତହିଁ ମୂର୍ଚ୍ଛାଯାଇ ।
ହାହାକାର ଶବଦରେ ଉଚ୍ଛୁଳିଲା ମହୀ
ଶୁର କୃଷ୍ଣ ଧୃଷ୍ଣ ଥିଲେ ତିନିଭାଇ ତହିଁ ।
ଭାଇକି ଆବୋରି କୋପେ କଲେ ମହାରଣ
ଘେରିଗଲେ ଚାରିପାଖେ ନରପତିଗଣ ।
କୋପେ ସେ ପରଶୁରାମ ଧଇଲେ ପରଶୁ
ନୃପତିମାନେ ହୋଇଲେ ଜାଣ ଯଜ୍ଞ ପଶୁ ।
ବଳିଦେଲେ ଶିର କାଟି ରେଣୁକାର ସୁତ
ଚଣ୍ଡୀ ଚାମୁଣ୍ଡା ଯେ ଆସି ପିଇଲେ ରକତ ।
ଖେମଟା ନାଟ ନାଚିଲେ ଦେବଗଣ ପଶି
ଲହ ଲହ ଜିଭ କରି କହ କହ ଭାଷି ।
କୁକୁର ଶୃଗାଳଙ୍କର ଭୟଙ୍କର ନାଦ
ନୃତ୍ୟକଲେ ସଂଗ୍ରାମରେ ବହୁତ କବନ୍ଧ ।
ବଢ଼ିଲା ରୁଧିର ନଈ ଭୟଙ୍କର ହୋଇ
ଗଜ ଅଶ୍ୱ ଭାସିଗଲେ କାଠପ୍ରାୟ ତହିଁ ।
ରଥଚଢ଼ି ଶୂର କୃଷ୍ଣ ଧୃଷ୍ଣ ତିନିଜଣ
ପରଶୁରାମଙ୍କ ସଙ୍ଗେ କଲେ ଘୋର ରଣ ।
ନାରାଚରେ ଦଶଦିଗ ଦେଲେ ପୁଣି ଛାଇ
ଡାକ ଦେଲେ ରହ ରହ ଯିବୁ ଆଜ କାହିଁ ।
ପରଶୁରାମ ତା ଶୁଣି କୋପେ ପରଜ୍ୱଳି
ଧନୁ ଧରି ବିନ୍ଧିଲେକ ଶତ ଶତ ଶୂଳୀ ।
ତିନି ଭାଇଙ୍କର ବାଣ କାଟି ପକାଇଲେ
ତିନିଙ୍କ ହାତରୁ ତିନି ଧନୁକୁ ଛେଦିଲେ ।
ଆନ ଧନୁ ନ ଧରଣୁ କାଟିଲେ ତାହାକୁ
କାଟି ପକାଇଲେ ତିନିରଥରୁ ଅଶ୍ୱଙ୍କୁ ।
ବିରଥ ହୋଇଲେ ସେହି ତିନିଗୋଟି ବୀର
ଧାଇଁଲେ ସେ ତିନିଭାଇ ହୋଇ ଗଦାକର ।
ଗଦା କାଟି ପକାଇଲେ ରେଣୁକା ନନ୍ଦନ
ଖଡ଼ଗଫାଳକୁ ଯାଇଁ ଧଇଲେ ବହନ ।
ଦିଶନ୍ତି ସେ ତିନିଭାଇ କାଳଯମ ପରି
ଧାଇଁଗଲେ ତିନିବୀରେ ଗରଜନ କରି ।
ଖଡ଼ଗ କାଟିଲେ ବାଣେ ଯମଦଗ୍ନି ସୁତ
ତିନିଗୋଟି ବାଣେ କଲେ ତିନିଙ୍କି ମୂର୍ଚ୍ଛିତ ।
ଭୟେ ନରପତିଗଣ ନ ରହିଲେ କେହି
ଶରଣ ପଶିଲେ ଯାଇଁ ଜୟଧ୍ୱଜ ତହିଁ ।

ବୋଇଲେ ହେ ବୀରମଣି ସରିଲା ସମ୍ପଦ
ଏହିକ୍ଷଣି ଯିବ ବାବୁ ତୋର ରାଜପଦ ।
କାଳଯମ ପ୍ରାୟ ସେହି ଆସୁଅଛି ମାଡ଼ି
ଅନଳ ସମାନ ବାଣ ତୂଣୀରୁ ସେ କାଢ଼ି ।
ପୋଡ଼ି ଦେଉଅଛି ଦେଖ ସଇନ୍ୟ କାନନ
ତୋର ଚାରିଭାଇ ଯୁଦ୍ଧେ ତେଜିଲେ ଜୀବନ ।
ଏହିକ୍ଷଣି ତାଙ୍କ ମୁଣ୍ଡ ପକାଇବି କାଟି
ନିଦାରୁଣ ବିପ୍ର ହୃଦେ ଦୟାହିଁ ନାହିଁଟି ।
କେତେ ଯେ ମଲେଣି ସଂଖ୍ୟା ନାହିଁ ପୁଣି ତାର
ଶୁଣି ମହା କୋପ କଲା ଜୟଧ୍ୱଜ ବୀର ।
ରଖିନ ପାରିବେ ତାକୁ ହୋଇଲେ ଦେବତା
ଛିନ୍ନ ଭିନ୍ନ କରେ ସୈନ୍ୟ ହୋଇ ଉନମତ୍ତା ।

.....❀.....

## ଜୟଧ୍ୱଜର ଯୁଦ୍ଧ ଓ ପରଶୁରାମର ପରାଜୟ

ସାରଥିକି ବୋଇଲା ମୋ ରଥ ବାହାବେଗେ
ରଖିବୁ ତୁ ନେଇ ଯମଦଗ୍ନି ସୁତ ଆଗେ ।
ଗଜବ୍ୟୂହ ଥାପିଲା ସେ ଜୟଧ୍ୱଜ ବୀର
କାଶୀପତିକି ରଖିଲା ଶୁଣ୍ଡାଗ୍ରେ ତାହାର ।
ରହିଲା ମଗଧପତି ଗଜ କୁମ୍ଭସ୍ଥଳେ
କର୍ଣ୍ଣାଟ ନୃପତି ରହେ ଗଜଦନ୍ତ ମୂଳେ ।
ନେପାଳ ଭୂପାଳ ପୁଣି ରହିଲେକ ତହିଁ
ଦନ୍ତଅଗ୍ରେ କନାଉଜ ରାଜା ଅଛି ରହି ।
ମଥୁରା ଦେଶର ରାଜା ଅଛି ଗଜପୁଚ୍ଛେ
ସହସ୍ରେ ରାଜା ଅଛନ୍ତି ତାର ପଛେ ପଛେ ।
କର୍ଣ୍ଣମୂଳେ ଦୁଇ ଦୁଇ ଶତ ନୃପବର
ପୃଷ୍ଠେ ରଥେ ରହିଅଛି ଜୟଧ୍ୱଜ ବୀର ।
ଏମନ୍ତେ ସେ ଆଚମ୍ବିତ ବ୍ୟୂହେକ ଥାପିଲା
ଅଶ୍ୱ ଗଜ ରଥ ସବୁ ସଜାଡ଼ି ରଖିଲା ।
ଗଜ କୁମ୍ଭସ୍ଥଳେ ସେହି ରଖିଅଛି ବାଟ
ଦେହକୁ ଦେହ ଯେ ଲାଗି ରହିଛନ୍ତି ଥାଟ ।
ପୂରିଯିବାକୁ ସେ ରନ୍ଧ୍ର ନ ରଖିଛି କାହିଁ
ପରଶୁରାମ ଯେ ତାହା ଦେଖି କୋପ ବହି ।
ଶୁଣ୍ଢଅଗ୍ରେ ପେଶିଲେ ସେ ପରଶୁକୁ ଧରି
ଦେଖି ତାଙ୍କୁ କାଶୀପତି ମହା କୋପକରି ।
ଧନୁଧରି ନାରାଚରେ ଅଙ୍ଗ ଦେଲା ଛାଇ
ରେଣୁକା ନନ୍ଦନ ତାହା କାଟି କୋପେ ଯାଇଁ ।
ପରଶୁରେ ଛେଦିଲେ ସେ କାଶୀପତି ମୁଣ୍ଡ
ଥାଟ ବାଟ ଛାଡ଼ିଦେଲେ ହୋଇ ଲଣ୍ଡଭଣ୍ଡ ।
ପ୍ରବେଶ ହୋଇଲେ ଆସି ଜୟଧ୍ୱଜ ଆଗେ
ପରଶୁ ମାଇଲେ ତାର ରଥେ ନେଇ ରାଗେ ।
ବିଷ୍ଣୁ ବରେ ତାର ରଥ ଅଭେଦ ଅତୁଟ
ଜୟଧ୍ୱଜ ବୋଇଲେ ହୋ ଯମଦଗ୍ନି ଚାଟ ।
ନୁହଇଁ ମୁଁ ଆନବୀର ଦେଖାଉ ପରଶୁ
ବାରମ୍ବାର ଶତବାର ଯେବେ ତୁହି ପେଷୁ ।
ତଥାପି ମୋହର କିଛି ନ ପାରିବ କରି
ଯେତେ ଅସ୍ତ୍ର ଶିଖିଅଛ ପେଷ ଧନୁଧରି ।
ଶୋଚନା ନ କରେ ମୁହିଁ ଆହେ ଦ୍ୱିଜବର
ଏହାଶୁଣି କୋପକଲେ ରେଣୁକା କୁମର ।
କରେଧନୁ ଧରି କଲେ ନାରାଚ ବରଷା
ଜୟଧ୍ୱଜ ରାଜା ତହୁଁ ହୋଇ ବଡ଼ ଘୋଷା ।
କାଟି ପକାଇଲା ପଞ୍ଚବାଣେ ତାର ବାଣ
ପରଶୁରାମ ଯେ କୋପେ କରି ଗରୁଟାଣ ।
ଘନ ଘନ ବାଣ ତାକୁ ମାଇଲେ ନିଠାଇ
କାଟି ପକାଇଲା ସବୁ ମହୀଷ୍ମତୀ ସାଇଁ ।
ଏକଦିନ ଏକରାତି ଅବିଶ୍ରାମ ରଣ
କରି ପରଶୁରାମର ଖାଲି ହେଲା ତୂଣ ।
ଭୟେ ଯମଦଗ୍ନି ସୁତ କଲେ ହର ସ୍ତୁତି
ଜୟ ଜୟ ପଶୁପତି ଜୟ ଉମାପତି ।
ମୁଁ ତୁମ୍ଭ ନନ୍ଦନ ମୋତେ ପଡ଼ିଲା ବିପଦ
ଦିଅ ପାଶୁପତ ବାଣ ଏ ଶତ୍ରୁ ଅସାଧ ।
ଏମନ୍ତେ ହରଙ୍କୁ ବାଣ ମାଗନ୍ତେ ସେ ଦେଲେ
ପରଶୁରାମ ତା ପାଇ ଗୁଣେ ବସାଇଲେ ।
ବୋଇଲେରେ କ୍ଷତ୍ରି ଡିମ୍ଭ ଯିବୁ ଆଜ କାହିଁ
ଏହିକ୍ଷଣି ତୋ ଶରୀର ପକାଇବି ଦହି ।
ନ ଜାଣୁ କି ମୋର ନାମ କ୍ଷତ୍ରିକୁଳ ହନ୍ତା
ଯାହାର ବାଣକୁ ଦେଖି ଯମ କରେ ଚିନ୍ତା ।
ତୁ ତାହାର ଆଗେ ରହି କରୁଅଛୁ ରଣ
ପ୍ରତିଜ୍ଞା କରି ଦେଖାଉଅଛୁ ବୀରପଣ ।
ମରଣ ନିକଟ ତୋର ହେବାରୁ ତୁ ସିନା
ଯୁଦ୍ଧକରୁ ମୋର ସଙ୍ଗେ ଘେନି ନିଜସେନା ।



ଦେଖିବା ତୋତେ କେ ଆଜି ରଖିବରେ ଆସି
ଏହିକ୍ଷଣି ତୋତେ ଯମପୁରେ ଦେବି ପେଶି ।
ଜୟଧ୍ୱଜ ବୋଇଲେ ତୁ ପାଗଳ ହେଲୁଣି
ନୋହିଲେ କହନ୍ତୁ କିମ୍ପା ଏ ପ୍ରଳାପ ବାଣୀ ।
କିବା ବ୍ୟାଧିଗ୍ରସ୍ତ ତୋତେ ହୋଇଛି ରେ ଦ୍ୱିଜ
ନୋହିଲେ କି ଏହିପରି କହନ୍ତୁ ତୁ ଆଜ ।
ମାରୁ କିନା ଯେତେ ଶର ଗୁରୁ ଅଛି ଦେଇ
ଏହା ଶୁଣି କୋପଭରେ ସେ ଦ୍ୱିଜ ଗୋସାଇଁ ।
ମନ୍ତ୍ର ପଢ଼ି ପାଶୁପତ ବାଣ ଦେଲେ ବିନ୍ଧି
ବିଷ୍ଣୁ ଚକ୍ରେ ଜୟଧ୍ୱଜ ପକାଇଲା ଛେଦି ।
ତା ଦେଖି ପରଶୁରାମ କଲେ ବ୍ରହ୍ମଶର
କାଟିଲେ ତା ନାରାୟଣ ଶରେ ନୃପବର ।

କୋପେ ଇନ୍ଦ୍ର ଅସ୍ତ୍ର କଲେ ରେଣୁକା ନନ୍ଦନ
କୁବେରାସ୍ତ୍ରେ ନିବାରିଲା ତାହାକୁ ରାଜନ ।
କାଳପାଶ ମାଇଲେକ ଯମଦଗ୍ନି ସୁତ
ଯମପାଶେ ନିବାରିଲେ ରାଜା ତା ତୁରିତ ।
ବରୁଣପାଶ ମାଇଲେ ସେ ପରଶୁପାଣି
ପବନାସ୍ତ୍ରେ ଉଡ଼ାଇଲେ ତାହା ନୃପମଣି ।
ନାଗପାଶ ମାଇଲେକ କୋପେ ଦ୍ୱିଜବର
ଗରୁଡ଼ାସ୍ତ୍ରେ ନିବାରିଲେ ଜୟଧ୍ୱଜ ବୀର ।
ଦେଖି ପରଶୁରାମଙ୍କୁ ନ ସ୍ଫୁରଇ କିଛି
ଜୟଧ୍ୱଜ ବୋଇଲେରେ ଶୁଣ ଦ୍ୱିଜବସି ।
କାତର ହେଲେ କି ଯମ ଛାଡ଼ିଦେବ ତୋତେ
ତାହାର ଜୀବନ ଅଛି ଜାଣ ମୋର ହାତେ ।

ମାଇଲେ ମାରିବି ମୁହିଁ ରଖିଲେ ରଖିବି
ଦ୍ୱିଜବୋଲି ତୋତେ କେଭେ ଦୟା ନ କରିବି ।
ଜାଣୁଜାଣୁ ଧର୍ମଛଡ଼ା ହୋଇଲୁ କିମ୍ପାଇଁ
ବ୍ରାହ୍ମଣର ବୃତ୍ତି ସିନା ଭିକମାଗି ଖାଇ ।
ପୁଣ୍ଡରୀକ ବସୁଦେବ ପରି ହେବୁ ପଛେ
ଯେ ଯେମନ୍ତେ ବାସୁଦେବ ହେଲା ମିଛେ ମିଛେ
କାଠର ଗରୁଡ଼ ଚଢ଼ି କାଠଚକ୍ର ଧରି
କାଠର ଯେ ଦୁଇହାତ କାନ୍ଧେ ବାନ୍ଧିକରି ।
ବାସୁଦେବ ବୋଲାଇଲା ଅକାରଣେ ମଲା
ଯେଣୁ ବାସୁ ଦେବଙ୍କୁ ସେ ଜାଣି ଥଟ୍ଟା କଲା ।
ତୁ କେମନ୍ତ ଧନୁଧରି ବୋଲାଉ କ୍ଷତ୍ରିୟ
ସାମାନ୍ୟ କ୍ଷତ୍ରିଙ୍କି ପୁଣି ଯୁଦ୍ଧେ କରି କ୍ଷୟ ।
ସ୍ତ୍ରୀ ବୃଦ୍ଧବାଳକ ବଧି ଅହଙ୍କାର ବହି
ଯୁଦ୍ଧ କରୁଅଛୁ ତୁହି ଲାଜ ମାତ୍ରୁ ନାହିଁ ।
ସାପଲାଞ୍ଜେ ହାତ ଦେଉ ଗାରେଡ଼ି ନ ଜାଣି
ଲୁହାକୁ ପିତଳ କଲେ ହେବ କି ସେ ପୁଣି ।
ତୁ ଏବେ ମୋହର ବୋଲକର ଆରେ ଦ୍ୱିଜ
ଶରଣ ପଶ ତୁ ମନୁ ଅଭିମାନ ତେଜ ।
ଦନ୍ତରେ ତିରଣ ଘେନ ବସ୍ତ୍ର ଦେଇ ଗଳେ
ଶରଣୁ କୁଠାର ଧନୁ ଶର ରଖ ତଳେ ।
ନୋହିଲେ ପ୍ରତିଜ୍ଞା ତୋର ହୋଇବ ବିଫଳ
ବୀରପୁରୁଷର ସିନା ପ୍ରତିଜ୍ଞା ହିଁ ମୂଳ ।
ତୁ ନୋହୁଁ କ୍ଷତ୍ରିୟ ପୁଣି ଜାତିରେ ବ୍ରାହ୍ମଣ
ତୁ ପ୍ରତିଜ୍ଞା କରୁ କରେ ଧରି ଧନୁର୍ବାଣ ।
ଜୟଧ୍ୱଜର ଏମନ୍ତ କଟୁବାଣୀ ଶୁଣି
କ୍ଷତ୍ରିୟକୁଳ ଅନ୍ତକ ବୀର ଚୂଡ଼ାମଣି ।
କ୍ରୋଧରେ ବୋଇଲେରେ ସତ ମୁହିଁ ଦ୍ୱିଜ
ମୋହର ପ୍ରତିଜ୍ଞାଗୋଟି ଦେଖିବୁ ତୁ ଆଜ ।
ଯେବେ ଏକାବାଣେ ତୋର ନ ଘେନିବି ପ୍ରାଣ
ଆଜିଠାରୁ ନ ଧରିବି ଏହି ଧନୁର୍ବାଣ ।
ନ ଧରିବି ଅସ୍ତ୍ର ଆଉ ନ କରିବି ରଣ
ଯେବେ ତୋତେ ନ ମାରିବି ଏ ମୋହର ପଣ ।
ଚନ୍ଦ୍ର ସୂର୍ଯ୍ୟଙ୍କୁ ମୁଁ ଏଥେ କରୁଅଛି ସାକ୍ଷୀ
ଦଶଦିଗପାଳ ତୋତେ ନ ପାରିବେ ରଖି ।
ପ୍ରତିଜ୍ଞା ବିଅର୍ଥ କେବେନୋହିବ ମୋହର
କ୍ଷତ୍ରୀ ବୃତ୍ତି ଛାଡ଼ି ନିଶ୍ଚେ ହେବି ଦ୍ୱିଜବର ।

ଜୟଧ୍ୱଜ ବୋଇଲେ ହେ ଶୁଣ ବିପ୍ରମଣି
ତୋହର ବାଣକୁ ମୁହିଁ ପକାଇବି ହାଣି ।
ନ ପାରିଲେ ଅସ୍ତ୍ରଧାରୀ ନୋହିବି ଏ ସତ
ରାଜ୍ୟ ଛାଡ଼ି ଭିକ୍ଷାକ୍ଷୀ ମୁଁ ହୋଇବି ନିୟତ ।
ଦିଗପାଳମାନେ ସାକ୍ଷୀ ରହିଲେ ଏଥିରେ
କାଟିକି ତୋହର ଶସ୍ତ୍ର ମୁହିଁ ଏକଶରେ ।
କ୍ଷତ୍ରିୟ ପ୍ରତିଜ୍ଞା ତୁହୋ ଦେଖ ଦ୍ୱିଜବର
ଏହାଶୁଣି ମହାକୋପେ ରେଣୁକା କୁମର ।
କରଯୋଡ଼ି କଲେ ଦେବୀ ଭଗବତୀ ସ୍ତୁତି
ପ୍ରସନ୍ନ ହୁଅ ଗୋ ମାତ ତୋ କୁମର ପ୍ରତି ।
ତୋହର ଶକତି ମାତ ଦିଅ ମୋତେ ଆଣି
ଜୟଧ୍ୱଜ ଶିର ମୁହିଁ ପକାଇବି ହାଣି ।
ପ୍ରସନ୍ନେ ଶକତି ଆଣି ଦେଲେ ଭଗବତୀ
ଦେଖଣାହାରୀ ହୋଇଲେ ସର୍ବ ନରପତି ।
ଅପୂର୍ବ ସମର ଗୋଟା ଦେଖିବା ମାନସେ
ଇନ୍ଦ୍ର ଆଦି ଦେବତାଏ ରହିଲେ ଆକାଶେ ।
ସୁର ସିଦ୍ଧ ମୁନି ଆସି ଶୂନ୍ୟପୁରେ ରହି
ଦେଖନ୍ତି ଅପୂର୍ବ ରଣ ଏକମୁଖେ ଚାହିଁ ।
ମଇଁଷି ବାହନେ ବିଜେ ସଂଯମନୀ ନାଥ
ଐରାବତ ପୃଷ୍ଟେ ବିଜେ ପୁଲୋମଜାକାନ୍ତ ।
ଗରୁଡ଼ ବାହନେ ବିଜେ କମଳା ବିଳାସ
ବୃଷଭ ବାହନେ ବିଜେ କଲେ କୃତ୍ତିବାସ ।
ଅନଳ ଅନିଳ ଚନ୍ଦ୍ର ସୂର୍ଯ୍ୟ ଗ୍ରହଗଣ
ଦେଖନ୍ତି ଗଗନେ ରହି ସେ ଅପୂର୍ବ ରଣ ।
ଧଇଲେ ପରଶୁରାମ ଅପୂର୍ବ ଶକତି
ବୋଇଲେରେ ଜୟଧ୍ୱଜ କୃତବୀର୍ଯ୍ୟ ନାତି ।
ଅକାରଣେ କିମ୍ପାଦେବୁ ଏ ତୋର ଜୀବନ
ଚରଣେ ଶରଣ ଆସି ପଶରେ ରାଜନ ।
ଦୟାକରି ଛାଡ଼ିଦେବି ଭୋଗକର ମହୀ
ମୋର ବଳ ପରାକ୍ରମ ଦେଖୁ ଦେଖୁ ତୁହି ।
ଅନ୍ଧପ୍ରାୟ ହୋଇ କରୁ ମୋ ସଙ୍ଗେ ସମର
ଜଗତେ ତୋ ପିତା ସମ କିଏ ଥିଲା ବୀର ।
ଏକୋଇଶ ବାରେ ପୃଥ୍ୱୀ ନିକ୍ଷତ୍ରିୟ କଲି
ତୋର ଚାରି ଭାଇଙ୍କି ଏ ସଂଗ୍ରାମେ ମାଇଲି ।
ଭାଗ୍ୟବଳେ ପୁଣି ସେହି ପାଇଛନ୍ତି ପ୍ରାଣ
ତଥାପି ତୁ ଛାଡୁନାହୁଁ କରୁ ଏଡ଼େ ଟାଣ ।

ଜୟଧ୍ୱଜ ବୋଇଲେ ରେ ପ୍ରତିଜ୍ଞା ମୋହର
ବିଅର୍ଥ ନୋହିବ କେବେ କାଟିବି ତୋ ଶିର ।
ପୂର୍ବଦିଗେ ଉଦେ ହୋଇପାରନ୍ତି ତ ରବି
ମହୀକି ବା ଆସିପାରେ ଆକାଶର ଛବି ।
ମୋହର ପ୍ରତିଜ୍ଞା କେବେ ନୋହିବ ବିଫଳ
ଦେଖୁଥିବେ ଶୂନ୍ୟେ ରହି ଦଶଦିଗପାଳ ।
କଳିପ୍ରିୟ ନାରଦ ଯେ ଥିଲେ ଏ ସମୟେ
ମୁଣିକି ଫିଟାଇ ଦେଇ ବୋଇଲେ ରେ ରାୟେ ।
ତୁହି କାର୍ତ୍ତବୀର୍ଯ୍ୟ ପୁତ୍ର ଡରିବୁ କିମ୍ପାଇଁ
ତୁ ହୋ ପର୍ଶୁରାମ ମହାବୀର ଯେ ବୋଲାଇ ।
ଦୁହେଁ ତ ପ୍ରତିଜ୍ଞା କରି କରୁଅଛ ରଣ
ଦେଖିବା ଦେଖିବା ଆଜ ଦୁହିଁଙ୍କର ଟାଣ ।
ଏହା କହି ଆକାଶରେ କଲେ ମୁନି ନୃତ୍ୟ
ଶକତି ଗୋଟାକୁ ଧରି ଯମଦଗ୍ନି ସୁତ ।
ବୁଲାଇଲେ ସାତବାର ମୁଖେ ମନ୍ତ୍ର ପଢ଼ି
ବେଳୁ ବେଳ ଶକତିର ତେଜଗଲା ବଢ଼ି ।
ଦିଶିଲା ଅନଳଗଦା ପ୍ରାୟ ଚାହୁଁ ଚାହୁଁ
ବେଳୁଁ ବେଳ ଭୟଙ୍କର ହେଲା କହୁଁ କହୁଁ ।
ସାତଦ୍ୱୀପ ସାତସିନ୍ଧୁ ହେଲା ଟଳମଳ
ପାତାଳରେ ଥାଇ ଭୟ କଲେ ନାଗବଳ ।
ପ୍ରଳୟ ଅନଳ ପ୍ରାୟ ଦେଖି ଦେବତାଏ
ବିଚାରନ୍ତି ନାଶଯିବ ଜୟଧ୍ୱଜ ରାୟେ ।
ଶକତିର ତେଜ ଆମ୍ଭେ ନ ପାରୁଛୁ ସହି
ଏହିକ୍ଷଣି ନୃପତିକି ପକାଇବ ଦହି ।
ଜୟଧ୍ୱଜ ମନେ ମନେ ସୁମରଇ ହରି
ଏତେବେଳେ ମୋ ଜୀବନ ରଖ ଦଇତାରି ।
ମୁହିଁ ତବ ପାଦତଳେ ଦାସର ଯେ ଦାସ
ଜୟଧ୍ୱଜ ମନକଥା ଜାଣି ପୀତବାସ ।
ଚକ୍ର ଆଣି ଦେଲେ ତାହା ନ ଦେଖିଲେ କେହି
ତାର ନାମ ବିଷ୍ଣୁ ଚକ୍ର ବଇଷ୍ଣବୀ ସେହି ।
ସେ ଶକତି ଗୋଟା ପାଇ ଜୟଧ୍ୱଜ ବୀର
ନିର୍ଭୟରେ ରହିଅଛି ନାହିଁ ତାର ଡର ।
ଶକତି ମାରନ୍ତେ କୋପେ ରେଣୁକାନନ୍ଦନ
ପବନହୁଁ ବେଗେ ଯାଇଁ ଘୋଟିଲା ଗଗନ ।
ହାହାକାର ଶବଦରେ ପୂରିଲା ମେଦିନୀ
ଜୟଧ୍ୱଜ ବଇଷ୍ଣବୀ ଚକ୍ର କରେ ଘେନି ।
କାଟି ପକାଇଲା ସେହି ଶକତିକି ବଳେ
ଖଣ୍ଡ ଖଣ୍ଡ ହୋଇ ଆସି ପଡ଼ିଲା ସେ ତଳେ ।
ସାଧୁ ସାଧୁ ଶବଦରେ ପୂରିଲା ଆକାଶ
ଜୟ ଜୟ ଶବଦରେ ପୂର୍ଣ୍ଣ ଦଶଦିଶ ।
ଧନ୍ୟ ଜୟଧ୍ୱଜ ତୁହି ଧନ୍ୟ ତୋର ପିତା
ଧନ୍ୟ ଧନ୍ୟ ବାବୁ ତୋର ଗର୍ଭଧାରୀ ମାତା ।
ଏମନ୍ତେ ପ୍ରଶଂସା ବାଣୀ ଶୁଣି ଜୟଧ୍ୱଜ
ବୋଇଲା ପ୍ରତିଜ୍ଞା ମୋର ଶୁଣ ଆହେ ଦ୍ୱିଜ ।
ତିନିଦିନ ତିନିରାତି ମାଇଲୁଣି ବାଣ
ମୋହର ନାରାଚ ତୁହୋ ସହ କିଛିକ୍ଷଣ ।
ସହି ପାରିଲେ ମୁଁ ତୋତେ ବୋଲିବିନା ବୀର
ଏହାକହି ପାଶଅସ୍ତ୍ର ମାଇଲା ସତ୍ୱର ।
ବାନ୍ଧି ପକାଇଲା କର ଚରଣ ତାଙ୍କର
ବହୁତ ପ୍ରଶଂସା କଲେ ସ୍ୱର୍ଗରେ ଅମର ।
ରଥୁଁ ଡେଇଁ ଯାଇଁ ବେଗେ ରାଜା ଜୟଧ୍ୱଜ
ପରଶୁରାମଙ୍କ ଦେହେ ଦେଇ ବେନିଭୁଜ ।
ତୋଳି ଆଣି ବସାଇଲା ଆପଣାର ରଥେ
ଜୟ ପତାକା ଉଡ଼ାଇ ଦେଲା ରାଜପଥେ ।
ଅନ୍ତରୀକ୍ଷେ ଭୃଗୁମୁନି ଦେଖୁଥିଲେ ରଣ
ଜୟଧ୍ୱଜ ପାଶେ ଆସି ମିଳିଲେ ତକ୍ଷଣ ।
ଦେଖି ନୃପବର ତାଙ୍କୁ କଲା ପାଦପୂଜା
କି କାର୍ଯ୍ୟେ ଆସିଛ ବୋଲି ପଚାରିଲେ ରାଜା ।
ମୁନି ବୋଇଲେ ଅଟଇ ଏ ମୋହର ନାତି
ଏହାଙ୍କୁ ତୁ ଛାଡ଼ିଦିଅ ଆହେ ନରପତି ।
ତୋହର ଯେ ବୀରପଣ ଦେଖିଲୁଁ ନୟନେ
ଏ ପରଶୁରାମ ବୀର ଏ ତିନି ଭୁବନେ ।
ବିଷ୍ଣୁ ଅଂଶେ ଜନମି ଏ ନିବାରିଲା ଦୁଷ୍ଟ
ବୀରଙ୍କ ମଧ୍ୟେ ଅଟଇ ଏ ପୁଣି ଗରିଷ୍ଠ ।
ବିଷ୍ଣୁ ଅବତାର ମଧ୍ୟେ ଏକ ଅବତାର
ତୋହ ବିନା ବାନ୍ଧିବାକୁ ସମର୍ଥ କାହାର ।
ଭକତ ବାନ୍ଧି ପାରଇ ବିଷ୍ଣୁଙ୍କୁ କେବଳ
ବନ୍ଧନୁ ମୁକତ କରିଦିଅ ମହୀପାଳ ।
ଜୟଧ୍ୱଜ ବୋଲଇ ହେ ମୁନିବର ଶୁଣ
ମହତର ବାକ୍ୟ ହାତୀଦାନ୍ତ ଠାରୁ ଟାଣ ।
ଅସ୍ତ୍ରତ୍ୟାଗ କରିବାକୁ କରିଛନ୍ତି ପଣ
ମୋତେ ମାରି ନ ପାରିଲେ କରି ମହାରଣ ।

ଏବେ କ୍ଷତ୍ରୀ ବୃତ୍ତି ଛାଡ଼ି ହୁଅନ୍ତୁସେ ମୁନି
ଭୃଗୁମୁନି ବୋଇଲେ ଯେ ଏ ବଚନ ଶୁଣି ।
ଆଜିଠାରୁ ତପ ଯାଇଁ କରିବଟି ଜାଣ
ଭାଙ୍ଗି ଦେଲୁଣି ତୁ ରାଜା ସବୁ ତାର ଟାଣ
ପରଶୁରାମଙ୍କ ପାଦେ ଜୟଧ୍ୱଜ ଲୋଟି
କର ଦୁଇ ଯୋଡ଼ି ସ୍ତୁତି କଲା ପୁଣି ଉଠି
ବିଷ୍ଣୁ ଅବତାର ତୁମେ ଯମଦଗ୍ନି ସୁତ
ମୋର ଦୋଷ କ୍ଷମାକର ମୁହିଁ ତୁମ୍ଭ ଭକ୍ତ ।
ଏମନ୍ତେ ବହୁତ ସ୍ତୁତି କଲେ ତାଙ୍କୁ ରାଜା
ଧୂପ ଦୀପ ଦେଇ କଲେ ତାଙ୍କ ପାଦ ପୂଜା ।
ପ୍ରସନ୍ନେ ପରଶୁରାମ ଗଲେ ତହୁଁ ଚଳି
ତପୋବନେ ରହି ତପ କଲେ ମହାବଳୀ ।
ଆନନ୍ଦରେ ରାଜାମାନେ ଗଲେ ଯେଝାପୁରେ
ଜୟଧ୍ୱଜର ପ୍ରଶଂସା କରି ସବୁଠାରେ ।
ଶୂରସେନ ଆଦି ଚାରିଭାଇ ତହୁଁ ଗଲେ
ଆପଣା ଆପଣା ରାଜ୍ୟେ ପ୍ରବେଶ ହୋଇଲେ ।
ପୃଥିବୀର ରାଜା ତାଙ୍କୁ ଦେଲେ ଡରେ କର
ଭାର୍ଗବଙ୍କୁ ଜୟକରି ହେଲେ ମହାବୀର ।
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ଶରଣ
ଅନ୍ତିମ କାଳକୁ ପ୍ରଭୁ ତୁମେ ହିଁ କାରଣ ।

.....❀.....

## ବିଦେହ ରାଜାର ତପସ୍ୟା ଓ ଦିଗ୍‌ବିଜୟ

କହୁଛନ୍ତି କୂର୍ମରୂପୀ ଦେବ ମଧୁହାରୀ
ଜୟଧ୍ୱଜ ଚରିତ ଯେ ପାପନାଶକାରୀ ।
ଆବର ତା ବୀରପଣ କହୁଅଛି ଶୁଣ
ଶୁଣିଲେ ଯମଦେବତା ନ ଦଣ୍ଡିବ ଜାଣ ।
କଶ୍ୟପ ଭାରିଯା ତନୁ ଉଦରୁ ସଂଭୂତ
ଭୃଷ୍ଣୁ ନାମରେ ରାକ୍ଷସ ମହା ବଳବନ୍ତ ।
ତ୍ରିବିକ୍ରମ ରୂପେ ତାକୁ ମାଇଲେ ଶ୍ରୀହରି
ତାର ପୁତ୍ର ରମ୍ଭା ହେଲା ଦେବଙ୍କ ବଇରୀ ।
କୁମ୍ଭ ନାମେ ହେଲା ତାର ପ୍ରତାପୀ କୁମର
ତାହାର ପୁତ୍ରର ନାମ ଜୟ ମହାବୀର ।
ବାସବ ତାହାକୁ ମାରି ଦେଲେ ଜମ୍ଭଭେଦୀ
କୁମ୍ଭର ପୁତ୍ର ବିଜୟ ହୋଇଲା ବିବାଦୀ ।
ତାହାର ପୁତ୍ର କୁକୁମ୍ଭ ପାଇଲା ମୂଷଳ
ତାକୁ ମହାଭୟ କଲେ ଦେବ ଆଖଣ୍ଡଳ ।
ମୁଦ୍ରାବତୀ କନ୍ୟାକୁ ସେ ବଳେ ନେଲା ହରି
ବସ୍ତ୍ରପି ମାଇଲା ତାକୁ ଭେଦୀ ବସୁନ୍ଧରୀ ।
ତାହାର ପୁତ୍ରକୁ ଦେହ ଅତି ବଳବନ୍ତ
ତାହାର ପୁତ୍ର ବିଦେହ ନାମରେ ଦଇତ ।
ଶୋଭାବତୀପୁର ତାର କଟକ ଅଟଇ
ସୁବୁଦ୍ଧି ନାମେ ତାହାର ମନ୍ତ୍ରୀଏ ଅଛଇ ।
ବହୁତ କାଳରୁ ସେହିକରେ ମନ୍ତ୍ରୀପଣ
ବୁଦ୍ଧିରେ ଶୁକ୍ର ସମାନ ବଳବନ୍ତ ପୁଣ ।
ଦିନେ ବିଦେହ ଦାନବ ମନ୍ତ୍ରୀ ସଙ୍ଗତରେ
ଭ୍ରମଣ କରୁଁ ପଶିଲା ନନ୍ଦନ ବନରେ ।
ଇନ୍ଦ୍ର ଦେବତାର ସେହି ଅପୂର୍ବ କାନନ
ବିଜେ କରିଛନ୍ତି ତହିଁ ଦେବ ମଘବାନ ।
ସ୍ୱର୍ଗ ଅପସରା ଆଗେ କରୁଛନ୍ତି ନୃତ୍ୟ
ନାନାବିଧ ଅଳଙ୍କାରେ ହୋଇଣ ମଣ୍ଡିତ ।
ଇନ୍ଦ୍ରର ସମ୍ପଦ ଦେଖି ବିଦେହ ଅସୁର
ମନ୍ତ୍ରୀକି ପୁଚ୍ଛଇ ଏହି ଉଦ୍ୟାନ କାହାର ।
କିଏ ଏଥି ବସିଅଛି କହ ମନ୍ତ୍ରୀବର
ସୁବୁଦ୍ଧି ଦାନବ ବୋଲେ ଶୁଣ ଦୈତ୍ୟବର ।
ମଧ୍ୟରେ ଯେ ବସିଅଛି ସ୍ୱର୍ଗର ମଘବା
ତାହାର ସମ୍ପଦ କଥା ତୋତେ କି କହିବା ।
ଇନ୍ଦ୍ର ସମ୍ପଦରୁ ଆଉ ଅଛି କି ସମ୍ପଦ
ନୃତ୍ୟ ଯେ କରନ୍ତି ସେହି ଅପସରା ବୃନ୍ଦ ।
ସଭାରେ ଯେ ବସିଛନ୍ତି ସେମାନେ ଦେବତା
ନନ୍ଦନବନ ଏହାର ନାମ ମହାରଥା ।
ଶୁଣି ବିଦେହ ଦାନବ ବୋଇଲେ ଯେ ହସି
ଚାଲ ଏ ନନ୍ଦନବନ ମଧ୍ୟେ ଯିବା ପଶି ।
ଇନ୍ଦ୍ରକୁ ମାରି ଘେନିବା ଏହାର ସମ୍ପଦ
ଆମ୍ଭ ପୁରେ ରହିବେ ଏ ଅପସରା ବୃନ୍ଦ ।
ସୁବୁଦ୍ଧି ଦାନବ ଶୁଣି ବୋଲଇ ଏମନ୍ତ
ତିନିପୁରେ ନାହିଁ ଇନ୍ଦ୍ର ତୁଲ୍ୟ ବଳବନ୍ତ ।
ତୋହର ଉପର ବଂଶେ ମହାବଳୀ ଜମ୍ଭ
ସ୍ୱର୍ଗକୁ ସେ ଧାଡ଼ି ଦେଲା ମନେ ବହି ଦମ୍ଭ ।
ଏହି ଇନ୍ଦ୍ର ବଜ୍ରେ ତାକୁ ପକାଇଲା ମାରି
ତେଣୁ ଜମ୍ଭଭେଦୀ ନାମ ହୋଇଲା ଏହାରି ।

ଯେବେ ଏହାର ସମ୍ପଦ ନେବାକୁ ତୋମନ
ତପସ୍ୟାରେ ତୋଷ ଯାଇଁ କମଳ ଆସନ ।
ପ୍ରସନ୍ନ କରାଇ ତାଙ୍କଠାରୁ ପାଇ ବର
ଦେବଇନ୍ଦ୍ର ହୋଇ ସୁଖେ ସ୍ୱର୍ଗ ଭୋଗକର ।
ମନ୍ତ୍ରୀ ବଚନେ ଦାନବ ବୀର ତହୁଁ ଗଲା
ମନ୍ତ୍ରୀର ହସ୍ତେ ଆପଣା ରାଜ୍ୟ ସମର୍ପିଲା ।
ହିମାଳୟ ପର୍ବତର ଗଙ୍ଗାନଦୀ ତୀରେ
ଘୋର ତପ କଲା ବସି ରହି ଅନାହାରେ ।
ଖରାବେଳେ ପଞ୍ଚଅଗ୍ନି ଥାପି କରେ ଜପ
ଶୀତ ବରଷା ସହିଣ କରଇ ସେ ତପ ।
ଏମନ୍ତେ ଗଲା ସହସ୍ର ବରଷ ଯେ ବହି
ହଂସ ପୃଷ୍ଠେ ବିଜେ କଲେ ବ୍ରହ୍ମା ଆସି ତହିଁ ।
ବୋଇଲେ ଦାନବ କିମ୍ପା କରୁଅଛୁ ତପ
ଅନାହାରେ ରହି ମହାମନ୍ତ୍ର କରୁ ଜପ ।
ପ୍ରସନ୍ନ ହୋଇଲୁ ଆମ୍ଭେ ଅଟୁ ବେଦବର
ତୋହର ଇଚ୍ଛାରେ ତୁହି ମାଗି ଘେନ ବର ।
ଆଖି ମେଲି ସେ ଦାନବ ଶୂନ୍ୟକୁ ଚାହିଁଲା
ମରାଳ ବାହନେ ବିଜେ ବ୍ରହ୍ମାଙ୍କୁ ଦେଖିଲା ।
ଚାରିମୁଖେ ଚାରିବେଦ କରୁଛନ୍ତି ଗାନ
ଚରଣେ ପ୍ରଣମି ବୋଲେ ଦାନବରାଜନ ।
ନିସ୍ତରିଲି ନିସ୍ତରିଲି ଦେଖିଲି ନୟନେ
ଏହି ବରଗୋଟି ମୋତେ ଦିଅ ସୁପ୍ରସନ୍ନେ ।
ତିନିପୁରେ ବୋଲାଇବି ମୁହିଁ ମହାବୀର
ବଜ୍ରହୁଁ ଆଣ୍ଟ ହୋଇବ ମୋହର ଶରୀର ।
କାମରୂପୀ ହେବି ମୁହିଁ ଜିଣିବି ଜଗତ
ମୋହର ଦେହରେ ବଳ ହେବ ଅପ୍ରମିତ ।
ରୁଦ୍ର ଶର ବିଷ୍ଣୁଶର ଇନ୍ଦ୍ର ଶର ଆଦି
ଉପୁଡ଼ି ପଡ଼ିବ ଦେହେଁ ତିଳେହେଁ ନ ଭେଦି ।
ବ୍ରହ୍ମଶର ଅଗ୍ନିଶର ଆଦି ଯେତେ ଶର
ମୁନ ବଙ୍କା ହୋଇଯିବ ଶରୀରେ ମୋହର ।
ଶକତି ତ୍ରିଶୂଳ ଚକ୍ର ନ ଭେଦିବ ଅଙ୍ଗେ
ହାରିଯିବେ ଦେବେ ରଣ କରି ମୋର ସଙ୍ଗେ ।
ଦାନବ ଗନ୍ଧର୍ବ ଯକ୍ଷ ହସ୍ତେ ନ ମରିବି
ଅନଳ ମଧରେ ପଡ଼ି ପୋଡ଼ି ମୁଁ ନ ଯିବି ।
ଜଳରେ ବୁଡ଼ିଲେ ପ୍ରାଣ ନ ଯିବ ମୋହର
ମାୟାବଳେ ସାଧିବି ମୁଁ ଏହି ତିନି ପୁର ।

ବ୍ରହ୍ମା ବିଷ୍ଣୁ ରୁଦ୍ର ଯୁଦ୍ଧେ ନ ପାରିବେ ମୋତେ
ଇନ୍ଦ୍ର ଆଦି ଦିଗପାଳେ ଦେବତା ସହିତେ ।
ଅସ୍ତୁ ହେଉ କହି ତହୁଁ ଗଲେ ବେଦବର
ବାଟେ ଭେଟିଲେ ଇନ୍ଦ୍ରାଦି ଦେବତା ନିକର ।
ବୋଇଲେ ଭୋ ପିତାମହ କଲ ତ ଅନୀତି
ଅମର ବର ପାଇଲା କଉଣପ ପତି ।
କାହିଁରେ ତ ନ ମରିବ ଦେଲ ଏହିବର
ବ୍ରହ୍ମା ବୋଇଲେ ମୋ ସଙ୍ଗେ ଆସ ବଜ୍ରଧର ।
ଶ୍ରୀହରିଙ୍କି କହିବା ସେ କରିବେ କାରଣ
ଶୁଣି ପୁରୁହୂତ ଗଲେ ଘେନି ଦେବଗଣ ।
କ୍ଷୀର ସିନ୍ଧୁରେ ଶ୍ରୀହରି ପାଶେ ଯାଇଁ ମିଳି
ଲକ୍ଷ୍ମୀଠାକୁରାଣୀ ଘେନି ବିଜେ ବନମାଳୀ ।
ଦେବତାଙ୍କ ସ୍ତୁତି ଶୁଣି ପଚାରିଲେ ହରି
କି ନିମନ୍ତେ ଆସିଅଛ କହ କୁଶଧାରୀ ।
ବୋଇଲେ ଯେ କୁଶଧାରୀ ଶୁଣ ତୁ ଅଚ୍ୟୁତ
ବିଦେହ ଦାନବ ତପେ ତୋଷିଲା ମୋ ଚିତ୍ତ ।
ତାହାକୁ ଅମର ବର ଦେଲି ନ ବିଚାରି
ଏଥକୁ କି ପ୍ରତିକାର କର ଦଇତ୍ୟାରି ।
ଶ୍ରୀହରି ବୋଇଲେ ତୁମ୍ଭେ ନିଜ ପୁରେ ଚଳ
ବ୍ରାହ୍ମଣ ବେଶ ଧଇଲେ ପ୍ରଭୁ ଆଦିମୂଳ ।
ବର ପାଇ ଆନନ୍ଦରେ ଆସୁଛି ଦଇତ
ଶ୍ରୀବିଷ୍ଣୁ ମାୟାରେ କଲେ ତାହାକୁ ମୋହିତ ।
ଦଇତ ଦେଖିଲା ବାଟେ ଏକ ଦ୍ୱିଜବର
ଅତି ବୃଦ୍ଧ ନାହିଁ କର ଚରଣ ତାହାର ।
ଦଇତ୍ୟ ବୋଇଲା ବିପ୍ର ଏମନ୍ତ କେ କଲା
ହାତ ଗୋଡ଼ କାଟି ତୋତେ ବାଟେ ପକାଇଲା ।
ଶ୍ରୀହରି ବୋଇଲେ ଶୁଣ ଆହେ ବୀରମଣି
ବହୁତ କାଳ ସେବିଲି ମୁହିଁ କୁଶପାଣି ।
ଖରା ବରଷା ଶୀତ ମୁଁ ଅଛି କଷ୍ଟେ ସହି
ସହସ୍ର ବରଷେ ମୋତେ ଦେଖାଇଲେ ବିହି ।
ବୋଇଲେ କି ଇଚ୍ଛା ତୋର ମାଗି ଘେନ ବର
ମୁଁ ବୋଇଲି ମୋତେ ପ୍ରଭୁ କର ଯେ ଅମର ।
ହେଉ କହି ମୋ ପାଶରୁ ହୋଇଲେ ଅନ୍ତର
ବର ପାଇବାରୁ ମୋର ଆନନ୍ଦ ଅପାର ।
ତୀର୍ଥ କରିବା ନିମନ୍ତେ ଘେନି କିଛି ଧନ
ଯାଉଥିଲି ବାଟେ ମୋତେ ଧରି ଦୁଇଜଣ ।

ଧନଯାକ ନେଇ ହାତ ଗୋଡ଼ କାଟିଦେଇ
ଏଠାରେ ପକାଇ ଦେଲେ ନ ପାରଇ ଯାଇ ।
ଯେତେ ମାଡ଼ ମାରିଛନ୍ତି କି କହିବି ତାହା
କଥା କହି ପାରୁ ନାହିଁ ଆହେ ଦୈତ୍ୟ ନାହା ।
ନାସାବାଟେ ଆତଯାତ ହେଉଛି ନିଃଶ୍ୱାସ
ଦେଖ ମୋତେ ଧଇଲାଣି ଆସି ଅଣଆଶ ।
ଏହିକ୍ଷଣି ପ୍ରାଣ ଯିବ ଦେଖୁ ଦେଖୁ ତୁମ୍ଭେ
ଅମର ବର ପାଇ ମୁଁ ମରୁଅଛି ଏବେ ।
ଏହା କହୁଁ କହୁଁ ମଲା ବୃଦ୍ଧ ଦ୍ୱିଜବର
ଦେଖି ଆଚମ୍ଭିତ ହେଲା ଦାନବ ଈଶ୍ୱର ।
ମନେ ବିଚାରିଲା ମୁହିଁ କରିବି କେମନ୍ତ
ଜନମ ହେଲେ ମରଣ ଅଟଇ ନିୟତ ।
ଜାଣିଥିଲେ ଅବା ହୋଇପାରେ ସାବଧାନ
ଏମନ୍ତ ବିଚାରି ତହୁଁ ଗଲା ତପ ସ୍ଥାନ ।
ପୁଣି ତପ କଲା ବସି ଜାଣି ବେଦବର
ବୋଇଲେ କିମ୍ପାଇଁ ତପକରୁ ପାଇ ବର ।
ଦାନବ ବୋଇଲା ମୋର ମୃତ୍ୟୁ ଭେଦ କହ
ହସି ବୋଇଲେକ ତାକୁ ଲୋକ ପିତାମହ ।
ମାନବ ହସ୍ତରେ ତୋର ମରଣ ନିୟତ
ସେ ମାନବ ହୋଇଥିବ ବିଷ୍ଣୁର ଭକତ ।
ରାଜବଂଶେ ଜାତ ହୋଇଥିବ ସେହି ପୁଣି
ଅନ୍ୟ ବାଣେ ନ ମରିବୁ ଆରେ ବୀରମଣି ।
ବ୍ରହ୍ମା ବିଷ୍ଣୁ ଶିବ ଅଂଶୁ ଜାତ ଯେଉଁବାଣ
ସେ ବାଣ ଘେନିବ ବାବୁ ତୋହର ପରାଣ ।
ଶିର କାଟିଲେ ତୋହର ନ ଯିବ ଜୀବନ
ନାଭି ଭେଦି ପ୍ରାଣଲିଙ୍ଗ କଲେଟି ଛେଦନ ।
ମରିବୁ ଏ କଥା ସତ ଆରେ ଦୈତ୍ୟରାଜ
ରାତ୍ରେ ତୋତେ ନେଇ ନ ପାରିବ ଯମରାଜ ।
ଦିବସରେ ନ ମରିବୁ ଏକଥା ପ୍ରମାଣ
ସଞ୍ଜ ସକାଳେ ମାରିବ ଯେବେ ପୁଣି ବାଣ ।
ତେବେ ତୁ ମରିବୁ ଏହି ତୋର ମୃତ୍ୟୁଭେଦ
ଆନ ନୋହିବ କଦାପି ଏ ବଚନ ସିଦ୍ଧ ।
ଏହା କହି ବେଦବର ଗଲେ ଅନ୍ତର୍ଦ୍ଧାନେ
ଦାନବମଣି ମିଳିଲା ଆପଣା ଭୁବନେ ।
ସୁବୁଦ୍ଧି ମନ୍ତ୍ରୀର ଆଗେ କହିଲା ସମସ୍ତ
ମନ୍ତ୍ରୀବର ବୋଇଲା ତୁ କଲୁ ମନ୍ଦକୃତ୍ୟ ।

ବିଷ୍ଣୁଚକ୍ର ମାୟାରେ ତୁ ପଡ଼ିଗଲୁ ମୋହ
ଜାଣି ନ ପାରି ନାଶିଲୁ ଆପଣାର ଦେହ ।
ସେ ବୃଦ୍ଧ ବ୍ରାହ୍ମଣ ଅଟେ ସାକ୍ଷାତରେ ହରି
ବୁଝି ନ ପାରିଲୁ ବୀର ମାୟାକୁ ତାହାରି ।
ବ୍ରହ୍ମାର ବଚନ ହୋଇ ପାରଇ କି ଆନ
ବିପ୍ର କଥାରେ ତୁ ପଡ଼ି ହରାଇଲୁ ଜ୍ଞାନ ।
ଆପଣା ଇଚ୍ଛାରେ ଆପେ ବାଞ୍ଛିଲୁ ମରଣ
ଶୁଣି ସେ ଦାନବମଣି ମନ୍ତ୍ରୀର ବଚନ ।
କୋପରେ ବୋଇଲା ମୁହିଁ ବିଷ୍ଣୁଙ୍କୁ ମାରିବି
ପଛେ ଯାଇ ବାସବର ପୁର ଉଜାଡ଼ିବି ।
ମନ୍ତ୍ରୀ ବୋଇଲେ ଏମନ୍ତ ନୁହଇଁ ବେଭାର
ମହାକ୍ଷୀର ସମୁଦ୍ରରେ ଶ୍ରୀ ବିଷ୍ଣୁର ଘର ।
ଆଗ ସାଧିବା ଅସୁରବଳ ଚାଲ ଯାଇଁ
ମହାମହା ସୁରମାନେ ଅଛନ୍ତି ଯେ ତହିଁ ।
ତାହାଙ୍କୁ ଆଣି ଆମ୍ଭର ଥାଟେ ମିଶାଇବା
ବହୁତ ଥାଟ ହୋଇଲେ ସ୍ୱର୍ଗପୁର ନେବା ।
ପାତାଳ ସାଧି ବିଷ୍ଣୁଙ୍କୁ କରିବା ନା ଜୟ
କଇଳାସ ସାଧିନେବା ଶିବର ଆଳୟ ।
ସମୁଦ୍ର ସାଧି ବରୁଣପୁର ଆମ୍ଭେ ନେବା
ବହୁତ ରତ୍ନ ଭଣ୍ଡାରେ ଆଣି ତା ଥୋଇବା ।
ପୃଥିବୀ ସାଧିବା ତହୁଁ ଶୁଣ ମହାବୀର
ତିନିପୁରେ ଦାନବଙ୍କ ହେବ ଅଧିକାର ।
ମନ୍ତ୍ରୀ ବଚନେ ଅସୁର କଲା ସନମତ
ବୋଇଲା ଥାଟ ଆମ୍ଭର ସାଜ ହୋ ତୁରିତ ।
ମନ୍ତ୍ରୀ ବୋଇଲା ଶ୍ରୀମୁଖ ଗୋଟିଏ ଲେଖିବା
ଦାନବ ବୀରମାନଙ୍କୁ ପାଖେ ପଠାଇବା ।
ଯେ ଆସିବେ ତାଙ୍କୁ ଆମ୍ଭେ କରିବା ଆଦର
ନ ମାନିବା ଲୋକ ସଙ୍ଗେ କରିବା ସମର ।
ଦାନବପତି ବୋଲଇ ନ କର ବିଳମ୍ବ
ଶ୍ରୀମୁଖ ଲେଖିବା ପାଇଁ କଲା ସେ ଆରମ୍ଭ ।
ଲେଖନ ପତର ଧରି ଲେଖଇ ସେ ଆଗ
ବିଦେହ ନାମେ ଦାନବ କୁଳର ଯେ ବାଘ ।
ଧୁନ୍ଧୁବଂଶେ ଜନମ ଯେ ଗୁଣର ସାଗର
ଶୋଭାବତୀ ପାଟଣାରେ ଅଟଇ ତା ଘର ।
ଯେଉଁ ଶୋଭାବତୀପୁର ପ୍ଲକ୍ଷଦ୍ୱୀପେ ସାର
ଅତିଯତ୍ନେ ଗଢ଼ିଥିଲା ଯାହା ବେଦବର ।

ଘର ସବୁ ସ୍ଫଟିକରେ ହୋଇଛି ନିର୍ମାଣ
ଜକ ଜକ ଦିଶୁଛନ୍ତି ଯହିଁ ଖମ୍ବମାନ ।
ଶୋଭାରେ ଅମରାବତୀ ନିନ୍ଦଇ ସେ ପୁର
ତେଣୁ ଶୋଭାବତୀ ନାମ ଦେଲେ ବେଦବର ।
ବ୍ରହ୍ମାର ବର ପାଇ ସେ ଦନୁଜ ରାଜନ
ବଳେ ଘେନିଣ ବିଚାର ଅମର ଭୁବନ ।
ଯାହାର ପ୍ରତାପ ସହି ନ ପାରଇ ମହୀ
ତାହାର ଶ୍ରୀମୁଖ ଆଜ୍ଞା ଯେ ଦାନବ ପାଇ ।
ଆସିବ ତାହାକୁ ସେହି କରିବେ ଆଦର
ନ ଆସିଲେ ତାହା ସଙ୍ଗେ କରିବେ ସମର ।
ଏମନ୍ତ ଦେଖି ଦୁତଙ୍କ ହସ୍ତେ ପଠାଇଲା
ଦାନବମାନଙ୍କ ହସ୍ତେ ଦୂତ ନେଇ ଦେଲା ।
ଆନନ୍ଦେ ଅସୁରବଳ ଅଇଲେକ ମାଡ଼ି
ଶୋଭାବତୀ ପାଟଣାକୁ ଘରଦ୍ୱାର ଛାଡ଼ି ।
ପାତାଳରେ ଥିଲେ କେତେ ନାରାୟଣ ଡରେ
କେତେ ଶୁଣି ଲୁଚିଥିଲେ ସମୁଦ୍ର ଭିତରେ ।
ସେମାନଙ୍କ ନାମ ପୁଣ ଆହୋ ସୁରମୁନି
ସୁମୁଖ ଦୁର୍ମୁଖ ନାମେ ଏ ଅସୁର ବେନି ।
କଙ୍କ ଧଙ୍କ ଦୁଇ ବୀର ମହା ବଳବନ୍ତ
ଶଙ୍କଟ ନିକଟ ଦୁଇ ଅସୁର ଧୂମାନ୍ତ ।
ହୟଶିରା ଗଜଶିରା ଶଙ୍ଖନାଭି ବୀର
ବିକରାଳ ଶ୍ରୀକଟାଳ କଟାଳ ଆବର ।
ସୁଜଙ୍ଘ ପ୍ରଜଙ୍ଘ ସ୍ଥୂଳଜଙ୍ଘ ଏହି ତିନି
କ୍ଷଣକେ ବୁଲିପାରନ୍ତି ସକଳ ମେଦିନୀ ।
ନାଗାନ୍ତକ ଯାଗାନ୍ତକ ଏ ବେନି ଅସୁର
କ୍ଷଣକେ ସାଧିପାରନ୍ତି ଅମର ନିକର ।
ଖୁରଣସ ଖୁରଚକ୍ଷୁ ବିକୃତ ଲୋଚନ
ସ୍ଥୂଳକାୟ ବୃହତ୍କାୟ ତ୍ରିକୁଟନୟନ ।
ଏମନ୍ତେ ଯେ ବୀରମାନେ ଶୋଭାବତୀ ପୁରେ
ଖଟିଲେ ବିଦେହ ଦୈତ୍ୟ ପାଦେ ପ୍ରାଣଡରେ ।
ଗଉରବ କରି ତାଙ୍କୁ ରଖିଲେ ବିଦେହ
ସେନାପତିପଦେ ଶାଢ଼ୀ ଦେଇ କଲା ସ୍ନେହ ।
ହୋଇଲେ ଦାନବବଳ ବତିଶ ପରାର୍ଦ୍ଧ
ମହାବଳ ମହାବୀର ସର୍ବେ ମହାଯୋଧ ।
ଆନନ୍ଦ ହୋଇ ବିଦେହ ମନ୍ତ୍ରୀକି କହଇ
ଆମ୍ଭର ଥାଟକୁ ଦେଖି ଯମହିଁ ଡରଇ ।
ସ୍ୱର୍ଗ ଭୁବନକୁ ଆମ୍ଭେ ଯିବା ଚାଲ ବାହି
ଶୁଣି ମନ୍ତ୍ରୀ ଥାଟ ସଜକଲା ବେଗେ ଯାଇଁ ।
ଚଳିଲେ ଅସୁରବଳ ଦଶଯୁଣ ମାଡ଼ି
ଋଷିମୁନିଙ୍କି ଖାଇଲେ ବାଟେ ଧରିଗୋଡ଼ି ।
ଗୋରୁ ବ୍ରାହ୍ମଣ ଦେଖିଲେ ହୁଅନ୍ତି ଆନନ୍ଦ
ଗୋଟା ଗୋଟା ଧରି ଗିଳିଦିଅନ୍ତି ସେ ମନ୍ଦ ।
କାହାର ଆଖି ଦିଶଇ ଗିରିକ୍ରୋଟ ପରି
ଗଜଦନ୍ତଠାରୁ ବଡ଼ ଦାନ୍ତ ବା କାହାରି ।
ପର୍ବତପ୍ରାୟ ଦିଶଇ କେଉଁ ଦୈତ୍ୟଗୋଟା
କାହାର ବା ଜଙ୍ଘ ଦୁଇ ହୋଇଅଛି ମୋଟା ।
କାହାର ଶିର ଲାଗଇ ସୂର୍ଯ୍ୟରଥେ ଯାଇ
କାହା ଦେହ ଶିରାମୟ ଭୀଷଣ ଦିଶଇ ।
କାହା ନାକ ଖୁର ପରି କୁଲା ପରି କାନ
କାହାର ନଖ ଦିଶଇ ଖୁରୂପୀ ସମାନ ।
କାହାର କେଶ ଖାଙ୍କର ଭୟଙ୍କର ଅତି
ଦେଖିଲେ ଡର ମାଡ଼ିବ ତାହାର ମୂରତି ।
ଘଡ଼ଘଡ଼ି ପରି ଶୁଭେ ରଡ଼ି ତାହାଙ୍କର
ତର୍ଜନ ଗର୍ଜନ କରି ଧାମନ୍ତି ଅସୁର ।
ଛୁରୀ ଖଣ୍ଡା ତରବାରୀ କୁନ୍ତ ଯେ ଶାବଳ
ଘେନି ଧାମନ୍ତି ଅସୁରେ ହୋଇ କୁତୁହଳ ।
ଶକତି ମୁଦ୍‌ଗର ଧରି ମାରଇ କେ ଚିରା
କାହା ପାଦଭରେ କମ୍ପି ଯାଉଅଛି ଧରା ।
କେହି ଧନୁଶର ଧରି ଯାଏ ରଥ ଚଢ଼ି
ବାହାସ୍ଫୋଟ ମାରି କେହି ଯାଉଛି ଦଉଡ଼ି ।
କେହି ଗଜପୃଷ୍ଠେ ବସି ଧରିଛନ୍ତି ଖଣ୍ଡା
ଅଶ୍ୱପୃଷ୍ଠେ ବସିଅଛି କେବଣ ପ୍ରଚଣ୍ଡା ।
ଶାର୍ଦ୍ଦୂଳ ଚଢ଼ି ଯାଉଛି କେଉଁ କଉଣପ
କେ ଗଧ ଚଢ଼ି ଯାଉଛି କରେ ଧରି ଚାପ ।
ଏମନ୍ତେ ଅସୁରବଳ ନିର୍ଭୟେ ଗମନ୍ତି
ଦେଖି ଆନନ୍ଦ ମନରେ ସେ ଦାନବ ପତି ।
ସାରଥିକି ବୋଲେ ମୋର ରଥ ଆଣ ସାଜି
ସାରଥି ଯୋଚଲା ରଥେ ଚାରିଗୋଟି ବାଜୀ ।
ଉଡ଼ି ପାରନ୍ତି ସେ ଘୋଡ଼ା ଅନ୍ତରୀକ୍ଷ ମାର୍ଗେ
ବିଦେହ ଦୈତ୍ୟ ସେ ରଥେ ବସିଲାକ ବେଗେ ।
ସୁବୁଦ୍ଧି ମନ୍ତ୍ରୀ ବସିଲା ଆନରଥେ ଯାଇଁ
ଟମକ ନିଶାଣ ବାଦ୍ୟେ ମହୀ ଚମକଇ ।

ଧାମନ୍ତେ ଗଗନମାର୍ଗେ ଦେଖିଲେ ଆଦିତ୍ୟ
ସହସ୍ରେ କିରଣ ଧରି ହୋଇଲେ ଉଦିତ ।
ଦୂତ ଯାଇଁ ଜଣାଇଲା ବାସବର ଆଗେ
ଆହୋ ସୁରପତି ଦୈତ୍ୟ ପଶିଲେ ତୋ ସ୍ୱର୍ଗେ ।
ବିଦେହ ଦଇତ ଜମ୍ଭୁଦୈତ୍ୟ ପଣନାତି
ଶୋଭାବତୀ ପାଟଣାର ଅଟେ ଅଧିପତି ।
ବ୍ରହ୍ମାର ବରେ ଅତୁଟ ଅକାଟ ତା କାୟ
ବଡ଼ ପ୍ରତାପୀ ଅଟଇ ସେ ଦାନବ ରାୟ ।
ବତିଶ ପରାର୍ଦ୍ଧ ଦୈତ୍ୟ ଅଛନ୍ତି ତା ସଙ୍ଗେ
ଏକୁଁ ଏକ ମହାବଳୀ ପଶିଲେଣି ସ୍ୱର୍ଗେ ।
ବିଚାରି କାର୍ଯ୍ୟ କରିବା ହେଉ ସୁର ରାୟ
ଶୁଣି ଇନ୍ଦ୍ରଦେହେ ହେଲା କୋପ ଯେ ଉଦୟ ।
ଆଦିତ୍ୟଗଣଙ୍କୁ ଚାହିଁ ବୋଇଲେ ତୁରିତ
ବାଟ ଓଗାଳ ପୁରକୁ ନ ପଶୁ ଦଇତ ।
ଦ୍ୱାଦଶ ଆଦିତ୍ୟଗଣ ଘେରିଗଲେ ଧାଇଁ
ଅନଳକୁ ଆଜ୍ଞା ପୁଣି ଦେଲେ ସୁରସାଇଁ ।
ପ୍ରଚଣ୍ଡ ହୋଇ ଶିଖାରେ ପୋଡ଼ିପକା ତାଙ୍କୁ
ଯେମନ୍ତେ ସେ ନ ଆସନ୍ତି ଅମର ପୁରକୁ ।
ପବନକୁ ବୋଇଲେ ତୁ ସାହା ହୁଅ ଯାଇଁ
ଯେମନ୍ତେ ଅଗ୍ନି ଦେବତା ଅସୁର ପୋଡ଼ଇ ।
ବାଟ ନ ଛାଡ଼ିବ ସ୍ୱର୍ଗଦ୍ୱାର ଥିବ ରୁନ୍ଧି
ମୁହିଁ ଯାଉଅଛି ତୁମ୍ଭ ପଛେ ସୈନ୍ୟସାଜି ।
ଏମନ୍ତ କହି ବାସବ ରଥରେ ବସିଲା
ମାତଳି ସାରଥି ସେହି ରଥକୁ ବାହିଲା ।
ରୁଦ୍ର ଦେବତା ଅଇଲେ ରୁଦ୍ରଗଣ ଘେନି
ଦେବସୈନ୍ୟ ସେନାପତି ଅଟଇ ସେନାନୀ ।
ଯମ କାଳଦଣ୍ଡ ଘେନି ହୋଇଲେ ବାହାର
ଯକ୍ଷଙ୍କୁ ଘେନି ଅଇଲା ମହାତ୍ମା କୁବେର ।
ବରୁଣ ଦେବତା ଜଳପାଶ ଘେନି ଧାଇଁ
ଚିତ୍ରସେନ ଗନ୍ଧର୍ବ ସେ ରଥ ଚଢ଼ି ଯାଇ ।
ଶୂନ୍ୟରେ ଥାଇ ତେତିଶକୋଟି ଯେ ଦେବତା
ଅସୁର ସଙ୍ଗେ ଯୁଝିବା ପାଇଁ କଲେ କଥା ।
ଯାଇ ନ ପାରି ଦାନବ ରହିଲା ଆକାଶେ
ଆଦିତ୍ୟ ଦେବତା ତେଜ ବିକାଶିଲେ ରୋଷେ ।
ଅସୁରେ ବୋଇଲେ ଆଉ ନ ପାରିବୁ ସହି
ପ୍ରଚଣ୍ଡ ଅନଳ ଦେଖ ଆସୁଅଛି ଦହି ।
ବିକଳ ଦେଖି ବିଦେହ ଦାନବ ଧାଇଁଲା
ବାର ଆଦିତ୍ୟଙ୍କୁ ବାର ବିଧା ଯେ ମାଇଲା ।
ବଜ୍ରସମ ମଣି ତାହା ପଳାଇଲେ ଡରେ
ଅସୁର ତହୁଁ ମିଳିଲା ଅଗ୍ନି ସମ୍ମୁଖରେ ।
ଦୈତ୍ୟକୁ ଦେଖି ପ୍ରଚଣ୍ଡ ଅଗ୍ନିଶିଖା ଉଠେ
ପୋଡ଼ି ନ ଯାଇ ଦାନବ ବୀର ଅଗ୍ନିପୃଷ୍ଠେ ।
ବିଧାଏ ମାଇଲା ବହ୍ନି ନ ପାରିଲା ସହି
ପଳାଇଲା ଦାନବର ଆଗରେ ନ ରହି ।
ତାହା ଦେଖି ଆଗଭର ହୋଇଲା ପବନ
ଅଣଞାଶ ମୂରତିରେ ବହେ ଘନ ଘନ ।
ଅଟଳ ଦାନବଙ୍କୁ ସେ ନ ପାରିଲା ଟାଳି
ଚାପୋଡ଼େ ମାଇଲା ଦୈତ୍ୟଦେଇ ତାଙ୍କୁ ଗାଳି ।
ପବନ ଦେବତା ତହୁଁ ପଳାଇଲେ ଡରେ
ଚାରି ମେଘ ସୈନ୍ୟସାଜି ଅଇଲେ ସତ୍ୱରେ ।
ଘଡ଼ଘଡ଼ି ଚଡ଼ଚଡ଼ି ମାରି ଘନ ଘନ
ଘୋଟିଗଲେ ଚାରିମେଘ ଆଚ୍ଛାଦି ଗଗନ ।
ଘୋର ଅନ୍ଧକାର ହେଲା ନ ଦିଶିଲା କିଛି
ମନ୍ଦର ପର୍ବତ ପ୍ରାୟ ଦୈତ୍ୟ ରହିଅଛି ।
ଘନ ଘନ ମାରୁଅଛି ଶୂନ୍ୟରେ ବିଜୁଳି
କରକା ପଥର ବୃଷ୍ଟି କେ ପାରିବ କଳି ।
ମୂଷଳ ଧାରା ପ୍ରମାଣେ ବରଷନ୍ତି ନୀର
ନିର୍ଭୟରେ ରହିଅଛି ସେ ଦାନବ ବୀର ।
ନିର୍ଘାତ ପ୍ରାୟ ଶୁଭୁଛି ଦେଖି ଲାଗେ ଭୟ
ଅସୁରେ ବୋଇଲେ ରଖ ରଖ ଦୈତ୍ୟରାୟ ।
ଏମନ୍ତ କାତର ବାଣୀ ଶୁଣି ବୀରମଣି
ମେଘମଣ୍ଡଳରେ ପୁଣି କୋପେ ଶିର ଝୁଣି ।
ଚାରି ମେଘକୁ ଯେ ଚାରି ଗୋଟା ମାରେ ମୁଷ୍ଟି
ଡରେ ଛାଡ଼ି ପଳାଇଲେ ଗଗନ ଉପେକ୍ଷି ।
ମେଘେ ଭାଙ୍ଗିଗଲେ ଯହୁଁ ତୁଟିଲା ଅନ୍ଧାର
ଦିଗ ପରକ ହୋଇଲା ଧାଇଁଲେ ଅସୁର ।
ଦେବ ସୈନ୍ୟସଙ୍ଗେ ଯାଇ ହେଲେ ଭେଟାଭେଟି
ଗୁରୁଜ ଶାବେଳୀ କୋପେ ହେଲେ ପିଟାପିଟି ।
ବଳିଷ୍ଠ ଦାନବେ ତିଳେ ନ ଘୁଞ୍ଚନ୍ତି ରଣେ
ପିଠି କଲେ ଦେବସୈନ୍ୟ ଅସୁରଙ୍କ ବାଣେ ।
କୋପେ କାର୍ତ୍ତିକେୟ ଚଢ଼ି ମୟୂର ଉପରେ
ମାଇଲେ ଅସୁର ବଳ ତୀକ୍ଷ୍ଣ ନାରାଚରେ ।

ପଡ଼ିଲେ ବହୁତ ଦୈତ୍ୟ ଖଣ୍ଡ ଖଣ୍ଡ ହୋଇ
ଦେଖି ସୁମୁଖ ଦୁର୍ମୁଖ ଏହି ଦୁଇ ଭାଇ ।
ବେଢ଼ିଲେ ସଇନ୍ୟ ଘେନି ସେନାନୀଙ୍କ ବଳେ
କୋପେ ଶକତି ଧଇଲେ ଅସୁରଙ୍କ ରୋଳେ ।
ଶକତିର ତେଜ ସହି ନ ପାରିଲେ ସେହି
ପଛଘୁଞ୍ଚା ଦେଲେ ଦୁହେଁନ ପାରିଲେ ସହି ।
ଶକଟ ବିକଟ ଦୁଇ ବୀରେ କଲେ ରୋଷ
ଦୁହେଁ ଦୁଇ ଗଦାଧରି କରିଣ ଆକ୍ରୋଶ ।
ମୟୂରକୁ ମାରିବାକୁ ମାଇଲେ ନିଠାଇ
ଶକତିରେ ବେନିଖଣ୍ଡ ହେଲେ ଗଦା ଦୁଇ ।
ଦେଖି ଭୟକରି ଦୁହେଁ ପଛଘୁଞ୍ଚା ଦେଲେ
ଆନବୀର ଭୟ ପାଇ ଆଗକୁ ନ ଗଲେ ।
ଦାନବ ଈଶ୍ୱର ଦେଖି କଲା ମହାକୋପ
ଶରବୃଷ୍ଟି କଲା କରେଘେନି ଲୁହାଚାପ ।
ଶକତିର ତେଜେ ସବୁ ଶର ଗଲା ଜଳି
ଧାଇଁଗଲା କୋପଭରେ ଦୈତ୍ୟ ମହାବଳୀ ।
ଦେଖି କାର୍ତ୍ତିକେୟ ତାକୁ ମାଇଲେ ଶକତି
ତିଳେ ନ ଭେଦିଲା ଖସିପଡ଼େ ଯାଇଁ କ୍ଷିତି ।
ଭୟେ କାର୍ତ୍ତିକେୟ ତହୁଁ ଆଡ଼ ହୋଇଗଲେ
ରୁଦ୍ରଗଣ ଆସି କୋପେ ଦୈତ୍ୟଙ୍କୁ ବେଢ଼ିଲେ
ବାଣେ ଛାଇଦେଲେ ଘୋର ଦାନବର ଅଙ୍ଗ
ନିର୍ଭୟେ ସେ ବେଳୁବେଳ ହୁଏ ପୁଣି ଆଗ ।
ଦେଖି ରୁଦ୍ରଗଣଙ୍କୁ ଯେ ନ ସ୍ଫୁରଇ କିଛି
ବିଚାରନ୍ତି ଏ କାହିଁରେ ଗଢ଼ା ହୋଇଅଛି ।
ପର୍ବତ ଫୁଟାଇ ଲୁହା ତୁଟଇ ଯେ ବାଣେ
ଦୈତ୍ୟଅଙ୍ଗେ ନ ଭେଦଇ କି ପେଶିବୁ ରଣେ ।
ଏମନ୍ତ ବିଚାରୁ ଦୈତ୍ୟ ଗଦା ଏକ ଧରି
ପିଟନ୍ତେ ସେ ରୁଦ୍ରଗଣ ଗଲେ ଅପସରି ।
ଧାଇଁଲେ ଗନ୍ଧର୍ବ ବଳ ଚିତ୍ରସେନ ଘେନି
ମାଇଲେ ଦନୁଜ ବଳ ଗଲେ ସଂଯମନୀ ।
ତା ଦେଖି ବିଦେହ ଦୈତ୍ୟ କୋପେ ପ୍ରଜ୍ୱଳିତ
ଗଦାଧରି ମାଇଲା ସେ ବଳ ଅପ୍ରମିତ ।
ଚିତ୍ରସେନ ଓଗାଳିଲା ବଡ଼ ଟାଣ କରି
ଗଦାରେ ପିଟନ୍ତେ ସେହୁ ଗଲା ଅପସରି ।
ମଇଁଷି ଉପରେ ଚଢ଼ି ଅଇଲାକ ଯମ
କାଳଦଣ୍ଡ ଧରିଅଛି କରି ମହାତମ ।
ଗଦା ଧରି ସେ ଦାନବ ଯାଉଅଛି ଧାଇଁ
ଯମ କାଳଦଣ୍ଡ ଶିରେ ପିଟିଲାକ ନେଇ ।
ନ ଭେଦିଲା ତେତେବଡ଼ ଅସ୍ତ୍ରଗୋଟା ତିଳେ
ଯମ ଛାଡ଼ି ପଳାଇଲା ଡରି ଦୈତ୍ୟରାଳେ ।
ବସୁଗଣ ଓଗାଳିଲେ ଦାନବକୁ ଯାଇ
ପ୍ରତାପୀ ଦୈତ୍ୟ ଗଦାରେ ପିଟିଲା ନିଠାଇ ।
ସହି ନ ପାରି ସେ ତହୁଁ ହୋଇଲେ ଅନ୍ତର
ବରୁଣ ଆସି ପାଶକୁ କଲାକ ବିସ୍ତାର ।
ପାଶରେ ପଡ଼ି ଦାନବ ଦେଲା ତା ଛିଣ୍ଡାଇ
ଯେମନ୍ତେ କୁମ୍ଭୀର ଜାଲ ଚିରିଦେଇ ଯାଇ ।
ଦେଖି ବରୁଣ ଦେବତା ପଳାଇଲେ ଡରେ
କୁବେର ପିଟିଲା ଗଦା ଦାନବର ଶିରେ ।
ଗଦା ଭାଙ୍ଗିଗଲା ଦୈତ୍ୟ ତିଳେ ନ ଘୁଞ୍ଚିଲା
ଭୟେ କୁବେର ଦେବତା ଛାଡ଼ି ପଳାଇଲା ।
ବାସବ ଧାଇଁଲା କୋପେ ବଜ୍ର ଧରି କରେ
ବସିଅଛି ଐରାବତ ଗଜର ଉପରେ ।
ଦାନବ ଯାଇଁ ତାହାକୁ ଓଗାଳିଲା ବାଟ
ପର୍ବତ ଆଗରେ କିବା ପର୍ବତର ଭେଟ ।
ଥୋରେ ହସ୍ତ ବୁଲାଇଲା ଐରାବତ ଗଜ
ଦେଖି ତାହାକୁ ଧଇଲା ସେ ଦାନବରାଜ ।
କୋପେ ଦେବରାଜା ବଜ୍ରେ ପିଟିଲା ଦୈତ୍ୟକୁ
ଟହ ଟହ ହୋଇ ହସି ଧଇଲା ଗଜକୁ ।
ଦାନବ ବିକ୍ରମ ଦେଖି ଇନ୍ଦ୍ର ଗଲା ଖସି
ଦାନବର ବେକମୂଳେ ପ୍ରହାରିଲା ଆସି ।
ଦୁଇଖଣ୍ଡ ହୋଇ ଭାଙ୍ଗିଗଲା ସେ ଖଡ଼୍‌ଗ
କୋପଭରେ ଗରଜଇ ସେ ମତ୍ତମାତଙ୍ଗ ।
ମହାପ୍ରତାପୀ ଦଇତ ଧରିଅଛି ଥୋର
ଚଳି ନ ପାରଇ ତେଡ଼େ ବଡ଼ ଗଜ ବର ।
ଇନ୍ଦ୍ର ଆଣି ଶକତିଏ ମାଇଲା ନିଠାଇ
ପଡ଼ିଲା ଦାନବବୀର ତଳେ ମୂର୍ଚ୍ଛାଯାଇ ।
ପଳାଇଲା ଗଜବର ନ ରହିଲା ଆଗେ
ଚେତାପାଇ ଦୈତ୍ୟବୀର ଧାମଇଁ ସେ ବେଗେ ।
ଇନ୍ଦ୍ର ଯେ ପଳାଇ ଗଲେ ମହାଭୟ ପାଇ
ବ୍ରହ୍ମାଙ୍କ ଆଗେ ନାରଦ କହିଲେକ ଯାଇଁ ।
ବିଦେହ ଦାନବ କଲା ସ୍ୱର୍ଗପୁର ଧ୍ୱଂସ
ଦାନବ ଭୟରେ ଦେବେ ଛାଡ଼ିଯିବେ ବାସ ।

ବେଦବର ଶୁଣି ତହୁଁ ଅଇଲେକ ଧାଇଁ
ବିଦେହ ଦାନବ ପାଶେ ମିଳିଲେକ ଯାଇଁ ।
ବ୍ରହ୍ମାଙ୍କୁ ଦେଖି ଦାନବ ପାଦେ ଓଳଗିଲା
କରଯୋଡ଼ି ଉଭା ହୋଇ ସ୍ତୁତି ଆରମ୍ଭିଲା ।
କଲ୍ୟାଣକଲେ ତାହାକୁ ହସ୍ତକୁ ପ୍ରସାରି
ବୋଇଲେ ବାବୁରେ ସ୍ୱର୍ଗ ନାଶୁ ନବିଚାରି ।
ଜିଣିଲୁ ତୁ ସ୍ୱର୍ଗପୁର ଇନ୍ଦ୍ର ହେଲା ଦାସ
ଯାହା ତୁ ମାଗିବୁ ତାହା ଦେବ ସୁରଈଶ ।
ଦାନବ ବୋଇଲା ବାଛି ବାଛି ରତ୍ନ ଦେଉ
ଯମ ଦେବତା ମୋ ପୁରେ ନ ପଶିବ ଆଉ ।
ବ୍ୟାଧି ପୀଡ଼ା ନ କରିବ ମୋହର ନଗରେ
ମୃତ୍ୟୁ ମୁଖେ ନ ପଡ଼ିବେ କେହି ମୋର ପୁରେ ।
ଭଲ ଭଲ ଅପସରା ଦେଉ ପୁରନ୍ଦର
ଦେବାଙ୍ଗ ପାଟ ବସନ ଦେଉ ଯେ ଆବର ।
ତାହା ଘେନି ମୁହିଁ ଯିବି ମୋହର ଭୁବନେ
ଡରେ ତାହା ଆଣିଦେଲେ ସହସ୍ର ଲୋଚନେ ।
ଦନୁଜ ପାଇ ଆନନ୍ଦେ ଅଇଲାକ ଫେରି
ରୁଦ୍ର ପୁରକୁ ବାହିଲା ମନ୍ତ୍ରୀଙ୍କି ପଚାରି ।
କଇଳାସେ ଥିଲେ ଶିବ ଦାନବର ଧାଡ଼ି
ଜାଣିପାରି ପଳାଇଲେ କଇଳାସ ଛାଡ଼ି ।
ଖୋଜି ଖୋଜି ନ ପାଇଲା ତାହାଙ୍କୁ ଦାନବ
କଇଳାସ ଭାଙ୍ଗନ୍ତେ ତା ଜାଣି ମହାଦେବ ।
ନାରାୟଣ ଦେବତାଙ୍କୁ କଲେ ସୁମରଣ
ଗରୁଡ଼ ପୃଷ୍ଠେ ଆରୋହୀ ବିଜେ ଜନାର୍ଦ୍ଦନ ।
ହରିହର ଦୁହେଁ ମିଳି କଲେ ଯାଇଁ ରଣ
ତାହାଙ୍କ ସଙ୍ଗେ ଅଛନ୍ତି ପ୍ରମଥ ଯେ ଗଣ ।
ବିନାୟକ କାର୍ତ୍ତିକେୟ ବୀରଭଦ୍ର ଆଦି
ସମସ୍ତଙ୍କ ଆଗେ ଅଛି ବୀରବର ନନ୍ଦୀ ।
ଦାନବ ବଳକୁ ମାରି କରିଦେଲେ ପଦା
ଦେଖି ବିଦେହ ଦାନବ କରେ ଧରି ଗଦା ।
ବୁଲାଇ ପିଟନ୍ତେ ନନ୍ଦୀ ପଳାଇଲେ ଡରେ
ବୀରଭଦ୍ର ଶୂଳ ନେଇ ମାଇଲା ତା ଉରେ ।
ନଭେଦିଲା ତିଳେ ମାତ୍ର ହୋଇଲା ବିଅର୍ଥ
ଭୟେ ବୀରଭଦ୍ର ଗଲା ନ କରି ଅନର୍ଥ ।
ବିନାୟକ ଦେବତା ଯେ ମାଇଲେ ଅଙ୍କୁଶ
ହସଇ ଯେ ଟହ ଟହ ହୋଇ ଦୈତ୍ୟଈଶ ।

ଦେଖି ରୁଦ୍ରଗଣ ଭୟେ ଗଲେ ଅପସରି
ଗରୁଡ଼ ପୃଷ୍ଠରେ ବିଜେ କଲେ ଦଇତାରି ।
ମନ୍ତ୍ରୀକି ଚାହିଁ ବୋଲଇ ଦାନବ ରାଜନ
ଏହି କି ରୁଦ୍ର ଦେବତା କଲା ଆଗମନ ।
ମନ୍ତ୍ରୀ ବୋଲଇ ଏ ରୁଦ୍ର ନୁହଁନ୍ତି ଶ୍ରୀହରି
ଦଇତ ମାରି ବୋଲନ୍ତି ନାମ ଦଇତାରି ।
ଏହାର ଯେ ଚିତ୍ରକୁଟ ମାୟାରେ ତୁ ପଡ଼ି
ମୃତ ବାଞ୍ଛିଲୁ ଅମର ପାଦକୁ ତୁ ଛାଡ଼ି ।
ଏହି ଜନାର୍ଦ୍ଦନ ଅଟେ ମହାବଳବନ୍ତ
ଅସୁର କୁଳର ଧୂମକେତୁ ଏ ଦୁର୍ଦ୍ଦାନ୍ତ ।
ଶୁଣି କୋପେ ଗରଜିଲା ସେ ଦାନବ ମଣି
ଗଦାବର ବୁଲାଇଲା ବେଗେ ଶିର ଝୁଣି ।
ଗରୁଡ଼ ଉପରେନେଇ ପିଟିଲା ତା ଭାଗେ
ଖଗବର ମୂର୍ଚ୍ଛାଗଲା ଶ୍ରୀହରିର ଆଗେ ।
ଦେଖି ଭାବଗ୍ରାହୀ ଶଙ୍ଖ ଛୁଇଁ ଦେଲେ ପ୍ରାଣ
ବୋଇଲେ ତୋ ଘରେ ତୁ ହୋ ଯାଅ ଖଗରାଣ ।
ଏହା କହି ଗଦା ଧରି ଧାଇଁଲେ ଶ୍ରୀହରି
ଦାନବ ଧଇଲା ଗଦା ବକ୍ରଗତି କରି ।
ଦୁହେଁ ଗଦାଯୁଦ୍ଧ କଲେ ନାହିଁ ଦିନରାତି
ଦାନବର ଗଦା ଭାଙ୍ଗିଦେଲେ ଶିରୀପତି ।
ଦାନବ ଶ୍ରୀହରି ହସ୍ତୁ ଗଦା ନେଲା କାଢ଼ି
ପିଟନ୍ତେ ଶ୍ରୀହରି ପୁଣି ନେଲେ ତା ଉଛୁଡ଼ି ।
ପିଟିଲେ ଦାନବ ଶିରେ ପ୍ରଭୁ ଜନାର୍ଦ୍ଦନ
ହସି ଦାନବ ବୋଲଇ ନେବି ତୋ ଜୀବନ ।
ଆନ ଦଇତ୍ୟ ପରି କି ମଣିଛୁ ତୁ ମୋତେ
ତୋହର ଜୀବନ ଜାଣ ଅଛି ମୋର ହାତେ ।
କୋପେ ଶ୍ରୀହରି ଧଇଲେ ଚକ୍ର ସୁଦର୍ଶନ
ମାରନ୍ତେ ଦନୁଜ ଅଙ୍ଗେ ବାଜିଲା ବହନ ।
ତିଳେମାତ୍ର ନ ଭେଦିଲା ଦେଖି ଚକ୍ରଧର
ଭୟେ ଅନ୍ତର୍ଦ୍ଧାନ ହେବାଦେଖି ଦେବ ହର
ତ୍ରିଶୂଳ ପିଟିଲେ ନେଇ ଦାନବର ଉରେ
ଉପୁଡ଼ି ତ୍ରିଶୂଳ ଯାଇଁ ପଡ଼େ ଖଣ୍ଡେଦୂରେ ।
ରୁଦ୍ର ଦେବତା ଅନ୍ତର ହେଲେ ଭୟ ପାଇ
ସୁବୁଦ୍ଧି ମନ୍ତ୍ରୀ ବୋଲଇ ଶୁଣ ଦୈତ୍ୟସାଇଁ ।
ଜୟ କଲୁ ଚାଲ ଯିବା ପୃଥିବୀ ଜିଣିବା
ପାତାଳେ ଯାଇ ବାସୁକୀ ପୁରକୁ ପଶିବା ।

ମନ୍ତ୍ରୀର ବଚନେ ଦୈତ୍ୟ ପଶିଲେ ପାତାଳେ
ମହାଭୟ ପାଇଲେକ ଦେଖି ନାଗବଳେ ।
ଡରେ ବାସୁକୀ ପଶିଲା ଶରଣ ତା ପାଦେ
ମଣି ଏକ ଦେଲା ଦୈତ୍ୟ ଘେନିଲା ତା ହୃଦେ ।
ଅନେକ ଯେ ଧନରତ୍ନ ଆଣିଲେ ଅସୁରେ
ମାନବ ହୋଇଣ ତାହା କିଏ କହିପାରେ ।
ପାତାଳ ଜିଣି ମିଳିଲେ ଆସି ମର୍ତ୍ତ୍ୟପୁର
ମନେ ମନେ ଆନନ୍ଦିତ ହୋଇଲେ ଅପାର ।

.....❋.....

## ବିଦେହ ଦୈତ୍ୟ ବଧ

ଏମନ୍ତ ବେଳେ ନାରଦ ମିଳିଲେକ ଆସି
ଦେଖି ଗଉରବ କରି ଦାନବ ଯେ ଭାଷି ।
କାହିଁଥିଲ ମୁନିବର କହ ମୋର ଆଗେ
ନାରଦ ମୁନି କହନ୍ତି ଥିଲି ମୁହିଁ ସ୍ୱର୍ଗେ ।
ଦାନବ ବୋଲଇ ତହିଁ ହୁଏ କି ବିଚାର
ମୁନି ବୋଇଲେ ସଭାରେ ଦେବ ପୁରନ୍ଦର ।
ବହୁତ ପ୍ରଶଂସା ତୋତେ କଲେ ବୀରମଣି
ବୋଇଲେ ବିଦେହ ଦୈତ୍ୟ ତିନିପୁର ଜିଣି ।
ମହା ପ୍ରତାପୀ ହୋଇଲା ନାହିଁ ତାକୁ ସରି
ହରିହର ସଂଗ୍ରାମରେ ଗଲେ ତାକୁ ହାରି ।
ପାତାଳେ ବାସୁକୀ ଡରେ ପଶିଲା ଶରଣ
ଯମ କାରାଦଣ୍ଡେ ତାର ନ ଗଲା ପରାଣ ।
ଏବେ ସେ ଜିଣିପାରିଲେ ମର୍ତ୍ତ୍ୟପୁର ରାଜା
ଶ୍ରୀହରିଠାରୁ ପାଇବ ସେ ଅଧିକ ପୂଜା ।
ଏହିପରି କହୁଥିଲେ ଅଇଲି ମୁଁ ଶୁଣି
ପୃଥିବୀ କିମ୍ପା ଭ୍ରମିବ ଦୈତ୍ୟ ଚୂଡ଼ାମଣି ।
ମାହିଷ୍ମତୀପୁରେ ଅଛି ରାଜା ଶୂରସେନ
ତାହାର ଭୃତ୍ୟ ଅଟନ୍ତି ପୃଥିବୀ ରାଜନ ।
ତାହାକୁ ଜିଣିଲେ ସବୁ ହେବେ କରଗତ
ବଡ଼ ପ୍ରତାପୀ ଅଟଇ କାର୍ତ୍ତବୀର୍ଯ୍ୟ ସୁତ ।
ହର ବରେ କାହାକୁ ସେ ନ ମାନନ୍ତି ରଣେ
ଚାରିଭାଇ ଧନୁର୍ଦ୍ଧର ତାର ଜଣେ ଜଣେ ।
ଦୁହିତା ଏକ ଅଛଇ ସେ ଅତି ସୁନ୍ଦରୀ
ତାହାକୁ ସମ ନୋହିବେ ସ୍ୱର୍ଗ ଅପସରୀ ।
ଶଚୀ ରମ୍ଭା ଲକ୍ଷ୍ମୀ ଉମା ନୋହିବେ ଯେ ସରି
ତିନି ଭୁବନରେ ନାହିଁ ଉପମା ତାହାରି ।
ସେ ଯେବେ ତୋ ପୁରେ ଆସି ରହିବ ରାଜନ
ବିରାଜିବ ତୋର ପୁର ଅଳକା ସମାନ ।
ଯୁବତୀରତ୍ନ ବୋଇଲେ ବୋଲିବ ନା ତାକୁ
ତିନିପୁରେ ରତ୍ନ ଆମ୍ଭେ ନ ବୋଲୁ କାହାକୁ ।
ତାର ମୁଖକମଳ ଯେ ଦେଖୁଥିବ ନିତି
କି ହେବ ତାହାର ଇନ୍ଦ୍ର ଗୋବିନ୍ଦ ସମ୍ପତ୍ତି ।
ତା ମଧୁର କଥା ଯେହୁ ଶୁଣୁଥିବ ବସି
ଅପସରା ଗୀତରେ କି ତାର ଚିତ୍ତ ରସି ।
ଭାଗ୍ୟେ ଥିଲେ ତୁ ତାହାର ହୋଇବୁନା ବର
ସେ ଯେମନ୍ତେ ସୁନ୍ଦର ତୁ ତେମନ୍ତ ସୁନ୍ଦର ।
ଉଚ୍ଚାଟ କଲେ ଦାନବ ମନକୁ ଯେ ମୁନି
ବୋଇଲା ଆଣିବି ସେହି ଅପୂର୍ବ କାମିନୀ ।
ମୁନି ବୋଇଲେ ତା ନାମ ଅଟେ କାନ୍ତିମାଳା
ପଦ୍ମଫୁଲ ପୁଟଇ କି ହସିଲେ ସେ ବାଳା ।
ଶୁଣି ଦାନବ ବୋଇଲା ସୁମୁଖକୁ ରାଇ
ମାହୀଷ୍ମତିପୁରକୁ ତୁ ଏହିକ୍ଷଣି ଯାଇ ।
ଶୂରସେନ ନୃପତିକି କହିବୁ ଏମନ୍ତ
ଶୋଭାବତୀ ପୁରୁଁ ମୁହିଁ ଆସିଅଛି ଦୂତ ।
ସୁନ୍ଦର ଯୁବା ପୁରୁଷ ଦାନବ ଅଦେହ
ଯାହାର ରୂପକୁ ସରି ନୋହିବ ଅଦେହ ।
ତ୍ରଇଲୋକ୍ୟ ଅଧିପତି ହେଲା ବ୍ରହ୍ମା ବରେ
ହରିହର ନ ପାରିଲେ ତାହାକୁ ସମରେ ।
ନାରଦ ମୁଖରୁ ଶୁଣି ପଠାଇଲେ ମୋତେ
ତୋହର ଦୁହିତା ହସ୍ତ ଦିଅ ତାଙ୍କ ହସ୍ତେ ।
ନଦେବୁ ଯେବେ ତୁ ମୋର କଥାରେ ହେ ରାଜା
ବଳେ ଘେନିଯିବେ ତୁହି ପାଇବୁ ନ ଲଜ୍ଜା ।
ଶୁଣି ଶୂରସେନକୋପେ ହେଲା ପ୍ରଜ୍ୱଳିତ
ବୋଇଲା କି କହୁ ଆସି ମୋତେରେ ଦଇତ ।
ଦୂତ ନୋହିଥିଲେ ତୋର ଘେନନ୍ତି ଜୀବନ
ମାରି ଘଉଡ଼ାଇ ଦିଅ ଯାଉରେ ବହନ ।
ଶୁଣି ବୀର ମହାବୀର ଧଇଲେ ତାହାକୁ
ହାବୁକା ମାରି ତାହାର ଭାଙ୍ଗି ଦେଲେ ବୁକୁ ।
ପଳାଇଲା ସେ ଦାନବ ଶୋଭାବତୀ ପୁରେ
କହିଲା ଯାଇଁ ବିଦେହ ଦାନବ ଆଗରେ ।
ଶୁଣି ପ୍ରଚଣ୍ଡ ଦଇତ୍ ସାଜିଲାକ ଥାଟ
ନ ମାନନ୍ତି ସେ ଅସୁରେ ବାଟ କି ଅବାଟ ।

ବାଜିଲାକ ବିଜିଘୋଷ ଦାଉଣ୍ଡି ଟମକ
ସ୍ୱର୍ଗେ ଦେବଙ୍କ ସଭାରେ ପଡ଼ିଲା ଚମକ ।
ସଭାକରି ବସିଥିଲେ ବାସବ ଦେବତା
ଦେବଦୂତବେଗେ ଯାଇଁ କହିଲା ବାରତା ।
ବୀରବାଦ୍ୟ ବାଜୁଅଛି ଶୋଭାବତୀ ପୁରେ
ଏଗାର ଯୋଜନ ମାଡ଼ି ଧାମନ୍ତିଅସୁରେ ।
ସ୍ୱର୍ଗ ପୁରକୁ କି ଅବା ଆସିବ ଆସ୍ପର
ବିଚାରି କାର୍ଯ୍ୟ କରିବା ହେଉ ପୁରନ୍ଦର ।
ଦୂତ ମୁଖୁ ଏ ବଚନ ଶୁଣି ଶଚୀପତି
ବୋଇଲେ ଏଥିର କଥା କୁହ ବୃହସ୍ପତି ।
ଗୁରୁ ବୋଇଲେ ସ୍ୱର୍ଗକୁ ନ ଆସିବ ଦୈତ୍ୟ
ଶୂରସେନ ନୃପତି ଯେ ଅର୍ଜ୍ଜୁନର ସୁତ ।
ଦୁହିତା ପାଇଁ ତା ପୁରେ ପଠାଇଲା ଚାର
କୋପେ ମାରି ଗୋଡ଼ାଇଲା ତାକୁ ନୃପବର
ଦୁହିତା ନ ଦେବା ଯୋଗୁଁ କୋପେ ଥାଟଘେନି
ଯାଉଅଛି ସେ ପ୍ରତାପୀ କମ୍ପାଇଁ ମେଦିନୀ ।
ଇନ୍ଦ୍ର ବୋଇଲେ ଦାନବେ ମରିବେକେମନ୍ତେ
ଖଟାଇଲା ତିନିପୁର ଯାକ ପାଦଗତେ ।
ରଣେ ତାକୁ ନପାରିଲେ ହରିହର ବେନି
ଅସୁରଙ୍କ ଭୟେ ଯାଗ ଛାଡ଼ିଲେକ ମୁନି ।
ଯଜ୍ଞ ନ କରିବା ଯୋଗୁଁ ଆମ୍ଭେ ତ ଦୁର୍ବଳ
ବଳେ ଧରି ଗୋ ବ୍ରାହ୍ମଣ କରନ୍ତି କବଳ ।
ସ୍ୱର୍ଗ ଅପସରା ତାର ପାଦରେ ଖଟନ୍ତି
ସୁନ୍ଦରୀ ସ୍ତିରୀକି ବଳେ ଧରିଣ ନିଅନ୍ତି ।
କେତେକାଳ ଦୁଃଖ ସହି ରହିଥିବା ଆମ୍ଭେ
ଯମକୁ ଜିଣିଲା ସେହୁ ନ ମରିବ କେଭେ ।
ପୃଥିବୀ ନିତି ମୋ ଆଗେ କରଇ ରୋଦନ
ଅସୁରଙ୍କ ପାଦଭାରା ହେଲା ଦିନୁଦିନ ।
ଏମନ୍ତେ ଦୁଃଖ କହନ୍ତେ ଦେବ ଶଚୀସାଇଁ
ବୃହସ୍ପତି ବୋଇଲେ ଯେ ପାଞ୍ଜିକି ଫିଟାଇ ।
ତାହାର ମୃତ୍ୟୁ ଅଟଇ ଜୟଧ୍ୱଜ ହାତେ
ସେହି ରାଜା ମହାବୀର ହୋଇଲା ଜଗତେ ।
ଶ୍ରୀବିଷ୍ଣୁର ଭକତ ସେ ପରମ ଧାର୍ମିକ
ତୁମ୍ଭେ ଶ୍ରୀହରିଙ୍କି ଯାଇଁ କହ ଦେବଲୋକ ।
ହରିହର ତେଜେ ଗଢୁ ବିଶ୍ୱକର୍ମା ଅଶ୍ୱ
ଜୟ ଧ୍ୱଜକୁ ତା ନେଇ ଦିଅ ହେ ତୁରିତ ।

ସେ ଅଶ୍ୱ ଧରି ନୃପତି ଫୋଡୁ ନାଭି ତାର
ପାଣ ଲିଙ୍ଗକୁ ତାହାର ଛେଦୁ ଅଶ୍ୱବର ।
ତେବେ ଯାଇ ମରିବ ଯେ ପ୍ରତାପୀ ଦଇତ
ଏସନ ବର ଦେଇଛି ତାକୁ କୁଶହସ୍ତ ।
ମୃତ୍ୟୁ ତାହାକୁ କଢ଼ାଇ ନେଉଅଛି ପଥ
ବେଗେ ତୁ ଏଥିରେ ଯତ୍ନକର ଶଚୀନାଥ ।
ଗୁରୁ ବଚନେ ଦେବଙ୍କୁ ଘେନି ପୁରୁହୁତ
ଶ୍ୱେତଦ୍ୱୀପେ ସ୍ତୁତି କଲା ଯୋଡ଼ି ବେନିହସ୍ତ ।
ଦେବଙ୍କ ଆତୁରେ ହରି ଜାଣି କଲେ ବିଜେ
ଇନ୍ଦ୍ର ବୋଇଲେ ପ୍ରବଳ ହୋଇଲେ ଦନୁଜେ ।
କି ବୁଦ୍ଧି କରିବୁଁ ଆମ୍ଭ ବୁଦ୍ଧିବଳ ତୁମ୍ଭେ
ଯଜ୍ଞ କରାଇ ନଦେଲେ ପୃଥିବୀରେ କେଭେ ।
ତାହାଙ୍କର ଅତ୍ୟାଚାର କହିଲେ ନ ସରେ
ଲୁଚିଲେଣି ଋଷି ମୁନି ଅସୁରଙ୍କ ଡରେ ।
ଯଜ୍ଞରୁ ଭାଗ ନ ପାଇ ଆମ୍ଭେ ତ ଦୁର୍ବଳ
ବିଦେହ ଦାନବ ଘେନି ଆପଣାର ବଳ ।
ଶୂରସେନ ଦୁହିତାକୁ ଆଣିବା ନିମନ୍ତେ
ଏ ସମୟେ ବୃହସ୍ପତି ଜଣାଇଲେ ମୋତେ ।
ଜୟଧ୍ୱଜ ହସ୍ତେ ତାର ମରଣ ନିୟତ
ହରି ହର ତେଜେ ହେଲେ ଅଶ୍ୱେକ ନିର୍ମିତ ।
ସେ ଅଶ୍ୱ ଜୟଧ୍ୱଜର ହାତେ ଦେଲେ ନେଇ
ମରିବ ଦାନବ ବୀର ଆହେ ଲକ୍ଷ୍ମୀସାଇଁ ।
ଏଣୁ ଏହା ଜଣାଇବା ପାଇଁ ମୁଁ ଅଇଲି
ବେଳେ ବେଳେ ବିପଦରୁ ରଖ ତୁମ୍ଭେ ବୋଲି ।
ଶୁଣି ହରି ଗରୁଡ଼କୁ କଲେ ସୁମରଣ
ରମ୍ୟକ ଦ୍ୱୀପରେ ଥିଲା ସେହି ପକ୍ଷୀରାଣ ।
ଆସନ କମ୍ପିଲା ଯହୁଁ ଜାଣିଲା ସେ ଧ୍ୟାନେ
ପ୍ରବେଶ ହୋଇଲା ଆସି ବିଷ୍ଣୁ ସନ୍ନିଧାନେ ।
ଗରୁଡ଼ ଆରୋହୀ ତହୁଁ ଗଲେ ଭଗବାନ
ଯହିଁ ବିଜେ କରିଛନ୍ତି ଦେବ ତ୍ରିଲୋଚନ ।
ସେହି କଇଳାସ ପୁରେ ମିଳିଲେ ଶ୍ରୀହରି
ଦେଖି ତାଙ୍କୁ ଗଉରବ କଲେ ତ୍ରିପୁରାରି ।
କହିଲେ ଦାନବ କଥା ସଦାଶିବ ଆଗେ
ପୁଣି ଆପଣାର ତେଜ କାଢ଼ିଲେ ସେ ବେଗେ ।
ଶ୍ରୀହରି ଆପଣା ଦେହୁଁ କାଢ଼ିଲେକ ତେଜ
ନିଜ ଦେହୁ ତେଜ କାଢ଼ିଲେକ ଦେବରାଜ ।

ସୂର୍ଯ୍ୟ ଅଗ୍ନି ବିଶ୍ୱାବସୁ ମରୁତ କୁବେର
ତେତିଶ କୋଟି ଅଟନ୍ତି ସ୍ୱର୍ଗର ଅମର ।
ସମସ୍ତଙ୍କ ଦେହୁଁଜାତ କାଢ଼ିଦେଲେ ଥୋଇ
ବିଶ୍ୱକର୍ମା ଅସ୍ତ୍ର କଲା ସବୁ ତେଜ ନେଇ ।
ସେ ମହତ ଚକ୍ର ଆଣି ଦେଲେ ବିଷ୍ଣୁକରେ
ଶୁଣ ସୁର ମୁନିଗଣ ଏଥୁ ଅନନ୍ତରେ ।
ବିଦେହ ଦାନବବଳ ହୋଇଲେ ବାହାର
କେହି ଚଢ଼ିଛନ୍ତି ଅଶ୍ୱ କେହି ରହୁବର ।
କେହି ଗଜ ଚଢ଼ିଯାଏ କେ ଚଢ଼ିଛି ଗଧ
ଶାର୍ଦ୍ଦୂଳ ଉପରେ କେହି ଧରି ପରଶ୍ୱଧ ।
କେହି ମାର୍ଜ୍ଜାର ବାହନେ କରଇ ଗମନ
କେହି ଦାନବେ କରନ୍ତି ଘୋର ଗରଜନ ।
ମେଘ ଘଡ଼ଘଡ଼ିପ୍ରାୟେ ଶୁଭେ କାହା ରଡ଼ି
କାହାର ଚରଣ ବାଜି ଗିରି ପଡ଼େ ଝଡ଼ି ।
ସିନ୍ଧୁ ଘୋଷ ଜିଣି ଶୁଭେ ମୁଖରାବ ଗୋଳ
ମାର ମାର ଧର ଧର ପଡ଼ଇ ଚହଳ ।
କେ ବୋଲଇ ତାର ପୁର ପକାଇବା ଭାଙ୍ଗି
କେ ବୋଲଇ ନରମାଂସ ବଡ଼ ସ୍ୱାଦୁ ଲାଗି ।
କେ ବୋଲେ ପୋଡ଼ିଖାଇବା ଗୋଟି ଗୋଟି ଧରି
କେ ବୋଲେ ରକ୍ତ ପିଇବାକିଛି ନ ବିଚାରି ।
ଏମନ୍ତେ ଯାଉ ଯାଉ ସେ କରନ୍ତି ବିଚାର
ପାଦଧୂଳିରେ ଗଗନମାର୍ଗ ଅନ୍ଧକାର ।
ନାରଦ ମୁନି ଯେ ଥଲେ ଗଲେ ତହୁଁ ବେଗେ
କହିଲେ ଏ କଥା ଯାଇ ଶୂରସେନ ଆଗେ ।
ଶୁଣି କୋପେ ଶୂରସେନ ପଠାଇଲେ ଦୂତ
ପୃଥିବୀର ରାଜାଯାକ ଅଇଲେ ତୂରିତ ।
ଅଶ୍ୱ ରଥ ଗଜ ସାଜି ବୀର ମହାବୀର
ନିର୍ବନ୍ଧ କରି ଜଗିଲେ ଆୟୁଷ୍ମତୀ ପୁର ।
ଅକଳିତ ବଳ ତାର କେ ପାରିବ ଗଣି
ପୃଥ୍ୱୀ ନରପତିଙ୍କର ସେ ମଉଡ଼ମଣି ।
କମ୍ପୁଅଛି ଭୂମଣ୍ଡଳ ବୀର ବାଦ୍ୟ ନାଦେ
ନିର୍ଭୟରେ ଅସ୍ତ୍ର ଧରି ରହିଛନ୍ତି ଯୁଦ୍ଧେ ।
ନାରଦ ରହି ଆକାଶେ ଦେଖୁଛନ୍ତି କଳି
ଶୂନ୍ୟପୁରେ ରହିଛନ୍ତି ଦେବେ ହୋଇ ମେଳି ।
ମାନବ ଦାନବ ବଳ ଭେଟ ହେଲେବାଟେ
ଶଙ୍କଟ ବିକଟ ଦୁଇ ଆଗୁଆଣି ଥାଟେ ।

ଅସ୍ତ୍ର ଧରି ମରାମରି ହେଲେ ଦୁଇ ବଳ
ପାଟି ବିସ୍ତାରି ଅସୁରେ କରନ୍ତି କବଳ ।
ଗୋଟି ଗୋଟି ଧରି ଦାନ୍ତେ ପକାନ୍ତି ରକଟି
ପର୍ବତର ଗୁହାପରି ଦିଶେ କାହା ପାଟି ।
କାହାର କେଶ ଖାଙ୍କର ମହା ଭୟଙ୍କର
କୋରଡ଼ ପ୍ରାୟ ଦିଶଇ ନୟନ କାହାର ।
ଗିରି ପ୍ରାୟ ବଡ଼ ବଡ଼ ଦିଶନ୍ତି ଦଇତେ
ରଡ଼ିଘାତେ ଝଡ଼ି ତଳେ ପଡ଼ନ୍ତି ପର୍ବତେ ।
ଆନନ୍ଦରେ ନୃତକରି ଦେଉଛନ୍ତି ଗିଳି
ଦାବନେ ଅଟନ୍ତି ଏକୁ ଏକ ମହାବଳୀ ।
ଅସ୍ତ୍ର ଶସ୍ତ୍ର ପଡ଼ି ତାଙ୍କ ଦେହେଁ ହୁଏ ଚୂନା
ଅସ୍ତ୍ର ଶସ୍ତ୍ରକୁ ତାଙ୍କର ନାହିଁ ଯେ ଶୋଚନା ।
ଡରେ ଶୂରସେନ ଥାଟ ଦେଲେ ପଛଘୁଞ୍ଚା
ଡାକି ରାଜାଏ ବୋଇଲେ ନିଜ ଦେହ ବଞ୍ଚା ।
ବଡ଼ ପ୍ରତାପୀ ଅଟନ୍ତି ବଳିଷ୍ଠ ଅସୁରେ
ଗୋଟା ଗୋଟା ଧରି ଜାଳି ଦିଅନ୍ତି ସମରେ ।
ଦେଖି ନରପତିମାନେ କଲେକ ବିଚାର
ଅକାରଣେ କିମ୍ପା ଆମ୍ଭେ ଯିବା ଯମଘର ।
ଏମନ୍ତ ଭାଳି ରାଜାଏ ଗଲେ ତହୁଁ ଭାଙ୍ଗି
ମାହୀଷ୍ମତୀପୁରକୁ ସେ ରହିଥିଲେ ଜଗି ।
ବାସଭଗ୍ନ ପକ୍ଷୀପ୍ରାୟ ପଳାଇଲେ ଡରେ
କେହି ବୀର ନ ରହିଲେ ଦୈତ୍ୟଙ୍କ ଆଗରେ ।
ଶୂର ଶୂରସେନ କୃଷ୍ଣ ଧୃଷ୍ଟ ଭାଇ ଚାରି
ରଥ ଚଳାଇଲେ କରେ ଧନୁଶର ଧରି ।
କକଡ଼ା ମାସରେ ଯେହ୍ନେ ବରଷଇ ଘନ
ତେସନେ ନାରାଚ ବୃଷ୍ଟିକଲେ ଘନ ଘନ ।
ଅନଳ ସମାନ ବାଣ ପଡ଼ଇ ନିରତେ
ସହି ନ ପାରିଲେ ତାହା ପ୍ରତାପୀ ଦଇତେ ।
ଡରେ ପଛଘୁଞ୍ଚା ଦେଲେ ନ ରହିଲେ ଆଗେ
ଶକଟ ବିକଟ ଆଦି ଓଗାଳିଲେ ବେଗେ ।
କଙ୍କ ଧଙ୍କ ଆଦି ବଡ଼ ବଡ଼ ସେନାପତି
କରେ ଅସ୍ତ୍ର ଧରି ଯୁଦ୍ଧ କଲେ ନାହିଁ ଭୀତି ।
ହର ବରେ ବଳୀୟାର ଅଟନ୍ତି ସେ ଚାରି
ପରିଘ ଶକତି ଶୂଳ କୁନ୍ତ ଯଷ୍ଟି ମାରି ।
ସଂଗ୍ରାମେ ବିମୁଖ କଲେ ଅସୁରଙ୍କୁ ବଳେ
ପୋଡ଼ି ପକାଇଲେ ତାଙ୍କୁ ନାରାଚ ଅନଳେ ।

ଭୟେ ପିଠି ଦେଲେ ରଣେ କେତେ କେତେ ବୀରେ
ବିଦେହ ଦାନବ ଆସେ ଶୂଳ ଧରି କରେ ।
ବିକଟାଳ ଦନ୍ତ ତାର ଅତି ଭୟଙ୍କର
ଜ୍ୱଳନ୍ତ ଅନଳ ପ୍ରାୟ ଦିଶଇ ଶରୀର ।
ପ୍ରଳୟ ଅନଳ ଜାଣି ତା ନୟନ ବେନି
ବିକଟ ଯେ ଭୟଙ୍କର ତାର ମୁଖ ଧ୍ୱନି ।
ଭୟେ ଶୁଣି ମୋହ ଗଲେ କେତେକ ନୃପତି
କେହୁ ପଳାଇ ଯାଆନ୍ତି କରି ମହାଭୀତି ।
ଚାରିଭାଇ ଓଗାଳିଲେ ଦାନବକୁ ଆଗେ
ରହ ରହ ପାମର ରେ ପଡ଼ିଲୁଣି ଆଗେ ।
ଆସିଛୁ ମାରିବା ପାଇଁ ଯିବୁ ଯମଘର
କ୍ଷଣେ ମାତ୍ର ରହି ସହ ତୁ ଆମ୍ଭର ଶର ।
ଏହାକହି ଚାରିଭାଇ ବରଷିଲେ ବାଣ
ଅଗ୍ନି ବାଣ ଜଳବାଣ ନାଗପାଶ ବାଣ ।
ପବନ ତପନ ଶର ଇନ୍ଦ୍ର ଯମପାଶ
କାଳପାଶ ଆବର ଯେ ବରୁଣର ପାଶ ।
ଏମନ୍ତେ ବହୁତ ଅସ୍ତ୍ର ଘେନି ଚାରିଭାଇ
ଦାନବର ଉପରକୁ ମାରନ୍ତି ନିଠାଇ ।
ବଦନ ବିସ୍ତାରି ଦୈତ୍ୟ ଦିଏ ସବୁ ଗିଳି
ଘନ ଘନ ଗରଜଇ ରଣେ ମହାବଳୀ ।
ଆରେରେ ମାନବ ବୋଲିବୋଲେ ଉଚ୍ଚସ୍ୱରେ
ଆରେ ରେ ମାନବାକ୍ଷଣେ ରହ ମୋ ଆଗରେ ।
ଏହିକ୍ଷଣି ଯମଘରେ ଯିବ ତୁମ୍ଭେ ଚାରି
ନ ଜାଣ କି ମୋର ବାନା ଶତ୍ରୁ କ୍ଷୟକାରୀ ।
ଏହା କହି ଶୂଳଧରି ଧାଇଁଲା ଦାନବ
ଦେଖି ଭୟରେ କମ୍ପିଲେ ସ୍ୱର୍ଗେ ସୁରଦେବ ।
ନାରଦ ଯେ ତାଳିମାରି କରୁଛନ୍ତି ନୃତ୍ୟ
କଳିପ୍ରିୟ କଳି ଦେଖି ମନରେ ଉକ୍ଷତ ।
ଦେଖି ଶୂର ରୁଦ୍ର ଅସ୍ତ୍ର ପ୍ରହାରିଲା ରାଗେ
ଶୂଳ ପ୍ରହାରି ଦାନବ ନିବାରିଲା ବେଗେ ।
ଶୂରସେନ ବରୁଣାସ୍ତ୍ର ପ୍ରହାରିଲେ ଧରି
ଦାନବ ବୀର ତାହାକୁ ଶୂଳରେ ନିବାରି ।
ଦେଖି କୃଷ୍ଣ ପ୍ରଜାପତ୍ୟ ଅସ୍ତ୍ରକୁ ମାଇଲା
ଶୂନ୍ୟରେ ସେ ବାଣଗୋଟା ଦାନବ କାଟିଲା ।
ଧୃଷ୍ଟ ବାୟବ ଅସ୍ତ୍ରକୁ ମାଇଲା ନିଠାଇ
ଦାନବ ତା ନିବାରିଲା ଶୂଳକୁ ବୁଲାଇ ।

କୃଷ୍ଣ ଏକ ଭୟଙ୍କର ଗଦା ଧରି କରେ
ବୁଲାଇ ପିଟିଲା ନେଇ ଦାନବ ଉପରେ ।
ପାଷାଣଠାରୁ କଠିନ ଦାନବର ଛାତି
କାଳାନ୍ତକ ଗଦା ବାଜି ପଡ଼ିଲାକ କ୍ଷିତି ।
ରଣ ଛାଡ଼ି ଚାରିଭାଇ ପଳାଇଲେ ଡରେ
ଦାନବ ଗର୍ଜନ କରି ପଶଇ ଯେ ପୁରେ ।
ଦେଖି ବୀର ଜୟଧ୍ୱନି ରେରେକାର କରି
ବାଟ ଓଗାଳିଲା ରଥେ ଧନୁଶର ଧରି ।
ଏକାକେ ସେ ବୀର ଅଛି ସଙ୍ଗେ ନାହିଁ କେହି
ଗୁଣ ଟଙ୍କାର ନାଦରେ କମ୍ପାଉଛି ମହୀ ।
ପାଣିପରି ଯାଉଥିଲେ ଦାନବର ଥାଟ
ଜୟଧ୍ୱଜ ରଥ ବନ୍ଧେ ନ ପାଇଲେ ବାଟ ।
ରହିଲେ ଚକିତ ହୋଇ ଅସ୍ତ୍ରଧରି କରେ
ଜୟଧ୍ୱଜ ବସିଅଛି ରଥର ଉପରେ ।
ଧନୁ ଧରି ସୁମରିଲା ମନେ ନାରାୟଣ
ଅସୁରଙ୍କ ଶିରେ କଲା ବାଣ ବରଷଣ ।
କାହାର କାଟିଲା ହାତ କାହାର ବା ଶିର
କାହାର ଚରଣ ଦୁଇ କାଟେ ମାରି ଶର ।
ଯେସନେ କଦଳୀ ବନ ଭାଙ୍ଗଇ ପବନ
ତେସନ ଅସୁର ବଳ କଲା ସେ ଛେଦନ ।
ବହିଲା ରୁଧିର ନଈ ଭାସିଗଲେ ମଡ଼ା
ପଡ଼ନ୍ତି ରାକ୍ଷସବୀରେ ହୋଇ ଯୋଡ଼ା ଯୋଡ଼ା ।
ତଥାପି ସେ ନ ଘୁଞ୍ଚନ୍ତି ପ୍ରତାପୀ ଦଇତେ
ପରିଘ ନାରାଚ କୁନ୍ତ ମାରନ୍ତି ନିରତେ ।
ଶରେ ନିବାରଇ ତାହା ଜୟଧ୍ୱଜ ବୀର
ଛେଦଇ ସେ କୋଟି କୋଟି ଦାନବଙ୍କ ଶିର ।
ବିଷ୍ଣୁବରେ ବଳୀୟାର ଅର୍ଜୁନ ନନ୍ଦନ
ନିର୍ଭୟେ କରଇ ସେହି ଅସୁର ନିଧନ ।
କୋଟି କୋଟି କବନ୍ଧ ଯେ ନାଶିଲା ସେ ରଣେ
ଉପସ୍ଥିତ ହେଲେ ତହିଁ ଆସି ଶିବାଗଣେ ।
ଚଣ୍ଡୀ ଚାମୁଣ୍ଡା ବେତାଳୀ କଙ୍କାଳୀ ଧାଇଁଲେ
ଦାନବ ରୁଧିର ପିଇ ଆନନ୍ଦ ହୋଇଲେ ।
ଟହ ଟହ କହ କହ ନାଦକରି ତହିଁ
ଜିଭ ଲହ ଲହ କରି ଅଇଲେକ ଧାଇଁ ।
ରୁଧିର ପିଇ ଆନନ୍ଦେ କଲେ ତହିଁ ନୃତ୍ୟ
ଶ୍ୱାନ ଶୃଗାଳ ବାୟସ ଗୃଧ୍ରହିଁ ବହୁତ ।

ଅସ୍ଥି ଚର୍ମ ମାଂସ ଭକ୍ଷି ଲଗାଇଲେ କଳି
ଦାନବେ ଅଟନ୍ତି ଏକୁ ଏକ ମହାବଳୀ ।
ସାତପୁର କରି ଜୟଧ୍ୱଜକୁ ଘେରିଲେ
ପରିଘ ମୂଷଳ ଧରି ରଥରେ ପିଟିଲେ ।
ଦେଖି ଜୟଧ୍ୱଜ ବୀର ଦିବ୍ୟ ଅସ୍ତ୍ର କଲା
ଅସୁରଙ୍କ ହସ୍ତୁ ଅସ୍ତ୍ର କାଟି ପକାଇଲା ।
ବ୍ରହ୍ମଶର ଦାନବଙ୍କ ଘେନିଲା ଜୀବନ
କୋଟି କୋଟି ଦୈତ୍ୟଗଲେ ଯମର ଭୁବନ ।
ଭୟେ କେହି ନ ଆସିଲେ ତାହାର ଆଗକୁ
ବଡ଼ ବଡ଼ ବୀର ସବୁ ଗଲେ ଯେ ପଛକୁ ।
ଦେଖି ବିଦେହ ଦାନବ କରେ ଧରି ଶୂଳ
ରେରେ ମାନବା ତୋହର ପୂରିଲାଟି କାଳ ।
ଏହାକହି ଧାମନ୍ତେ ସେ ଦେଖି ଜୟଧ୍ୱଜ
କୁବେରାସ୍ତ୍ର ବିନ୍ଧିଲାକ ବହି ମହାତେଜ ।
ଶୂଳେ ତାହା ନିବାରିଲା ସେ ଦାନବ ମଣି
ଇନ୍ଦ୍ର ଅସ୍ତ୍ର ପ୍ରହାରିଲା ଜୟଧ୍ୱଜ ପୁଣି ।
ଦାନବ ତା ଶୂଳେ କାଟି କଲା ଖଣ୍ଡ ଖଣ୍ଡ
ଜୟଧ୍ୱଜ ଭାଳଇ ଏ ଦାନବ ପ୍ରଚଣ୍ଡ ।
ପ୍ରଚଣ୍ଡ ଅନଳ ଅସ୍ତ୍ର ବିନ୍ଧିଲାକ ବୀର
ଶୂନ୍ୟେ ତାହା ନିବାରିଲା ପ୍ରତାପୀ ଅସୁର ।
ଦେଖି ଜୟଧ୍ୱଜ ମନେ ସୁମରଇ ହରି
ନାରାୟଣ ଅସ୍ତ୍ର ଗୋଟି ବିନ୍ଧେ କୋପକରି ।
ଦାନବ ଶୂଳକୁ କାଟି କଲା ଖଣ୍ଡ ଖଣ୍ଡ
ନିରସ୍ତ୍ର ହୋଇ ଦାନବ କୋପରେ ପ୍ରଚଣ୍ଡ ।
ବୋଲଇ ମାନବ ତୋର ଅଛି କେତେବାଣ
ବିନ୍ଧୁକିନା ଖାଲି ହୋଇ ଯାଉ ତୋର ତୂଣ ।
ଏହାକହି ଗିରିପ୍ରାୟ ହୋଇଲା ଅଟଳ
ନାରାଚ ବିନ୍ଧଇ କୋପେ ଅର୍ଜୁନର ବାଳ ।
ପଡ଼ି ସବୁ ଚୂନା ହୋଇ ଯାଉଛନ୍ତି କାୟେ
ରହିଛି ଦାନବ ଲୌହ ପରବତ ପ୍ରାୟେ ।
କୋପେ ବ୍ରହ୍ମଶର କଲା ଅର୍ଜୁନ କୁମର
ଗିଳିଦେଲା ଦାନବ ଯେ ତେଡ଼େବଡ଼ ଶର ।
ପାଶୁପାତ ଶୂଳ ଶକ୍ତି ଗଦା ହୁଏ ବ୍ୟର୍ଥ
କୋପେ ଜୟଧ୍ୱଜକୁ ଯେ ବୋଲଇ ଦଇତ୍ୟ ।
ଏତେ ତୁହି ମାଇଲୁଣି ସହୁଅଛି ମୁହିଁ
ମୋହର ଆଘାତ ବାରେସହ କିନା ତୁହି ।

ଏମନ୍ତ କହି ପ୍ରଚଣ୍ଡ ଗଦାକୁ ଧଇଲା
ଜୟଧ୍ୱଜକୁ ମାରିବା ପାଇଁ ସେ ଧାଇଁଲା ।
କତୁରୀବାଣେ ମାଇଲା ଅର୍ଜୁନ କୁମର
ଅସୁର ହସ୍ତରୁ କାଟିଦେଲା ଗଦାବର ।
କୋପେ ପରିଘ ଧଇଲା ସେ ଦାନବମଣି
ଧାମନ୍ତେ ତା ପାଦଭରେ କମ୍ପଇ ଧରଣୀ ।
ଜୟଧ୍ୱଜ କାଟିଲା ତା କରି ଖଣ୍ଡ ଖଣ୍ଡ
ପରିଘ ବିଅର୍ଥ ଦେଖି ଦାନବ ପ୍ରଚଣ୍ଡ ।
ରଥ ଚଢ଼ି ଧନୁ ଧରି ବିନ୍ଧିଲା ନାରାଚ
ଇନ୍ଦ୍ର ଆଦି ଦେବତାଏ ବସିକଲେ ପାଞ୍ଚ ।
କେମନ୍ତେ ମରିବ ଏହି ପ୍ରତାପୀ ଅସୁର
ବେଳୁଁ ବେଳ ତେଜ ପୁଞ୍ଜ ବଢ଼ୁଛି ଏହାର ।
ଜୟଧ୍ୱଜ ଦାନବର ବାଣକୁ କାଟଇ
ଅର୍ଜୁନ ସୁତର ଶର ଦଇତ ଛେଦଇ ।
ଏମନ୍ତେ ସଂଗ୍ରାମ ହେଲା ଘଡ଼ିକ ପର୍ଯ୍ୟନ୍ତେ
ପ୍ରଶଂସା କରନ୍ତି ଦୁଇବୀରକୁ ସମସ୍ତେ ।
କୋପେ ଜୟଧ୍ୱଜ ବିନ୍ଧିଦେଲା ଇନ୍ଦ୍ରଶର
କାଟି ପକାଇଲା ସେହି ଦାନବର ଶିର ।
ତଳେ ପଡ଼ି ପୁଣି ଯାଇଁ ଲାଗିଲା ସେ କନ୍ଧେ
ପୁଣି ନାରାୟଣ ବାଣ ଜୟଧ୍ୱଜ ବିନ୍ଧେ ।
ହାତଗୋଡ଼ କାଟି ଶର ଗଲା ଶୂନ୍ୟେ ଚଳି
ପୁଣି ସେ ଲାଗିଲା ଯାଇଁ ଥିଲା ଯେଉଁଭଳି ।
ଦେଖି ଜୟଧ୍ୱଜର ଯେ ମନେ ହେଲା ଭୟ
ମାଇଲେ ଏ ନ ମରଇ କି ଅଛି ଉପାୟ ।
ଦେବତାମାନେ ତା ମନ ଜାଣି ପବନକୁ
ବୋଇଲେ ତୁ ଯାଇଁ କହ ସେ ଜୟଧ୍ୱଜକୁ ।
ହରିଙ୍କି ସେ ସୁମରଣା କରୁ ଏତେବେଳେ
ତୋହର ସମାନ ବୀର ନାହିଁ ଭୂମଣ୍ଡଳେ ।
ତୁ ଯେବେ ଏ ଦାନବକୁ ଛାଡ଼ିବୁ ହେ ବୀର
ଆଜିଠାରୁ ହୋଇବ ଏ ନିଶ୍ଚୟେ ଅମର ।
ହରିହରଙ୍କୁ ଏ ରଣେ ଜିଣିଲାଟି ଜାଣ
ଦେବତାମାନଙ୍କ ଭାଗିଁ ଦେଲା ପୁଣି ଟାଣ ।
ବାସବ ଦେବତା ମୋତେ ଦେଲେକ ପଠାଇ
ହରି ଯେଉଁ ଅସ୍ତ୍ର ଦେବେ ତୁ ତାହାକୁ ନେଇ
ନାଭିରେ ମାଇଲେ ପ୍ରାଣଲିଙ୍ଗ ଯିବ ଫୁଟି
ତେବେ ଯାଇଁ ଏ ଦାନବ ବୀର ମରିବଟି ।

ପବନ ବହିଲା ଆସି ଜୟଧ୍ୱଜ କର୍ଣ୍ଣେ
ଦାନବର ମୃତ୍ୟୁଭେଦ ପାଇ ବୀର ଟାଣେ ।
ହାବୁଡ଼ା ବାଣେ ତା ରଥ ଚକ ଦେଲା ଭାଙ୍ଗି
ପରିଘ ଏକ ଦାନବ ଉପରକୁ ପିଙ୍ଗି ।
ବାବଲବାଣେ ତା ସାରଥିର ମୁଣ୍ଡ ହାଣି
ଦାନବ ହାତରୁ ଧନୁକାଟିଲାକ ପୁଣି ।
ଲକ୍ଷ ଲକ୍ଷ କୋଟି କୋଟି ନାରାଚ ବିନ୍ଧିଲା
ଅସୁରଥାଟେ ରୁଧିର ନଦୀ ବୁହାଇଲା ।
ପ୍ରତାପୀ ଦଇତ ଦେଖି ତାର ବୀରପଣ
ବୋଲଇ ମାନବା ତୁହି ଅଟୁ ବଡ଼ ଜଣ ।
ଏହାକହି ଗଦା ଧରି ଅଇଲାକ ଧାଇଁ
ଜୟଧ୍ୱଜ ବୀର ରଥେ ପିଟିଲାକ ନେଇ ।
ଜାଣି ଜୟଧ୍ୱଜ ଗଦା ଧଇଲାକ କରେ
ରଥୁଁ ଡେଇଁଯାଇଁ ଉଭା ହୋଇଲା ଭୂମିରେ
ଦୁହେଁ ପୁଣି ଗଦା ଯୁଦ୍ଧ କଲେ କିଛିକ୍ଷଣ
ଦୁହିଁଙ୍କର ଗଦାଦୁହେଁ ଭାଙ୍ଗିଦେଲେ ପୁଣ ।
ମାଲ ଯୁଦ୍ଧ ଆରମ୍ଭିଲେ ହୋଇ ଧରାଧରି
ଜୟଧ୍ୱଜକୁ ଦାନବ ବୀର ତଳେ ପାରି ।
ଛାତିରେ ବସି ପ୍ରତିଜ୍ଞା କରଇ ବହୁତ
ରେ ରେ ମାନବା ତୋହର ପ୍ରାଣ ମୋରହସ୍ତ
ରଖିଲେ ରଖିବି ମୁହିଁ ମାଇଲେ ମାରିବି
ବିଧାଏ ମାରିଲା ଶିରେ ପଡ଼ିଲା କି ପବି ।
ସ୍ୱର୍ଗେ ଥାଇ ଦେବଗଣ କଲେ ହାହାକାର
ରୋଦନ ଶବଦେ ପୂର୍ଣ୍ଣ ମାହୀଷ୍ମତୀପୁର ।
ଅସୁରଙ୍କ ଆନନ୍ଦ ଯେ କେ ପାରିବ କହି
ଚେତନା ପାଇଣ ଜୟଧ୍ୱଜ ବୀର ତହିଁ ।
ଅସୁରକୁ ଲେଉଟାଇ ବସିଲାକ ମାଡ଼ି
ବିଧାଏ ମାରିଲା ଦୈତ୍ୟ ଛାଡ଼ିଲାକ ରଡ଼ି ।
ମତ୍ତଗଜ ଉପରେକି ବସିଅଛି ସିଂହ
ମନ୍ଦର ଗିରି ଉପରେ କିବା ମେରୁଶୃଙ୍ଗ ।
ବୋଇଲା ଦାନବ ତୁରେ ଯିବୁ ଆଜ କାହିଁ
ଏହିକ୍ଷଣି ଯମପୁରେ ଦେବଇଁ ପଠାଇ ।
ଏହା କହି ମନେ ମନେ ସୁମରଇ ହରି
ଘୋର ବିପଦରୁ ମୋତେ ରଖ ଦଇତାରି ।
ପୁରାଣ ପୁରୁଷ ଆହେ ପ୍ରଭୁ ପୀତାମ୍ବର
ଏ ଘୋର ବିପଦୁଁ ମୋତେ ବାରେ ରକ୍ଷାକର

ଭାବଗ୍ରାହୀ ନାଥ ପ୍ରଭୁ ଭକତବତ୍ସଳ
ଗରୁଡ଼ ପୃଷ୍ଠରେ ତହିଁ ବିଜେ ଆଦିମୂଳ ।
ବିଶ୍ୱକର୍ମା ଗଢ଼ିଥିବା ଚକ୍ରଗୋଟି ଆଣି
ଜୟଧ୍ୱଜ ହସ୍ତେନେଇ ଦେଲେ ଚକ୍ରପାଣି ।
ଜୟଧ୍ୱଜ ଚକ୍ର ଧରି ଚକ୍ରଧାରୀ ପ୍ରାୟ
ବିରାଜିଲା ଦେଖି ଦୈତ୍ୟକୁଳ କଲେ ଭୟ ।
ଦାନବର ନାଭିଚକ୍ରେ ମାଇଲା ନିଠାଇ
ପ୍ରାଣଲିଙ୍ଗ ବାହାରିଲା ଦୈତ୍ୟ ଗରଜଇ ।
କୋପେ ତାର ମୁଣ୍ଡକାଟି କଲା ଖଣ୍ଡ ଖଣ୍ଡ
ପକାଇଗଲେ ଅସୁରେ ହୋଇ ଲଣ୍ଡ ଭଣ୍ଡ ।
ତିନିପୁର କମ୍ପିଗଲା ଜୟ ଜୟ ନାଦେ
ଆନନ୍ଦ ହୋଇ ନାଚିଲେ ଆକାଶେ ନାରଦେ ।
ଦେବ ଦୁନ୍ଦୁଭି ବାଜିଲା ଗାଇଲେ ଗନ୍ଧର୍ବେ
ଜୟଧ୍ୱଜ ଶିରେ ପୁଷ୍ପ ବରଷିଲେ ଦେବେ ।
ଦାନବକୁ ମାରି ଚକ୍ର ଗଲା ବଇକୁଣ୍ଠେ
ରାଜାଙ୍କର ଶିରେ ଜୟଧ୍ୱଜ ପାଦେ ଲୋଟେ ।
ଚାରିଭାଇ ଗଉରବ କରି ନେଲେ ତାକୁ
ମେଲାଣି ପାଇଣ ଗଲେ ଯେ ଯାହା ପୁରକୁ ।
ଜୟଧ୍ୱଜ ନିଜପୁରେ ମିଳିଲାକ ଯାଇଁ
ଦେଶେ ଦେଶେ ଦେଲେ ଜୟପତାକା ଉଡ଼ାଇ ।
ମହାମୁନି ବିଶ୍ୱାମିତ୍ର ଗାଧିର ନନ୍ଦନ
ଜୟଧ୍ୱଜ ପରାକ୍ରମ କରିଣ ଶ୍ରବଣ ।
ଦେଖିବା ନିମନ୍ତେ ଗଲେ ମାହୀଷ୍ମତୀ ପୁରେ
ମିଳିଲେ ସେ ଜୟଧ୍ୱଜ ନୃପତି ଛାମୁରେ ।
ଦେଖି ଜୟଧ୍ୱଜ ତାଙ୍କୁ କଲା ପାଦପୂଜା
ସନ୍ତୋଷେ ଗାଧିନନ୍ଦନ ବୋଇଲେ ହେ ରାଜା ।
ତୋ ସମାନ ବୀର କେହି ନାହିଁ ତିନିପୁରେ
ବିଦେହ ଦାନବକୁ ତୁ ମାଇଲୁ ସମରେ ।
ବଡ଼ ପ୍ରତାପୀ ଅଟଇ ସେ ଦାନବ ବୀର
ବ୍ରହ୍ମାବରେ ଜିଣିଲା ସେ ଇନ୍ଦ୍ର ହରିହର ।
ତାହାକୁ ତୁ ବଧକଲୁ ଯେ ବିଷ୍ଣୁ ପ୍ରସାଦେ
ସର୍ବଦା ତୁ ଚିତ୍ତ ରଖ ତାର ପଦ୍ମପାଦେ ।
ଜୟଧ୍ୱଜ ବୋଲେ ପ୍ରଭୁ ତୁମ୍ଭେ ମହାମୁନି
ତୁମ୍ଭ ତୁଲ୍ୟ ଜଗତରେ ନାହିଁ କେହି ଜ୍ଞାନୀ ।
ଦ୍ୱିତୀୟ ବିଧାତା ବୋଲି ବୋଲନ୍ତି ତୁମ୍ଭଙ୍କୁ
କେମନ୍ତ କରି ପୂଜିବି କହ ଶ୍ରୀହରିଙ୍କୁ ।

କାହିଁରେ ସନ୍ତୋଷ ହେବେ ଦେବ ଜନାର୍ଦ୍ଦନ
ତାହାଙ୍କ ସ୍ୱରୂପ ମୋତେ କହ ତପୋଧନ ।
ତାଙ୍କ ପ୍ରଭାବ ମହିମା କହିବ ବିସ୍ତାରି
ଶୁଣିବାକୁ ମନ ପୁଣି ବଳିଛି ମୋହରି ।
ରାଜାର ଏ କଥା ଶୁଣି ବିଶ୍ୱାମିତ୍ର ଋଷି
କହିଲେ ସେ ନୃପତିର ଆଗେ ହସି ହସି ।
ଆରେ ବୀର କି କହିବି ମହିମା ତାହାର
ଦେବ ମାନବ ଦାନବେ ଯାହା ଅଗୋଚର ।
କେତେବେଳେ କେଉଁରୂପ ଧରଇ ସେ ପୁଣି
ନ ପାରଇ ଚାରିମୁଖେ ବିଧାତା ବଖାଣି ।
ଗୁଣି କହି ପାରିବ ବା ବରଷାର ଧାରା
କହି ପାରିବ ବା କେତେ ଗଗନର ତାରା ।
ସମୁଦ୍ରର ବାଲି ଅବା ପାରିବ କେ ଗଣି
ନ ପାରିବ ଶ୍ରୀବିଷ୍ଣୁର ରୂପ କେ ବଖାଣି ।
ଯେ ରୂପେ ଭଜଇ ଯେହୁ ସେ ରୂପେ ସେ ପାଇ
ପୁରୁଷଉତ୍ତମ ସେହି ଜଗତ ଗୋସାଇଁ ।
ଯେ ତାର ଭକତ ସେହି ପାରେ ତାକୁ ବାନ୍ଧି
କେହି ଅବା ପବନକୁ କରିପାରେ ବନ୍ଦୀ ।
ତାକୁ ବନ୍ଦି କରି ରଖି ନ ପାରିବେ କେହି
ଭକତ ଭାବରେ ଏକ ବନ୍ଦି ଭାବଗ୍ରାହୀ ।
ଅନିତ୍ୟ କି ନିତ୍ୟ ସେହି କେ ଅବା ନ ଜାଣେ
ଧନ୍ଦି ହେଉଥାନ୍ତି ଲୋକେ ପଶି ଭବବଣେ ।
କେ ବୋଲଇ ବ୍ରହ୍ମ କେହି ବୋଲଇ ଯେ ହରି
କେହି ଲୀନ ହୋଇଯାନ୍ତି ତପ କରି କରି ।
କେହି ଯୋଗୀ ହୋଇଯାନ୍ତି କଉପୁନି ମାରି
କେହି ଭିକ ମାଗୁଥାନ୍ତି ଥାଳ କରେ ଧରି ।
କେହି କାଷ୍ଠ ପାଷାଣକୁ ପୁଜୁଥାନ୍ତି ନୃପ
ଆତ୍ମାକୁ କଷ୍ଟ ଦିଅନ୍ତି ଅରଜନ୍ତି ପାପ ।
ବ୍ରହ୍ମା ରୁଦ୍ର ଆଦି ଯେତେ ଦେବତା ଅଛନ୍ତି
ଚାରିଖାନି ଜୀବ ଯାହା ଦେଖୁଛ ନୃପତି ।
ସବୁ ସେହି ଜାଣେ ନାହିଁ ତହିଁ ଭିନ୍ନାଭିନ୍ନ
ବିଷ୍ଣୁ ଯଜ୍ଞ ଯେବେ କରି ପାରିବୁ ରାଜନ ।
ତହିଁରେ ଶ୍ରୀହରି ତୋଷ ହୋଇବେ ନିଶ୍ଚୟ
ମୁନି ପାଦେ ପଡ଼ି କହେ ଅର୍ଜ୍ଜୁନ ତନୟ ।
କେମନ୍ତେ ସେ ଯଜ୍ଞହେବ କୃପାକରି ମୁନି
କରାଇ ଦିଅ ଧରୁଛି ତବ ପାଦ ବେନି ।

ବିଶ୍ୱାମିତ୍ର ନୃପତିର ବିନୟ ବଚନେ
ଯଜ୍ଞ ଆରମ୍ଭିଲେ ରହି ରାଜାର ଭୁବନେ ।
ଯଜ୍ଞରୂପୀ ଭଗବାନ କଲେ ତହିଁ ବିଜେ
ପରମ ପଦକୁ ଦେଇ ଗଲେ ଜୟଧ୍ୱଜେ ।
ଶୁର ଶୂରସେନ ଆଦି ଚାରି ସହୋଦର
ଡକାଇ ଆଣିଲେ ଚାରିଗୋଟି ମୁନିବର ।
ବଶିଷ୍ଠ ଅତ୍ରି ଗୌତମ ଅଗସ୍ତି ଏ ଚାରି
ଯଜ୍ଞ ଆରମ୍ଭିଲେ ତହିଁ ମହେଶ୍ୱର ବରି ।
ସନ୍ତୋଷେ ତାହାଙ୍କୁ ବର ଦେଲେ ଉମାକାନ୍ତ
ଇହ ପରଲୋକେ ସୁଖ ଭୁଞ୍ଜ ଚାରିଭ୍ରାତ ।
ଜୟଧ୍ୱଜ ପରାକ୍ରମ ଯେ ଜନ ଶୁଣଇ
ତାହାର ଶରୀରେ କେଭେ ପାପ ନ ରହଇ ।
କୂର୍ମ ପୁରାଣରେ ଏହି ଅପୂର୍ବ ଚରିତ
ଯେ ଜନ ଶୁଣଇ ସେହି ହୁଅଇ ପବିତ୍ର ।
ଦେହ ଅନ୍ତେ ବଇକୁଣ୍ଠପୁରକୁ ସେ ପାଇ
ଦୀନ ଗୋପୀନାଥ ଲେଖେ ବିଷ୍ଣୁ ପାଦ ଧ୍ୟାୟି ।
ମୁଁ ଅତି ପତିତ ଲୋକ ଆହେ ନରହରି
ଏ ଭବସାଗରୁ ମୋତେ ନିଅ ପାରିକରି ।

.....❖.....

## ଜୟବଂଶାନୁ ଚରିତ

କହୁଛନ୍ତି ସୁତ ବସି ଶୁଣୁଛନ୍ତି ମୁନି
ଶତପୁତ୍ର ଜାତକଲେ ଜୟଧ୍ୱଜ ରାଣୀ ।
ସମସ୍ତଙ୍କ ନାମ ରାଜା ଦେଲା ତାଳଜଙ୍ଘ
ଜ୍ୟେଷ୍ଠପୁତ୍ର ବିତୀହୋତ୍ର ହେଲା ବୀରସିଂହ ।
ବୀତିହୋତ୍ର ନୃପତିର ପୁତ୍ର ନାମ ବୃଷ
ତାହାର ନନ୍ଦନ ମଧୂ ସେ ହେଲା ନରେଶ ।
ମଧୂର ପୁତ୍ର ବୃଷଣ ତା ପୁତ୍ର ବିଶ୍ରୁତ
ତାହାର ପୁତ୍ର ଦୁର୍ଜ୍ଜୟ ଜଗତେ ବିଖ୍ୟାତ ।
ତାହାର ଭାରିଯା ରୂପ କେ ପାରିବ କହି
ତା ତୁଲ୍ୟ ସୁନ୍ଦରୀ ତିନିପୁରେ ନାହିଁ କେହି ।
ଧର୍ମବିନା ଅଧର୍ମରେ ନ ଯାଇ ତା ମତି
ଜଗତ ଜନେ ବୋଲନ୍ତି ତାକୁ ମହାସତୀ ।
ଉତ୍ତମଗୁଣ ତାହାର ଅଟଇ ଭୂଷଣ
ଏକ ଦିନକର କଥା ଶୁଣ ମୁନିଗଣ ।
କାଳିନ୍ଦୀ ନଦୀର ତୀରେ ଦୁର୍ଜ୍ଜୟ ନୃପତି
ଶୁଣିଲା ଅପୂର୍ବ ଗୀତ ମନୋହର ଅତି ।

ତାହାର ସ୍ୱରକୁ ବୀଣା ନୋହିବ ତ ସରି
କୋକିଳଠାରୁ ତାହାର ସୁଉତ୍ତମ ନାରୀ ।
ମନେ ବିଚାରଇ ରାଜା ସାରୀକି ଏ ନାରୀ
ଏମନ୍ତ ଭାବି ସେ ଗଲା ସ୍ୱର ଅନୁସରି ।
ଦେଖିଲା ଉର୍ବଶୀ ବସି ଗାଉଅଛି ଗୀତ
ଯେ ନେତ୍ରେ ମୋହି ପାରଇ ଏ ତିନି ଜଗତ ।
ଲାବଣ୍ୟର ନିଧି ସେହି ଅପସରୀ ହୀରା
ଇନ୍ଦ୍ର ଆଦି ଦେବଙ୍କର ନୟନର ତାରା ।
ମୋହିତ ହୋଇଲା ରାଜା ସେ ଅପୂର୍ବ ରୂପେ
ଲାଜ ଭୟ ଦୂରକରି କହେ ବହୁରୂପେ ।
ମୋ ସଙ୍ଗେ ବିହାର କର ରମଣୀ ରତନ
ରାଜାର ଉପରେପଡ଼େ ଉର୍ବଶୀ ନୟନ ।
ବିଚାରଇ ଅଟଇ ଏ କନ୍ଦର୍ପ ମୂରତି
ଏହାକୁ ସରି ନୋହିବ ରୂପେ ଶଚୀପତି ।
ଏମନ୍ତ ବିଚାରି କଲା ତା ସଙ୍ଗେ ବିହାର
ବହୁତ ଦିବସ ଅନ୍ତେ ଦିନେ ନୃପବର ।
ଉର୍ବଶୀକି ବୋଇଲା ମୁଁ ଯିବି ନିଜପୁରେ
ଉର୍ବଶୀ ଅଳପ ହସି କହେ ଧୀରେ ଧୀରେ ।
ସୁନ୍ଦର ପୁରୁଷ ଯୁବା ଅଟେ ନରପତି
ବରଷେ ଆବର ରହି ତୋଷ ମୋର ମତି ।
ବୁଦ୍ଧିମନ୍ତ ନ ପଢ଼ି ସେ ଅତ୍ୟନ୍ତ ଚତୁର
ବୁଝିପାରି ଉର୍ବଶୀର ମାୟାମୟ ଗୀର ।
ବୋଇଲା ମୁଁ ପୁରେଯାଇଁ ଆସେବେଗେ ଫେରି
ଅନୁମତି ଦେଉ କିନା ପରମ ସୁନ୍ଦରୀ ।
ଉର୍ବଶୀ ବୋଇଲା ନୃପ ଯାଅ ତେବେଘରେ
ଯାହା ମୁଁ କହୁଛି ରଖିଥିବ ତା ମନରେ ।
ଆନ ଅପସରା ସଙ୍ଗେ ନ କରିବ ପ୍ରୀତି
ହେଉ ହେଉ କହି ତହୁଁ ଦୁର୍ଜ୍ଜୟ ନୃପତି ।
ପ୍ରବେଶି ଆପଣା ପୁରେ ଗଲେ ରାଣୀପାଶେ
ଛୁଇଁ ନ ପାରିଲି ତାକୁ ପୁଣି ରାଜା ତ୍ରାସେ ।
ଭୟରେ କାତର ହେବା ନୃପତିକି ଦେଖି
ଧୀରେ ଧୀରେ କୋମଳରେ କହିଲେ ସୁମୁଖୀ ।
ଆହେ ନାଥ ତୁମ୍ଭ ମନେ କାହାକୁ ଯେ ଭୟ
କପଟ ନ କରି ସତ ମୋ ଆଗରେ କହ ।
ନୃପତି ଭୟାକୁ ହେଲେ ରାଜ୍ୟକି କରିବ
ଲାଜେ କିଛି ନ କହିଲେ ତହୁଁ ନରଦେବ ।

ସତୀ ଶିରୋମଣି ଜ୍ଞାନମାର୍ଗେ ଜାଣିପାରି
ବୋଇଲେ କାହିଁକି ଭୟ କର ଦଣ୍ଡଧାରୀ ।
ଯାହା କଲେ ତୁମ୍ଭ ଦେହୁଁ ପାପ ଯିବ ଛାଡ଼ି
ତାହା ତୁମ୍ଭେ କର ଇଚ୍ଛା ତୁମ୍ଭ ରାଜ୍ୟ ବାଡ଼ି ।
ଭାରିଯା କଥାରେ ରାଜା ବେଗେ ତହୁଁ ଗଲେ
ମୁନିବର କଣ୍ୱଙ୍କର ଆଶ୍ରମେ ମିଳିଲେ ।
କହିଲେ ସମସ୍ତ କଥା ପ୍ରଣମି ପୟରେ
ପାପର ଯେ ପ୍ରାୟଶ୍ଚିତ୍ତ ଶୁଣି ଶ୍ରବଣରେ ।
ବାଟେ ଆସୁ ଆସୁ ରାଜା ଦେଖିଲେ ଆକାଶେ
ବିମାନେ ବସି ଯାଉଛି ଅପୂର୍ବ ପୁରୁଷେ ।
ଦିବ୍ୟ ମାଲ୍ୟ ଅଳଙ୍କାରେ ହୋଇଛି ମଣ୍ଡିତ
ଗନ୍ଧର୍ବରାଜ ଯେ ବସି ଗାଉଅଛି ଗୀତ ।
ଦେଖିଲା ମାତ୍ରେ ରାଜାର ପଡ଼ିଲା ମନରେ
ଗାଉଥିଲା ସେ ଉର୍ବଶୀ କେମନ୍ତ ସୁସ୍ୱରେ ।
ଏ ସୁନ୍ଦର ପୁରୁଷର କଣ୍ଠେ ଯେଉଁ ହାର
ଉର୍ବଶୀ ଗଳାରେ ଥିଲେ ଦିଶନ୍ତା ସୁନ୍ଦର ।
ଭାଳୁ ଭାଳୁ କାମଶରେ ହେଲା ଜର ଜର
ମାଳାର ନିମନ୍ତେ କଲା ତା ସଙ୍ଗେ ସମର ।
ଦୁହିଁଙ୍କର ଘୋର ଯୁଦ୍ଧ ହେଲା ମାଳା ଲାଗି
ଦୁର୍ଜ୍ଜୟ ନୃପତି ତାର ରଥ ଦେଲା ଭାଙ୍ଗି ।
ବଳେ ତାହାଠାରୁ ମାଳା ଆଣିଲା ଛଡ଼ାଇ
ଉର୍ବଶୀକି ଦେବାପାଇଁ ଗଲା ବେଗହୋଇ ।
କାଳିନ୍ଦୀ ନଦୀର ତୀରେ ଖୋଜିଲା ବହୁତ
ଉର୍ବଶୀକି ନ ପାଇ ସେ କାମେ ବିହ୍ୱଳିତ ।
ସାତଦ୍ୱୀପ ସାତସିନ୍ଧୁ ଖୋଜିବାକୁ ଗଲା
ହିମାଳୟ ପର୍ବତର ପାରୁଶେ ମିଳିଲା ।
ତହୁଁ ଯାଇ ହେମକୂଟ ପର୍ବତେ ପ୍ରବେଶି
ଦେଖିଲା ସେଠାରେ ରାଜା ବହୁତ ସୁକେଶୀ ।
ଦିବ୍ୟ ଅଳଙ୍କାର ଅଙ୍ଗେ କଣ୍ଠେ ଦିବ୍ୟମାଳ
ସମସ୍ତେ ଅଟନ୍ତି ସ୍ୱର୍ଗ ଭୁବନର ବାଳ ।
ତାହାଙ୍କ ଦୃଷ୍ଟି ପଡ଼ିଲା ନୃପତି ଉପରେ
ବିକ୍ରମକେଶରୀ ଟାଣି ମାଳା ଅଛି କରେ ।
କୋଟି କାମ ଜିଣି ରୂପ ଅତି ମନୋହର
ଦେଖି କାମଶରେ ପୀଡ଼ା ପାଇ ରାମାବର ।
ତାହାଙ୍କୁ କହିଲେ ଆସି ବହୁତ ପ୍ରକାରେ
ନୃପତିର ମନ ଅଛି ଉର୍ବଶୀ ଉପରେ ।

ନ ଚାହିଁଲା ତାହାଙ୍କୁ ସେ ପୂର୍ବ କଥା ସ୍ମରି
ଉର୍ବଶୀ କହିଛି ମୋତେ ଆହୋ ଦଣ୍ଡଧାରୀ ।
ଆନ ଅପସରା ସଙ୍ଗେ ନ କରିବୁ ପ୍ରୀତି
ସେ ସତ୍ୟ ଲଙ୍ଘିଲେ ହେବ ନରକରେ ଗତି ।
ଏମନ୍ତ ଭାଳି ନୃପତି ଗଲା ତହୁଁ ବେଗେ
ମେରୁ ପରବତେ ଯାଇଁ ଖୋଜେ ବଇରାଗେ ।
ଦେବତାଙ୍କ ବାସସ୍ଥାନ ଯେଉଁ ଗିରିବର
ବାହୁବଳେ ଖୋଜିଲା ତା ଶୃଙ୍ଗ ନୃପବର ।
ତହିଁ ଥିବା ପବିତ୍ର ଯେ ମାନସରୋବର
ଉର୍ବଶୀକି ତାର ତୀରେ ଦେଖି ମହାବୀର ।
ମାଳ ଗୋଟି ନେଇ ତାର କଣ୍ଠେ ଲମ୍ବାଇଲା
ତାହାର ଶୋଭାକୁ ଚାହିଁ କୃତାର୍ଥ ହୋଇଲା ।
ବିହରିଲା କିଛିକାଳ ତା ସଙ୍ଗରେ ରହି
ଉର୍ବଶୀ ସେ ନୃପତିକି ଦିନେ ପଚାରଇ ।
ନଗରକୁ ଯାଇ ତୁମ୍ଭେ କି କଲ ହେ ରାଜା
ନୃପତି କହିଲେ ଯାହା କହିଲା ଭାରିଯା ।
କଣ୍ୱମୁନି ଆଶ୍ରମରେ ହେଲା ଯାହା ଯାହା
ବାଟେ ଆସୁ ଆସୁ ଦେଖି ଗନ୍ଧର୍ବର ନାହା ।
ମାଳା ଲାଗି ଯୁଦ୍ଧ ହେଲା ତାସଙ୍ଗେ ଯେମନ୍ତେ
ସମସ୍ତ କଥା କହିଲେ ଉର୍ବଶୀ ଅଗ୍ରତେ ।
ଉର୍ବଶୀ ବୋଇଲା ଶୁଣ ଆହେ ନୃପବର
ବେଗେ ଏଥୁଁ ଯାଅ କ୍ଷଣେ ବିଳମ୍ବ ନ କର ।
ଜାଣିଲେଟି ମହାମୁନି କଣ୍ୱ ହେବେ କୋପ ।
ମହାସତୀ ତୁମ୍ଭ ରାଣୀ ଦେବ ମୋତେ ଶାପ ।
ଏମନ୍ତେ ଉର୍ବଶୀ ଯେତେ କହିଲା ଡରାଇ
ବହୁତ କହିଲା ପୁଣି ରାଜାକୁ ବୁଝାଇ ।
ନ ଶୁଣିଲା ନ ବୁଝିଲା ସେହି ନୃପବର
ନ ଆସିଲା ଉର୍ବଶୀକି ଛାଡ଼ି ନିଜପୁର ।
ଜାଣିପାରି ସେ ଉର୍ବଶୀ ନୃପତିର ହିତେ
ଧଇଲା ବିକଟ ରୂପ ରାଜାର ଦେଖନ୍ତେ ।
ଦିନୁ ଦିନ ଅସୁନ୍ଦର ରୂପ ଦେଖି ତାର
ବିରକ୍ତ ହୋଇ ତାହାକୁ ଛାଡ଼ି ନୃପବର ।
କଣ୍ୱଋଷି କହିଥିବା କଥାଯାକ ହେଜି
ଆପଣାକୁ ନିନ୍ଦାକରି ତପେ ଚିତ୍ତ ମଜ୍ଜି ।
କନ୍ଦମୂଳ ଫଳ ଖାଇ ବାର ବର୍ଷ ରହି
ବାର ବରଷ ରହିଲା ପବନକୁ ପିଇ ।
ଡରି ଡରି କଣ୍ୱମୁନି ନିକଟକୁ ଗଲା
ସତକଥା ଯାକ ତାଙ୍କ ଆଗରେ କହିଲା ।
ପ୍ରସନ୍ନ ହୋଇ କହିଲେ ସେହି ମୁନିବର
ବାରାଣସୀ ପୁରେ ଯାଇ ସେବାକର ହର ।
ତହିଁ ଗଙ୍ଗାଜଳେ ବୁଡ଼ି ପାପକୁ ଛଡ଼ାଇ
ରାଜ୍ୟକୁ ଆସି ତୁ ଯଜ୍ଞ କର ନରସାଇଁ ।
ମୁନିଙ୍କ କହିବା କଥା କଲା ନୃପବର
ଯଜ୍ଞ କରାଇଲେ ତହିଁ କଣ୍ୱ ମହାବୀର ।
ସୁପତୀକ ନାମେ ହେଲା ତାହାର ନନ୍ଦନ
ସେହି ନୃପତି ହୋଇଲା ଜାଣ ମୁନିଗଣ ।
ଉର୍ବଶୀ ଗର୍ଭରୁ ଜାତ ହେଲେ ସାତ ସୁତ
ଗନ୍ଧର୍ବ କନ୍ୟାକୁ ବିଭା ହୋଇଲେ ସେ ସାତ ।
କହିଲୁ ସହସ୍ରାଜିତ ବଂଶର ଚରିତ
ଶୁଣିଲା ମାତ୍ରେ ପାପରୁ ହୋଇବ ମୁକତ ।
ଦୀନ ଗୋପୀନାଥ ବୋଲେ ବୋଲ ହରି ହରି
ହରିନାମ ତରୀ କରି ଭବୁ ଯିବ ତରି ।

.....✻.....

## କ୍ରୋଷ୍ଟୁ ବଂଶାନୁ ଚରିତ

ସୂତ କହନ୍ତି ଶୁଣନ୍ତି ବସି ମୁନିବରେ
ବୃଜିନ ନାମେ କ୍ରୋଷ୍ଟୁର ଥିଲାଟି କୁମରେ ।
ତା ପୁତ୍ର ଖ୍ୟାତି ତା ପୁତ୍ର ଅଟଇ କୁଶିକ
ତାର ପୁତ୍ର ଚିତ୍ରରଥ ସେ ବଡ଼ ଧାର୍ମିକ ।
ତାର ପୁତ୍ର ଶଶବିନ୍ଦୁ ନାମେ ନୃପବର
ପୃଥୁଯଶା ନାମେ ହେଲା ତାହାର କୁମର ।
ତାର ପୁତ୍ର ପୃଥୁକର୍ମା ନାମେ ନରପତି
ପୃଥୁଜୟ ନାମେ ହେଲା ତାହାର ସନ୍ତତି ।
ପୃଥୁକୀର୍ତ୍ତି ନାମେ ହେଲା ତାହାର ନନ୍ଦନ
ତାହାର ତନୟ ନାମ ଅଟେ ପୃଥୁବାନ ।
ପୃଥୁଶ୍ରବା ନାମେ ହେଲା ତାହାର କୁମର
ପୃଥୁସତ୍ତମ ନାମରେ ପୁତ୍ରେକ ତାହାର ।
ତା ପୁତ୍ର ଗଣନା ହେଲା ଶିତେକ୍ଷୁ ତା ସୁତ
ରୁକ୍ମ କବଚ ନାମରେ ହେଲା ତାର ପୁତ୍ର ।
ତାର ପୁତ୍ର ପରାବୃତ୍ତ ତା ପୁତ୍ର ଜ୍ୟାମଘ
ତା ପୁତ୍ର ନାମ ବିଦର୍ଭ ତାର ପୁତ୍ର କ୍ରଥ ।
ଲୋମପାଦ କଉଶିକି ହେଲେ ଏହି ଦୁଇ
ଲୋମପାଦ ପୁତ୍ର ବଭ୍ରୁ ନାମକୁ ବହଇ ।

ବଭ୍ରୁ ପୁତ୍ର ଧୃତି ଜାଣ ଧୃତି ପୁତ୍ର ଶ୍ୱେତ
ତାର ପୁତ୍ର ବିଶ୍ୱମହ ମହା ବଳବନ୍ତ ।
ତାହାର ପୁତ୍ର କୌଶିକ ତା ସୁତ ସୁମନ୍ତ
ତାହାର ପୁତ୍ର ସେ ନଳ ଅତି ବୁଦ୍ଧିମନ୍ତ ।
କଉଶିକ ପୁତ୍ର ନାମ ଚେଦି ଯେ ଅଟଇ
ଚଇତ୍ୟ ନାମେ ଅନେକ ପୁତ୍ର ତାର ହୋଇ
ତାହାଙ୍କ ମଧ୍ୟେ ପ୍ରଧାନ ଅଟେ ଦ୍ୟୁତିମାନ
ତାହାର ନନ୍ଦନ ନାମ ହେଲା ବପୁଷ୍ମାନ ।
ବ୍ରହ୍ମନ୍ଦେଧା ନାମେ ହେଲା ତାହାର କୁମର
ଶ୍ରୀଦେବ ନାମେ ହୋଇଲା ପୁତ୍ରେକ ତାହାର ।
ତାର ପୁତ୍ର ବୀତରଥ ରୁଦ୍ରର ଭକତ
ଆହେ ଦ୍ୱିଜ ବିଦର୍ଭର ସୁତ ନାମ କ୍ରଥ ।
ତାର ପୁତ୍ର କୁନ୍ତି ତାର ପୁତ୍ର ଧୃଷ୍ଟି ଜାଣ
ତାହାର ପୁତ୍ର ନଧୃତି ଆହେ ଋଷିଗଣ ।
ଦଶାର୍ହ ନାମରେ ହେଲା ତାହାର କୁମର
ତାହାର ନନ୍ଦନ ହେଲା ବ୍ୟୋମନାମେ ବୀର ।
ତା ପୁତ୍ର ଜୀମୁତ ତାର ପୁତ୍ର ଭୀମରଥ
ଭୀମରଥର ତନୟ ନାମ ନରରଥ ।
ଦାନଶୂର ମାନଶୂର ଧର୍ମବନ୍ତ ଅତି
ବଳବନ୍ତ ଶତ୍ରୁହନ୍ତା ସତ୍ୟେ ଥାଏ ମତି ।
ଦିନେ ସେ ମୃଗୟା କରି ଗଲା ବ୍ୟାଧବେଶେ
ଘୋର ଅରଣ୍ୟକୁ ଯାଇ ଭେଟିଲା ରାକ୍ଷସେ ।
ପର୍ବତ ପରାୟ କାୟ ମହାଭୟଙ୍କର
ଡରେ ପଳାଇଲା ଦେଖି ତାକୁ ନୃପବର ।
ସେହି ରାକ୍ଷସର ନାମଅଟେ ଦୁର୍ଯ୍ୟୋଧନ
ହସ୍ତେ ଏକ ଶୂଳ ଅଛି ଅନଳ ସମାନ ।
କୋପେ ତାକୁ ଗୋଡ଼ାଇଲା ଭକ୍ଷିବା ମାନସେ
ଆଗେ ଯାଏ ନରନାଥ ଅଣ ନିଶୁଆସେ ।
ପଛରେ ଗୋଡ଼ାଇ ଅଛି ପ୍ରତାପୀ ଅସୁର
ନୃପତି ଯାଇଁ ଦେଖିଲା ଏକଇ ମନ୍ଦିର ।
ଭୟେ ତା ଭିତରେ ପଶି ଦ୍ୱାର ଦେଲା ରୁନ୍ଧି
ଦେଖିଲା ଦେବୀ ପ୍ରତିମା ତାଙ୍କ ପାଦ ବନ୍ଦି ।
କରଯୋଡ଼ି ସ୍ତୁତିକଲା ସରସ୍ୱତୀ ଜାଣି
ଜୟ ତୁ ଜୟ ତୁ ମାଗୋ ବ୍ରହ୍ମାର ଦୁଲଣୀ ।
ତୋହର ଚରଣେ ମାତ ପଶିଲି ଶରଣ
ରାକ୍ଷସ ଗୋଡ଼ାଇ ଅଛି କରିବ ଭକ୍ଷଣ ।

ଜଗତ ଜନନୀ ମୋତେ କର ଗୋ ସୁଦୟା
ତୁହି ଯେବେ ନ ରଖିବୁ ମାତ ଗୋ ଅଭୟା ।
ଗିଳିବ ରାକ୍ଷସ ମୋତେ ଆସେ ଆଁ ଆଁ କରି
ରଖ ଶ୍ୱେତପଦ୍ମାସନା ଶ୍ରୀହରିର ନାରୀ ।
ଏ ସମୟେ ସେ ରାକ୍ଷସ ମିଳିଲାକ ତହିଁ
ଦ୍ୱାର ଭାଙ୍ଗି ଭିତରକୁ ଗଲା ଭୟ ନାହିଁ ।
ଦେଖିଲା ନୃପତିଦେବୀ ପାଦେ ଅଛି ପଡ଼ି
ଶୂଳ ଉଞ୍ଚାଇ ରାକ୍ଷସ ଦେଲା ଘୋର ରଡ଼ି ।
ରଡ଼ିଘାତେ ନୃପବର ହୋଇଲା ଅଜ୍ଞାନ
କାହୁଁ ପୁରୁଷେକ ଆସି ମିଳିଲା ବହନ ।
କୋଟି ସୂର୍ଯ୍ୟପ୍ରାୟ କାନ୍ତି ଦିଶେ ଝଟ ଝଟ
ରାକ୍ଷସକୁ ଚାହିଁ କରି ଦାନ୍ତ କଟ ମଟ ।
ରାକ୍ଷସ ହାତରୁ ଶୂଳ ନେଲାକ ଝଡ଼ାଇ
ଦୈତ୍ୟ ବେକ ମୂଳେ ଶୂଳପ୍ରହାରିଲା ନେଇ ।
ମୁଣ୍ଡ ଛିଣ୍ଡିଗଲା ତଳେ ପଡ଼ିଲା ଅସୁର
ରାଜାକୁ ବୋଇଲା ଉଠ ଉଠ ନୃପବର ।
ମଲାଣି ତୋହର ଶତ୍ରୁ ଦେଖ ତୁ ନୟନେ
ଉଠି ନରପତି ଦେଖି ଆନନ୍ଦ ବଦନେ ।
ଦେବୀଙ୍କ ଚରଣେ ନମି ଗଲା ତହୁଁ ଚଳି
ଦେବୀଙ୍କର ମନ୍ଦିରକୁ ରାଜା ଦେଲା ତୋଳି ।
ଯାଗ ଯଜ୍ଞ କରି ତହିଁ ଭୋଗ ଦେଲା ଖଞ୍ଜି
ଦେବୀ ପ୍ରସାଦେ ତାହାର ଶତ୍ରୁ ହୋଇ ଗଞ୍ଜି ।
ଡରେ ଆସି ରାଜାପାଦେ ପଶିଲେ ଶରଣ
ବଡ଼ ପ୍ରତାପୀ ହୋଇଲା ସେହି ନରରାଣ ।
ତାହାର ପୁତ୍ରର ନାମ ହେଲା ଦଶରଥ
ହେଲା ସେହି ସରସ୍ୱତୀ ଦେବୀର ଭକତ ।
ତାର ପୁତ୍ର ଶକୁଳି ଯେ ତା ପୁତ୍ର କରମ୍ଭ
କାର୍ଯ୍ୟ କାଳରେ ତାହାର ଛାତି ବଡ଼ ଦମ୍ଭ ।
ତାର ସୁତ ଦେବରାତ ଅଶ୍ୱମେଧ କରି
ପୃଥିବୀ ରାଜାଙ୍କୁ ଜିଣି ହେଲା ଦଣ୍ଡଧାରୀ ।
ତାହାର ନନ୍ଦନ ନାମ ଅଟେ ଦେବଦତ୍ତ
ମଧୁ ନାମରେ ହୋଇଲା ତାର ଏକ ସୁତ ।
କୁରୁନାମ ବୋଲାଇଲା ମଧୁର ନନ୍ଦନ
ମଧୂର ପୁତ୍ର ସୁତ୍ରମା ହୋଇଲା ରାଜନ ।
ତାର ପୁତ୍ର ପୁରୁକୁଷ୍ଣ ନାମେ ହେଲା ଖ୍ୟାତ
ତାର ପୁତ୍ର ଅଂଶୁ ତାର ପୁତ୍ର ଯେ ସାତ୍ୱତ ।

ସେ ସାତ୍ୱତ ନାରଦଙ୍କଠାରୁ ଜ୍ଞାନ ପାଇ
ବାସୁଦେବ ପୂଜା କରି ହେଲା ନରସାଇଁ ।
ଶାସ୍ତ୍ର ଏକ ଭିଆଇଲା ସେହି ନରପତି
କୁଣ୍ଡ ଆଉ ଗୋଲକ ସେ ଶାସ୍ତ୍ରକୁ ପଢ଼ନ୍ତି ।
କୁଣ୍ଡ ବୋଇଲା ସାଧବ ଜାରଜ କୁମର
ବିଧବା ଜାରଜସୁତ ଗୋଲକ ଆବର ।
ତାର ନାମ କୁଣ୍ଡା ଗୋଳ ଶାସ୍ତ୍ର ପୁଣି ଦେଲେ
ତାହାଙ୍କର ଭଲ ହୁଏ ସେ ଶାସ୍ତ୍ର ପଢ଼ିଲେ ।
ସାତ୍ୱତ ଭାରିଯା ନାମ କୌଶଲ୍ୟା ଅଟଇ
ସେ ନାରୀ ଗର୍ଭରୁ ପାଞ୍ଚପୁତ୍ର ଉପୁଜଇ ।
ଭଜମାନ ଅନ୍ଧକ ଯେ ମହାଭୋଜ ତିନି
ପାଞ୍ଚହେଲେ ବୃଷ୍ଣି ଦେବାବୃଧକୁ ଯେ ଘେନି ।
ଅପୁତ୍ରିକ ଦେବାବୃଧ ଘୋର ତପ କରି
ଗୁଣବନ୍ତ ପୁତ୍ର ଏକ ପାଇ ଦଣ୍ଡଧାରୀ ।
ତାର ନାମ ବଭ୍ରୁ ହେଲା ସେହି ମହାଜ୍ଞାନୀ
ତାହାର ନନ୍ଦନ ହେଲେ ନିମି ବୃକ ବେନି ।
ମହାଭୋଜ ପୁତ୍ରଗଣ ବୋଇଲାରେ ଭୋଜ
ସୁମିତ୍ରା ନାମରେ ହେଲା ବୃଷ୍ଣିର ତନୁଜ ।
ତା ତନୟ ଅନମିତ୍ର ସୁମିତ୍ର ଯେ ଶିନି
ଏମନ୍ତେ ତାହାର ହେଲେ ଜାଣ ପୁତ୍ର ତିନି ।
ନିଘ୍ନନାମେ ହେଲା ଅନମିତ୍ରର ନନ୍ଦନ
ନିଘ୍ନର ତନୟ ନାମ ଅଟଇ ପ୍ରସେନ ।
ଆବର ହୋଇଲା ସତ୍ରାଜିତ ନାମେ ସୁତ
ଅଟନ୍ତି ସେ ଦୁଇଭାଇ ପୁଣି ଗୁଣବନ୍ତ ।
ବୃଷ୍ଣିର ମଝିଆଁ ପୁଅ ନାମ ଜାଣ ଶିନି
କାହାର ପୁତ୍ର ସତ୍ୟକ ନାମେ ମହାଜ୍ଞାନୀ ।
ତାହାର ନନ୍ଦନ ନାମ ଅଟେ ଯୁଯୁଧାନ
ସାତ୍ୟକି ନାମ ହେବାରୁ ସତ୍ୟକ ନନ୍ଦନ ।
ଅସଙ୍ଗ ନାମ ବହିଲା ସାତ୍ୟକି କୁମର
ତାର ପୁତ୍ର କୁଣି ତାର ପୁତ୍ର ଯୁଗନ୍ଧର ।
ମାଦ୍ରୀର ଗର୍ଭରୁ ଜାତ ବୃଷ୍ଣି ନାମେ ସୁତ
ବୃଷ୍ଣି ଗର୍ଭୁ ଉପୁଜିଲା ଯଦୁ ନାମେ ପୁତ୍ର ।
ଶଭଲ୍‌କ ଶକ୍ରକ ଦୁଇ ବୃଷ୍ଣିର କୁମର
ଗାନ୍ଧିନୀ ନାମରେ କନ୍ୟା କାଶୀ ନୃପତିର ।
ଶଭଲ୍‌କ ହେଲା ସେହି ରାଜକନ୍ୟା ପତି
ତାର ଗର୍ଭୁ ଉପୁଜିଲା ଅକ୍ରୂର ସୁମତି ।
ଉପମଙ୍ଗୁ ମଙ୍ଗୁନାମେ ହେଲେ ପୁତ୍ର ଦୁଇ
ବିଷ୍ଣୁ ଭକତ ଅକ୍ରୂର ଅଟେ ବଡ଼ଭାଇ ।
ଅକ୍ରୂର ତନୟ ନାମ ଉପଦେବ ଜାଣ
ଦ୍ୱିତୀୟ ପୁତ୍ରର ନାମ ଅଟେ ବେବବାନ ।
ଦୁଇଗୋଟି ପୁତ୍ର ହେଲା ଦୁଇ ଭାଇଙ୍କର
ବିଶ୍ୱ ଆଉ ପ୍ରମାର୍ଥୀ ଯେ ନାମ ତାହାଙ୍କର ।
ଚିତ୍ରକ ନନ୍ଦନ ପୃଥୁ ବିପୃଥୁ ଏ ଦୁଇ
ଅଶ୍ୱଗ୍ରୀବ ସୁବାହୁ ଯେ ଜାଣ ବେନିଭାଇ ।
ସୁପାର୍ଶ୍ୱବ ଗବେଷଣ ଏମନ୍ତେ ଏ ଛଅ
କାଶ୍ୟପ ଦୁହିତା ଗର୍ଭୁ ହେଲା ଏକ ପୁଅ ।
ତା ନାମ କୁକୁର ସେହି ଅନ୍ଧକ ନନ୍ଦନ
କୁକୁରର ଭାଇ ନାମ ଅଟେ ଭଜମାନ ।
ଆବର ଶମୀକ ବଳ ଗର୍ବିତ ଏ ଦୁଇ
ଏମନ୍ତେ ଏ ହେଲେ ଜାଣ ଚାରିଗୋଟି ଭାଇ
କୁକୁର ପୁତ୍ରର ନାମ ହୋଇଲା ଯେ ଦୁଷ୍ଟ
ତାହାର ମୃତ୍ର କପୋତରୋମା ଅତି ଧୃଷ୍ଟ ।
ସ୍ୱଳେକମ ନାମେ ହେଲା ତାହାର ନନ୍ଦନ
ତାମତମ ନାମେ ହେଲା ପୁତ୍ରେକ ବିଦ୍ୱାନ ।
ତୁମ୍ବୁରୁ ଗନ୍ଧର୍ବ ସଖା ଅଟଇ ଯେ ତମ
ତାହାର ନନ୍ଦନ ହେଲା ତାତହୁଁ ଉତ୍ତମ ।
ଆନକଦୁନ୍ଦୁଭି ନାମ ହୋଇଲା ତାହାର
ଆନକ ଦୁନ୍ଦୁଭି କଥା ଶୁଣି ମୁନିବର ।
ଗୋବର୍ଦ୍ଧନ ପର୍ବତରେ ବସି କଲା ତପ
ମୂଳ କମଳକୁ ଥାପି କଲା ମନ୍ତ୍ର ଜପ ।
ପ୍ରସନ୍ନେ ତାହାକୁ ବର ଦେଲେ ବେଦବର
ଜାଣିଲା ସେ ନୃତ୍ୟ ଗୀତ ବାଦ୍ୟ ଲୟକର ।
ତହୁଁ ଯାଇ କଇଳାସ ପର୍ବତେ ମିଳିଲା
ନୃତ୍ୟ କରି ଗୀତ ଗାଇ ଶିବଙ୍କୁ ତୋଷିଲା ।
ସୁପ୍ରସନ୍ନେ କନ୍ୟାରତ୍ନ ଦେଲେ ତାକୁ ବର
ସେ କନ୍ୟା ଗୋଟି ହୋଇଲା ଭାରିଯା ତାହାର ।
ତାକୁ ନୃତ୍ୟ ଗୀତ ମାନ ଶିଖାଇଲା ରାଜା
ତାର ଗର୍ଭୁ ଉପୁଜିଲା ଏକଇ ଆତ୍ମଜା ।
ଲାବଣ୍ୟର ନିଧି ସେହି ପରମା ସୁନ୍ଦରୀ
ହ୍ରୀମତୀ ତାହାର ନାମ ଦେଲେକ ବିଚାରି ।
ଶୋଭନ ନାମରେ ହେଲା ଏକଇ ନନ୍ଦନ
ବାଳକାକୁ ଶିଖିଲେ ସେ ଗୀତ ତାନମାନ ।

ଧନୁର୍ବେଦ ଆଦି ଚାରି ବେଦ ପଢ଼ିସାରି
ପୃଥିବୀରେ ସେ ଶୋଭନ ହେଲା ଦଣ୍ଡଧାରୀ ।
ଗନ୍ଧର୍ବ କନ୍ୟା ମାନସୀ ଭାରିଯା ତାହାର
ତାର ଗର୍ଭୁ ଉପୁଜିଲେ ପାଞ୍ଚୋଟି କୁମର ।
ଗନ୍ଧର୍ବ ବିଦ୍ୟାରେ ହେଲେ ସେମାନେ ନିପୁଣ
ଆନକ ଦୁନ୍ଦିଭି ଘେନି ପୁତ୍ର ନାତିଗଣ ।
ଭାରିଯା ବଧୂ ଆବର ଅଛନ୍ତି ସଙ୍ଗତେ
ନୃତ୍ୟ ଗୀତ ଆରମ୍ଭିଲେ କୈଳାସ ପର୍ବତେ ।
ସୁବାହୁ ନାମେ ଗନ୍ଧର୍ବ ସେଠାରେ ମିଳିଲା
ହ୍ରୀମତୀ କନ୍ୟାକୁ ତହୁଁ ହରି ଘେନିଗଲା ।
ତା ଗର୍ଭରୁ ଉପୁଜିଲେ ପାଞ୍ଚୋଟି ନନ୍ଦନ
ତାହାଙ୍କର ନାମ ଏବେ ଶୁଣ ମୁନିଗଣ ।
ସୁଷେଣ ବେଣ ସୁଗ୍ରୀବ ସୁଭୋଜ ଆବର
ନର ବାହନକୁ ଘେନି ଏ ପାଞ୍ଚ କୁମର ।
ଅନଳ ଦୁନ୍ଦୁଭିର ଯେ ହେଲା ପୁତ୍ର ଏକ
ତାର ନାମ ଅଭିଜିତ ସେ ପୃଥ୍ୱୀ ନାୟକ ।
ତାହାର କୁମର ନାମ ପୁନର୍ବସୁ ହେଲା
ତାହାର ସୁତ ବାହୁକ ନାମ ବୋଲାଇଲା ।
ତାର ପୁତ୍ର ଉଗ୍ରସେନ ଦେବକ ଏ ଦୁଇ
ଦେବକର ଚାରିପୁତ୍ର ଶୁଣ ମନଦେଇ ।
ଦେବଦାନ ଉପଦେବ ସୁଦେବ ଏ ତିନି
ଚାରିଗୋଟି ପୁତ୍ର ଦେବ ରକ୍ଷତକୁ ଘେନି ।
ଏ ଚାରି ଭାଇର ଜାଣ ସାତଟି ଭଉଣୀ
ତାହାଙ୍କର ନାମ ଶୁଣ କହୁଅଛି ପୁଣି ।
ଧୃତଦେବା ଉପଦେବା ଆବର ଶ୍ରୀଦେବା
ଦେବରକ୍ଷିତା ଯେ ସିହଦେବା ଶାନ୍ତିଦେବା ।
ସାନ ଭଉଣୀର ନାମ ଦେବକୀ ଅଟଇ
ବସୁଦେବକୁ ସେ କନ୍ୟା ଗୋଟି ଦେଲାନେଇ ।
ଉଗ୍ରସେନର ଯେ ପୁତ୍ର ହେଲେ ଛଅଗୋଟି
ତାହାଙ୍କର ନାମ ତୁମ୍ଭେ ଶୁଣ ଗୋଟି ଗୋଟି ।
ନ୍ୟଗ୍ରୋଧ କଂଶ ସୁଭୂମି ରାଷ୍ଟ୍ରପାଳ ଚାରି
ରାଷ୍ଟ୍ରପାଳ ଶଙ୍କୁ ଏହି ଛଅ ତପଚାରୀ ।
ବିଦୁରଥ ନାମେ ଭଜମାନର କୁମର
ତାହାର ନନ୍ଦନ ନାମ ଅଟଇ ଯେ ଶୂର ।
ତାର ପୁତ୍ର ଶମୀ ତାର ପୁତ୍ର ପ୍ରତିକ୍ଷେତ୍ର
ସ୍ୱଶମ୍ଭୋଜ ନାମେ ହେଲା ତାର ଏକ ପୁତ୍ର ।
ହୃଦିକ ନାମରେ ହେଲା ତାହାର ନନ୍ଦନ
ତାର ପୁତ୍ର କୃତବର୍ମା ନାମେ ବୁଦ୍ଧିମାନ ।
ତାହାର ପୁତ୍ରର ନାମ ଦେବକ ଅଟଇ
ଶୁର ନାମରେ ତାହାର ପୁତ୍ରେକ ହୁଅଇ ।
ଶୁରର ପୁତ୍ରର ନାମ ଜାଣ ବସୁଦେବ
ଯାହାଙ୍କର ପୁତ୍ର ହେଲେ ପ୍ରଭୁ ବାସୁଦେବ ।
ଜ୍ୟେଷ୍ଠ ଭାରିଯା ତାହାର ଅଟଇ ରୋହିଣୀ
ତାର ଗର୍ଭୁ ଉତପନ୍ନ ପ୍ରଭୁ ହଳପାଣି ।
ସାକ୍ଷାତେ ସେ ଶେଷଦେବ ନରରୂପେ ଜାତ
ଭୃଗୁ ମୁନି ଶାପେ ହେଲେ ବସୁଦେବ ସୁତ ।
ଲକ୍ଷ୍ମୀପତି ମୁନିଶାପେ ହୋଇଲେ ମାନବ
ପୂର୍ବତପେ ତାଙ୍କ ପିତା ହେଲେ ବସୁଦେବ ।
ଦେବକୀ ଦେବୀ ଗର୍ଭରୁ ଜନମିଲେ ହରି
ଶୁଣି ଇନ୍ଦ୍ର ଆଦି ଦେବମାନଙ୍କ ଗୁହାରି ।
ପୃଥ୍ୱୀଭାରା ନିବାରଣ କରିବା ନିମନ୍ତେ
କହିଲେ ଯୋଗନିଦ୍ରାକୁ ଶ୍ରୀ ଜଗତନାଥେ ।
ଉମା ଦେହରୁ ସମ୍ଭୁତ ନାମ କଉଶିକୀ
ଦାନବକୁଳ ଦଳିନୀ କଳାକରମୁଖୀ ।
ଯଶୋଦା ଦେବୀର ଗର୍ଭୁ ହେଲେ ଉତପତ୍ତି
ଭାରା ନିବାରଣ ଅର୍ଥେ ମାନବ ମୂରତି ।
କୃଷ୍ଣ ବଡ଼ ଭାଇଙ୍କର ନାମ ଏବେ ଶୁଣ
ଯାହାଙ୍କୁ ଧରି ମାଇଲା କଂସ ନୃପରାଣ ।
ସୁଷେଣ ଉଦାପି ଭଦ୍ରାସେନ ରଜୁଦାସ
ମହାବଳ କୀର୍ତ୍ତିମାନ ଷଷ୍ଠ ଭଦ୍ରଦାସ ।
ଏମନ୍ତେ ଏ ସାତପୁତ୍ର କଂସ କଲା ହତ
ତଦନ୍ତେ ରୋହିଣୀ ଗର୍ଭୁ ବଳରାମ ଜାତ ।
ତହୁଁ ଦେବକୀ ଗର୍ଭରୁ ଜନମିଲେ ହରି
ବଳରାମଙ୍କ ଭାରିଯା ରେବତୀ ସୁନ୍ଦରୀ ।
ତାଙ୍କ ଗର୍ଭୁ ଉପୁଜିଲେ ଦୁଇଗୋଟି ସୁତ
ନିଶଠ ଉଲ୍ମୁକ ଏହି ନାମେ ହେଲେ ଖ୍ୟାତ ।
ଶ୍ରୀହରିର ଜାଣ ଷୋଳ ସହସ୍ର ଯୁବତୀ
ତାଙ୍କ ଗର୍ଭୁ ଶତଶତ ପୁତ୍ର ଉତପତ୍ତି ।
ରୁକ୍ମିଣୀ ଦେବୀର ହେଲେ ଆଠଟି ନନ୍ଦନ
ଚାରୁଦେଷ୍ଣ ସୁଚାରୁ ଯେ ଚାରୁଯଶ ଜାଣ ।
ଯୋଶଧର ଚାରୁଶ୍ରବା ଚାରୁଯଶ ଏହି
ପ୍ରଦ୍ୟୁମ୍ନ ଶଙ୍ଖ ନାମରେ ପୁତ୍ର ଆଉ ଦୁଇ ।

ମହାବଳବନ୍ତ ଏହି ଆଠଗୋଟି ବୀର
ବାସୁଦେବଙ୍କର ଥିଲେ ଯେତେକ କୁମର ।
ତାହାଙ୍କ ମଧ୍ୟେ ପ୍ରଧାନ ଅଟନ୍ତି ଏ ଆଠ
ରୁକ୍ମିଣୀର ପୁତ୍ର ଯହୁଁ ହୋଇଲେ ଗରିଷ୍ଠ ।
ଦେଖି ଜାମ୍ବବତୀ ଦେବୀ ମନେ ବହି ଖଙ୍ଗ
ଦିନେ ହରିଙ୍କି ବୋଇଲେ ଆହେ ଶିରୀରଙ୍ଗ ।
କୃପା କରି ଶିବତୁଲ୍ୟ ପୁତ୍ର ଦିଅ ମୋତେ
ହେଉ କହିଣ ତାହାଙ୍କୁ ଗଲେ ଜଗନ୍ନାଥେ ।
ଦାନବ ସୁଦୟା ହରି ଅଭୟ ଚରଣ
ଦୀନ ଗୋପୀନାଥ ସଦା ମାଗଇ ଶରଣ ।

.....❀.....

## ଶ୍ରୀକୃଷ୍ଣ ତପସ୍ୟା

ଶୁଣୁଛନ୍ତି ମୁନିଗଣ କହୁଛନ୍ତି ସୁତ
ଗରୁଡ଼କୁ ସୁମରିଲେ ପ୍ରଭୁ ଯେ ଅଚ୍ୟୁତ ।
ଜାଣି ପକ୍ଷୀରାଜ ଆସି ପ୍ରବେଶ ହୋଇଲା
ପାଦେ ପଡ଼ି କି କରିବି ବୋଲି ସେ ବୋଇଲା ।
ପିଠିକି ଦେଖାଇ ଦେଲା ବସିଲେ ଶ୍ରୀହରି
ବିନତା ସୁତ ଉଡ଼ିଲା ପକ୍ଷକୁ ବିସ୍ତାରି ।
ମହାମନ୍ୟୁ ଉପମନ୍ୟୁ ଆଶ୍ରମେ ମିଳିଲେ
ଅନେକ ମୁନି ଆଶ୍ରମ ସେଠାରେ ଦେଖିଲେ ।
ସ୍ୱର ଧରି ବିପ୍ରମାନେ ପଢୁଛନ୍ତି ବେଦ
ପଶୁ ପକ୍ଷୀ ବେଦ ଶୁଣି ହୋଇ ଉଦ୍‌ବେଗ ।
ତାଙ୍କ ସଙ୍ଗେ ମୃଗଖେଳେ ବ୍ୟାଘ୍ରସଙ୍ଗେ ଛାଗ
ମାର୍ଜାର ସଙ୍ଗତେ ମୂଷା ମୟୂର ଉରଗ ।
ଏମନ୍ତେ ସେ ବନେ ପଶୁ ପକ୍ଷୀଙ୍କର କ୍ରୀଡ଼ା
କରୁଛନ୍ତି ଆନନ୍ଦରେ ହୋଇ ଯୋଡ଼ା ଯୋଡ଼ା ।
ମାଧବୀ କେତକୀ ମଲ୍ଲୀ ମାଳତୀ ଫୁଟିଛି
ଗୁଣୁ ଗୁଣୁନାଦେ ଭୃଙ୍ଗ ଉଡୁଛି ବସୁଛି ।
ବହୁଅଛି ସୁଶୀତଳ ଦକ୍ଷିଣା ପବନ
ତା ମଧରେ ଅଛି ଦିବ୍ୟ ପୁଷ୍କରିଣୀ ମାନ ।
ନିର୍ମଳ ଜଳ ସୁନ୍ଦର ଦିଶଇ ତା ତୀର
ଫୁଟିଛି ତହିଁରେ ପଦ୍ମ କୁମୁଦ କହ୍ଲାର ।
କ୍ଷୁଦ୍ର ବଗିଚା ଅଛଇ ସେ ବନ ଭିତରେ
ତାହା ଦେଖି ଦେଖି ଗଲେ ଗରୁଡ଼ ଉପରେ ।
ଦେଖିଲେ ଦେଉଳ ଅଛି ସେ ବନରେ କେତେ
କାହିଁଯୋଗ ସାଧୁଛନ୍ତି ବସି ଋଷି ସୁତେ ।
କାହିଁ ବେଦ ପଢୁଛନ୍ତି ପୋଥିକି ଫିଟାଇ
କେହି କେହି ହୋମକାଠ ଆଣୁଛନ୍ତି ବହି ।
କେହି ଫୁଲ ତୋଳୁଛନ୍ତି ବଗିଚାରେ ପଶି
କାହିଁ ହୋମ କରୁଛନ୍ତି ବିପ୍ରମାନେ ବସି ।
ଦେଉଳରେ ପଶି କେହି ଶିବଙ୍କୁ ପୂଜଇ
କେହି ସ୍ନାନ କରି ଜଳେ ତର୍ପଣ କରଇ ।
କେହି ପୁରାଣ ଫିଟାଇ କହୁଛି ପୁରାଣ
ତପ କରୁଅଛି ବସି କେବଣ ବ୍ରାହ୍ମଣ ।
ଅତି ପବିତ୍ର ଆଶ୍ରମେ ନାହିଁ ରୋଗ ଶୋକ
ଦେଖିଲେ ଆଚାରବନ୍ତ ସେ ଆଶ୍ରମ ଲୋକ ।
ସତ୍ୟବିନା ମିଥ୍ୟା କେହି ନ କହନ୍ତି ତହିଁ
ଆଶ୍ରମର ଚାରିପାଖେ ବହୁଅଛି ନଈ ।
କାହାର ପିଙ୍ଗଳ ଜଟା ଦିଶଇ ଶୋଭନ
କାହାର ସର୍ବାଙ୍ଗ ଯାକ ଭସ୍ମ ବିଲେପନ ।
କାହାର କଣ୍ଠେ ରୁଦ୍ରାକ୍ଷ ମାଳ ବିରାଜଇ
କରିମାଳା ଧରି ରୁଦ୍ରମନ୍ତ୍ର କେ ଜପଇ ।
କାହାର ଶିର ମୁଣ୍ଡନ ଅଛି ମାତ୍ର ଶିଖା
କାହା ଲଲାଟେ ବିରାଜେ ଚନ୍ଦନର ରେଖା ।
ସର୍ବଦା ସେ ଆଶ୍ରମରେ ଗଙ୍ଗାଦେବୀ ବିଜେ
ଗରୁଡ଼ ପୃଷ୍ଠେ ଉତୁରି ପ୍ରଭୁ ଦେବରାଜେ ।
ଗୋଟି ଗୋଟି ବିପ୍ରଙ୍କର ଚରଣେ ପ୍ରଣମି
ମଧୁର ବାକ୍ୟେ ତାହାଙ୍କ ଚିତ୍ତ ତୋଷି ସ୍ୱାମୀ ।
ପ୍ରତି ତୀର୍ଥେ ବୁଲି ଦେବ କରୁଛନ୍ତି ସ୍ନାନ
ତହିଁଥିବା ଶିବଲିଙ୍ଗ କରନ୍ତି ଦର୍ଶନ ।
ଶିରେ ବେଲପତ୍ରି ଦେଇ ପଢ଼ନ୍ତି ସେ ସ୍ତବ
ସମସ୍ତେ ଜାଣିଲେ ଏହି ପ୍ରଭୁ ବାସୁଦେବ ।
ଶଙ୍ଖ ଚକ୍ର ଗଦାଧର ଅନାଦି ପୁରୁଷ
ଜଗତ କରତା ନାଥ ହୋଇଛି ମାନୁଷ ।
ଏହା ଦରଶନେ ପାପୀମାନେ ଯାନ୍ତି ତରି
ମହାଭାଗ ଉଶ୍ୱାସଇ ଏହି ଦେବ ହରି ।
ଏହାର ମହିମା କେହି ନ ପାରନ୍ତି କହି
ଚିତ୍ରକୂଟ ମାୟାରେ ଏ ପାଳୁଅଛି ମହୀ ।
ଅନ୍ତର୍ଯ୍ୟାମୀ ନାଥ ଏହି ପୁରୁଷ ଉତ୍ତମ
ପରମ ପବିତ୍ର ଅଟେ ଏହାର ଯେ ନାମ ।
ଏହିରୂପେ କୁହାକୁହି ହୋଇ ମୁନିଗଣ
ବେଢ଼ି ଦେଖନ୍ତି ମଧରେ ଦେବ ନାରାୟଣ ।

କେହି ବଇଦିକ ମନ୍ତ୍ରେ କରୁଅଛି ସ୍ତୁତି
କେହି ବୋଲଇ ଦେବକୀନନ୍ଦନ ଶ୍ରୀପତି ।
କେହି ବୋଲଇ ମାଧବ ଗୋବିନ୍ଦ ଗୋପାଳ
କେହି ବୋଲଇ ହେ ସ୍ୱାମୀ ପ୍ରଭୁ ଆଦିମୂଳ ।
କେହି ତାହାଙ୍କୁ ବଦନ ନିରେଖି ଚାହାଁନ୍ତି
କେହି ଅଭୟ ଚରଣେ ରଖିଅଛି ମତି ।
ଏମନ୍ତେ ତାହାକୁ ବେଢ଼ି କରୁଛନ୍ତି ସ୍ତୁତି
ଗଙ୍ଗାଜଳେ ସ୍ନାନକରି ଜଗତର ପତି ।
ଦେବତା ଋଷି ପିତୃଙ୍କୁ କଲେ ଜଳଦାନ
ଭଲ ଭଲ ଫୁଲ ଧରି ପ୍ରଭୁ ଭଗବାନ ।
ମୁନିବର ଆଶ୍ରମରେ ମିଳିଲେକ ଯାଇଁ
ଦେଖିଲେ ହେ ବସିଛନ୍ତି ଯୋଗୀନ୍ଦ୍ର ଗୋସାଇଁ ।
ଶିରେ ଶୋହେ ଜଟାଭାର ପ୍ରଫୁଲ୍ଲ ବଦନ
ଭସ୍ମବୋଳି ହେବା ହେତୁ ଅଙ୍ଗ ସୁଶୋଭନ ।
ଏମନ୍ତେ ସେ ଉପମନ୍ୟୁ ମୁନିଙ୍କ ଚରଣ
ପ୍ରଣମି ଆଗରେ ଉଭା ହେଲେ ନାରାୟଣ ।
କୃଷ୍ଣଙ୍କୁ ନୟନେ ଦେଖି ସେ ମୁନିଗୋସାଇଁ
ଗଉରବେ ବସାଇଲେ ଆସନରେ ନେଇ ।
ବୋଇଲେ କୋମଳ ବାକ୍ୟେ ଆହେ ହୃଷୀକେଶ
ପରମ ମଙ୍ଗଳମୟ ତୁମ୍ଭେ ପୀତବାସ ।
ତୁମ୍ଭ କୁଶଳ ପୁଛିବା ଉଚିତ ନୁହଇ
ଆଜି ମୋହର ପରମ ଭାଗ୍ୟ ଉଦେ ହୋଇ ।
ବହୁତ କାଳର ତପ ହେଲା ଆଜି ସିଦ୍ଧ
ମୋର ଆଶ୍ରମ ପବିତ୍ର ହେଲାହେ ଗୋବିନ୍ଦ ।
ନେତ୍ର ସଫଳ ହୋଇଲା ଦେଖିଲି ନୟନେ
ଯାହାକୁ ଦେଖିବାପାଇଁ ବସି ମୁନିଜନେ ।
ଯୋଗ ସାଧି ସାଧି କେତେ ଯୁଗ ଯାଏ ବହି
ତପୀ ତପ ଅନଳରେ ଶରୀରକୁ ଦହି ।
ଦେଖି ନ ପାରନ୍ତି ଆଜି ଦେଖିଲି ମୁଁ ତାଙ୍କୁ
ଏଣୁ କୃତାର୍ଥ ମଣଇ ମୁଁ ମୋର ଦେହକୁ ।
କି ନିମନ୍ତେ ଆସିଛନ୍ତି କୁହ ଭାବଗ୍ରାହୀ
କିବା କୃପାକରି ମୋତେ ଦେଖାଦେବା ପାଇଁ ।
ଉପମନ୍ୟୁ କଥା ଶୁଣି ଦେବକୀ ନନ୍ଦନ
ଉଠି ପୁଣି କଲେ ତାଙ୍କ ଚରଣ ବନ୍ଦନ ।
ପ୍ରସନ୍ନ କରି ବୋଇଲେ ଆହେ ମୁନିବର
ଆସିଅଛି ତବପାଶେ କାର୍ଯ୍ୟ ଅଛି ମୋର ।

ଦେବଦେବ ମହାଦେବ ଦରଶନ ପାଇଁ
କେମନ୍ତେ ଦେଖିବି କୁହ ହେ ମୁନିଗୋସାଇଁ
କାହିଁ ଶୀଘ୍ର ଭେଟିବି ସେ ଉମାପତି ଶିବ
ଉପମନ୍ୟୁ ବୋଇଲେ ହେ ପ୍ରଭୁ ବାସୁଦେବ ।
ଅତି କଠୋର ତପସ୍ୟା କଲେ ତାଙ୍କୁ ପାଇ
ଚିତ୍ତକୁ ନିରୋଧି ତପ କର ଏଥେ ଥାଇ ।
ବ୍ରହ୍ମଜ୍ଞାନୀ ମୁନି ଯୋଗୀ କରୁଛନ୍ତି ତପ
ଏହି ପୁଣ୍ୟସ୍ଥାନେ ତୁମ୍ଭେ ରୁଦ୍ରମନ୍ତ୍ର ଜପ ।
ଭାରିଯାକୁ ବେନି ହର କ୍ରୀଡ଼ନ୍ତି ଏ ବନେ
ପୂର୍ବେ ଯେ ବଶିଷ୍ଠ ଋଷି ଆସି ଏହି ସ୍ଥାନେ ।
ଦାରୁଣ ତପସ୍ୟା କରି ପାଇଥିଲେ ଯୋଗ
ମହେଶ୍ୱର ଦରଶନେ ହେଲେ ମହାଭାଗ ।
ବ୍ୟାସଦେବ ଏଥେଁ ରହି ଘୋର ତପ କରି
ଶିବ ଦରଶନେ ଜ୍ଞାନୀ ହେଲେ ତପଚାରୀ ।
ଅପୁତ୍ରିକ ପୁତ୍ରବନ୍ତ ହୁଅନ୍ତି ଏ ସ୍ଥାନେ
ଭୟ ଜାତ ହୁଏ ଯେବେ ଦେବତାଙ୍କ ମନେ ।
ଏଥେଁ ତପକରି ଦେଖି ଶିବଙ୍କ ମୂରତି
ନିର୍ଭୟ ହୋଇ ଅମରପୁରକୁ ଗମନ୍ତି ।
ସାବର୍ଣ୍ଣ ମନୁ ଏଠାରେ ରହିକରି ତପ
ଶିବ ଦରଶନ କରି ଛଡ଼ାଇଲେ ପାପ ।
ପରମଯୋଗ ପାଇଲେ ସଦାଶିବଠାରୁ
ଗ୍ରନ୍ଥ ବାହାର କଲେ ସେ ଆପଣା ମନରୁ ।
ପୁରାଣ ସଂହିତା ଶାସ୍ତ୍ର କଲେ ପୁଣି କେତେ
ପ୍ରଚାର କଲେ ତାହାକୁ ଲୋକଙ୍କର ହିତେ ।
କାପେୟ ଶାଂଶପାୟନ ଏହି ଋଷି ଦୁଇ
ତପ କରି ଶିବ ଏଥେ ଦରଶନ ପାଇ ।
ତାହାଙ୍କ ଆଜ୍ଞାରେ କଲେ ପୁରାଣ ସଂହିତା
ପ୍ରଚାର କରି ହୋଇଲେ ପ୍ରଧାନ ବକତା ।
ବାୟୁ ପୁରାଣ ଉତ୍ତରଖଣ୍ଡ କଲେ ସେହି
ତାହାଙ୍କ ଶିଷ୍ୟ ପଚାର କଲେ ତାହା ନେଇ ।
ଯୋଗୀ ଯାଜ୍ଞବଳ୍କ୍ୟ ମୁନିକଲେ ଏଥେ ତପ
ପବିତ୍ର ନେତ୍ରରେ ଦେଖି ମହାଦେବ ରୂପ ।
ତାହାଙ୍କ ଆଜ୍ଞାରେ କଲେ ଯୋଗଶାସ୍ତ୍ରମାନ
ଭୃଗୁମୁନି କଲେ ଏଥି ତପସ୍ୟା ସାଧନ ।
ମହାଦେବ ପ୍ରସାଦରୁ ସେହି ମୁନିବର
ପାଇଲେ ଯେ ଗୁଣବନ୍ତ ଗୋଟିଏ କୁମର ।

ତାଙ୍କ ନାମ ଶୁକ୍ରାଚାର୍ଯ୍ୟ ପରମ ପଣ୍ଡିତ
ଏଣୁ ମୁଁ କହେ ତୁମ୍ଭଙ୍କୁ ଆହେ ଲକ୍ଷ୍ମୀକାନ୍ତ ।
ଘୋର ତପେ କର ମହାଦେବ ଦରଶନ
ଏମନ୍ତ କହି କୃଷ୍ଣଙ୍କୁ ସେହି ତପୋଧନ ।
ପାଶୁପତ ନାମେ ବ୍ରତ ଯୋଗ ଦେଲେ କହି
ଘୋରତପ ଆରମ୍ଭିଲେ ପ୍ରଭୁ ଭାବଗ୍ରାହୀ ।
ଅଙ୍ଗେ ଭସ୍ମ ବୋଳିଦେଲେ ମୁଣ୍ଡ କଲେ ଲଣ୍ଡା
ବକଳ ପିନ୍ଧି ରୁଦ୍ରାକ୍ଷ ମାଳା ଗଳେ ଧଣ୍ଡା ।
ଚାରିଦିନ ଏକଲୟେ କଲେ ମନ୍ତ୍ରଜପ
ବହୁତ ଦିବସ ଗଲା କରୁ ଘୋର ତପ ।
ଦିନେ ଗଗନେ ଦେଖିଲେ ଆଚମ୍ୱିତ ରୂପ
ଗଳାମାଳା ହୋଇଅଛି ଏକ ମହାସର୍ପ ।
ଚନ୍ଦ୍ରରେଖା ବିରାଜଇ ଲଲାଟେ ତାଙ୍କର
ତା ଉପରେ ଫଣା ଟେକି ଅଛି ଅହିବର ।
ତିନିଗୋଟି ନେତ୍ର କିସେ ଚନ୍ଦ୍ର ସୂର୍ଯ୍ୟ ଅଗ୍ନି
ଜଟା ମଧ୍ୟେ ଗଙ୍ଗା କଲେ କଳ କଳ ଧ୍ୱନି ।
ହାତୀ ଚମର ଲେଙ୍ଗୁଟି କଟୀତଟେ ଅଛି
ବ୍ୟାଘ୍ର ଚର୍ମକୁ ପଇତା କରି ପକାଇଛି ।
ବାମଅଙ୍ଗ ନାରୀ ପୁଣି ଦକ୍ଷିଣ ପୁରୁଷ
ବାହନ ଗୋଟି ତାଙ୍କର ଅଟେ ଧଳା ବୃଷ ।
କରେ ତ୍ରିଶୂଳ ଡମ୍ବରୁ ଧନୁ ବିରାଜଇ
ଏମନ୍ତେ ରୂପ ନୟନେ ଦେଖି ଯଦୁସାଇଁ ।
ଆଶ୍ଚର୍ଯ୍ୟ ହୋଇ ନିରୀକ୍ଷି ଚାହିଁଲେକ ପୁଣି
ଶିର ଉପର ମୁକୁଟେ ଶୋହେ ଦିବ୍ୟମଣି ।
ନୃସିଂହ ଚମକୁ କରି ଅଛନ୍ତି ଉତ୍ତରୀ
ପ୍ରଣବ ମନ୍ତ୍ର ଜପନ୍ତି ମୁଖେ ଦୃଢ଼କରି ।
ପରଶ୍ୱଧ ଅସ୍ତ୍ରଗୋଟି ବିରାଜଇ କରେ
ସହସ୍ର ସୂର୍ଯ୍ୟର ଜ୍ୟୋତି ଦେହରୁ ବାହାରେ ।
ତେତିଶକୋଟି ଦେବତା ଅଙ୍ଗେ ବିରାଜନ୍ତି
ବ୍ରହ୍ମା ଇନ୍ଦ୍ରଅଗ୍ନି ଯମ ବରୁଣ ଅଛନ୍ତି ।
ଆବର ଅଦ୍ଭୁତ କଥା ଦେଖିଲେ ସେ ବାମେ
ଆପଣାର ବଇଷ୍ଣବୀ ମୂରତିକି ପ୍ରେମେ ।
ଶଙ୍ଖଚକ୍ର ଗଦାପଦ୍ମ ଧାରୀ ବାସୁଦେବ
କରଯୋଡ଼ି ପଢୁଛନ୍ତି ମହାଦେବ ସ୍ତବ ।
ତାହାଙ୍କ ପଛେ ଗରୁଡ଼ କରୁଅଛି ସ୍ତୁତି
ଦକ୍ଷିଣେ ଦେଖିଲେ ଏକ ଅପୂର୍ବ ମୂରତି ।
ହଂସର ଉପରେ ବସି ପଢୁଅଛି ସ୍ତବ
ଚାରିଗୋଟା ମୁଖ ତାର ଅତୁଳ ପ୍ରଭାବ ।
ଷଡ଼ ମୁଖ ଗଜାନନ ଘେନି ରୁଦ୍ରଗଣ
ରହିଛନ୍ତି ତାଙ୍କୁ ଚାରି ପାରୁଶେ ଘେରିଣ ।
ମରୀଚି ଅତ୍ରି ପୁଲହ ପୁଲ୍ୟସ୍ତ ପ୍ରଚେତା
ଦକ୍ଷ କଣ୍ୱ ପରାଶର ମୁନିବ୍ରହ୍ମବେତ୍ତା ।
ବଶିଷ୍ଠ ମୁନି ସହିତେ ମନୁ ସ୍ୱାୟମ୍ଭୁବ
କରଯୋଡ଼ି ପଢୁଛନ୍ତି ମହାଦେବ ସ୍ତବ ।
ଏମନ୍ତ ଅପୂର୍ବ ରୂପ ଦେଖି ବାସୁଦେବ
ମନେ ମନେ ବିଚାରିଲେ ଏହି ମହାଦେବ ।
ସ୍ତବ ଆରମ୍ଭିଲେ ତହିଁ ଯୋଡ଼ି ଦୁଇକର
ନମସ୍ତେ ନମସ୍ତେ ଶମ୍ଭୁ ମହାଦେବ ହର ।
ନମୋ ନମୋ ଆଦିଦେବ ଦେବ ଧବଳାଙ୍ଗ
ନମୋ ନମୋ ହର ତୋର ହସ୍ତରେ ଖଟ୍ୱାଙ୍ଗ ।
ନମୋ ନମୋ ରୁଦ୍ର ଭବ ଭୀମ ପଶୁପତି
ନମୋ ନମୋ ପ୍ରଭୁ ଗଙ୍ଗାଧର ବ୍ରହ୍ମଜ୍ୟୋତି ।
ନମୋ ନମୋ ସଦାନନ୍ଦ ଚରଣେ ଶରଣ
ଏମନ୍ତେ ବହୁତ ସ୍ତୁତି କଲେ ନାରାୟଣ ।
ଭୂମିରେ ଲୋଟନ୍ତି ପ୍ରଭୁ ଦେଖି ସଦାଶିବ
ଟେକି ସ୍ୱହସ୍ତେ ବୋଇଲେ କହ ହେ ମାଧବ ।
କି ନିମନ୍ତେ ଘୋର କଷ୍ଟ ସହି କରୁ ତପ
ପୁରୁଷଉତ୍ତମ ତୋର ମହିମା ଅମାପ ।
ନାରାୟଣ ମୂରତି ତୁ ଅଟୁ ଯେ ମୋହର
ତୋହର ଅଭାବେ ନାଶ ଯିବ ଏ ସଂସାର ।
ଶ୍ରୀହରି ବୋଇଲେ ତୁମ୍ଭେ ସର୍ବଜ୍ଞ ପୁରୁଷ
ତୁମ୍ଭର ମହିମା ଦେବ ଅଟଇ ଅଶେଷ ।
ତୁମ୍ଭ ତୁଲ୍ୟ ପୁତ୍ର ଏକ ଦିଅ ଆହେ ହର
ଯେବେ ସୁପ୍ରସନ୍ନ ହେଲ ଦିଅ ଆହେ ବର ।
ହେଉ କହି ଶ୍ରୀକୃଷ୍ଣଙ୍କୁ କଲେ ଆଲିଙ୍ଗନ
ହିମାଳୟ ନନ୍ଦିନୀ ଯେ ବୋଇଲେ ଏସନ ।
ହେ ଅନନ୍ତ ହେ ଅଚ୍ୟୁତ ହେ କେଶବ ହରି
ଦେବଙ୍କ ନିମନ୍ତେ ଆସି ମର୍ତ୍ତ୍ୟେ ଅବତରି ।
ଦେବକୀ ଦେବୀର ପୁତ୍ର ବୋଲାଉଛ ସିନା
ମୋହର ବରକୁ ପ୍ରଭୁ କର ଏବେ ଘେନା ।
ଇଷ୍ଟଜ୍ଞାନୀ ହରିଭକ୍ତ ବଳବନ୍ତ ହୁଅ
ତୋହର ସମାନେ ତୁହି ତନୟେକ ପାଅ ।

ଏହା କହି ଆଶୀର୍ବାଦ କଲେ ହୈମବତୀ
ଶ୍ରୀକୃଷ୍ଣଙ୍କୁ ଘେନିଗଲେ ଶଙ୍କର ପାର୍ବତୀ ।
କଇଳାସ ଗିରିଶିଖେ ହୋଇଲେ ପ୍ରବେଶ
କହିଛନ୍ତି ସୁତମୁନି ବ୍ୟାସଦେବ ଶିଷ୍ୟ ।
ରହିଲେ ସେ କଇଳାସେ ଦେବକୀନନ୍ଦନ
କରନ୍ତି ସେ ଗିରିବର ଶୋଭା ଦରଶନ ।
କି ଅପୂର୍ବ ଶୋଭା ତାହା କେ ପାରିବ କହି
ରୋଗ ଶୋକ ଜରାମୃତ୍ୟୁ ଦୁଃଖ ଯହିଁ ନାହିଁ ।
କେତେ ଜାତି ଫୁଲ ଫଳ କେ ପାରିବ ଗଣି
ସବୁବେଳେ ଶୁଣାଯାଏ କୋକିଳର ବାଣୀ ।
କିନ୍ନର କରନ୍ତି କ୍ରୀଡ଼ା ଯହିଁ ରାତି ଦିନ
ଗନ୍ଧର୍ବ କନ୍ୟା କରନ୍ତି ସୁମଧୂର ଗାନ ।
ଅପସରାଗଣଙ୍କର ନୃତ୍ୟଗୀତ ଧ୍ୱନି
ବୀଣା ବିପଞ୍ଚି ଧରିଛି କେବଣ କାମିନୀ ।
ଏମନ୍ତ ଯେ ଗିରି ଶୋଭା ଦେଖୁ ଦେଖୁ ହରି
କାମିନୀ ଦୃଷ୍ଟି ପଡ଼ିଲା ତାହାଙ୍କ ଉପରି ।
ଦେଖି ସେ କାମିନୀମାନେ ଅପୂର୍ବ ମୂରତି
ଲାଜ ଭୟ ଛାଡ଼ିହେଲେ ବିହ୍ୱଳିତ ମତି ।
ଧଇଲା କେ ବଳେ ଆସି ଶ୍ରୀହରିର କର
କେବଣ ସୁନ୍ଦରୀ ଆସି ଧରଇ ପୟର ।
କାହାର ବସନ ଖସି ପଡୁଅଛି ତଳେ
କେଉଁ ବାମା ବୁଡ଼ିଗଲା କୃଷ୍ଣ ପ୍ରେମଜଳେ ।
ବିପଞ୍ଚି ଧରି କେ ବସି ଗାଉଥିଲା ଗୀତ
ଶ୍ରୀହରିଙ୍କ ରୂପ ଦେଖି ହୋଇଲା ମୋହିତ ।
ଏମନ୍ତ ସେ ସ୍ୱର୍ଗପୁର ଯୁବତୀଏ ମିଳି
ଦେବକୀ ନନ୍ଦନ ସଙ୍ଗେ ଆରମ୍ଭିଲେ କେଳି ।
ତାଙ୍କ ପ୍ରେମ ଭକତିରେ ମଜ୍ଜି ଦେବହରି
ଅନେକ ରୂପେ ତାହାଙ୍କ ଚିତ୍ତ ତୋଷ କରି ।
ହୋଇଲେ ସେ କଇଳାସେ ତାଙ୍କ ପ୍ରେମଭୋଳ
ଦ୍ୱାରକା ନଗରଯାକ ପଡ଼ିଲା ଚହଳ ।
ହରି ବିରହରେ ସବୁ ହେଲା ବିଷ ପିତା
ସବୁବେଳେ ବସି କଲେ କୃଷ୍ଣନାମ ଚିନ୍ତା ।
ଅତ୍ୟନ୍ତ ବିକଳ ହୋଇ ରୋହିଣୀ ନନ୍ଦନ
ଖଗବର ଗରୁଡ଼କୁ କଲେ ସୁମରଣ ।
ମିଳିଲା ସେ ପକ୍ଷିମଣି ଦ୍ୱାରକାରେ ଆସି
କୃଷ୍ଣକୁ ଖୋଜିବା ପାଇଁ ରାମ ଦେଲେ ପେଶି ।
ଗରୁଡ଼ ସେଠାରୁ ଗଲା ପ୍ରଭୁ ଆଜ୍ଞା ପାଇ
ଉପମନ୍ୟୁ ମୁନିଙ୍କର ଆଶ୍ରମ ଖୋଜଇ ।
ତହିଁ ନ ପାଇଲା ଯହୁଁ ଗଲା ସ୍ୱର୍ଗପୁରେ
ନ ପାଇ ତହୁଁ ସେ ଗଲା ଦୁଃଖିତ ମନରେ ।
ଖୋଜଇ ସେ ବଇକୁଣ୍ଠ ନ ପାଇଲା ଯହୁଁ
ଫେରି ଅଇଲା ଗରୁଡ଼ ଦୁଃଖମନେ ତହୁଁ ।
ଦ୍ୱାରକାରେ ଆସି ବଳରାମଙ୍କୁ କହିଲା
ଶୁଣି ବଳରାମଙ୍କର ବୁଦ୍ଧି ହଜିଗଲା ।
ଏକାଳେ ରାକ୍ଷସ ଭୟ ହେଲା ଦ୍ୱାରକାରେ
ଅତ୍ୟନ୍ତ କାତର ହେଲେ ପୁରବାସୀ ଡରେ ।
ନାରଦ ମୁନି ମିଳିଲେ ଏ ସମୟେ ଆସି
ଘେନି ତାହାଙ୍କୁ ପୁଚ୍ଛିଲେ ଦ୍ୱାରକାନିବାସୀ ।
ଦେଖିଛ କି ମୁନିବର ଆବର ଜୀବନ
ଯଦୁକୁଳ ଚନ୍ଦ୍ରମା ଯେ ଯଶୋଦା ନନ୍ଦନ ।
ନାରଦ ବୋଇଲେ ମୁହିଁ ଦେଖିଛି ଦେଖିଛି
କଇଳାସ କନ୍ଦରେ ଯେ ଅଛି ଶିରୀବତ୍ସି ।
ଅପସରା ସଙ୍ଗତରେ କରୁଅଛି କ୍ରୀଡ଼ା
ତାହାର ମୁଖରୁ ଛାଡ଼ିଗଲାଣି ଯେ ବ୍ରୀଡ଼ା ।
ଶୁଣି ଗରୁଡ଼କୁ ଦେଲେ ପଠାଇ ତୁରିତେ
ସୁପର୍ଣ୍ଣ ମିଳିଲା ଯାଇ କୈଳାସ ପର୍ବତେ ।
ଦିବ୍ୟ ଆସନରେ ବିଜେ ଦେବକୀ ନନ୍ଦନ
ପକ୍ଷୀରାଜ କରି ପଦ୍ମପାଦକୁ ବନ୍ଦନ ।
କରଯୋଡ଼ି ଜଣାଇଲା ଦ୍ୱାରକାର କଥା
ଯେମନ୍ତେ ନାରଦ ମୁଖୁ ପାଇଲେ ବାରତା ।
ରାକ୍ଷସର ଭୟ ଶୁଣି ଉଠି ଯଦୁପତି
ବନ୍ଦି ଦେବ ସଦାଶିବ ଦେବୀ ହୈମବତୀ ।
ଗରୁଡ଼ ପୃଷ୍ଠେ ବସନ୍ତେ ଉଡ଼ିଲା ସେ ପକ୍ଷୀ
କ୍ଷଣକେ ଦ୍ୱାରକା ପୁରେ ବିଜେ ପଦ୍ମ ଆଖି ।
ଦ୍ୱାରକାର ଆନନ୍ଦ କେ କହିପାରେ ମୁଖେ
ଚାତକ ପରାୟେ ଚାହିଁଥିଲେ ଅତି ଦୁଃଖେ ।
କୃଷ୍ଣ ଆଗମନେ ଜନେ ଲଭିଲେ ତୃପତି
ଦ୍ୱାରକାପୁରେ ଆନନ୍ଦ କରି ଯଦୁପତି ।
ଜାମ୍ବବତୀପୁରେ ଦେବ ରହିଲେକ ଯାଇଁ
ଶାମ୍ବନାମେ ପୁତ୍ର ତାଙ୍କ ଗର୍ଭେ ଉପୁଜଇ ।
ତାହାଙ୍କର ମନ ତୋଷ କରି ଆଦିମୂଳ
ସଭାକରି ବସିଛନ୍ତି ପ୍ରଭୁ କାମପାଳ ।

ଏମନ୍ତ ବେଳେ ପ୍ରବେଶ ହେଲେ ତହିଁ ହରି
ସଭାରେ ଯେ ବସାଇଲେ ଗଉରବ କରି ।
ପ୍ରଦ୍ୟୁମ୍ନର ପୁତ୍ର ନାମ ଅଟେ ଅନିରୁଦ୍ଧ
ସୁନ୍ଦର ବଦନ ତାର ନିନ୍ଦେ ପୂର୍ଣ୍ଣଚନ୍ଦ୍ର ।
ଶାମ୍ବ ଅନିରୁଦ୍ଧ ଦୁହେଁ ଅଛନ୍ତି ସଙ୍ଗରେ
ବସିଲେ ଯାଇ ସଭାରେ କୃଷ୍ଣଙ୍କ ପାଖରେ ।
ତିନିଜଣଙ୍କର ରୂପ ଅଟଇ ସମାନ
ଆନନ୍ଦ ହୋଇଲେ ତାଙ୍କୁ ଦେଖି ସଭାଜନ ।
ଶାମ୍ବ ଅନିରୁଦ୍ଧ ଦୁହେଁ ସବୁହୁଁ ସୁନ୍ଦର
ସଭାରେ ପ୍ରଶଂସା ଯହୁଁ ପାଇଲେ କୁମର ।
ଜାମ୍ବବତୀ ମନେ ମନେ ହୋଇଲା ଆନନ୍ଦ
ଦୀନ ଗୋପୀନାଥ ଭଜେ କୃଷ୍ଣ ପଦ୍ମପାଦ ।

## ଲିଙ୍ଗୋତ୍ପତ୍ତି କାରଣ

ସୁତମୁନି ବୋଇଲେକ ଶୁଣ ମୁନି ବାରେ
ଶିଷ୍ୟ ଘେନି ମାରକଣ୍ଡ ମୁନି ଦିନକରେ ।
ଦ୍ୱାରକାପୁରେ ଅତିଥି ହୋଇଲେକ ଆସି
ଋଷିଙ୍କି ଦେଖି ଆନନ୍ଦ ଦ୍ୱାରାବତୀ ବାସୀ ।
ଗଉରବ କରି ତାଙ୍କୁ ଅଧବାଟୁ ନେଲେ
ବାସୁଦେବ ଆସି ବାଟେ ଋଷିଙ୍କି ଭେଟିଲେ ।
ଆପଣା ଗୃହକୁ ନେଲେ କରି ସମାଦର
ସୁବାସ ଜଳେ ଧୋଇଲେ ଋଷିଙ୍କ ପୟର ।
ବସିବାକୁ ଦେଲେ ଦିବ୍ୟ ଆସନେକ ଆଣି
ଗନ୍ଧ ପୁଷ୍ପ ଦେଇ ପୂଜା କଲେ ଚକ୍ରପାଣି ।
ଉତ୍ତମ ଭୋଜନେ ତୋଷ କରାଇଲେ ତାଙ୍କୁ
ଭୋଜନ ଶେଷେ ଅଇଲେ ଦ୍ୱାରକା ସଭାକୁ ।
ଶିଷ୍ୟକୁ ଘେନି ବସିଲେ ତହିଁ ମୁନିବର
ସଭାରେ ବସିଅଛନ୍ତି ପ୍ରଭୁ ନୀଳାମ୍ବର ।
ବସୁଦେବ ନନ୍ଦ ପୁଣି ରାଜା ଉଗ୍ରସେନ
ସାତ୍ୟକି ଆଦି ଯେତେକ ଯାଦବ ପ୍ରଧାନ ।
ମୁନିଙ୍କି ଦେଖି ସଭାରୁ ଉଠି ଜଣେ ଜଣେ
ପ୍ରଣାମ କଲେ କଳପୀ ଋଷିଙ୍କ ଚରଣେ ।
ଏ ସମୟେ ସେ ସଭାରେ ବୋଇଲେ ଶ୍ରୀହରି
ବ୍ରହ୍ମାର ସମାନ ତୁମ୍ଭେ ଅଟ ତପଚାରୀ ।
ମହା ପ୍ରଳୟ ଦେଖିଛ ତୁମ୍ଭେ ମୁନିବର
କଳପେ କଳପେ ଅଛି ଏ ତୁମ୍ଭ ଶରୀର ।

କୃପାକରି ଆତ୍ମଯୋଗ କଥା କିଛି କୁହ
ଶୁଣି ଯୋଗ ଆରମ୍ଭିଲେ ମୃକଣ୍ଡର ପୁଅ ।
ଆତ୍ମଯୋଗ କଥା ତହିଁ କହିଲେ ବୁଝାଇ
ବୋଇଲେ କି ଯୋଗେ ତୋତେ କହିବି ଗୋସାଇଁ ।
କର୍ମଯୋଗୀ ଜ୍ଞାନଯୋଗୀ ଆନଯୋଗୀ ଯେତେ
ସବୁ ଯୋଗ ସାଧନ ହିଁ ତୋହର ନିମନ୍ତେ ।
ଯୋଗମାୟା ପୁରୁଷ ତୁ କି କହିବି ତୋତେ
ହସି ମୁନିଙ୍କି କହିଲେ ପ୍ରଭୁ ଜଗନ୍ନାଥେ ।
ଉପମନ୍ୟୁ ମୁନିଠାରୁ ପାଇ ଯୋଗ ଜ୍ଞାନ
ବହୁତ କାଳ ତପ ମୁଁ କଲି ତପୋଧନ ।
ତପସ୍ୟା ଫଳେ ପାଇଲି ଶାମ୍ବ ନାମେ ସୁତ
ହସି ମାରକଣ୍ଡ ମୁନି ବୋଇଲେ ଅଚ୍ୟୁତ ।
ତୋହର ଏକଥା ଶୁଣି ଆଚମ୍ବିତ ମଣେ
ତୋହର ଦର୍ଶନ ପାଇଁ ଋଷି ମୁନିଗଣେ ।
ତପ ଜପ ଧ୍ୟାନ ଲୟ ଯୋଗ ଆଦି ସାଧି
ତୁ ପ୍ରଭୁ ଅନାଦି ତୋର ନାହିଁ ଅନ୍ତ ଆଦି ।
ତୁ କାହାକୁ ତପ କରି ତୋଷିଲୁ ହେ ହରି
ଆଚମ୍ବିତ କଥା କୃଷ୍ଣ କହୁ କେଉଁପରି ।
ଶ୍ରୀହରି ବୋଇଲେ ମୁନି କହିଲ ତ ସତ
ମହେଶ୍ୱରଙ୍କୁ ପୂଜା ମୁଁ କରଇ ନିରତ ।
ତାଙ୍କର ପ୍ରସାଦେ ମୁନି ପାଇଲି କୁମର
ଦେବାଧି ଦେବରାୟ ସେ ମହାଦେବ ହର ।
ଶିବଲିଙ୍ଗର ମହିମା ଲୋକେ ନ ଜାଣନ୍ତି
ମୁହିଁ ନ ପୂଜିଲେ କାହୁଁ ଜାଣିବେ ହୋ ଯତି ।
ଶିବଙ୍କଠାରୁ ଅପର ଦେବ ନାହିଁ ମୁନି
ଅଘୋର ମନ୍ତ୍ରୁ ଅଧିକ ମନ୍ତ୍ର ନାହିଁ ପୁଣି ।
ଶିବଲିଙ୍ଗ ଦରଶନେ ଅଛି ଯେତେ ଫଳ
ଉପମନ୍ୟୁ ମୁନି ତାହା ଜାଣଇ କେବଳ ।
ଯାଗ ଯଜ୍ଞ ତୀର୍ଥ ବ୍ରତ ଦାନ ପୁଣ୍ୟ ଯେତେ
ତହିଁର ଫଳ ପାଇବ ଲିଙ୍ଗ ପୂଜି ନିତ୍ୟେ ।
ସ୍ନାନକରି ଶିବଲିଙ୍ଗ ପୂଜଇ ଯେ ଜନ
ତାହାକୁ ସମ ନୋହିବେ ଋଷି ତପୋଧନ ।
ଏହା ଶୁଣି ବୋଇଲେ ସେ ମାରକଣ୍ଡ ଯତି
କେମନ୍ତେ ସେ ଶିବ ଲିଙ୍ଗ ହେଲା ଉତପତ୍ତି ।
ତାର ପରିମାଣ କେତେ କହ ଯଦୁନାଥ
ତୋହର ମୁଖରୁ ସିନା ଶୁଣିବା ଯଥାର୍ଥ ।

ଏହାଶୁଣି ବୋଇଲେକ ଦେବକୀ ନନ୍ଦନ
ସାବଧାନ ହୋଇ ଶୁଣ ସର୍ବ ସଭାଜନ ।
ଯେତେବେଳେ ପ୍ରଳୟରେ ସବୁଗଲା ନାଶ
ମହାଭୟଙ୍କର ଜଳ ନ ଦିଶଇ ଦିଶ ।
ଘୋର ଅନ୍ଧକାର ଦେଖି ନିଦ୍ରାଗଲି ମୁହିଁ
ବିରାଟ ରୂପରେ ଜଳେ ଅଛଇ ଯେ ଶୋଇ ।
ସହସ୍ର ବାହୁ ମୋହର ସହସ୍ର ଯେ ଶିର
ସହସ୍ର ମୁଖ ସହସ୍ର ନୟନ ମୋହର ।
ଏମନ୍ତେ ସମୟେ ଦୂରେ ଏକଇ ପୁରୁଷ
କୋଟି ସୂର୍ଯ୍ୟ ପ୍ରାୟ ତେଜ ପାଉଛି ପ୍ରକାଶ
ସୁନ୍ଦର ମୂରତି ତାର ଚାରୋଟି ବଦନ
ମହାଯୋଗୀ ଅଟଇ ସେ ଜଗତ କାରଣ ।
କୃଷ୍ଣାଜିନଧାରୀ ମୁଖେ ବେଦ ଉଚ୍ଚାରଇ
ନିମିଷକେ ମୋ ନିକଟେ ଆସି ସେ ମିଳଇ ।
ବିସ୍ମୟେ ବୋଇଲେ ମୋତେକିଏ ତୁମ୍ଭେ କୁହ
କାହୁଁ ଅଇଲ ଏଠାରେ କିମ୍ପା ଆସି ରହ ।
ଜଗତ କରତା ମୁହିଁ ସ୍ୱୟମ୍ଭୁ ଅଟଇ
ବ୍ରହ୍ମାର ମୁଖୁଁ ଏମନ୍ତ ଶୁଣି ବୋଇଲଇଁ ।
ସୃଜଇ ଏ ଜଗତକୁ ମୁହିଁ ବାର ବାର
ପାଳନ କରି ମୁଁ ପୁଣି କରଇ ସଂହାର ।
ମୋହିତ ହୋଇ ମୋହର ମାୟାରେ ଯେ ବିଧି
ମୋର ସଙ୍ଗେ କଳି କଲା ହଜିବାରୁ ବୁଦ୍ଧି ।
ଆମ୍ଭ ଦୁହିଙ୍କର କଳି ଭାଙ୍ଗିବା ନିମନ୍ତେ
ଲିଙ୍ଗ ଏକ ଉପୁଜିଲା ସେଠାରୁ ଅଦ୍‌ଭୁତେ ।
କାଳାନଳ ତୁଲ୍ୟ ତାର ତେଜ ବିକାଶଇ
କ୍ଷୟ ବୃଦ୍ଧି ଆଦିଅନ୍ତ ମଧ ତାର ନାହିଁ ।
ସେହି ମହାଲଙ୍ଗି ଦେଖି ଚତୁର୍ମୁଖ ବ୍ରହ୍ମା
ବୋଇଲେ ଏହାର ମୂଳଖୋଜ ମହାତମା ।
ମୁହିଁ ଏହାର ଉପର କରୁଅଛି ସ୍ଥିର
ଏମନ୍ତ କହି ସେ ମୋତେ ଗଲେ ବେଦବର ।
ଶିବ ମାୟାରେ ମୋହିତ ହୋଇ ଆମ୍ଭେ ଦୁଇ
ଖୋଜି ଖୋଜି ଆଦିଅନ୍ତ ମଧହିଁ ନ ପାଇ ।
ବିସ୍ମୟ ହୋଇ ବସିଲୁ ମୁଣ୍ଡେ ହାତ ଦେଇ
ଧ୍ୟାନବଳେ ଜାଣିଲୁ ଏ ଜଗତ ଗୋସାଇଁ ।
ଏ ସମୟେ ମହାନାଦ ସମ୍ପାଇଲା କର୍ଣ୍ଣ
ଓଁକାର ଶବଦ ଶୁଣି ଆମ୍ଭେ ଦୁଇ ଜଣ ।
କରଯୋଡ଼ି କଲୁ ମହାଶମ୍ଭୁଙ୍କର ସ୍ତୁତି
ଲିଙ୍ଗରୂପୀ ଶମ୍ଭୁପାଦେ ଆମ୍ଭର ପ୍ରଣତି ।
ନମସ୍ତେ ନମସ୍ତେ ଲିଙ୍ଗରୂପୀ ମହେଶ୍ୱର
ମହାଯୋଗୀ କୋଟିସୂର୍ଯ୍ୟ ପ୍ରାୟ ପ୍ରଭା ତୋର ।
ସହସ୍ରେ ସହସ୍ରେ କୋଟି କୋଟି ମୁଖ ଘେନି
ଆକାଶ ମଣ୍ଡଳ ଗ୍ରାସ କରୁ ବ୍ରହ୍ମଯୋନି ।
ଆଦି ନାହିଁ ଅନ୍ତ ନାହିଁ ମଧ ନାହିଁ ତୋର
ଏମନ୍ତେ ସ୍ତୁତି କରନ୍ତେ ଦେବ ମହେଶ୍ୱର ।
ନିଜରୂପେ ଉଭା ହେଲେ ସେ ପ୍ରଳୟ ଜଳେ
ତିନିଗୋଟି ନେତ୍ରେ ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଜଳେ ।
ତ୍ରିଶୂଳ ପିନାକ ଧନୁ କରେ ପାଏ ଶୋଭା
ବ୍ରହ୍ମାଣ୍ଡଯାକ ବ୍ୟାପିଛି ଦେହର ଯେ ପ୍ରଭା ।
ପଇତା ହୋଇ ଲମ୍ବିଛି କନ୍ଧେ ମହା ଅହି
ସ୍ୱର ମେଘ ଗରଜନ ପରାୟ ଶୁଭଇ ।
ବୋଇଲେ ପ୍ରସନ୍ନ ହେଲୁ ମନୁ ତେଜ ଭୟ
ତୁମ୍ଭେ ଦୁଇ ଦେବ ମୋର ଶରୀରୁ ଉଦୟ ।
ମୋର ଦକ୍ଷିଣ ପାରୁଶେ ଦେଖ ବେଦବର
ବାମ ପାରୁଶେ ପାଳନକାରୀ ଚକ୍ରଧର ।
ହୃଦୟ ମଧରେ ଦେଖ ହର ବିରାଜଇ
ଇଚ୍ଛା ଅନୁସାରେ ବର ମାଗ ତୁମ୍ଭେ ଦୁଇ ।
ଆମ୍ଭେ ବୋଇଲୁ ଯଦ୍ୟପି ହୋଇଲୁ ପ୍ରସନ୍ନ
ସଦା ତୁମ୍ଭପାଦେ ଭକ୍ତି ଥାଉ ତ୍ରିଲୋଚନ ।
ହେଉ କହି ହସିହସି ବୋଇଲେକ ପୁଣି
କଳପାନ୍ତେ ଏହି ବିଶ୍ୱରୂପୀ ଚକ୍ରପାଣି ।
ଆମ୍ଭ ଦୁହିଁଙ୍କର ପିତା ହେବେ ଏହା ଜାଣ
ବ୍ରହ୍ମା ବିଷ୍ଣୁ ଶିବ ହେବ ତାହାଙ୍କର ନାମ ।
ଆମ୍ଭେ ତିନିଜଣ ହେବା ଏହାଙ୍କ କୁମର
ଏହାଙ୍କ ମୁଖରୁ ଜାତ ହେବୁ ଆମ୍ଭେ ହର ।
ନାଭି କମଳରୁ ବ୍ରହ୍ମା ହେବେ ଉତପତ୍ତି
ହୃଦୟରୁ ଜାତ ହେବେ ଶ୍ରୀବିଷ୍ଣୁ ମୂରତି ।
ସତ ରଜ ତମ ତିନିଗୁଣେ ତିନିରୂପ
ଉତପତ୍ତି ପାଳନ ଯେ ସଂସାର ସ୍ୱରୂପ ।
ଏହା କହି କେଣେ ଗଲେ ନ ପାରିଲୁ ଦେଖି
ବ୍ରହ୍ମା କେଣେଗଲେ ଆମ୍ଭେ ରହିଲୁ ଏକାକୀ ।
ନିଶ୍ଚିନ୍ତ ହୋଇ ଶୋଇଲୁ ସେ ପ୍ରଳୟ ଜଳେ
ନିଦ୍ରା ଘାରିଲା ଆମ୍ଭର ନୟନ କମଳେ ।

ଶୁଣିଲତ ମାରକଣ୍ଡ କଳପାନ୍ତ ମୁନି
ଶିବଲିଙ୍ଗ ଅଟେ ଏହି ଜଗତର ଯୋନି ।
ଏଣୁ ମୁହିଁ ପୂଜାକରେ ସେହି ଶିବଲିଙ୍ଗ
ଲିଙ୍ଗ ପୂଜି ଉପମନ୍ୟୁ ସାଧିଲେଟି ଯୋଗ ।
କୂର୍ମ ପୁରାଣେ ଏ ଅଧ୍ୟା ଯେ ଜନ ପଢ଼ଇ
ଧନ ଜନ ଗୋପଲକ୍ଷ୍ମୀ ତାହାର ବଢ଼ଇ ।
ଶୁଣିବା ଲୋକ ବସଇ ଯାଇଁ ଶିବ ଲୋକେ
ଆଶ୍ଚର୍ଯ୍ୟ ହୋଇଲେ ଏହା ଶୁଣି ସଭାଲୋକେ ।
କୃତ୍ୟ କୃତ୍ୟ ହୋଇ ମୁନି ମେଲାଣି ମାଗିଣ
ଆପଣାର ଆଶ୍ରମକୁ ଗଲେ ମୁନିଗଣ ।
ହରି ହରିବୋଲ ଭାଇ ବୋଲ ଗୋପୀନାଥ
ଅଚ୍ୟୁତ ପାଦୁକା ଦୁଇ ଭଜି ଦିବାରାତ୍ର ।
ବିପ୍ରକୁଳେ ଜନ୍ମ ମୋର ମୁଁ ଅତି ପାମର
ଏ ଭବସାଗରୁ ପାରିକର ଚକ୍ରଧର ।

.....※.....

## ଦୈତ୍ୟ ବଂଶାନୁଚରିତ ଓ ହିରଣ୍ୟକଶିପୁ ବଧ

ପଚାରିଲେ ଋଷିଗଣ ଆହେ ବ୍ୟାସଶିଷ୍ୟ
କେମନ୍ତେ ବର୍ଦ୍ଧିତ ହେଲେ କହ ଦୈତ୍ୟ ବଂଶ ।
ଶୁଣିବାକୁ ଇଚ୍ଛା ବଡ଼ ବଳିଛି ଆମ୍ଭର
ପୁରାଣ କଥା ତୁମ୍ଭଙ୍କୁ ଜଣା ମୁନିବର ।
ଏହା ଶୁଣି ବୋଇଲେ ସେ ସୁତ ପୌରାଣିକ
ଆଦି ପୁରୁଷର ପୁତ୍ର ବ୍ରହ୍ମାବିଶ୍ୱସୃକ ।
ବ୍ରହ୍ମାର ମାନସ ପୁତ୍ର କଶ୍ୟପ ଅଟଇ
ବ୍ରହ୍ମା ଡାକି ଦକ୍ଷ ପ୍ରଜାପତିକି କହଇ ।
ପ୍ରଜା ସୃଷ୍ଟି କର ବାବୁ ଭାରିଯାକୁ ଘେନି
ଦକ୍ଷ ପ୍ରଜାପତିର ଯେ ଭାରିଜା ଅସିକ୍ନୀ ।
ସହସ୍ରେକ ପୁତ୍ର ହେଲେ ତା ଗର୍ଭୁ ଉତ୍ପତ୍ତି
ତାଙ୍କୁ ମାରି ପକାଇଲେ ନାରଦ ଯେ ଯତି ।
ପୁତ୍ରଶୋକେ ନାରଦଙ୍କୁ ଶାପ ଦେଲେ ଦକ୍ଷ
ଆଜିଠାରୁ ତୁ ନାରଦ ହୁଅ ଅପୁତ୍ରିକ ।
ବଇରିଣୀ ସଙ୍ଗେ ପ୍ରୀତି କଲେ ପ୍ରଜାପତି
ଷାଠିଏ କନ୍ୟା ତା ଗର୍ଭୁ ହେଲେ ଉତପତ୍ତି ।
କଶ୍ୟପ ଭାରିଯା ହେଲେ ତା ମଧ୍ୟରୁ ତେର
ସତାଇଶ କନ୍ୟାଙ୍କର ଚନ୍ଦ୍ର ହେଲେ ବର ।

ଅରିଷ୍ଟନେମିଙ୍କି ଦେଲେ ତା ମଧ୍ୟରୁ ଚାରି
ବହୁ ପୁତ୍ରକୁ ଯେ ଦେଲେ ଦିଓଟି କୁମାରୀ ।
କୃପାଶ୍ୱକୁ ଦୁଇ ଦେଲେ ଅଙ୍ଗିରାକୁ ଦୁଇ
ଧର୍ମ ଦେବତାଙ୍କୁ ଦଶଗୋଟି କନ୍ୟା ଦେଇ ।
ସେ କନ୍ୟାମାନଙ୍କ ପୁତ୍ର ନାମ ଏବେ ଶୁଣ
ବିଶ୍ୱାଗର୍ଭୁ ଉପୁଜିଲେ ବିଶ୍ୱଦେବଗଣ ।
ସାଧ୍ୟ ଗର୍ଭୁ ସାଧ୍ୟଗଣ ହେଲେ ଉତପନ୍ନ
ମରୁତ୍ୱତୀ ଦେବୀ ଗର୍ଭୁ ମରୁତ୍ୱତଗଣ ।
ବସୁର ଗର୍ଭୁ ଉତ୍ପନ୍ନ ହେଲେ ଅଷ୍ଟବସୁ
ଭାନୁଗର୍ଭୁ ଜାତ ଭାନୁଗଣ ଧର୍ମ ଅଂଶୁ ।
ମୁହୂର୍ତ୍ତା ଗର୍ଭରୁ ଜାତ ମୁହୂର୍ତ୍ତକଗଣ
ଲମ୍ବାଦେବୀ ଗର୍ଭୁ ହେଲେ ଘୋଷ ଉତପନ୍ନ ।
ଯମୀ ଗର୍ଭୁ ନାଗବଳୀ ହେଲେ ଉତପତ୍ତି
ପୃଥ୍ୱୀର ସବୁ ବିଷୟ ମାତା ଅରୁନ୍ଧତୀ ।
ସଂକଳ୍ପା ଗର୍ଭୁ ସଂକଳ୍ପ ହେଲା ଉତପନ୍ନ
ଏ ସମସ୍ତେ ଜାଣ ହେଲେ ଧର୍ମର ନନ୍ଦନ ।
ଆପଧ୍ରୁବସୋମ ଧର ଅନିଳ ଅନଳ
ପ୍ରତ୍ୟୁଷ ପ୍ରଭାସ ଏହି ଆଠବସୁମୂଳ ।
ଆଟବସୁର ଯେ ପୁତ୍ର ହେଲେ ଚାରି ଜାଣ
ବଇତଣ୍ଡ୍ୟ ଶ୍ରମ ଶାନ୍ତ ଧ୍ୱନି ଚାରିଜଣ ।
ଧ୍ରୁବ ବସୁର ନନ୍ଦନ କାଳ ଯେ ଅଟଇ
ସୋମବସୁ ପୁତ୍ର ବର୍ଚ୍ଚ ନାମକୁ ବହଇ ।
ଧରବସୁ ପୁତ୍ର ନାମ ଅଟଇ ଦ୍ରବିଣ
ଅନଳବସୁର ହେଲେ ଦୁଇ ପୁତ୍ର ଜାଣ ।
ମନୋଜବ ଅବିଜ୍ଞାତ ଗତି ଏହି ଦୁଇ
ଅନଳବସୁର ପୁତ୍ର କୁମାର ଅଟଇ ।
ଦେବଳ ନାମେ ପ୍ରତ୍ୟୁଷ ବସୁର ନନ୍ଦନ
ପ୍ରଭାସବସୁର ପୁତ୍ର ବିଶ୍ୱକର୍ମା ଜାଣ ।
କଶ୍ୟପ ଋଷିର ତେର ଭାରିଯାର ପୁଅ
ଗୋଟି ଗୋଟି କହୁଅଛୁଁ ସର୍ବେ ମନ ଦିଅ ।
ଦ୍ୱାଦଶ ଆଦିତ୍ୟ ଜିଣି ଅଦିତି ନନ୍ଦନ
ତାହାଙ୍କର ନାମ ଏବେ ଶୁଣ ମୁନିଜନ ।
ଅଂଶ ଧାତା ଭଗତ୍ୱଷ୍ଟା ମିତ୍ର ଯେ ବରୁଣ
ଅର୍ଯ୍ୟମା ଯେ ବିବସ୍ୱାନ ସବିତା ଏ ଜାଣ ।
ପୁଷା ଅଂଶୁମାନ ବିଷ୍ଣୁ ଏମନ୍ତେ ଏ ବାର
ଦିତି ଗର୍ଭୁ ଉପୁଜିଲେ ଦୁଇଟି କୁମର ।

ହିରଣ୍ୟକଶିପୁ ବଡ଼ ହିରଣାକ୍ଷ ସାନ
ଦୁଇଭାଇ ଅତି ଗର୍ବୀ ଅତି ବଳବାନ ।
କଶ୍ୟପର ଅଉରସ ପୁତ୍ର ଜାଣ ଦୁଇ
ଘୋର ତପସ୍ୟା ସେ କଲା ହିମାଳୟେ ଯାଇଁ ।
ବ୍ରହ୍ମାଣ୍ଡ କମ୍ପିଲା ତାଙ୍କ ତପର ପ୍ରଭାବେ
ସ୍ୱର୍ଗେ ରହି ନ ପାରିଲେ ଇନ୍ଦ୍ର ଆଦି ଦେବେ ।
ଘନ ଘନ କମ୍ପିଲା ଯେ ବ୍ରହ୍ମାଙ୍କ ଆସନ
ପୁରେ ରହି ନ ପାରିଲେ ମରାଳ ବାହନ ।
ହିମାଳୟ ପର୍ବତରେ ମିଳିଲେ ସେ ଆସି
ଦେଖିଲେ ତପ କରନ୍ତି ଦୁହେଁ ତହିଁ ବସି ।
ବ୍ରହ୍ମା ବୋଇଲେ କିପାଇଁ ତପକର ତୁମ୍ଭେ
ବର ଦେବାପାଇଁ ଏଥେ ଆସିଅଛୁଁ ଆମ୍ଭେ ।
ଇଚ୍ଛା ଅନୁସାରେ ପୁତ୍ରେ ମାଗିଘେନ ବର
ହିରଣ୍ୟକଶିପୁ ବୋଲେ ଶୁଣ ବେଦବର ।
କଶ୍ୟପ ଋଷିର ପୁତ୍ର ଅଟନ୍ତି ସମସ୍ତେ
ମାତା ଭିନ୍ନ ଭିନ୍ନ ସିନା ବିଚାରନ୍ତୁ ଚିତ୍ତେ ।
ଆମ୍ଭେ ସମସ୍ତେ ତୁମ୍ଭର ଅଟୁ ସିନା ନାତି
ଇନ୍ଦ୍ର ଆଦି ଦେବତାଏ ଅଦିତି ସନ୍ତତି ।
ଦନୁଗର୍ଭରୁ ବାନରମାନେ ଉପୁଜିଲେ
କଦ୍ରୁଦେବୀ ଗର୍ଭୁ ନାଗମାନେ ଜାତହେଲେ ।
ବିନତା ଗର୍ଭୁ ଉପୂନ୍ନ ଅରୁଣ ଗରୁଡ଼
ଗରୁଡ଼ ଯେ ସାନ ପୁଣି ଅରୁଣ ଯେ ବଡ଼ ।
ଏମନ୍ତେ ଆମ୍ଭେ ସମସ୍ତେ ଅଟୁସିନା ଭାଇ
ଦେବଙ୍କୁ ଅମର କଲେ ବିଷ୍ଣୁ କାହିଁପାଇଁ ।
ଇନ୍ଦ୍ର କିମ୍ପାଇଁ ଅମରପୁର କରେ ଭୋଗ
ଆମ୍ଭର କି ସେ ସମ୍ପଦେ ନାହିଁ କିଛିଭାଗ ।
ଆମ୍ଭେ ମାଇଲେ ଦେବତାମାନେ ନ ମରିବେ
ସେମାନେ ମାଇଲେ ଆଉ କେହି ନ ବଞ୍ଚିବେ ।
ଯେବେ ଆମ୍ଭେ ଭାଇ ଭାଇ ମିଳି କରୁ କଳି
ନ ଭାଙ୍ଗି ଦିଅଇ କିମ୍ପା ତାହା ବନମାଳୀ ।
ଦେବତାଙ୍କ ପକ୍ଷ ହୋଇ ମାରଇ ଆମ୍ଭଙ୍କୁ
କାଳେ କାଳେ ଆସି ସେହି ରଖଇ ଦେବଙ୍କୁ
ବିଚାର କରନ୍ତୁ ପିତାମହ ହୃଦଗତେ
ଆମ୍ଭେମାନେ ଦୁଷ୍ଟ ହେଲୁ କହ କେଉଁମତେ ।
ବଳବନ୍ତ ଲୋକଙ୍କୁ ଯେ ସମସ୍ତେ ଡରନ୍ତି
ସେ ଅନୀତି କଲେ ତାକୁ କେହି ନ କହନ୍ତି ।
ଦୁର୍ବଳ ଲୋକ ଅନୀତି ବାଛନ୍ତି ସମସ୍ତେ
ଏଣୁ ତୁ ଅମର ବର ଦିଅ ପିତା ମୋତେ ।
ଅମର ହେଲେ ତ ମୁହିଁ ଜିଣିବି ଦେବଙ୍କୁ
ବିଷ୍ଣୁ ମାରି ନ ପାରିବ କଦାପି ଆମ୍ଭଙ୍କୁ ।
ହିରଣ୍ୟକଶିପୁ କଥା ଶୁଣି ବେଦବର
ଦେଇ ନ ପାରିବି ବାବୁ ମୁଁ ଅମର ବର ।
ଏହା ଭିନ୍ନ ଆଉ ଯାହା ମାଗିବୁ ତା ଦେବି
ହିରଣ୍ୟକଶିପୁ ଦୈତ୍ୟ ମନମଧେ ଭାବି ।
ବୋଲଇ ଅମର ବର ନ ଦେବୁ ତୁ ଯେବେ
ମୋତେ ଜିଣି ନ ପାରିବେ ସଂଗାମରେ କେବେ ।
ଅତୁଟ ହେବ ମୋ କାୟା ଅସ୍ତ୍ରେ ନ ଛାଡ଼ିବ
ବିଷ୍ଣୁର ଚକ୍ର ମୋ ଦେହେ ତିଳେ ନଭେଦିବ ।
ବିଷ୍ଣୁ ମୋତେ ସଂଗ୍ରାମରେ ନ ପାରିବ ଜିଣି
ନ ପାରିବେ ମୋତେ ଯୁଦ୍ଧେ ଦେବ ଶୂଳପାଣି ।
ପବନ ବରୁଣ ଅଗ୍ନି ଯମ ନଇରତ
କୁବେର ଆଦି ଯେତେକ ସ୍ୱର୍ଗ ଦଇବତ ।
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା ଅଛନ୍ତିଟି ଯେତେ
ସଂଗ୍ରାମରେ ନ ପାରିବେ କେହି ଜାଣ ମୋତେ ।
ଯକ୍ଷ ଦାନବ ମାନବ ହସ୍ତେ ନ ମରିବି
ଅସ୍ତ୍ରେ ନ ଛିଡ଼ିବି ପୁଣି ଜଳେ ନ ବୁଡ଼ିବି ।
ଅଗ୍ନି ପୋଡ଼ି ନ ପାରିବ ମୋ ଦେହକୁ କେଭେ
ସୂର୍ଯ୍ୟ ଶୋଷି ନ ପାରିବ ମୋତେ ଶତ୍ରୁଭାବେ ।
ପଶୁ ପକ୍ଷୀ କୀଟ ହସ୍ତେ ନ ମରିବି ମୁହିଁ
ଚାରିଖାନେ ଜୀବେ ଯୁଦ୍ଧେ ନ ପାରିବେ କେହି ।
ତୋହର ସୃଷ୍ଟି ଯେତେକ ଜୀବଜନ୍ତୁ ଜାଣ
ନ ମରିବି କାହା ହସ୍ତେ ଏ କଥା ପ୍ରମାଣ ।
ଜଳେ ସ୍ଥଳେ ଅନଳରେ ନ ଯିବ ମୋ ପ୍ରାଣ
ଦିବସେ ରାତିରେ ମୋତେ ନୋହିବ ମରଣ ।
ସ୍ତିରୀ ପୁରୁଷର ହସ୍ତେ ନ ମରିବି ମୁହିଁ
ବଜ୍ରହୁଁ କଠିନ ହେବ ଏ ମୋହର ଦେହୀ ।
ପର୍ବତ ପଡ଼ି ମୋ ଦେହେ ଚୂର୍ଣ୍ଣ ହୋଇଯିବ
ହୀରା ଲୁହା ବଜ୍ର ପଡ଼ି ମୋ ଦେହ ଭାଙ୍ଗିବ ।
ଆକାଶ ପାତାଳେ ମୋତେ ନୋହିବ ମରଣ
ଚଉଦ ବ୍ରହ୍ମାଣ୍ଡ ଲୋକ ହାରିଯିବେ ପୁଣ ।
ପ୍ରସନ୍ନ ହୋଇଲ ଯେବେ ଦିଅ ଏହି ବର
ପ୍ରାପତ ହେଉ କହିବେ ତାକୁ ବେଦବର ।

ହିରଣାକ୍ଷ ବୋଲେ ମୁହିଁ ଅସ୍ତ୍ରେ ନ ମରିବି
ବିଷ୍ଣୁର ଚକ୍ରେ କଦାପି ମୁହିଁ ନ ଛିଡ଼ିବି ।
ଦେବ ଦାନବ ମାନବ ନ ପାରିବେ ରଣେ
ନାଗ ଯକ୍ଷ ଗନ୍ଧର୍ବ ଯେ କିନ୍ନର ଚାରଣେ ।
କେହି ମୋତେ ନ ପାରିବେ ଦିଅ ଏହି ବର
ତୋହ ସର୍ଜିଲା ପଦାର୍ଥ ଯେତେ ବ୍ରହ୍ମାଣ୍ଡର ।
କାହାରି ହସ୍ତେ ମରଣ ନୋହିବ ମୋହର
ଏହି ବର ଦିଅ ମୋତେ ବ୍ରହ୍ମାଣ୍ଡ ଠାକୁର ।
ରଜନୀ ଦିବସେ ମୋର ନୋହିବ ମରଣ
ବଜ୍ରହୁଁ ମୋହର ଦେହ ଗୋଟି ହେବ ଟାଣ ।
ତାକୁ ସେହିବର ଦେଇଗଲେ ପିତାମହ
ବିଷ୍ଣୁ ମାୟାରେ ସେ ଦୁହେଁ ହୋଇଛନ୍ତି ମୋହ ।
ବିଚାରିଲେ ଆମ୍ଭେ ହେଲୁ ଜଗତେ ଅମର
ଆମ୍ଭର କଥା ଅନ୍ୟଥା କେ କରିବ ଛାର ।
ବଳେ ତିନି ଭୁବନକୁ ନେଲେ କରି ଜୟ
ହିରଣ୍ୟକଶିପୁ ହେଲା ତ୍ରିଭୁବନ ରାୟ ।
ଋଷି ବିପ୍ରଙ୍କୁ ମାଇଲେ ବଳେ ମତ୍ତ ହୋଇ
ବିଷ୍ଣୁ ଭକତ ଧାର୍ମିକ ନ ଥୋଇଲେ ମହୀ ।
ତାହାର ଅନୀତି ଦେଖି ଦେବେ କଲେ ଭୟ
ସ୍ୱର୍ଗ ଛାଡ଼ି ପଳାଇଲେ ଦେବ ସୁରରାୟ ।
ତିନିପୁର ପ୍ରାଣୀଙ୍କି ସେ ଦେଲେ ବହୁପୀଡ଼ା
ଭୟେ ଦେବୀ ବସୁନ୍ଧରା ହେଲା କରଛଡ଼ା ।
ଇନ୍ଦ୍ରଙ୍କ ସଭାରେ ଯାଇ କାନ୍ଦିଲା ବହୁତ
ବ୍ରହ୍ମାଙ୍କ ଆଗେ ଗୁହାରି କଲେ ଶଚୀକାନ୍ତ ।
ବ୍ରହ୍ମା ଦେବତାଙ୍କୁ ଘେନିଗଲେ ବିଷ୍ଣୁପୁରେ
ଦେବଋଷି ବ୍ରହ୍ମଋଷି ଘେନି ସଙ୍ଗତରେ ।
କ୍ଷୀର ସିନ୍ଧୁ ମଧ୍ୟେ ଯହିଁ ବିଜେ ଦେବ ହରି
ସମସ୍ତେ ରୋଦନ କଲେ ତାଙ୍କ ପାଦ ଧରି ।
ବୋଇଲେ ଭୋ ନାଥ ତୁମ୍ଭେ ଅନାଥର ନାଥ
ଦାନବ ଭୟରୁ ତ୍ରାହି କର ଜଗନ୍ନାଥ ।
ଅନ୍ତର୍ଯ୍ୟାମୀନାଥଙ୍କୁ କି ଅଛଇ ଅଜଣା
ତୋହର ହୃଦରେ ନାହିଁ ପର କେ ଆପଣା ।
ପରମାନନ୍ଦ ପୁରୁଷ ପରଦୁଃଖେ ଦୁଃଖୀ
ଜଗତଜନ ବନ୍ଧନ ପ୍ରଭୁ ଚକା ଆଖି ।
କରୁଣା ସାଗର ଯେବେ ନ କରିବୁ ଦୟା
ମାୟାଧର ନାଥ ଯେବେ କରିବୁଟି ମାୟା ।
ଅନାଥ ହୋଇବୁ ଆମ୍ଭେ ନାହିଁ ପରିତ୍ରାଣ
ଅଭୟ ଚରଣେ ଆସି ପଶିଲୁ ଶରଣ ।
ଏମନ୍ତେ ଅନେକ ମତେ କହିଲେକ ଯହୁଁ
ନିଦ୍ରା ତେଜି ଉଠିଲେକ ଦେବ ମହାବାହୁ ।
ଦେଖିଲେ ଆଗରେ ଉଭା ହୋଇ ବେଦବର
ମୁଖେ ସ୍ତୁତି କରୁଅଛି ଯୋଡ଼ିଅଛି କର ।
ଇନ୍ଦ୍ର ଆଦି ଦେବତାଏ ଅଛନ୍ତି ତା ପଛେ
ରଖ ରଖ ନାରାୟଣ କହୁଅଛି ଉଚ୍ଛେ ।
ଋଷି ମୁନି ଗାଉଛନ୍ତି ସାମବେଦ ଗାଥା
ଶ୍ରୀହରି ବୋଇଲେ କହ କିହୋ ଚଉମଥା ।
କି ନିମନ୍ତେ ଆସିଅଛ କି ଦୁଃଖ ତୁମ୍ଭର
ଏହା ଶୁଣି ଆଗ ହେଲେ ଦେବ ପୁରନ୍ଦର ।
କରଯୋଡ଼ି ବୋଇଲେକ ହେ ଦେବାଧିରାୟ
ହିରଣ୍ୟକଶିପୁ ନାମେ ଦିତିର ତନୟ ।
ବ୍ରହ୍ମାଠାରୁ ବର ପାଇ ଘାଣ୍ଟୁଅଛି ମହୀ
ଧାର୍ମିକ ହୋଇ ମହୀରେ ଜଣେ ନାହିଁ କେହି ।
ସମସ୍ତଙ୍କୁ ଧରି ଦୁଷ୍ଟେ କଲେଣି ସଂହାର
ଯାଗ ଯଜ୍ଞ ଭାଙ୍ଗି ସବୁ କଲେ ନାରଖାର ।
ତୋହର ଭକତ ହୋଇ ନାହିଁ ଜଣେ କେହି
ତାହାର ପ୍ରତାପ ମହୀ ନ ପାରଇ ସହି ।
ବଳେ ସ୍ୱର୍ଗପୁର ତୋର କଲେଣି ସେ କ୍ରୂର
ତାର ଭୟେ ପଳାଇଲୁ ଛାଡ଼ି ସ୍ୱର୍ଗପୁର ।
କଳପବୃକ୍ଷ ତୋ ପାଦ ଜାଣି ଆଶ୍ରାକଲୁ
ସକଳ ଛାଡ଼ି ଚରଣେ ଶରଣ ପଶିଲୁଁ ।
ରଖିଲେ ରଖ ତୁ ହରି ମାଇଲେ ବା ମାର
ଦେବଙ୍କ କାତର ବାଣୀ ଶୁଣି ଚକ୍ରଧର ।
ଶରୀରୁ ଜାତ କଲେ ସେ ଏକଇ ପୁରୁଷ
ଦିଶିଲା ସେ କୋଟି କୋଟି ଆଦିତ୍ୟ ସଦୃଶ ।
ଚାରିଗୋଟି କର ତାର ଅତିଦୀର୍ଘ ପୁଣି
ଶଙ୍ଖ ଚକ୍ରଗଦାଧାରୀ ସେ ପୁରୁଷମଣି ।
କଟୀତଟେ ପୀତାମ୍ବର ଦିଶଇ ସୁନ୍ଦର
ପୁରୁଷଉତ୍ତମ ସେହି ମହା ଭୟଙ୍କର ।
ଶ୍ରୀହରି ଚରଣେ ବନ୍ଦି ବୋଲେ କହ ତାତ
କାହାର ବଂଶକୁ ମାରି କରିବି ନିପାତ ।
ଶ୍ରୀହରି ବୋଇଲେ ବାବୁ ଯିବୁ ମର୍ତ୍ତ୍ୟପୁରେ
ହିରଣ୍ୟକଶିପୁ ନାମେ ଏକ ଦୈତ୍ୟବରେ ।

ମୋର ସ୍ୱର୍ଗପୁର କୂର କରେ ବ୍ରହ୍ମାବରେ
ତାହାର ଶିର ତୁ କାଟି ଦେବୁ ମୋର କରେ ।
ଶୁଣି ସେ ପୁରୁଷବର କଲା ସିଂହନାଦ
ବ୍ରହ୍ମାଙ୍କ ହସ୍ତରୁ ଖସି ପଡ଼ିଲାକ ବେଦ ।
ଇନ୍ଦ୍ରଧରି ନ ପାରିଲା ବଜ୍ର ଗୋଟି କରେ
ଯମର କର ତରଣ ହୃଦୟହିଁ ଥରେ ।
ଆଉ ଯେତେ ଦେବେ ଥିଲେ ହେଲେ ସେ ମୂର୍ଚ୍ଛିତ
ସମୁଦ୍ରର ଜଳ ସବୁ ହେଲା ବିପ୍ଲାବିତ ।
ଘନ ଘନ କମ୍ପିଲାକ ଚରାଚର ମହୀ
ପର୍ବତହିଁ ସ୍ଥିର ହୋଇ ନ ପାରିଲା ରହି ।
ଦାନବର କର୍ଣ୍ଣେ ଯାଇ ସମ୍ପାଇଲା ନାଦ
କ୍ଷଣକେ ଦାନବମଣି ହୋଇଲେ ନିସ୍ତବ୍‌ଧ ।
ବଧିର ହୋଇଲା କିଛି ନ ଶୁଭିଲା ପୁଣି
ଶିରେ ବଜ୍ରାଘାତ ପ୍ରାୟ ସେ ନାଦକୁ ମଣି ।
ବିପ୍ରଚିତ୍ତ ଆଦି ଯେତେ ଦାନବ ପ୍ରଧାନ
ଭୟେ କାହାରି ମୁଖରେ ନ ଆସେ ବଚନ ।
ଅନହ୍ଲାଦ ଯେ ପ୍ରହ୍ଲାଦ ସଂହ୍ରାଦ ଯେ ହ୍ରାଦ
ଶୁଣିଣ ସେ ଘୋରତର ଭୟଙ୍କର ନାଦ ।
ପିତାର ପାଶରେ ଆସି ମିଳିଲେ ସେ ଚାରି
ଦେଖିଲେ ସଭାରେ ଚେତା ନାହିଁ ଯେ କାହାରି ।
ସମସ୍ତଙ୍କ ଚିତ୍ତେ ଜାତ ହୋଇଅଛି ଭୟ
କେ ବୋଲଇ କି ନାଦ ଏ ଶୁଣ ହୋଇଥୟ ।
କେ ବୋଲଇ ଯୁଗଶେଷ ହୋଇଲାକି ଆସି
କେ ବୋଲଇ ବ୍ରହ୍ମାଣ୍ଡ ଏ ପକାଇବ ନାଶି ।
କେ ବୋଲଇ ନିର୍ଘାତ ଏ ହୁଅଇ କାତର
ହିରଣ୍ୟକଶିପୁ ବୋଲେ କାହାକୁରେ ଡର ।
ମୁହିଁ ତ ସଂହାରକାରୀ ମୁହିଁ ରକ୍ଷାକାରୀ
ମୋଠାରୁ ଆନ କି ଜଣେ ଅଛି ବସୁନ୍ଧରୀ ।
ମୁହିଁ ଇଚ୍ଛାକଲେ ହେବ କ୍ଷଣକେ ପ୍ରଳୟ
ତିନିଭୁବନକୁ ମୁହି କରିପାରେ କ୍ଷୟ ।
ଏମନ୍ତ ଶୁଣି ଦାନବେ କଲେ ସିଂହନାଦ
ପିତାଙ୍କୁ ଚାହିଁ ବୋଇଲା ପୁତ୍ର ପ୍ରହଲ୍ଲାଦ ।
ବହୁତ ଉତ୍ପାତ ଦେଖା ଯାଉଛି ଗଗନେ
ଦିବସେ ଦୃଶ୍ୟ ହୁଅନ୍ତି ଦେଖ ତାରାମାନେ ।
ପୂର୍ବଦିଗେ ଧୂମକେତୁ ହେଉଅଛି ଉଦେ
ଉଲୁକା ପଡ଼ଇ ଖସି ଦେଖନ୍ତୁ ସମ୍ମୁଦ୍ରେ ।
ବିନାମେଘେ ଶୁନୁ ପଙ୍କ ଶୋଣିତ ବରଷେ
କୁହୁଡ଼ି ଆଚ୍ଛାଦି ଅଛି ଦେଖ ଦଶଦିଶେ ।
ଖଣ୍ଡିଉଡ଼ା ଦେଉଛନ୍ତି କାକ ଗୃଧ୍ର ଚିଲ
ବିକୃତ ସ୍ୱରେ ରାବନ୍ତି ଦେଖ ଶ୍ୱାନପଲ ।
ଶୃଗାଳ ବିକୃତ ଧ୍ୱନି ଶୁଣି ମାଡ଼େ ଡର
ଏଥୁ ଜଣାଉଛି ମୋତେ ରଖ ହେ ପିଅର ।
ଦେବତାଏ ମିଳି ଯାଇ ଶ୍ରୀହରିର ପାଶେ
କହିବାରୁ ପେଷନ୍ତି ସେ ଏକଇ ପୁରୁଷେ ।
ଜଣାଯାଏ ହେବ ସେହି ସ୍ୱୟଂ ଭଗବାନ
ବିଚାରି କରିବା କାର୍ଯ୍ୟ ହୋଇ ସାବଧାନ ।
ହିରଣ୍ୟକଶିପୁ ବୋଲେ ହରି ମୋ ବଇରୀ
ତାହାକୁ ମୁଁ ଖୋଜୁଅଛି ଦିବସ ସର୍ବରୀ ।
ପଡ଼ିଲେ ମୋ ମୁଖେ ସେହି ଯିବ କି ଉତୁରି
ସାଙ୍ଗେ ସାଙ୍ଗେ ପଠାଇବି ଶମନ ନଗରୀ ।
ଏହା କହି ସେ ପ୍ରତାପୀ ଦେଲା ସିଂହରଡ଼ି
ଆଷାଢ଼ ମାସରେକି ସେ ମେଘ ଘଡ଼ଘଡ଼ି ।
ବୋଇଲା ବିଳମ୍ବ କିମ୍ପା କରୁଛ ଦନୁଜେ
ଅସ୍ତ୍ରଧରି ସଜ ହୁଅ ରଥ ଅଶ୍ୱଗଜେ ।
ନାରାୟଣ ପୁତ୍ର ବିଜେ ଗରୁଡ଼ର ପୃଷ୍ଠେ
କ୍ରୋଧଭରେ ଆପଣାର ଦନ୍ତ ଚାପି ଓଷ୍ଠେ ।
ବାଳ ଆଦିତ୍ୟ ପରାୟ କରି ନେତ୍ର ଦୁଇ
ଘୋର ଗରଜନ କରି ଶୂନ୍ୟରେ ଆସଇ ।
ସଜ ହୋଇ ରହିଥିଲେ ବଡ଼ ବଡ଼ ବୀରେ
ଶୂନ୍ୟକୁ ଅନାଇ ଦେଲେ ଗରୁଡ଼ ଉପରେ ।
ପର୍ବତ ପରାୟ କାୟା ବିସ୍ତାରି ଆସୁଛି
କୋଟି କୋଟି ସୂର୍ଯ୍ୟପ୍ରାୟତେଜ ବିକାଶୁଛି ।
ଚାରିଗୋଟି ଭୁଜେ ଶୋହେ ଚାରିଗୋଟି ଶର
ଗଦା ସୁଦର୍ଶନ ଚକ୍ର ଅତି ଭୟଙ୍କର ।
ଦେଖି ଡରେ ପଳାଇଲେ କେତେକ ଦାନବ
ଏହିଟି ପରମ ଶତ୍ରୁ ସାକ୍ଷାତେ ମାଧବ ।
ଦେବଙ୍କ ପାଇଁ ଗରୁଡ଼ ଚଢ଼ି ଆସୁଅଛି
ଏହାରି କୋପରେ କେହି ନ ପାରିବା ବଞ୍ଚି ।
କେ ବୋଲଇ କାହିଁ ପାଇଁ କରୁଅଛ ଭୟ
ଅସଂଖ୍ୟ ସୈନ୍ୟ ଆମ୍ଭର ପର୍ବତ ପରାୟ ।
ରଥ ଅଶ୍ୱଗଜ କେତେ କେ ପାରିବ ଗଣି
ସମସ୍ତେ ତ ଶସ୍ତ୍ରଧାରୀ ବୀର ଚୂଡ଼ାମଣି ।

ଜଣ ଜଣକରେ ସ୍ୱର୍ଗ ପାରନ୍ତି ଯେ ଲଘିଁ
ବିଧାଘାତେ ହିମାଳୟ ଗିରି ଦେବେ ଭାଙ୍ଗି ।
ଶୋଷି ଦେବେ ସାତସିନ୍ଧୁ ଜଳକୁ କ୍ଷଣକେ
ଏଡ଼େ ବଡ଼ ଥାଟ ଲଘିପାରେ କି ଜଣକେ ।
ଏକାବେଳେ ଶର ମାରି ପକାଇବା ପୋତି
ନିକଟ ମରଣ ତାର ହେବାରୁ ସଂପ୍ରତି ।
ଆସୁଅଛି ମରିବାକୁ ପତଙ୍ଗ ପରାୟ
ପତାକା ବାନ୍ଧିବା ଆମେ ଆଜି ଶତ୍ରୁଜୟ ।
ଏହାକହି ସେ ପ୍ରଚଣ୍ଡ ଦାନବେ ଧାଇଁଲେ
ଗଦା ମୁଦ୍ଗର କୁନ୍ତ ଶକତି ମାଇଲେ ।
ରାକ୍ଷସଙ୍କ ଗରଜନେ ସମୁଦ୍ର ଉଲ୍ଲୋଳ
ପାଦଭରେ ବସୁମତୀ ହେଲା ଟଳମଳ ।
ଧନୁଧରି କେଉଁ ବୀର ମାରୁଅଛି ଶର
କକଡ଼ା ମାସେ କି ଶୂନ୍ୟପଡ଼େ ଜଳଧାର ।
ଅନଳ ସମାନ ବାଣ କେ ଦେଉଛି ମାରି
ବିନ୍ଧନ୍ତି ସେ ନାରାୟଣ ପୁତ୍ର ଧନୁ ଧରି ।
ଯେସନେ ମୃତ୍ତିକାଭାଣ୍ଡ ପ୍ରହାରକେ ତୁଟେ
କେଶରୀ ଯେସନେ ମୃଗପଲ ଦେଖି ଛୁଟେ ।
ଯେସନକ ପଦ୍ମବନ ଭାଙ୍ଗେ କରିବର
ତେସନେ କାଟନ୍ତି ଏକଶରେ ସବୁ ଶର ।
ଏକ ମାତ୍ର ନ ବାଜଇ ତାହାଙ୍କର ଅଙ୍ଗେ
ଦୈତ୍ୟ ପଳାଇଲେ ଭୟେ ତହୁଁ ପୃଷ୍ଠଭଙ୍ଗେ ।
ବିପ୍ରଚିତ୍ତ ଆଦି ଯେତେ ବଡ଼ ବଡ଼ ବୀରେ
ନିରସ୍ତ୍ର ହୋଇଲେ ବାଣ ନାହିଁ ଯେ ତୁଣୀରେ ।
ଯୁଦ୍ଧ ଛାଡ଼ି ନ ଯାଇ ସେ ହୋଇଲେ ନିସତ
ଦାନବ ରାଜାର ଯେଉଁ ଚାରିଗୋଟି ସୁତ ।
ଚାରିଗୋଟି ଅସ୍ତ୍ର ଚାରି ବୀରେ ଧରି କରେ
ମେଘ ପ୍ରାୟ ଗରଜନ କରି ଉଚ୍ଚସ୍ୱରେ ।
ସେ ପୁରୁଷ ସଙ୍ଗତରେ କଲେ ଘୋର ରଣ
ପ୍ରହ୍ଲାଦ ବୀର ଧରିଛି କରେ ବ୍ରହ୍ମବାଣ ।
ବଇଷ୍ଣବ ଅସ୍ତ୍ର ଅଛି ଅନୁହ୍ଲାଦ କରେ
ସଂହ୍ରାଦ କୁମାର ଅସ୍ତ୍ର ଯୋଚିଛି ଧନୁରେ ।
ହ୍ରାଦ ବୀର ଅଗ୍ନି ଅସ୍ତ୍ର ଧରି କରେ ଟାଣ
ଏକାବେଳେ ମାଇଲେ ସେ ଚାରିଗୋଟା ବାଣ ।
ଚାରି ବୀରଙ୍କର ଶର ଏକାବେଳେ ଯାଇ
କିଛି କରି ନ ପାରି ସେ ଗଲେକ ପଳାଇ ।
ମହାବାହୁ ମହାବଳ ସେ ପୁରୁଷବର
ଚାରିଙ୍କର ଅଙ୍ଗେ କଲା ପାଦକୁ ପ୍ରହାର ।
ଶୁଖିଲା ପତର ପରି ଉଡ଼ିଲେକ ଚାରି
ଖଣ୍ଡେ ଦୂରେ ପଡ଼ି ମୂର୍ଚ୍ଛାଗଲେ ଜ୍ଞାନ ହାରି ।
ପୁତ୍ରଙ୍କର ଏ ଦୁର୍ଦ୍ଦଶା ଦେଖି ଦୈତ୍ୟରାଜ
କ୍ରୋଧଭରେ ବିକାଶିଲା ତାର ନିଜ ତେଜ ।
ପର୍ବତଠାରୁ ଅଧିକ ଦିଶିଲା ସେ ମୋଟା
ପୃଥିବୀରେ କି ବିଜେ କଲା କଳାନାଗ ଗୋଟା ।
ଆକାଶରେ ଶିରତାର ମେଘ ଗତି ରୋଧେ
ବ୍ରହ୍ମାଣ୍ଡ କମ୍ପିଲାତାର ଗରଜନ ନାଦେ ।
ଧାମନ୍ତେ ପୃଥିବୀ ଦେବୀ ଶିର ଗଲା ଲଇଁ
କ୍ରୋଧଭରେ ଗୋଇଠାଏ ମାଇଲା ନିଠାଇ ।
ଛାତିରେ ବାଜିଲା ଯାଇ ବଜ୍ରାଘାତ ପ୍ରାୟ
ସହି ନ ପାରି ପୁରୁଷବର ପାଇ ଭୟ ।
ପଳାଇଲା ଗରୁଡ଼କୁ ଘେନି ଅନ୍ତରୀକ୍ଷେ
ହିରଣ୍ୟକଶିପୁ ତାକୁ ନ ଦେଖି ସ୍ୱଚକ୍ଷେ ।
ସିଂହନାଦ କରି ମୁଖେ ବୋଲେ ଜୟ ଜୟ
ଦନୁଜ ଥାଟ ତା ଦେଖି ହୋଇଲେ ନିର୍ଭୟ ।
ଜୟ ଜୟ ଶବଦରେ କମ୍ପାଇଲେ ମହୀ
ସେ ପୁରୁଷବର ଗଲେ ନାରାୟଣ ଯହିଁ ।
କହିଲେ ତାହାଙ୍କ ଆଗେ ଯୁଦ୍ଧସମାଚାର
ଶୁଣିସେ ଅନାଦି ପ୍ରଭୁ ହୋଇ କୋପଭର ।
ଧଇଲେକ ମହାବଳ ନୃସିଂହ ମୂରତି
ଯେଉଁ ଜୀବ ସୃଷ୍ଟି କରିନାହିଁ ପ୍ରଜାପତି ।
ନାଭିଠାରୁ ପାଦଯାଏ ମନୁଷ୍ୟ ଶରୀର
ଉପର ଭାଗ ଦିଶଇ ସିଂହର ଆକାର ।
ହିରଣ୍ୟକଶିପୁ ଆଗେ ହୋଇଲେକ ଉଭା
ଗଜ ସିଂହ ଭେଟ ହେଲା ପ୍ରାୟ ପାଏ ଶୋଭା ।
କରାଳ ଦଶନରାଗେ କରେ କଟ ମଟ
ଅନଳ ନୟନେ ତାହୁଁ ଅଛି ମଟ ମଟ ।
ସୂର୍ଯ୍ୟସମ ତେଜରାଶି ଝଟ ଝଟ ଦିଶେ
ପ୍ରଖର ନିଃଶ୍ୱାସ କିବା ଅନଳ ବରଷେ ।
କେଶର ଛଟା କି ତାର କାଳଯମ ଦୂତ
ବଦନ ଛଟା କି ରୁଦ୍ର କ୍ରୋଧରୁ ସମ୍ଭୂତ ।
କୁଞ୍ଚଛଟା ସାକ୍ଷାତେ କି ସଂଯମନୀ ପାଶ
ପାଦଛଟା କି ପ୍ରଳୟ ପବନ ସଦୃଶ ।

ତର୍ଜନ ଗର୍ଜନ ତାର ଯୁଗାନ୍ତ ନିର୍ଘାତ
ଏ ଅଦ୍ଭୁତ ରୂପ ଦେଖି ହେଲେ ଆଚମ୍ବିତ ।
ଡରେ କରେ ଅସ୍ତ୍ର ଧରି ନ ପାରିଲେ ବୀରେ
ହିରଣ୍ୟକଶିପୁ ବୀର ରହିଛି ଆଗରେ ।
ନିର୍ଭୟରେ ରହିଅଛି ନାହିଁ ତାର ଶଙ୍କା
ବ୍ରହ୍ମାର ପ୍ରସାଦେ ସେହି ଅଟେ ରଣରଙ୍କା ।
ଜ୍ୟେଷ୍ଠ ପୁତ୍ର ପ୍ରହ୍ଲାଦକୁ କହେ ଡାକି କରି
ସେ ପୁରୁଷ ଆସିଥିଲା କରେ ଅସ୍ତ୍ରଧରି ।
ସେହି ହାରି ପଳାଇଲା ନ ରହିଲା ଆଗେ
ଏ ଅପୂର୍ବ ଜୀବ ଗୋଟା କାହୁଁ ଆସି ବେଗେ ।
ଭୟ ଦେଖାଉଛି ତାକୁ ଅସ୍ତ୍ର ଧରି ମାର
ଅରଣ୍ୟ ମଧ୍ୟରେ ବଣପଶୁ ପରକାର ।
ନ ଜାଣଇ ଅସ୍ତ୍ର ବଳ ଏହି ମୂର୍ଖ ଜୀବ
ଯଜ୍ଞ ପଶୁ ପ୍ରାୟ ରଣ ଯଜ୍ଞେ ହଣାଯିବ ।
ଚାରି ଭାଇଯାକ ମିଳି ପକାଅ ଯେ ମାରି
ପିତା ଆଜ୍ଞାକୁ ପ୍ରହ୍ଲାଦ ଶିରାଗ୍ରତ କରି ।
ଧନୁଶର ଧରି କଲା ଶର ବରଷଣ
ଚତୁର୍ମାସ୍ୟାରେ ଯେମନ୍ତ ମହାମେଘ ଦ୍ରୋଣ ।
ଗିରିଶୃଙ୍ଗେ ବରଷଇ କରକା ପଥର
ଜଳଧାରା ବରଷଇ ଯେସନେ ପୁଷ୍କର ।
ଲୁହା ଗିରିଶୃଙ୍ଗେ ପଡ଼ି ଯାଏ ଯେହ୍ନେ ଗଡ଼ି
ପ୍ରହ୍ଲାଦ ଶିର ନୃସିଂହ ଶିରେ ତେହ୍ନେ ପଡ଼ି ।
ଉପୁଡ଼ି ପଡ଼ଇ ତିଳେ ନ ଭେଦଇ ଅଙ୍ଗେ
ପୁଷ୍ପବୃଷ୍ଟି ହୁଅଇ କି ନୃସିଂହ ସର୍ବାଙ୍ଗେ ।
ଏମନ୍ତେ ନାରାଚ ଯେତେ ଥିଲା ତା ତୂଣୀରେ
ସ୍ମରନ୍ତେ ପ୍ରହ୍ଲାଦ ଅପସରି ଗଲା ଡରେ ।
ପ୍ରହ୍ଲାଦ ବାହାର ଦେଖି ଦାନବ ରାଜନ
ହିରଣାକ୍ଷ ନାମେ ତାର ଭାଇ ଯେହୁ ସାନ ।
ତାହାକୁ ବୋଇଲା ତୁହି ଏ ଜୀବକୁ ମାର
ସେ ଯାଇଁ ନୃସିଂହ ସଙ୍ଗେ କଲାକ ସମର ।
ଦେବ ଅସ୍ତ୍ର ଦାନବାସ୍ତ୍ର ପ୍ରହାରିଲା ରାଗେ
ନୃସିଂହ ପ୍ରତାପ ସହି ନ ପାରି ସେ ବେଗେ ।
ଅନଳେ ପତଙ୍ଗ ଭସ୍ମ ହେଲା ପ୍ରାୟ ହେଲେ
ନିସ୍ତେଜ ହୋଇ ଭୂମିରେ କେହି ବା ପଡ଼ିଲେ ।
ନାରାଚ ବିଅର୍ଥ ହେବା ଦେଖି ହିରଣାକ୍ଷ
ମନେମନେ ସୁମରିଲା ଦେବ ବିରୂପାକ୍ଷ ।
ପାଶୁପତ ଅସ୍ତ୍ର ତାଙ୍କୁ ମାଗନ୍ତେ ସେ ଦେଲେ
ଯାହା ତେଜ ସୂର୍ଯ୍ୟ ଅଗ୍ନି ସହି ନ ପାରିଲେ ।
ସେହି ମହା ଅସ୍ତ୍ରଗୋଟା ମାଇଲା ଦାନବ
ସାକ୍ଷାତରେ ସେହି ଅସ୍ତ୍ର ଅଟେ ମହାଦେବ ।
ନୃସିଂହ ପ୍ରତାପ ସହି ନ ପାରି ସେ ଗଲା
ପ୍ରହ୍ଲାଦ ଏସବୁ ଦେଖି ମନେ ବିଚାରିଲା ।
ନିଶ୍ଚୟ ଏ ସନାତନ ବାସୁଦେବ ହରି
ଜାଣି ଅସ୍ତ୍ରତ୍ୟାଗ କରି ମନେ ମନେ ସ୍ମରି ।
ବେଦଉକ୍ତ ସ୍ତୁତିପାଠ କଲା ମନେ ମନେ
ହରିଙ୍କି ଦେଖେ ହୃଦୟେ ପ୍ରଫୁଲ୍ଲ ନୟନେ ।
ଯେଉଁ ରୂପ ହୃଦୟରେ ଦେଖିଲା କୁମର
ବାହାରେ ଦେଖେ ସେ ରୂପେ ପ୍ରଭୁ ଅବତାର ।
ଜଳ ସ୍ଥଳ ଅନଳରେ କାଷ୍ଠ ପାଷାଣରେ
ଭୂମି ମୃତ୍ତିକା ଆକାଶ ପାତାଳ ମଧ୍ୟରେ ।
ବିରାଜଇ ଶ୍ରୀହରିର ସେ ଅପୂର୍ବ ରୂପ
ସେ ପ୍ରଭୁ ଛପନ କୋଟି ଜୀବନ ସ୍ୱରୂପ ।
ଯହିଁ ଦେଖେ ତହିଁ ହରି ଭିତରେ ବାହାରେ
କୃତାର୍ଥ ହେଲା ପ୍ରହ୍ଲାଦ ବୋଲଇ ଅନ୍ତରେ ।
କେବେ ମୁଁ ମୋ ପିତାମାତା ଖୁଡୁତା ଭାଇଙ୍କି
ରୂପ ଦେଖାଇ କୃତାର୍ଥ କରିପାରେ ନିକି ।
ସୁପୁତ୍ର ମଧ୍ୟେ ଗଣନା ହୋଇବଇଁ ସିନା
ପୁତ୍ର କରଇ ପିତାର ଉତ୍ତମ କାମନା ।
ଯେତେ କଷ୍ଟ ପିତାମାତା ସହିଲେ ମୋ ପାଇଁ
ମୁହିଁ ଯେବେ ତାଙ୍କୁ ନର୍କୁ ତାରି ନ ପାରଇ ।
ଧିକ ଧିକ ଏ ଜୀବନେ କିସ ପ୍ରୟୋଜନ
ମଳମୂତ୍ର କୀଟ ପ୍ରାୟ ସିନା ଏ ଜନମ ।
ଏମନ୍ତ ବିଚାରି ସେହି ପୁତ୍ର ପ୍ରହଲାଦ
ପିତା ଭ୍ରାତା ଖୁଡୁତାଙ୍କୁ ବୋଲେ ଛାଡ଼ବାଦ ।
ଦିବ୍ୟ ଚକ୍ଷୁରେ ଅନାଇ ଦେଖ ଏ ଦେହରେ
ବିରାଜୁଅଛି ଏ ରୂପ ଗୋଟି କି ରୂପରେ ।
ତରୁଲତା ଗିରି ଗୁହା ଯହିଁ ତହିଁ ଦେଖ
ବିରାଜୁ ଅଛି ହରିର ଏହି ସିଂହ ମୁଖ ।
ଜଳସ୍ଥଳ ଅନଳରେ କାଷ୍ଠ ପାଷାଣରେ
ଏ ଅପୂର୍ବ ରୂପଗୋଟି ବାହାରେ ଅନ୍ତରେ ।
ଦେଖିଲେ ଏ ଭବ ପାରାବାରୁ ଯିବ ତରି
ଜଗତନାଥ ପୁରାଣ ପୁରୁଷ ଶ୍ରୀହରି ।

ମହାଯୋଗୀ ବିଷ୍ଣୁ ଧାତା ବିଧାତା ଅଟଇ
ଚଉଦ ବ୍ରହ୍ମାଣ୍ଡେ ଜ୍ୟୋତିରୂପେ ବିରାଜଇ ।
ନିରଞ୍ଜନ ଦେବତା ଏ ଜଗତର ମୂଳ
ଅନ୍ତର୍ଯ୍ୟାମୀ ଠାକୁର ଏ ବ୍ରହ୍ମମୟ ଠୂଳ ।
ଅନାଦି ଅନନ୍ତ ଏହି ଅଚ୍ୟୁତ ଗୋସାଇଁ
ଏହାଙ୍କ ପାଦେ ଶରଣ ପଶିବାନା ଯାଇଁ ।
ଶରଣ ପଶିଲେ ସିନା କାରଣ ପାଇବା
ଭବ ଘୋର ଯାତନାରୁ ସୁଖେ ତରିଯିବା ।
ଆସ ଆସ ବିଳମ୍ବ ଯେ ନ କର ଗୋ କେହି
ବିଜେ କରିଛନ୍ତି ଦେଖ ପ୍ରଭୁ ଭାବଗ୍ରାହୀ ।
ପୁତ୍ର କଥା ଶୁଣି ବୋଲେ ଦାନବ ରାଜନ
ଯେବେ ଏ ଜୀବକୁ ହରି ବୋଲୁରେ ନନ୍ଦନ ।
ପରମ ବଇରୀ ମୋର ଅଟଇ ସେ ହରି
ଯାହା ଯୋଗୁଁ ସିନା ଭାଗ ଯାଉଛି ଆମ୍ଭରି ।
ତାହାକୁ ମାଇଲେ ଆମ୍ଭେ ହେବା ନା ଈଶ୍ୱର
ଏଣୁ ପୁତ୍ର ଏ ଜୀବକୁ ବେଗେ ଯାଇ ମାର ।
ନୁହଇ ସେ ବୀର ପୁଣି ନୁହେଁ ଅସ୍ତ୍ରଧାରୀ
ମାରିବାକୁ ଆସିଅଛି ଗୃହକୁ ଆମ୍ଭରି ।
ମହାବୁଦ୍ଧିମନ୍ତ ପୁତ୍ର ପ୍ରହଲାଦ ହସି
ବୋଲଇ ହେ ତାତ ଏହି ପ୍ରଭୁ ବ୍ରହ୍ମରାଶି ।
ଛପନ କୋଟି ଜୀବଙ୍କୁ ସୃଷ୍ଟି କରିଛନ୍ତି
ଏହା ଭିନ୍ନ ଆନ ଜୀବ ଗଢ଼ି ସେ ପାରନ୍ତି ।
ତାହାଙ୍କ ମନର ମୂଳେ ସିନା ଏ ଜଗତ
କୋଟି କୋଟି ବ୍ରହ୍ମାଣ୍ଡର ନାଥ ସେହି ତାତ ।
କାଳରୂପୀ ଏହି ହରି କାଳକୁ ମାରଇ
କାଳ ମୁଖରୁ ଏ ପୁଣି ଲୋକକୁ ତାରଇ ।
କାଳର ବଇରୀ ଆମ୍ଭେ ଦେଲେ କି ବର୍ତ୍ତିବା
କାଳିମୂଳେ ପଡ଼ି ଆମ୍ଭେ କାହୁଁ ଉତୁରିବ ।
ଏମନ୍ତେ ପୁତ୍ରର ବାଣୀ ନ ଶୁଣିଲା ଦୈତ୍ୟ
ବିଷ୍ଣୁ ମାୟାରେ ଦାନବ ହୋଇଛି ମୋହିତ ।
ଗଦାଧରି କୋପଭରେ କମ୍ପାଇଲା ମହୀ
ଗିରି ପ୍ରାୟ ବିକଶିଲା ଆପଣାର ଦେହୀ ।
ସିନ୍ଧୁଘୋଷ ପ୍ରାୟ କୋପେ ଗର୍ଜିଲା ଦଇତ
ଭୂମି କମ୍ପିଲା କମ୍ପିଲେ ସ୍ୱର୍ଗେ ଦଇବତ ।
ବିକଟ ବଦନ କରି ବୁଲାଇଲା ଗଦା
ଚରଣ ବୁଲାଇ ଶୂନ୍ୟେ ମାରୁଅଛି କୁଦା ।
ଗଦାର ପବନଘାତେ ଉଡ଼ିଲେ ପର୍ବତ
ନୃସିଂହ ଉପରେ କୋପେ ପିଟିଲା ଦଇତ ।
ଭାଙ୍ଗିଗଲା ଗଦାବର ନୃସିଂହର ଦେହେ
ଦୈତ୍ୟରାଜ ଗରଜଇ ବିଷ୍ଣୁ ମାୟା ମୋହେ ।
ପରିଘ ଏକ ବୁଲାଇ ପିଟିଲାକ ନେଇ
ନୃସିଂହ ତାହାକୁ ଫୁଲ ପ୍ରାୟ ଯେ ମଣଇ ।
ପରିଘ ବିଅର୍ଥ ହେବା ଦେଖି ଦୈତ୍ୟରାଜ
ଶୂଳ ଏକ ପ୍ରହାରିଲା କରି ମହାତେଜ ।
ଶୂଳ ହିଁ ବିଅର୍ଥ ହେଲା ନୃସିଂହ ଶରୀରେ
ବେଳୁ ବେଳ କୋପବଢ଼େ ଦାନବ ଦେହରେ ।
ଶକତି ଏକ ଧାଇଁଲା ଦିଶେ ଦାଉ ଦାଉ
ଭୟେ ଆଦିତ୍ୟର ରଥ ନ ଚଳିଲା ଆଉ ।
ଦେବତାଏ ତାର ତେଜ ନ ପାରିଲେ ସହି
ଦାନବ ବଳ ପାଖରେ ନ ପାରିଲେ ରହି ।
ପଳାଇଲେ ଏଣେ ତେଣେ କରି ସିଂହନାଦ
କେବଳ ଏକାକେ ରହି ଅଛଇ ପ୍ରହ୍ଲାଦ ।
ଶକତି ମାଇଲା କୋପେ ଦାନବ ରାଜନ
କୋଟି କୋଟି ସୂର୍ଯ୍ୟ କିବା ଉଇଁଲେ ଗଗନ ।
ନୃସିଂହ ଉପରେ ଯାଇ ପଡ଼ିଲା ଶକତି
ମଣିଲେ କୁସୁମ ପ୍ରାୟ ନୃସିଂହ ମୂରତି ।
ଶକତି ବିଅର୍ଥ ହେବା ଦେଖି ଦୈତ୍ୟବର
ନୃସିଂହ ଛାତିରେ କଲା ଚରଣ ପ୍ରହାର ।
ସନ୍ଧ୍ୟା ସମୟରେ ବୀର ଗୋଇଠା ମାଇଲା
ମରଣ ସମୟ ଯହୁଁ ଉପସ୍ଥିତ ହେଲା ।
ଦଶନଖେ ବିଦାରିଲେ ଦଇତକୁ ହରି
ଟୋଳି ଧଇଲେ ତାହାକୁ ଛତ୍ରପ୍ରାୟ କରି ।
ଆକାଶରେ ରଖି ତାର ପ୍ରାଣନେଲେ ଶୋଷି
ଗିରି ପ୍ରାୟ ବିରାଜଇ ସେହି ମହାଦୋଷୀ ।
ଜୟ ଜୟ ଶବଦରେ ପୂରିଲା ଗଗନ
ସ୍ୱର୍ଗରେ ଉତ୍ସବ କଲେ ସହସ୍ର ଲୋଚନ ।
ପାରିଜାତ ପୁଷ୍ପବୃଷ୍ଟି କଲେ ଧରଣୀରେ
ଗାଇଲେ ଗନ୍ଧର୍ବ ଗୀତ ମଧୁର ସୁସ୍ୱରେ ।
ଅପସରାଙ୍କର ନୃତ୍ୟ କେ ପାରିବ କହି
ନୃସିଂହର ଭୟଙ୍କର ରୂପ ବିରାଜଇ ।
ଦାନବ ଅଛଇ ନଖେ ମେରୁଗିରି ପ୍ରାୟ
ବେଳୁବେଳ ବଢୁଅଛି ନୃସିଂହର କାୟ ।



ହିରଣ୍ୟାକ୍ଷ ଦୈତ୍ୟ ଭୟେ ପଳାଇଲେ ଛାଡ଼ି
ଅନୁହ୍ଲାଦ ଆଦି ତିନିପୁତ୍ରେ ମୋହେ ପଡ଼ି ।
ପିତାର ବଇରୀ ଜାଣି କଲେ ଯାଇଁ ରଣ
ସଙ୍ଗେ ଅଛନ୍ତି ତାଙ୍କର ଅନୁଚର ଗଣ ।
ନୃସିଂହ ତେଜରେ ଦଗ୍‌ଧ ହୋଇ ପୁତ୍ରତିନି
ଅନୁଚରଗଣଙ୍କୁ ସେ ସଙ୍ଗତରେ ଘେନି ।
ବଡ଼ ବଡ଼ ଦାନବେ ଯେ ପଳାଇଲେ ଡରି
ନୃସିଂହ ମୂରତି ଅଛି ତ୍ରିଭୁବନେ ପୂରି ।
ଦେଖି ମହାଭୟ କଲେ ଇନ୍ଦ୍ରାଦି ଦେବତା
ନୃସିଂହଙ୍କୁ ସ୍ତୁତି କଲେ ଆସିଣ ବିଧାତା ।
ତହିଁରେ ସଉମ୍ୟ ମୂର୍ତ୍ତି ନ ଧଇଲେ ହରି
ପ୍ରହ୍ଲାଦ ଦାନବ ବୋଲେ କରଯୋଡ଼ି କରି ।

ଜୟ ତୁ ଜୟ ତୁ ଦେବ ନୃସିଂହ ମୂରତି
ଜୟ ତୁ ଜୟ ତୁ ଦେବ ଲକ୍ଷ୍ମୀଦେବୀ ପତି ।
ଜୟ ତୁ ଜୟ ତୁ ଦେବ କପିଳ ନୃସିଂହ
ଜୟ ତୁ ଜୟ ତୁ ଦେବ ଅଭୟ ନୃସିଂହ ।
ତୋହର ମହିମା ତୁହି ଜାଣୁ ଏକା ହରି
ନ ଜାଣନ୍ତି ହରବ୍ରହ୍ମା ମହିମା ତୋହରି ।
କେତେବେଳେ କେଉଁରୂପ ଧରୁ ଜନାର୍ଦ୍ଦନ
ତୋର ରୂପ ବର୍ଣ୍ଣିବାକୁ କେ ହେବ ଭାଜନ ।
ସପତ ସମୁଦ୍ର ଶୁଣ ସପତ ପାତାଳ
ସପତ ଦ୍ୱୀପ ଅନିଳ ଅନଳ ହିଁ ଜଳ ।
ସକଳ ତୋର ମୂରତି ଦେଖୁଛି ନୟନେ
ପ୍ରାଣୀ ରୂପରେ ରହିଛୁ ଏ ତିନି ଭୁବନେ ।

ତୋର କର ଚରଣ ଯେ କେତେରୂପେ ଅଛି
କେମନ୍ତେ ବର୍ଣ୍ଣିବି ତାହା କହ ଶିରୀବସି ।
ଦୁରାତ୍ମା ଦନୁଜ ବୁଦ୍ଧି ଧରି ମୋର ପିତା
ନ ଚିହ୍ନିଲା ତୋତେ ପୁଣି ନ କଲା ମୋ କଥା ।
ଏମନ୍ତେ ଅନେକ ସ୍ତୁତି କଲା ସେ ପ୍ରହ୍ଲାଦ
ଭୂମିରେ ଗଡ଼ିଲା ଧରି ଶ୍ରୀ ନୃସିଂହ ପାଦ ।
ଶାନ୍ତମୂର୍ତ୍ତି ଧରି ହରି ବୋଇଲେ ରେ ପୁତ୍ର
ଦାନବ କୁଳରେ ତୁହି ଅଟୁରେ ପବିତ୍ର ।
ପ୍ରସନ୍ନ ହୋଇଲି ବାବୁ ବର ମାଗ ତୁହି
ତୋହର ପିତାକୁ ଦେଇ ନ ପାରଇ ମୁହିଁ ।
ପ୍ରହ୍ଲାଦ ବୋଇଲା ପ୍ରଭୋ ଦେବେ ଯେବେ ବର
ମୋହର ଭକତି ରହୁ ପୟରେ ତୋହର ।
ଆବର କଥାଏ ସ୍ୱାମୀ ମାଗୁଅଛି ତୋତେ
ମୋହର ପିତା ସୁଗତି ଲଭଇ ଯେମନ୍ତେ ।
ଶ୍ରୀହରି ବୋଇଲେ ସେହି ହୋଇବ ମୁକତ
ଏ ଜନମ ନୋହେ ବାବୁ କହିଲି ମୁଁ ସତ ।
ମୋହର ସେ ଦ୍ୱାରପାଳ ଭକତ ଅଟଇ
ଋଷି ଶାପେ ସିନା ସେହି ଦାନବ ହୁଅଇ ।
ପାପରୁ ମୁକତ ହେଲେ ପାଇବ ସୁଗତି
ତୋହର ସର୍ବଦା ଥିବ ମୋ ପାଦେ ଭକତି ।
ଏହାକହି ନରସିଂହ ହେଲେ ଅନ୍ତର୍ଦ୍ଧାନ
ପିତାର ଶବକୁ ନେଇ ପ୍ରହ୍ଲାଦ ଶ୍ମଶାନ ।
ଦଗ୍ଧକରି ବିଧିମତେ କ୍ରିୟା କର୍ମ କଲା
ଦୀନ ଗୋପୀନାଥ ହରି ନାମକୁ ଗାଇଲା ।
ସେହି ହରିନାମ ଅଟେ ସଂସାରରେ ସାର
ପଢ଼ି ଶୁଣି ପାର ହୁଅ ଭବ ପାରାବାର ।

.....❀.....

## ଦୈତ୍ୟ ବଂଶାନୁଚରିତ ଓ ହିରଣାକ୍ଷ ବଧ

କହନ୍ତି ସେ ସୁତମୁନି ଶୁଣ ମୁନିବରେ
ପ୍ରହ୍ଲାଦକୁ ହିରଣାକ୍ଷ ବୋଇଲା ସଧୀରେ ।
ତୋର ବାପ ରାଜା ହୋଇ ପାଳୁଥିଲା ମହୀ
ରାଜା ହୁଅ ବାବୁ ତାର ବଡ଼ପୁଅ ତୁହି ।
ସର୍ବଗୁଣେ ପରିପୂର୍ଣ୍ଣ ଅଟୁରେ କୁମର
ଶାସ୍ତ୍ର ଅନୁସାରେ ତୁହି ହୁଅ ନୃପବର ।
ପ୍ରହ୍ଲାଦ ବୋଇଲା ତାତ କହୁଛ ଅନୀତି
ପିତା ଥାଉଁ ପୁତ୍ର କାହିଁ ହୋଇଛି ନୃପତି ।
ତୁ ମୋହର ଖୁଡ୍ତୁତା ମୁଁ ତୋହର ପୁତୁରା
ତୁହି ରାଜା ହେଲେ ଶୋଭା ପାଇବ ନା ଧରା ।
ଏହା କହି ଅଭିଷେକ କରାଇଲା ଶିରେ
ହିରଣାକ୍ଷ ରାଜା ହେଲା ପ୍ରହ୍ଲାଦ ବାକ୍ୟରେ ।
ଭାଇ ଗୁଣ ସୁମରଇ ବସି ଦିବାରାତି
ଗୁଣବନ୍ତ ଭାଇକି ମୋ ମାଇଲା ଶ୍ରୀପତି ।
କେମନ୍ତେ ତାହାକୁ ମୁହିଁ କରିବି ସଂହାର
ଏମନ୍ତେ ବିଚାରି ସେହି ଦାନବ ଈଶ୍ୱର ।
କଇଳାସ ପରବତେ କଲା ବସି ତପ
ଶିବ ପଞ୍ଚାକ୍ଷର ମନ୍ତ୍ରେ କଲା ଲୟେ ଜପ ।
ଲକ୍ଷେକ ଆହୁତି ଦେଲା ସେ ମନ୍ତ୍ରକୁ ପଢ଼ି
ବସିଲାକ ଦୃଢ଼େ ଯୋଗ ଆସନକୁ ମାଡ଼ି ।
ଦଶଦ୍ୱାର ରୁନ୍ଧି ଧୀରେ ସାଧିଲା ପବନ
ସହିଲା ବରଷା ଖରା ଶୀତ ରାତିଦିନ ।
ଏମନ୍ତେ ଯେ ବହିଗଲା ସହସ୍ରେ ବରଷ
ଶିବ ବିଜେକଲେ ଧରି ଦିଗମ୍ବର ବେଶ ।
ବୋଇଲେ ଅସୁରରାଜା କିମ୍ପା କରୁ ତପ
ପ୍ରସନ୍ନ ହୋଇଲୁଁ ବର ମାଗୁ କି ନା ନୃପ ।
ହିରଣାକ୍ଷ ବୋଇଲା କି ଦେବୁ ଯେବେ ବର
ତୋହର ପ୍ରସାଦେ ହେଉ ପୁତ୍ରେକ ମୋହର ।
ବଳବନ୍ତ ପଣେ ତାକୁ ନୋହିବେ କେ ସରି
ସମରେ ତାହାକୁ କେଭେ ନ ପାରିବେ ହରି ।
ଅସ୍ତ୍ର ଶସ୍ତ୍ର ବ୍ୟର୍ଥ ହେବ ତାହାର ଶରୀରେ
ବଜ୍ରଧାରୀ ନ ପାରିବ ତାହାକୁ ସମରେ ।
ଅନିଳ ଅନଳ ଜଳ ଦେବତା ସହିତେ
ଜିଣି ନ ପାରିବେ ରଣ କରି ତା ସଙ୍ଗତେ ।
ତିନିପୁରେ ଯେତେ ଜୀବ ଅଛନ୍ତି ଆବର
ସମସ୍ତେ ହାରିବେ କଲେ ତା ସଙ୍ଗେ ସମର ।
ଏକା ତୋତେ ରଣେ ଜିଣି ନ ପାରିବେ ସେହି
ତୁମ୍ଭେ ଯେ ଭକତ ତୋର ଆମ୍ଭ ପ୍ରଭୁ ତୁହି ।
ପାର୍ବତୀଦେବୀ ଆମ୍ଭର ଅଟଇ ଜନନୀ
ତାହାକୁ ଯେବେ ବାଞ୍ଛିବ ଯିବ ସଂଯମନୀ ।
ଏହି ବର ମାଗୁଅଛି ଦିଅ ପ୍ରଭୁ ହର
ଅସ୍ତୁ କହି ମହାଦେବ ହୋଇଲେ ଅନ୍ତର ।

ଏଥୁ ଅନନ୍ତରେ ସେହି ଦାନବ ରାଜନ
ବର ପାଇ ଆନନ୍ଦରେ ଅଇଲା ଭୁବନ ।
ହର ବରେ ପୁତ୍ର ଏକ ହୋଇଲା ତାହାର
ଅନ୍ଧକ ତା ନାମ ଦେଲା ଦାନବ ଈଶ୍ୱର ।
ତାହାକୁ ସେ ନ ମାନିଲା ବଳବନ୍ତ ପଣେ
ହିରଣାକ୍ଷ ନାମ ଶୁଣି ଭୟେ ଋଷିଗଣେ ।
ତପୋବନ ଛାଡ଼ି ସବୁଗଲେକ ପଳାଇ
ଯାଗଯଜ୍ଞ ଭାଙ୍ଗିଲା ସେ ଦାନବ ପଠାଇ ।
ଦେଶେଦେଶେ ଗ୍ରାମେ ଗ୍ରାମେ ବୁଲିତାରଚାର
ଘରେ ଘରେ ବଳେ ପଶି କଲେ ଅତ୍ୟାଚାର ।
ସୁନ୍ଦରୀ ସ୍ତିରୀ ଦେଖିଲେ ହରିଲେ ତାହାକୁ
ତିନିପୁରେ ନ ମାନିଲେ ଦାନବେ ତାହାକୁ ।
ଅମରପୁରକୁ ଥାଟ ବାହିଲା ଦଇତ
ଭୟେ ସ୍ୱର୍ଗପୁର ଛାଡ଼ି ଗଲେ ଦଇବତ ।
ଇନ୍ଦ୍ର ଯମ କୁବେର ହିଁ ପଳାଇଲେ ଡରେ
ଅମରାବତୀ ପୁରରେ ପଶିଲେ ଅସୁରେ ।
ଅପସରାମାନଙ୍କୁ ସେ ବଳେ ନେଲେ ଧରି
ଦେବ ଭଣ୍ଡାରୁ ରତନମାନ ଜୂରକରି ।
ଦେବାଙ୍ଗ ବସନମାନ ପିନ୍ଧିଲେ ଦଇତେ
ଘୋର ଅତ୍ୟାଚର କଲେ ଅସୁରେ ଜଗତେ
ବେଳୁବେଳ ପ୍ରବଳ ଯେ ହେଲେ ନିଶାଚରେ
ତିନିଭୁବନର ଲୋକେ ରହିଲେ କାତରେ ।
ସମସ୍ତେ ବୋଇଲେ ଭୟେ ରଖ ଦଇତାରି
ଦୁଷ୍ଟ ଦାନବେ ହୋଇଲେ ବଡ଼ ଅତ୍ୟାଚାରୀ
ଏମନ୍ତେ ତିନିଭୁବନେ ପଡ଼ଇ କାତର
ମହା ପ୍ରତାପୀ ହୋଇଲା ହିରଣ୍ୟ ଅସୁର ।
ପୃଥିବୀକି ବାନ୍ଧିନେଇ ରଖିଲା ପାତାଳେ
ଦୈତ୍ୟ ଭୟେ ଇନ୍ଦ୍ର ଆଦି ଦଶଦିଗପାଳେ ।
ଲୁଚି ରହିଥିଲେ ମେରୁ ପର୍‌ବତେ ଯାଇଁ
ସୁରରାଜ ବୋଇଲେ ଯେ ବ୍ରହ୍ମାଙ୍କୁ ଅନାଇଁ ।
କେତେକାଳ ଏହିରୂପେ ଯିବ ଆମ୍ଭ ଦିନ
କେମନ୍ତେ ମରିବ ସେହି ଦାନବ ରାଜନ ।
ବ୍ରହ୍ମା ବୋଇଲେ ଯେ ଏହି କଳପର ଅନ୍ତେ
ମରିବ ଦାନବରାଜ ଶ୍ରୀବିଷ୍ଣୁର ହସ୍ତେ ।
ନିକଟ ହେଲାଣି ଆସି ତାହାର ମରଣ
ଏହି ମେରୁପୃଷ୍ଠ ଯଜ୍ଞ କର ଦେବଗଣ ।
ଯଜ୍ଞରେ ବିଷ୍ଣୁଙ୍କୁ ଥାପି କର ଆରାଧନା
ମରିବ ଦାନବ କିଛି ନ କର ଭାବନା ।
ଇନ୍ଦ୍ର ଆଦି ଦେବତାଏ କଲେ ମିଳି ଯାଗ
କେବଳ ଯଜ୍ଞେ ବିଷ୍ଣୁଙ୍କୁ ଦେଲେ ହବିର୍ଭାଗ ।
ଏମନ୍ତ ବରଷ ଯାଏ ଯାଗ କଲେ ବସି
ବିଷ୍ଣୁ ମନ୍ତ୍ରକୁ ଜପଇ କେହି ମହାଋଷି ।
କେହି ଶ୍ରୀବିଷ୍ଣୁ ପ୍ରତିମା ଥାପି ପୂଜା କରେ
କେହି ଗୋବିନ୍ଦ ମୁରାରି ନିରତେ ଉଚ୍ଚାରେ ।
କେହି କେହି ବିଷ୍ଣୁସ୍ତବ ପଢୁଥାନ୍ତି ବସି
କେହି ବୋଲନ୍ତି ଆମ୍ଭଙ୍କୁ ରଖ ବ୍ରହ୍ମରାଶି ।
କେହି ବୋଲନ୍ତି ପୃଥିବୀ ଦେବୀକି ଉଦ୍ଧାର
ଏମନ୍ତେ ଯେ ଋଷିମୁନି ହୋଇଣ କାତର ।
ଏକମୁଖେ ଶ୍ରୀହରିଙ୍କି ଡାକନ୍ତେ ନିରତେ
ଆତଙ୍କ ନାଶନ ହରି ଜଗତର ହିତେ ।
ବରାହ ମୂରତି ଧରି ଯଜ୍ଞେ ହେଲେ ଜାତ
ଶରୀର ଶ୍ୱେତ ନୟନ ଅଟଇ ଲୋହିତ ।
କରାଳ ବଦନ ଅତି ବିକଟ ଦଶନ
ପ୍ରଳୟ ସିନ୍ଧୁର ପ୍ରାୟ କରଇ ଗର୍ଜନ ।
ତେଜକୁ ଯେ କୋଟ ସୂର୍ଯ୍ୟ ନୋହିବେକ ସରି
ଯଜ୍ଞ ଅନଳ ମଧ୍ୟରୁ ବେଦ ଅବତରି ।
ଇନ୍ଦ୍ର ଆଦି ଦେବେ ଦେଖି ସେ ବରାହ ରୂପ
କରଯୋଡ଼ି ସ୍ତୁତିକଲେ ତେଜି ଜପ ତପ ।
କେ ବୋଲଇ ରଖ ହରି ଦାନବର ମୁଖୁଁ
କେ ବୋଲଇ ନିସ୍ତରିଲୁ ଆମ୍ଭେ ଏହି ଦୁଃଖୁଁ ।
କେ ବୋଲେ ଯଜ୍ଞବରାହ ପୃଥିବୀ ଉଦ୍ଧାର
ଏମନ୍ତେ ଯେ ସ୍ତୁତି କଲେ ଅନେକ ପ୍ରକାର ।
ଚାହୁଁ ଚାହୁଁ ଭୟଙ୍କର ରୂପକୁ ଧଇଲେ
କ୍ଷଣକ ମଧ୍ୟରେ ଦେବ ଆକାଶ ଘୋଟିଲେ ।
ପାତାଳପୁରେ ସେ ଯାଇଁ ହୋଇଲେ ପ୍ରବେଶ
ପୃଥିବୀ ଦେବୀକି ସେହି କରିଅଛି ଗ୍ରାସ ।
ପ୍ରତାପୀ ଦାନବ ଦେବ ଦେଇଛି ବୁଡ଼ାଇ
ଆପେ ପାତାଳେ ରହିଛି ପୁରେକ ଭିଆଇ ।
ପୃଥିବୀକି ଜଳମଗ୍ନ ଦେଖି ସେ ବରାହ
ପର୍ବତ ତୁଲ୍ୟ ବଢ଼ାଇ ଆପଣାର ଦେହ ।
ବଦନ ବିସ୍ତାର କରି ବଢ଼ାଇଲେ ଦାନ୍ତ
କେତେ ଯେ ବଢ଼ିଲା ତାର କେ ପାଇବ ଅନ୍ତ ।

ଜଳର ଭିତରେ ଗଲା ବାରାଦାନ୍ତ ଗଳି
ବୁଡ଼ିଥିବା ପୃଥିବୀକୁ ଧଇଲାକ ତୋଳି ।
ଦନ୍ତ ଅଗ୍ରେ ପଙ୍କ ଲାଗି ଆସଇ ଯେସନ
ବାରାଦାନ୍ତ ଅଗ୍ରେ ପୃଥ୍ୱୀ ଲାଗିଛି ତେସନ ।
ଜଳୁ ଉଦ୍ଧାରି ପୃଥ୍ୱୀକି ଥୋଇଲେକ ନେଇ
ପୂର୍ବପରି ଗିରି ଲତା ବୃକ୍ଷ ବିରାଜଇ ।
ନଦ ନଦୀ ସରୋବର କୂପ ବାମ୍ପୀ ଯେତେ
ରହିଅଛି ସବୁ କ୍ଷୟ ନୋଇଛି କିଞ୍ଚିତେ ।
ଚାର ଯାଇଁ ଜଣାଇଲା ହିରଣାକ୍ଷ ଆଗେ
ପୃଥିବୀ ଉଦ୍ଧାର କଲା ହରି ଦନ୍ତଅଗ୍ରେ ।
ବରାହ ରୂପକୁ ଧରି ତୋଳିଲା ଧରଣୀ
ଶୁଣି ମହା କୋପକଲା ଦୈତ୍ୟ ଚୂଡ଼ାମଣି ।
ଗଦା ଏକ ଧରି କରେ ଧାଇଁଲାକ ରୋଷେ
ତାର ପଛେ ପଛେ ଗଲେ ସକଳ ରାକ୍ଷସେ ।
କାଳ ଗ୍ରାସିବାରୁ ତାକୁ ହୋଇଛି ଯେ ମତ୍ତ
ନ ମାନଇ ଗିରି ଗୁହା ବୃକ୍ଷ କି ପର୍ବତ ।
ସବୁ ଏଡ଼ି ଦେଇ କ୍ରୋଧେ ଧାମଇ ଦାନବ
ପାତାଳେ ରହି ଅଛନ୍ତି ଯହିଁ ଆଦିଦେବ ।
ମିଳିଲା ସେଠାରେ ଯାଇଁ ହିରଣାକ୍ଷ ବୀର
ଦେଖିଲା ଯଜ୍ଞ ବରାହ ରୂପୀ ଚକ୍ରଧର ।
ଗଦାକୁ ବୁଲାଇ କୋପେ ମାଇଲା ନିଠାଇ
ଭାଙ୍ଗିଗଲା ଗଦାବର ଦୁଇଖଣ୍ଡ ହୋଇ ।
ବରାହର ପୃଷ୍ଟେ ଯହୁଁ ଗଦା ହେଲା ବ୍ୟର୍ଥ
କ୍ରୋଧେ ବରାହ ପୁଚ୍ଛକୁ ଧଇଲା ଦଇତ ।
ପୁଚ୍ଛ ଚାଳନ୍ତେ ଦଇତ ପଡ଼ିଲା ଭୂତଳେ
ବରାହ ଦାନ୍ତ ମାଇଲେ ତାର ଉର ସ୍ଥଳେ ।
ଛାତି ଫୁଟି ପିଠି ବାଟେ ବାହାରିଲା ଦାନ୍ତ
ଗର୍ଜନ କରି ଜୀବନ ହାରିଲା ଦଇତ ।
ସନ୍ଧ୍ୟାବେଳେ ଦଇତକୁ ମାଇଲେକ ହରି
ଜୟ ଜୟ ନାଦେ ପୂର୍ଣ୍ଣ ହେଲା ତିନିପୁରୀ ।
ବିକାଶିଲେ ଭୟଙ୍କର ରୂପ ସେ ବରାହ
ଏକଦନ୍ତେ ଫୁଟିଅଛି ଦାନବର ଦେହ ।
ଏକଦନ୍ତ ଅଗ୍ରେ ଲାଗି ରହିଛି ଧରଣୀ
ସେକାଳେ ସେ ରୂପକୁ କେ ଅନାଇବ ପୁଣି ।
ଯେହୁ ଚାହିଁବ ସେ ଯିବ ଯମ ନିକେତନ
ଦାନବ ସଇନି ହେଲେ ଭୟେ ଛନଛନ ।
ପଳାଇ ଯାଇଁ ପାତାଳେ ଜଳେକ ଲୁଚିଲେ
ପ୍ରହଲାଦକୁ ସମସ୍ତେ ଛାଡ଼ି ପଳାଇଲେ ।
ଏକମାତ୍ର ପ୍ରହଲାଦ ଅଛି ବୀରବେଶେ
ଆଉ କେହି ନାହାନ୍ତିସେ ବରାହର ପାଶେ ।
ବ୍ରହ୍ମା ଆସି ପହୁଞ୍ଚିଲେ ଦେବଗଣ ଘେନି
ସ୍ତୁତିକଲେ ଚାରିମୁଖେ ଦେବ ପଦ୍ମଯୋନି ।
ଜୟ ତୁ ଜୟ ତୁ ଯଜ୍ଞ ବରାହ ମୂରତି
ଜୟ ତୁ ଜୟ ତୁ ଦେବ କମଳାର ପତି ।
ଜୟ ତୁ ଜୟ ତୁ ଦେବ ଶ୍ରୀ ନୃସିଂହରୂପୀ
ଜୟ ତୁ ଜୟ ତୁ ଦେବ ଦେବ ବିଶ୍ୱବ୍ୟାପୀ ।
ହିରଣ୍ୟକଶିପୁ ମାରି ରଖିଲୁ ଅମର
ଏବେ ଏ ବରାହ ରୂପେ ଦେବ ଚକ୍ରଧର ।
ହିରଣାକ୍ଷ ଦାନବକୁ ଦନ୍ତେ ଦେଲୁ ଚିରି
ଦନ୍ତଅଗ୍ରେ ପୃଥିବୀକୁ ଆଣିଲୁ ଉଦ୍ଧାରି ।
ଏମନ୍ତେ ବହୁତ ସ୍ତୁତି କଲେ ବେଦବର
ପ୍ରସନ୍ନ ହୋଇ ବୋଇଲେ ଦେବ ଚକ୍ରଧର ।
ପୃଥ୍ୱୀବି ରଖିବି କାହିଁ କହ ପ୍ରଜାପତି
ବ୍ରହ୍ମା ବୋଇଲେ ହେ ଯଜ୍ଞ ବରାହ ମୂରତି ।
ଯହିଁ ଥିଲା ତହିଁ ରଖ ପୃଥିବୀକି ନେଇ
ଶ୍ୱେତ ବରାହ କଳପ ଆଜିଠାରୁ ହୋଇ ।
ବ୍ରହ୍ମାର ମୁଖୁ ଶୁଣିଣ ହିରଣ୍ୟ ବଇରୀ
ପୃଥ୍ୱୀବିକି ଥୋଇଲେ ଥିଲା ପୂର୍ବେ ଯେଉଁପରି ।
ଦନ୍ତେ ଫୋଡ଼ା ହୋଇଅଛି ହିରଣ୍ୟ ଦଇବ
ପ୍ରହ୍ଲାଦ ସ୍ତୁତି କରଇ ଯୋଡ଼ି ବେନିହସ୍ତ ।
ନୃସିଂହ ରୂପେ ମାଇଲୁ ପିତାକୁ ମୋହର
ବରାହ ରୂପେ ପୃଥିବୀ କଲୁ ତୁ ଉଦ୍ଧାର ।
ଖୁଡୁତାକୁ ମାଇଲୁ ତୁ ଦେବ ଦନ୍ତେ ଧରି
କେତେବେଳେ ଚତୁର୍ଭୁଜ ହେଉ ଚକ୍ରଧାରୀ ।
ତୋହର ଅଶେଷ ରୂପ ତୁ ଅନାଦି ଦେବ
କଳପେ କଳପେ ତୋର ଅନନ୍ତ ପ୍ରଭାବ ।
ବ୍ରହ୍ମା ଶିବ ନ ଜାଣନ୍ତି ମହିମା ତୋହର
ମୁଁ କାହୁଁ ଜାଣିବି ପୁଣି ଅଧମ ପାମର ।
ଦଇତକୁଳେ ଜନମ ମୋର ଦୁଷ୍ଟମତି
ହେ ଦେବ ତୋର ଚରଣେ ଶରଣ ମୁଁ ନିତି ।
ଏମନ୍ତେ ପ୍ରହ୍ଲାଦ ସ୍ତୁତି ଶୁଣି ଚକ୍ରଧର
ବୋଇଲେ ତୁ ରାଜା ହୁଅ ପ୍ରହ୍ଲାଦ କୁମର ।

ଏହା କହି ଅନ୍ତର୍ଦ୍ଧାନ ବରାହ ମୂରତି
ଶବକୁ ସଂସ୍କାର କରି ସେହି ମହାମତି ।
ନୃପତି ହୋଇ ପାଳିଲା ପୃଥିବୀ ପ୍ରହ୍ଲାଦ
ଜ୍ଞାନମାର୍ଗେ କଲା ଦୈତ୍ୟମାନଙ୍କୁ ପ୍ରବୋଧ ।
ବୋଇଲା ଅଧର୍ମ ଛାଡ଼ି ଧର୍ମେ ଦିଅ ମନ
ଧର୍ମ କଲେ ଚିର ହେବ ସିନା ଏ ଜୀବନ ।
ଜୀବଥିଲେ ସିନା ସୁଖ ଭୋଗେ ଯିବ କାଳ
ଧାର୍ମିକ ଲୋକକୁ ଯମ ନ କରେ କଟାଳ ।
ଅସୁର ବୁଦ୍ଧିକି ଛାଡ଼ି ମୁଖେ ବୋଲ ହରି
ଦୀନ ଗୋପୀନାଥ ବୋଲେ ଭବୁ ଯିବ ତରି

.....✲.....

## ବିଷ୍ଣୁ ସହିତ ପ୍ରହଲାଦର ଯୁଦ୍ଧ

ଶୁଣୁଛନ୍ତି ମୁନିମାନେ କହୁଛନ୍ତି ସୁତ
ଧର୍ମେ ପୃଥିବୀ ପାଳିଲା ପ୍ରହ୍ଲାଦ ଦଇତ ।
ତାହାର ରାଜ୍ୟେ ଯେତେକ ଅସୁର ଅସୁରୀ
ସମସ୍ତେ ମୁଖେ ବୋଲନ୍ତି ଦିବା ରାତି ହରି ।
ହରିର ଭକତ ଯହୁଁ ହୋଇଲେ ଦାନବେ
ମହାତେଜୋବନ୍ତ ହେଲେ ଶ୍ରୀବିଷ୍ଣୁ ପ୍ରଭାବେ ।
ବଳବନ୍ତ ଧନବନ୍ତ ହୋଇଲେ ସେ ପୁଣି
ଯାଗ ଯଜ୍ଞ କଲେ ଶସ୍ୟ ଫଳିଲା ଧରଣୀ ।
ସର୍ବଦା ଆଚାରବନ୍ତ ହୋଇଲେ ଦାନବେ
ଆଚାରୁ ଧର୍ମ ଉଦିତ ହେଲା ଠାବେ ଠାବେ ।
ଧର୍ମ ଆଶ୍ରା କରିବାରୁ ସ୍ୱଇଚ୍ଛାରେ ସତ
ରହିବାରୁ ସେ ଦାନବ ହେଲେ ସତ୍ୟବନ୍ତ ।
ସତ୍ୟ ରହିବାରୁ ଆସି ଆପଣା ଇଚ୍ଛାରେ
ଦୟା ଆସି ଆଶ୍ରେ କଲା ଦୈତ୍ୟଙ୍କ ଚିତ୍ତରେ
ଦୟା ରହିବାରୁ ମାୟା ଛାଡ଼ି ପଳାଇଲା
ମାୟା ଛାଡ଼ି ଯିବାରୁ ଯେ ଅହିଂସା ଅଇଲା ।
ଅହିଂସାକୁ ଦେଖି ହିଂସା ପଳାଇଲା ଡରେ
କ୍ଷମା ଆପଣା ଇଚ୍ଛାରେ ମିଳିଲା ସେ ପୁରେ ।
କ୍ଷମା ରହିବାରୁ ଲକ୍ଷ୍ମୀ ଆପେ ଆପେ ଆସି
ସଭାମଧ୍ୟେ ସେ ପ୍ରହ୍ଲାଦ ବୀର ଅଛି ବସି ।
ମିଳିଲେ ତହିଁ ଜଗତ ଜନ ଠାକୁରାଣୀ
ରୂପ ସଙ୍ଗରେ ଉପମା ଦେବ କେହୁ ପୁଣି ।
ଦେଖି ସେ ଅପୂର୍ବ ରୂପ ବୋଇଲା ପ୍ରହ୍ଲାଦ
ପ୍ରଫୁଲ୍ଲ ହୁଏ ତୁମ୍ଭଙ୍କୁ ଦେଖି ମୋର ହୃଦ ।

କିଏ ତୁମ୍ଭେ କେଉଁ ଠାରୁ ଆସିଛ କାହିଁକି
ହିମବନ୍ତର ଦୁହିତା ପାର୍ବତୀ ହେବ କି ।
କିବା ସିନ୍ଧୁରାଜ କନ୍ୟା ଜଗତ ମୋହିନୀ
କପଟ ନ କରି ସତ କହିବ ଜନନୀ ।
ଲକ୍ଷ୍ମୀ ବୋଇଲେ ମୋହର ନାମ ରାଜଲକ୍ଷ୍ମୀ
ତୋହର ପୁରେ ରହିବି ଆହୋ ଦୈତ୍ୟ ସ୍ୱାମୀ ।
ପ୍ରହ୍ଲାଦ ବୋଇଲା କିମ୍ପା ରହିବ ମୋ ପୁରେ
ମୁହିଁକି ଭାଜନ ମାତା ତୋତେ ରଖିପାରେ ।
ଲକ୍ଷ୍ମୀ ବୋଇଲେକ ଠାବ ମିଳୁ ନାହିଁ ମୋତେ
ସତ୍ୟ ଧର୍ମ ଦୟା କ୍ଷମା ଆସି ଏ ସମସ୍ତେ ।
ତୋର ପୁରେ ରହିଲେଣି ମୁଁ ରହିବି କାହିଁ
ତୋ ପୁର ବିନା ମୋହର ବାସ ଆଉ ନାହିଁ ।
ପ୍ରହ୍ଲାଦ ଏମନ୍ତ ଶୁଣି ପଡ଼ିଲା ଚରଣେ
ଗନ୍ଧ ପୁଷ୍ପେ ପୂଜିକରି ରଖିଲା ଭବନେ ।
ଲକ୍ଷ୍ମୀବନ୍ତ ହୋଇବାରୁ ତାର ପୁରଜନ
ବଇଷ୍ଣବୀ ଶକ୍ତିବଳେ ହୋଇଲେ ପ୍ରଧାନ ।
ଦେବତାଙ୍କଠାରୁ ହେଲେ ମହା ବଳବନ୍ତ
ଆପଣା ଇଚ୍ଛାରେ ଲୋକେ ହୋଇଲେ ଆୟତ ।
ମୁନିମାନେ ଯଜ୍ଞଭାଗ ଦେଲେ ତାଙ୍କୁ ଡାକି
ଯମ ଦେବତା ଯେ ପଶି ନ ପାରେ ତହିଁକି ।
ରୋଗ ଶୋକବ୍ୟାଧି ନାହିଁ ତାହାର ରାଜ୍ୟରେ
ଦେବତାମାନେ ଯେ ହିଂସା ବହିଲେ ମନରେ ।
କି ବୁଦ୍ଧି କରିବା ଆମ୍ଭେ କେମନ୍ତେ ବଞ୍ଚିବା
ଦାନବେ ତ ଭାଗ ନେଲେ କରି ହରିସେବା ।
ଅମରାବତୀ ସଭାରେ ପଡ଼ିଲା ଚହଳ
ଦଇବୀ ମାୟା ବିସ୍ତାର କଲେ ଆଖଣ୍ଡଳ ।
ତପୀ ଗୋଟିଏ ପଠାଇ ଦେଲେ ଦୈତ୍ୟପୁରେ
ପ୍ରହଲାଦ ବୀର ବସି ଅଛି ଆସ୍ଥାନରେ ।
ଥିବାରୁ ସେବେଳେ ରାଜ କାର୍ଯ୍ୟେ ଅସକତ
ବିପ୍ରେ ପୂଜି ନ ପାରିଲା ବିଷ୍ଣୁର ଭକତ ।
ବିପ୍ର ଅନାଦରେ ଦୋଷ ହୋଇଲା ତାହାର
କୋପଭରେ ଶାପଦେଲେ ସେହି ତପୀବର ।
ଯେଉଁ ଭକତି ପ୍ରଭାବେ ନ ଚିହ୍ନିଲୁ ମୋତେ
ଯାହାର ବଳେ ପୂଜିତ ହୋଇଛୁ ଜଗତେ ।
ସେହି ବଇଷ୍ଣବୀ ଶକ୍ତି ପାଇ ଯାଉ ଲୋପ
ଅନ୍ତର ହୋଇଲେ ମୁନି ଦେଇ ଏହି ଶାପ ।

ବିପ୍ର ଶାପକୁ ପ୍ରହ୍ଲାଦ ନ ପାରିଲା ଖଣ୍ଡି
ଧର୍ମରେ ସିନା ସେ ରାଜ୍ୟ ଗୋଟା ଥିଲା ମଣ୍ଡି
ଧର୍ମକୁ ଛାଡ଼ି ଅଧର୍ମେ ବଳିଲା ତା ଚିତ୍ତ
ପୁଣି ଅସୁର ଭାବକୁ ବହିଲା ଦଇତ ।
ଦାନବ ମାନଙ୍କୁ ଡାକି ବୋଇଲା ସଭାରେ
ଆମ୍ଭର ବଇରୀ ସିନା ଅଟନ୍ତି ଅମରେ ।
ତାହାଙ୍କୁ ଜିଣି ତାହାଙ୍କ ପୁର ଆମ୍ଭେ ନେବା
ଥାଟ ସାଜ ଆମ୍ଭେ ସ୍ୱର୍ଗ ଭୁବନକୁ ଯିବା ।
ସାଜିଲେକ ରଥ ଗଜ ପ୍ରଚଣ୍ଡ ଦାନବେ
ପୃଥିବୀକି କମ୍ପାଇଲେ ଦୈତ୍ୟ ମୁଖରାବେ ।
ଚାଲ ଚାଲ ମାର ମାର ଧର ଧର ବାଣୀ
ଶୁଣି ଅକାଳେ ଚମକ ପଡ଼ିଲା ଧରଣୀ ।
ଅସୁରଙ୍କ ସିଂହ ନାଦ ମେଘନାଦ ଜିଣି
ବୀରବାଦ୍ୟ କି ତାଙ୍କର ସିନ୍ଧୁ ଘୋଷ ଜିଣି ।
ବାସବ ଆଗେ କହିଲେ ଦେବଦୂତ ଯାଇଁ
ଯୁଝିବା ପାଇଁ ସ୍ୱର୍ଗକୁ ପ୍ରହ୍ଲାଦ ଆସଇ ।
ଶୁଣି ପୁରନ୍ଦର କୋପେ ସାଜିଲା ସଇନ୍ୟ
ଯମ କୁବେର ବରୁଣ ଅନଳ ପବନ ।
ଗ୍ରହଗଣ ତାରାଗଣ ମିଳିଲେ ସମସ୍ତେ
ସମରକଲେ ଦାନବ ରାଜନ ସଙ୍ଗତେ ।
ହିରଣାକ୍ଷର ନନ୍ଦନ ଅନ୍ଧକ ଅସୁର
ହର ବରେ ବଳବନ୍ତ ହେବାରୁ ସେ ବୀର ।
ଯମ ସୋମ ବାସବକୁ ଜିଣିଲା ସେ ରଣେ
ଭୟେ ଭାଙ୍ଗି ପଳାଇଲେ ତହୁଁ ଦେବଗଣେ ।
ଦେବତାଙ୍କୁ ଜିଣିବାରୁ ମହାଗର୍ବୀ ହେଲେ
ଯାଗ ନାଶି ମୁନି ବିପ୍ର ଗୋରୁ ହତ୍ୟା କଲେ ।
ଧର୍ମ କର୍ମ ଛାଡ଼ିଦେଲେ ଅଧର୍ମରେ ମତି
ଦିନେ ଯେ ସେହି ପ୍ରହ୍ଲାଦ କଶ୍ୟପର ନାତି ।
ମୃଗୟା ନିମନ୍ତେ ଗଲା ନଇମିଷ ବନେ
ନର ନାରାୟଣଙ୍କୁ ସେ ଦେଖିଲା ନୟନେ ।
ମୁନି ବେଶ ଧରି ତହିଁ କରୁଛନ୍ତି ତପ
ପାଶେ ଧନୁଶର ଅଛି ଦେଖିଣ ସେ ନୃପ ।
ବୋଇଲା ତପସ୍ୱୀ ହୋଇ କରୁଛ ଅନୀତି
ଜାଣିଲଇଁ ତୁମ୍ଭେ ଦୁହେଁ ଅଟ ମାୟା ଯତି ।
ତୁମ୍ଭଙ୍କୁ ମାଇଲେ ସିନା ହେବ ମୋର ଧର୍ମ
ତପୀ ହୋଇ କରୁଅଛ ଯେଣୁ ପାପ କର୍ମ ।
ଜୀବ ହିଂସା କର ତୁମ୍ଭେ ଯେଣୁ ଅସ୍ତ୍ରଧରି
ଆଜି ମୁଁ ତୁମ୍ଭ ଦୁହିଁଙ୍କୁ ପକାଇବି ମାରି ।
ଏହା କହି ଧନୁଧରି ନାରାଚ ବିନ୍ଧିଲା
ନର ତାହା ଦେଖି ବେଗେ ଧନୁକୁ ଧଇଲା ।
ତାର ପଛେ ନାରାୟଣ ଧରି ଶରାସନ
ପ୍ରହ୍ଲାଦ ଉପରେ କଲେ ନାରାଚ ସନ୍ଧାନ ।
ଯେତେକ ଶର ବିନ୍ଧନ୍ତି ଏହି ଦୁଇ ଭାଇ
ପ୍ରହ୍ଲାଦ ବୀର ତା ସବୁ ନାରାଚେ ଛେଦଇ ।
ପ୍ରହ୍ଲାଦ ଯେତେ ନରାଚ ବିନ୍ଧେ କୋପଭରେ
ନର ନାରାୟଣ ତାହା ଛେଦନ୍ତି ଯେ ଶରେ ।
ଏମନ୍ତେ ସମର ହେଲା ଜାଣ ଗୁରୁତର
କ୍ଷଣକେ ବିଶ୍ରାମ ନାହିଁ ତିନି ଜଣଙ୍କର ।
ସାତଦିନ ସାତରାତି ଗଲା ଏହିପରି
ପ୍ରହ୍ଲାଦ ଧନୁ କାଟିଲେ ନର ଶର ମାରି ।
ନିରସ୍ତ୍ର ହୋଇ ଗଦାଏ ଧଇଲା ପ୍ରହ୍ଲାଦ
ବୁଲାଇ ପିଟିଲା କୋପେ କରି ସିଂହନାଦ ।
ଗଦାକୁଛେଦି ଦ୍ୱିଖଣ୍ଡ କଲେ ନାରାୟଣ
ମୁଷ୍ଟି ଉଞ୍ଚାଇ ଧାଇଁଲା କୋପେ ଦୈତ୍ୟରାଣ ।
ଦେଖି ପରିଘ ମାଇଲେ କୋପେ ସେହି ନର
ମୂର୍ଚ୍ଛିତ ହୋଇ ପଡ଼ିଲା ପ୍ରହଲାଦ ବୀର ।
ଘଡ଼ିକେ ଚେତନା ପାଇ ଉଠି ବସେ ପୁଣି
ପୂର୍ବ ଜ୍ଞାନ ପାଇବାରୁ ସେ ଦାନବମଣି ।
ଦେଖିଲା ନାହାନ୍ତି ତହିଁ ସେ ତପସ୍ୱୀ ଦୁଇ
ବନରେ ପଶି ଅନେକ ସ୍ଥାନରେ ଖୋଜଇ ।
ନପାଇ ମନରେ ବସି ଭାଳଇ ଏମନ୍ତ
ନର ନାରାୟଣ ରୂପୀ ଅନନ୍ତ ଅଚ୍ୟୁତ ।
ମୁହିଁ ପାପୀ ନାରାୟଣ ଦୋରେହା ହୋଇଲି
ରାଜ୍ୟ ଲୋଭେ ମତ୍ତହୋଇ ଧର୍ମକୁ ଲଙ୍ଘିଲି ।
ବହୁତ ଅଧର୍ମ କରି ଅରଜିଲି ପାପ
ଏ ପାପ ନ ଯିବ ମୋର ନ କଲେ ମୁଁ ତପ ।
ଏମନ୍ତେ ଭାଳି ରାଜ୍ୟକୁ ଅଇଲା ସେ ଫେରି
ଅନ୍ଧକ ହସ୍ତେ ରାଜ୍ୟର ଭାର ଦେଇ କରି ।
ତୀର୍ଥ ଯାତ୍ରା କଲା ମୁଖେ ହରିଙ୍କି ଭଜିଲା
ଗୋପୀନାଥ ହରିପାଦେ ଶରଣ ପଶିଲା ।
କଳିଯୁଗେ ହରିନାମ ଗୋଟି ଅଟେ ସାର
ଅହର୍ନିଶି ଭଜନରେ ହୋଇ ତତପର ।

.....❖.....

## ଅନ୍ଧକ ପରାଜୟ

ବୋଲନ୍ତି ଯେ ସୁତମୁନି ଏଥୁ ଅନନ୍ତରେ
ଅନ୍ଧକ ପ୍ରବଳ ହେଲା ମହାଦେବ ବରେ ।
ରୁଦ୍ରଦେବ ଅଂଶରୁ ସେ ହୋଇଛି ସଂଭୂତ
ତାହାର ପ୍ରତାପ ସହି ନ ପାରେ ଜୀମୁତ ।
ତାହାର ଆଜ୍ଞା ଅବଜ୍ଞା କରି ନ ପାରଇ
ଯେତେବେଳେ କହଇ ସେ ଜଳ ବରଷଇ ।
ପବନ ଦେବତା ଡରେ ନ ବହଇ ରୋଷେ
ଯମଦେବତା ତାହାର ରାଜ୍ୟରେ ନ ପଶେ ।
ସୂର୍ଯ୍ୟଦେବତା ଦେଖିଲେ ନିସ୍ତେଜ ହୁଅନ୍ତି
ଚନ୍ଦ୍ର ଦେବତା ଅମୃତ କିରଣ ଢାଳନ୍ତି ।
ବାସବ ଦେବତା ଡରେହୋଇ ଆଜ୍ଞାକାରୀ
ଯାହା ସେ ମାଗଇ ତାହା ଦିଏ ଆଗ କରି ।
ଅନଳ ଦେବତା ଡରେ ନ ଟେକଇ ଶିଖା
ବରୁଣ ଦେବତା ରତ୍ନ ଦିଏ କରି ଶଙ୍କା ।
କୁବେର ଦେବତା ଧନ ଯୋଗାଇ ଦିଅଇ
ତାହାକୁ ଭୟରେ କେହି ଅସ୍ତ୍ର ନ ଧରଇ ।
ଆଜ୍ଞା ଲଙ୍ଘିବାକୁ କେହି ନାହିଁ ତିନି ପୁରେ
ଗର୍ଭବତୀ ଗର୍ଭ ଭାଙ୍ଗିଯାଏ ତାଙ୍କ ଡରେ ।
ଅନ୍ଧକ ପ୍ରାୟ ପ୍ରତାପୀ ନ ଥିଲା ଯେ କେହି
ସହି ନ ପାରି ରୋଦନ କରେ ବସି ମହୀ ।
ବ୍ରହ୍ମା ନକ୍ଷତ୍ର ଉଦୟ ନୁହନ୍ତି ତା ଡରେ
ଅନ୍ଧକ ବଳେ ଦାନବମାନେ ତିନିପୁରେ ।
ଇଛା ଅନୁସାରେ ଭ୍ରମି କରନ୍ତି ଅନୀତି
କଥା କହିବାକୁ ନାହିଁ କାହାର ଶକତି ।
ଏମନ୍ତେ ପ୍ରବଳ ହେଲେ କଉଣପ ବଳ
ବିଷ୍ଣୁ ଆଗରେ ଗୁହାରି କଲେ ଆଖଣ୍ଡଳ ।
ଶ୍ରୀହରି ବୋଇଲେ ମୋର ହସ୍ତେ ନ ମରିବ
ଉପାୟ କରି ହରିବା ଆମ୍ଭେ ତାର ଜୀବ ।
କିଛିଦିନ ରୁହ ତାର ଅଛଇ ଆୟୁଷ
କଷ୍ଟ ସହୁଥାଅ ତୁମ୍ଭେ ସକଳ ତ୍ରିଦଶ ।
ନାରାୟଣ ମୁଖୁଁ ଶୁଣି ଏମନ୍ତ ବଚନ
ମୁଖ ଶୁଖାଇ ଅଇଲେ ସହସ୍ର ଲୋଚନ ।
ପ୍ରହ୍ଲାଦ ସେଠାରୁ ଯାଇ ପ୍ରୟାଗେ ମିଳିଲା
ଗଙ୍ଗାସ୍ନାନ କରି ପୁଣି ଗଙ୍ଗାତୀର୍ଥ କଲା ।
ଏମନ୍ତ ସକଳ ତୀର୍ଥ କରି ପୁଣ୍ୟସ୍ଥାନେ
ବିଷ୍ଣୁ ଆରାଧନା କଲା ବସି ଯୋଗାସନେ ।
ମହାଯୋଗ ସାଧି ହେଲା ସେହି ଯୋଗୀବର
ନାରାୟଣଙ୍କୁ ଭେଟିଲା ହୃଦୟ ମଧ୍ୟର ।
ବିଷ୍ଣୁ ଦରଶନେ ହେଲା ଶାପରୁ ମୁକତ
ପୂର୍ବପରି ହେଲା ସେହି ବିଷ୍ଣୁର ଭକତ ।
ଦିନେ ଅନ୍ଧକ ପୃଥିବୀ କରନ୍ତେ ଭ୍ରମଣ
କଇଳାସ ପର୍ବତକୁ ଦେଖେ ଦୈତ୍ୟରାଣ ।
ଅପୂର୍ବ ସୁନ୍ଦର ଗିରି ଶୋଭା ଦେଖିଦେଖି
ଯାଉଁ ଯାଉଁ ଦେଖିଲା ସେ ସୁନ୍ଦରୀ ସୁମୁଖୀ ।
ତାହାକୁ ଦେଖି କନ୍ଦର୍ପ ବାଣେ ହେଲା ମୋହ
ସର୍ବାଙ୍ଗ କମ୍ପିଲା ପୁଣି କମ୍ପିଲା ତା ଦେହ ।
ଧରିବାପାଇଁ ତାହାଙ୍କ ପାଖକୁ ସେ ଗଲା
ଚାନ୍ଦକୁ ବାମନ କିବା ହାତ ବଢ଼ାଇଲା ।
କିବା ଆକାଶ କୁସୁମ ତୋଳିବାକୁ ଆସେ
ମରଣ ନିକଟ ତାର ହୋଇବାରୁ କି ସେ ।
ସର୍ପ ଲାଞ୍ଜ ଧରିବାକୁ ବଳାଇଲା ମନ
କାଳମୁଖେ ପଡ଼ିବ କି କରଇ ଗମନ ।
ସିଂହୀ ବଦନେ କି ଯାଏ ହାତ ଦେବାପାଇଁ
ହସି ହସି ନିକଟକୁ ଯାନ୍ତେ ଦୈତ୍ୟସାଇଁ ।
ଜାଣିପାରି ଲୁଚିଗଲେ ଜଗତଜନନୀ
ନ ପାଇ ଦାନବରାଜ ଅପୂର୍ବ କାମିନୀ ।
ମନେ ବିଚାରଇ ସତ କି ଅବା ସ୍ୱପନ
ବସିଥିଲା ସାକ୍ଷାତରେ ହୋଇଲେ ଗୋପନ ।
ଅନେକ ଖୋଜିଲା ଚିହ୍ନ ବର୍ଣ୍ଣ ନ ପାଇଲା
ବିସ୍ମୟ ବଦନେ ତହୁଁ ପୁରକୁ ଅଇଲା ।
ପାତ୍ର ମନ୍ତ୍ରୀଙ୍କର ଆଗେ କହିଲା ବିସ୍ତାରି
ସ୍ୱର୍ଗପୁରେ ଦେଖିଅଛି ମୁହିଁ ସୁରନାରୀ ।
କାମଦେବ ପତ୍ନୀକି ମୁଁ ଦେଖିଛି ନୟନେ
ଏମନ୍ତ ସୁନ୍ଦରୀ ନାହିଁ ଜାଣ ତ୍ରିଭୁବନେ ।
ପର୍ବତ ଉପରେ ଥିଲା ଗଲା ପୁଣି କେଣେ
କେତେବେଳୁ ମୋର ଅଙ୍ଗ ଥରେ ପଞ୍ଚବାଣେ ।
କି ବୁଦ୍ଧି କରିବି ତାକୁ କେମନ୍ତେ ପାଇବି
ତାହାର ବିହୁନେ ଦଣ୍ଡେ ବଞ୍ଚି ନ ପାରିବି ।
ଏମନ୍ତେ ଚିନ୍ତା କରଇ ଦସ୍ତି ରାତି ଦିନ
ତପସ୍ୟା ସାରି ହିରଣ୍ୟକଶିପୁ ନନ୍ଦନ ।

ଆପଣା ପୁରେ ପ୍ରବେଶ ହୋଇଲାକ ଆସି
ଦେଖିଲା ଅନ୍ଧକ ରାତିଦିନ ଭାଳେ ବସି ।
ପ୍ରହ୍ଲାଦ ବୋଇଲା ଭାଇ କି ବ୍ୟାଧି ତୋହର
କହିଲେ ଔଷଧିଆଣି ଦେବା ନା ସତ୍ୱର ।
ଅନ୍ଧକ ବୋଇଲା ଭାଇ କି କହିବି ମୁହିଁ
ଦିନେ ଭ୍ରମି ଆସୁଥିଲି ଚରାଚର ମହୀ ।
କଇଲାସ ପରବତେ ଏକଇ ଯୁବତୀ
ଦେଖିଲି ତା ତୁଲ୍ୟ ଆଉ ନାହିଁ ରୂପବତୀ ।
ବସିଥିଲା ମୋତେ ଦେଖି ଉଭାଇ ସେ ଗଲା
ତାହାର ରୂପ ମୋହର ନୟନେ ରହିଲା ।
ସବୁବେଳେ ସେ ରୂପକୁ ଭାଳୁଛି ରେ ଭାଇ
କି ବୁଦ୍ଧି କରିବି ମୋତେ ବୁଦ୍ଧି ଦିଶୁନାହିଁ ।
ଉପାୟ ଥିଲେରେ ଭାଇ କହିଦିଅ ମୋତେ
ଧ୍ୟାନେ ବସି ସେ ପ୍ରହ୍ଲାଦ କିଛିକ୍ଷଣ ଅନ୍ତେ ।
ବୋଇଲା ଜାଣିଲି ସେହି ପର୍ବତ ନନ୍ଦିନୀ
ଦେବ ଦେବ ଶିବଙ୍କର ଅଟଇ ଭାବିନୀ ।
ଜଗତର ମାତା ସେହି ଅନାଦି ଶକତି
ତାହାଠାରେ କାହିଁପାଇଁ ବଳାଉଛୁ ମତି ।
ସେ ଆମ୍ଭର ମାତା ଆମ୍ଭେ ତୋହର ନନ୍ଦନ
ଏ ପାପ କଥାରେ କିମ୍ପା ବଳିଲା ତୋ ମନ ।
ପରମ ଯୋଗୀ ଅଟନ୍ତି ଦେବ ମହେଶ୍ୱର
ତାହାର ମହିମା ପୁଣି ଦେବେ ଅଗୋଚର ।
କ୍ଷଣକରେ ତିନିପୁର ଯେ ଦହି ପାରଇ
ଯାହାର କୋପ ନୟନେ କାମ ଭସ୍ମଯାଇ ।
ଛାଡ଼ ଛାଡ଼ ବାବୁ ପାପ ବୁଦ୍ଧିକି ତୋହର
କ୍ଷଣକରେ ଯିବୁ ବାବୁ ସଞ୍ଜୀବନୀ ପୁର ।
ସ୍ୱଭାବେ ତ ପରସ୍ତିରୀ ଅଟେ ମାତା ସରି
ମାତୃହରଣ ପାତକ ଅର୍ଜିବୁ କିପରି ।
ପରସ୍ତିରୀ ଯେ ହରଇ ପଡ଼ଇ ନର୍କରେ
ଯମ ଯାତନା ଭୋଗଇ ଜନ୍ମ ଜନ୍ମାନ୍ତରେ ।

.....❀.....

## ଦେବୀ ମାହାତ୍ମ୍ୟ

ଆବର କଥାଏ ଶୁଣ କହୁଛି ରେ ଭାଇ
ସେହି ଦେବୀର ମହିମା ଅଦ୍ଭୁତ ଅଟଇ ।
ବରାହ ପୁରାଣେ ମୁହିଁ ଶୁଣିଅଛି ଯାହା
କହୁଛି ସଂକ୍ଷେପେ ଏବେ ତୋ ଆଗରେ ତାହା ।
ମହାଦେବ ବସିଛନ୍ତି ଦିନେ କଇଳାସେ
ପ୍ରମଥଗଣ ଅଛନ୍ତି ତାଙ୍କ ଚଉପାଶେ ।
ଏକାଳେ ବ୍ରହ୍ମା ସେଠାରେ ମିଳିଲେକ ଯାଇଁ
ଆଦର କଲେ ତାହାଙ୍କୁ ପ୍ରମଥ ଗୋସାଇଁ ।
ପଚାରିଲେ କାହିଁପାଇଁ ଆସି ଅଛ କହ
ବୋଇଲେ ଶିବଙ୍କୁ ଚାହିଁ ଦେବ ପିତାମହ ।
ଦୁଷ୍ଟ ମହିଷା ଅସୁର ମରିବ କିପରି
ଶୁଣି ହର ସୁମରିଲେ ଦେବ ଚକ୍ରଧାରୀ ।
ଗରୁଡ଼ ପୃଷ୍ଠରେ ବିଜେ କଲେ ନାରାୟଣ
ସ୍ନେହେ ମୁହଁ ଚାହାଁଚୁହିଁ ହେଲେ ତିନିଜଣ ।
ତିନିଙ୍କ ଦୃଷ୍ଟିରୁ ଜାତ ହେଲା ଏକ ନାରୀ
ସର୍ବାଙ୍ଗ ସୁନ୍ଦରୀ ସେହି ଅଟଇ କୁମାରୀ ।
ଶ୍ୱେତରକ୍ତା କୃଷ୍ଣବର୍ଣ୍ଣା ଅଟଇ ସେ ପୁଣି
କୁଞ୍ଚିତ କେଶ ତାହାର କି ସେ ନୀଳମଣି ।
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର କି ସେ ରୂପରାଶି
କପାଳ ଅତି ସୁନ୍ଦର ମୁଖ କିବା ଶଶୀ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେଖି ସେ କନ୍ୟାକୁ
ବୋଇଲେ କାହୁଁ ଅଇଲୁ କିମ୍ପାଇଁ ଏଠାକୁ ।
କୁମାରୀ ବୋଇଲେ ମୁହିଁ ତୁମ୍ଭର ଶକତି
ତୁମ୍ଭ ଦୃଷ୍ଟିରୁ ସଂଭୂତ ହୋଇଲି ସଂପ୍ରତି ।
ତୁମ୍ଭେ ଚିହ୍ନି ନ ପାରୁଛ ପଚାରୁଛ ମୋତେ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଶୁଣି ତୋଷଚିତ୍ତେ ।
ବୋଇଲେ ତ୍ରିକାଳ ନାମ ହୋଇଲା ତୋହର
ତିନିବର୍ଣ୍ଣେ ତିନିଗୋଟି ରୂପ ତୁ ଗୋ ଧର ।
ତତକ୍ଷଣେ ତିନିରୂପେ ହୋଇଲା ସେ ଉଭା
ତିନି ମୂରତି ପାଇଲେ ଏକୁ ଏକ ଶୋଭା ।
ଶ୍ୱେତବର୍ଣ୍ଣ କୁମାରୀ ଯେ ତହୁଁ ଗଲା ଆଗେ
ଶ୍ୱେତ ପରବତେ ବସି ତପ କଲା ବେଗେ ।
ରକ୍ତବର୍ଣ୍ଣା କୁମାରୀ ଯେ ଚାରୁ ଶୁଭ୍ରକେଶୀ
ମନ୍ଦର କନ୍ଦର ଯାଇଁ ତପ କଲା ବସି ।
କୃଷ୍ଣବର୍ଣ୍ଣା ଯାଇଁ ନୀଳ ଶଇଳେ ମିଳିଲା
ମନ କମଳକୁ ଥାପି ଘୋର ତପ କଲା ।
ଯେହୁ ଶ୍ୱେତବର୍ଣ୍ଣା ସେହି ବ୍ରହ୍ମାର ଶକତି
ସେହି ଦେବୀ ଏକାକ୍ଷର ସେହି ସରସ୍ୱତୀ ।
ରକ୍ତବର୍ଣ୍ଣା କୁମାରୀ ଯେ ଅଟଇ ବଇଷ୍ଣବୀ
ଯେହୁ କୃଷ୍ଣବର୍ଣ୍ଣା ସେହି କାଳ ଭଇରବୀ ।

ଶ୍ୱେତବର୍ଣ୍ଣା ଦେବୀର ଯେ ମହିମା ତୁ ଶୁଣ
ତପସ୍ୟାରେ ଗଲା ତାର ବହୁକାଳ ଜାଣ ।
ତପ କରୁ କରୁ ଦିନେ ଟଳିଲା ତା ଚିତ୍ତ
କୋଟି କୋଟି କନ୍ୟା ହେଲେ ତା ଦେହୁ ସଂଭୂତ ।
ତାହାଦେଖି ଦେବୀ କଲେ ସେ ପର୍ବତେ ଘର
ପାଚେରୀ ଉଆସ କୂପ ବାମ୍ପୀ ସରୋବର ।
ସୁନ୍ଦର ବଗିଚାମାନ କଲେ ତା ଭିତରେ
ରହିଲେ କୁମାରୀମାନେ ସୁଖେ ସେହି ପୁରେ ।
ତହିଁରୁ କେତେ ଦେବୀଙ୍କ ନାମ ତୁ ହୋ ଶୁଣ
ଯେତେ କନ୍ୟା ତେତେ ଘର ହେଲା ତହିଁ ଜାଣ ।
ଚନ୍ଦ୍ରକାନ୍ତି ସୂର୍ଯ୍ୟକାନ୍ତି ଘୃତାଚୀ ଉର୍ବଶୀ
ବିଦ୍ୟୁତପ୍ରଭା ବିଶାଳାକ୍ଷୀ ଧନ୍ୟା ଚାରୁକେଶୀ ।
ଚନ୍ଦ୍ରପ୍ରଭା ସୂର୍ଯ୍ୟପ୍ରଭା ପୀନପୟୋଧରା
ମଞ୍ଜୁକେଶୀ ଶଶିନୀ ଯେ ସୁଜାତା ଗମ୍ଭୀରା ।
ତରୁମୁଖୀ ଗିରିସୁତା ଜୟା ଶିବଦୂତୀ
ସ୍ୱୟଂପ୍ରଭା ବିଭାବର ବିଜୟା ଜୟନ୍ତୀ ।
ଆବର ଅପରାଜିତା ଏମାନେ ପ୍ରଧାନ
ପାଶ ଅଙ୍କୁଶ ଶକତି ହସ୍ତେ ଶରାସନ ।
ବସିଛନ୍ତି ବଇଷ୍ଣବୀ ଦେବୀ ସିଂହାସନେ
ସେବା କରୁଛନ୍ତି ତାଙ୍କୁ ଅନୁଚରୀମାନେ ।
ଏକାଳେ ନାରଦ ଆସି ମିଳିଲେ ସେ ପୁରେ
ଅପୂର୍ବ ଶୋଭା ତାହାର ଦେଖି ନୟନରେ ।
ଆଶ୍ଚର୍ଯ୍ୟ ହୋଇ ଭିତରେ ପଶିଲେ ଯେ ମୁନି
ଦେଖିଲେ ତହିଁ ଅଛନ୍ତି ଅସଂଖ୍ୟ କାମିନୀ ।
ଏକୁ ଏକ ରୂପବତୀ ସୁନ୍ଦରୀ କୁମାରୀ
ରତ୍ନ ସିଂହାସନେ ବସିଅଛି ଏକ ନାରୀ ।
ଯୋଗବଳେ ଜାଣିଲେ ଏ ବିଷ୍ଣୁର ଶକତି
ତାହାଙ୍କ ପାଦେ ପ୍ରଣାମ କଲେ ମହାଯତି ।
ମୁନିଙ୍କ ଦେବୀ ବହୁତ କଲେ ଗଉରବ
ବୋଇଲେ ମୁନି ତୁମ୍ଭର ଅତୁଳ ପ୍ରଭାବ ।
କଳିପ୍ରିୟ ମୁନି ତୁମ୍ଭେ ଖୋଜୁଥାଅ କଳି
କାହୁଁକେମନ୍ତେ ଅଇଲେ ମନରେ କି ଭାଳି ।
ବିଦ୍ୟୁଦ୍‌ପ୍ରଭାକୁ ଚାହିଁ ବୋଇଲେକ ପୁଣି
ବସିବା ପାଇଁ ଆସନ ବେଗେ ଦିଅ ଆଣି ।
ସୁବାସ ଜଳେ ଚରଣ ଦୁଇ ଦିଅ ଧୋଇ
ପାଦ୍ୟ ପୂଜା କର ଅର୍ଘ୍ୟଗନ୍ଧ ପୁଷ୍ପଦେଇ ।
ବିଦ୍ୟୁଦ୍‌ପ୍ରଭାକୁ କହିବା ମାତ୍ରେ କଲା ତାହା
ନାରଦ ମୁନି ବୋଇଲେ ଶୁଣ ବିଷ୍ଣୁ ମାୟା ।
ବ୍ରହ୍ମପୁରେ ଥିଲି ତହୁଁ ଗଲି ଇନ୍ଦ୍ରପୁରେ
ସଭାରେ ଇନ୍ଦ୍ର ବସିଛି ଦୁଃଖିତ ମନରେ ।
ତହୁଁ ଆସି କଇଳାସେ ଶିବଙ୍କୁ ଭେଟିଲି
ମହାଯୋଗୀଙ୍କି ସେଠାରେ ଦରଶନ କଲି ।
ତବ ଦରଶନ ପାଇଁ ପଶିଲି ଏ ପୁରେ
ଏଠାରୁ ଯିବି ମୁଁ ପୁଣି ବଇକୁଣ୍ଠପୁରେ ।
ଦେବୀ ବୋଇଲେ ଭୋ ମୁନି ବାସବ କିମ୍ପାଇଁ
ସଭାମଧ୍ୟେ ବସିଥିଲେ ମୁହଁକୁ ଶୁଖାଇ ।
ନାରଦ ମୁନି ବୋଇଲେ ଅସୁରଙ୍କ ଡରେ
ବଦନ ଶୁଖାଇ ବସିଥିଲେ ସେ ସଭାରେ ।
ଦେବୀ ବୋଇଲେ ଭୋ ମୁନି କେବଣ ଅସୁର
ତାହାକୁ କିମ୍ପାଇଁ କହ ବାସବର ଡର ।
ନାରଦ ମୁନି ବୋଇଲେ ତା ନାମ ମହିଷ
ବଡ଼ ପ୍ରତାପୀ ଅଟଇ ସେ ଦାନବ ଈଶ ।
ସ୍ୱର୍ଗକୁ ଧାଡ଼ି ଦେବାକୁ କରୁଛି ବିଚାର
ତେଣୁ ଶୁଖି ଯାଇଅଛି ମୁଖ ବାସବର ।
ଏମନ୍ତେ କହି ମେଲାଣି ମାଗି ମୁନିବର
ଚରଣେ ପ୍ରଣମି ତହୁଁ ହୋଇଲେ ଅନ୍ତର ।
ସମୁଦ୍ରର ତୀରେଅଛି ଦାନବର ପୁରୀ
ବହୁତ ଅଛନ୍ତି ତହିଁ ଅସୁର ଅସୁରୀ ।
ସେ ନଗରୀ ନାମ ଦେଇଅଛି ସେ ମହିଷ୍ମ
ଗଡ଼ ବାନ୍ଧି ରହିଅଛି ଅସୁର ମହିଷ ।
ଆପଣାର ନାମ ଯାହା ପୁର ନାମ ତାହା
ବଡ଼ ପ୍ରତାପୀ ଅଟଇ ଦାନବର ନାହା ।
ମହିଷ ଆକୃତି ତାର ଦୁଇଗୋଟି ଶିଙ୍ଘ
ବ୍ରହ୍ମାର ବରେ ହୋଇଛି ସେ ଅସୁର ସିଂହ ।
ତହିଁ ଯାଇଁ ମୁନିବର ହୋଇଲେ ପ୍ରବେଶ
ମୁନିଙ୍କି ଦେଖି ଚରଣ ବନ୍ଦିଲା ମହିଷ ।
ବସିବାକୁ ଦେଲା ଆଣି ଆସନ ଖଣ୍ଡିଏ
କାହିଁଥିଲୁ ମୁନି ବୋଲି ପଚାରିଲା ରାୟେ ।
ନାରଦ ବୋଇଲେ ଆହୋ ଅସୁର ରାଜନ
ଦେଖି ଅଇଲି ଗୋଟିଏ ରମଣୀ ରତନ ।
ତିନି ଭୁବନରେ ନାହିଁ ତା ତୁଲ୍ୟ ସୁନ୍ଦରୀ
କେ କହି ପାରିବ ମୁଖେ ତା ରୂପ ମାଧୁରୀ ।

ଶତ ଶତ କନ୍ୟା ତାର କରୁଛନ୍ତି ସେବା
ସେ କନ୍ୟାମାନଙ୍କ ରୂପ ଆମ୍ଭେ କି ବର୍ଣ୍ଣିବା ।
ଏକୁ ଏକ ସୁନ୍ଦରୀ ସେ ଅନୁପମ ମୂର୍ତ୍ତି
ସମସ୍ତେ ତାପସୀ ପୁଣି ହୋଇଛନ୍ତି ବ୍ରତୀ ।
ଦେବଲୋକ ନାଗଲୋକ ଦାନବଙ୍କ ପୁର
ଗନ୍ଧର୍ବ ଲୋକ କୁବେର ଭୁବନ ଆବର ।
ସପତ ପାତାଳ ପୁଣି ସପତ ଯେ ଦ୍ୱୀପ
ମୁହିଁ ଭ୍ରମଣ କରଇ ଜାଣ ଦୈତ୍ୟ ଭୂପ ।
ଏମନ୍ତ ଅପୂର୍ବ କନ୍ୟା ଦେଖି ନାହିଁ କାହିଁ
ମନେ ବିଚାରିଲି ତାର ଲାଖି ବର ତୁହି ।
ବ୍ରହ୍ମାଠାରୁ ଯେଉଁ ବର ପାଇଛୁ ରାଜନ
ତୋତେ ଜିଣିବାକୁ କେହି ନୋହିବେ ଭାଜନ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ବରୁଣ କୁବେର
ଅନିଳ ଅନଳ ବସୁ ବାସବ ଆବର ।
ଯମହିଁ ତୋତେ ସମରେ ପଳାଇବ ହାରି
ଏଣୁ ତୁହି ତିନିପୁରେ ଅଟୁ ଅଧିକାରୀ ।
ତ୍ରିଲୋକ ଈଶ୍ୱରୀ ସେହି ତୁ ତ୍ରିଲୋକେଶ୍ୱର
ବିଧାତାର ଘଟସୂତ୍ର ତୁ ତାହାର ବର ।
ଶୁଣି ସେ ଦାନବପତି ବୋଇଲା ଭୋ ମୁନି
କହ କାହିଁ ଅଛଇ ସେ ଅପୂର୍ବ କାମିନୀ ।
ମୁନି ବୋଇଲେ ମନ୍ଦର କନ୍ଦରେ ତା ଘର
ତାହାର ପୁର ଶୋଭାକୁ ନାହିଁ ପଟ୍ଟାନ୍ତର ।
ଦେବ ଗନ୍ଧର୍ବଙ୍କୁ ଯେହୁ ଜିଣିବ ସମରେ
ସେ ଦେବୀ ତାହାର କର ଧରିବ ତା ଡରେ ।
ଏମନ୍ତ କହି ନାରଦ ମାଗିଲେ ମେଲାଣି
ବୀଣା ବଜାଇ ଗଗନ ମାର୍ଗେ ଗଲେ ପୁଣି ।
ହରିନାମ ଗାଇ ବ୍ରହ୍ମା ଭୁବନେ ମିଳିଲେ
ଅସୁର ମନ ଉଚ୍ଚାଟ କରି ଚଳିଗଲେ ।

.....❋.....

## ମହିଷାସୁର, ଇନ୍ଦ୍ରର ଯୁଦ୍ଧ ଓ ଇନ୍ଦ୍ରର ପଳାୟନ

ନାରଦ ମୁଖରୁ ଶୁଣି ମହିଷା ଅସୁର
ଭାଳିଲା ବସି କନ୍ୟାର ରୂପ ନିରନ୍ତର ।
ପ୍ରଧାନ ମନ୍ତ୍ରୀ ଯେ ତାର ନାମ ଅଳଂଶର୍ମା
ପ୍ରଘସ ନାମେ ଅସୁର ସେ ବିଚିତ୍ରକର୍ମା ।
ବିଭାବସୁ ଶଙ୍କୁ କର୍ଣ୍ଣ ବିଘଷ ଏ ତିନି
ଏହାଙ୍କ ନାମ ଶୁଣିଲେ କମ୍ପଇ ମେଦିନୀ ।
ବିଦ୍ୟୁନ୍ମାଳୀ ସୁମାତି ଯେ ପର୍ଜନ୍ୟ ଆବର
ବହୁଶ୍ରୁତ ବିକ୍ରାନ୍ତ ଯେ କ୍ରୂରନାମେ ବୀର ।
ନୀତି ଶାସ୍ତ୍ରରେ ପ୍ରବୀଣ ଏହି ଆଠ ଜଣ
ଏହାଙ୍କୁ ଡାକି ବିଚାର କଲା ଦୈତ୍ୟରାଣ ।
ସଭାରେ ବସି ବୋଇଲେ ଆଠଜଣଯାକ
କି ନିମନ୍ତେ ଡାକିଅଛ ଅସୁର ନାୟକ ।
ଶୁଣି ମହିଷାଅସୁର ବୋଇଲେ ସଭାରେ
ଶୁଣିଥିଲା ଯେଉଁ ରୂପେ ଦାନବ ମୁଖରେ ।
କନ୍ୟାରତ୍ନକୁ କେମନ୍ତେ ପାଇବି ଯେ ମୁହିଁ
ତହିଁର ଉପାୟ କିଛି ମୋତେ ଦିଶୁନାହିଁ ।
ମୁନି କହିଛନ୍ତି ଆଗ ଜିଣିଲେ ଇନ୍ଦ୍ରକୁ
ତେବେ ସେହି କନ୍ୟାଲାଭ ହୋଇବ ତୁମ୍ଭଙ୍କୁ ।
ଏଥିର ବିଚାର କର ମିଳି ମନ୍ତ୍ରିଗଣ
ଦୈତ୍ୟପତି କଥା ଶୁଣି ପ୍ରଘସ ଭାବିଣ ।
ବୋଇଲା ନାରଦ ମୁଖୁ ଶୁଣିଲଟି ଯାହା
ମନ ନ ବଳାଅ ତାହାଠାରେ ଦୈତ୍ୟନାହା ।
କନ୍ୟା ରୂପ ଧରିଅଛି ସେହି ମହାସତୀ
ଅଟଇ ସେ ବଇଷ୍ଣବୀ ବିଷ୍ଣୁର ଶକତି ।
ଗୁରୁପତ୍ନୀ ରାଜପତ୍ନୀ ସାମନ୍ତ ଘରଣୀ
ହରିବା ଲୋକକୁ ମହା ପାପୀ ମଧ୍ୟେ ଗଣି ।
ଏମାନେ ଅଗମ୍ୟ ବୋଲି ଶାସ୍ତ୍ର ବଖାଣଇ
ଅଗମ୍ୟା ଗମନା କଲେ ଶିରୀ ଚ୍ୟୁତ ହୋଇ ।
ବିଘସ ବୋଇଲା ସତ କହିଲା ପ୍ରଘସ
ମୋର ବିଚାରକୁ ଯାହା ଆସେ ଦୈତ୍ୟଈଶ ।
ତାହା ମୁହିଁ କହୁଅଛି ଶୁଣ ମନ ଦେଇ
କନ୍ୟାରତ୍ନ ଯେବେ ନିଜେ ବରଣ କରଇ ।
ତେବେ ତାହାକୁ ଅବଶ୍ୟ କରିବା ଗ୍ରହଣ
ରତ୍ନରେ ତାହାର ଲୋଭ ନ ବଢ଼ଇ ପୁଣ ।
ଆପଣା ଇଚ୍ଛାରେ ଯେବେ ରତ୍ନ ମିଳେ ଆସି
ତାକୁ ଛାଡ଼ି ପାରିବା କି ବିଚାରନ୍ତୁ ବସି ।
ତାହାକୁ ପାଇବା ପାଇଁ କରିବା ନା ଯତ୍ନ
ଯତ୍ନକଲେ ସିନା ମିଳି ପାରିବ ସେ ରତ୍ନ ।
ପଠାଇବା ଆଗେ ତାହା ପାଖକୁ ଯେ ଦୂତ
ସେ ଯାଇଁ ବୁଝାଇ କହୁ ତାହାକୁ ସମସ୍ତ ।

ତହିଁରେ ଯେବେ ସେ ନାରୀରତ୍ନ ନ ଭଜଇ
ତାହାର ମନ ଯାହାର ମନରେ ମିଳଇ ।
ତାକୁ ଧନ ରତ୍ନଦେଇ କରିବା ନା ବଶ
ତହିଁରେ ନ ହେଲେ ଧନେ କରିବାନା ତୋଷ ।
ତହିଁରେ ଯେବେ ଆୟତ୍ତ ନୋହିବ ସେ ନାରୀ
ଦଣ୍ଡ ବିଧାନେ ଡରାଇ ଆଣିବା ନା ଧରି ।
ତହିଁରେ ବଶ ନୋହିଲେ କରିବା ନା ରଣ
ବଳେ ଧରି ଆଣିବାନା ଘେନି ନିଜ ସୈନ୍ୟ ।
ବିଘସ ରାକ୍ଷସ କଥା ଶୁଣ ମନ୍ତ୍ରିଗଣ
ବୋଇଲେ ମନ୍ତ୍ରୀ କୁଳରେ ତୁହି ଧନ୍ୟ ଧନ୍ୟ
ଏମନ୍ତ ଶୁଣି ବୋଲଇ ମହିଷ ଅସୁର
ବିଦ୍ୟୁତ୍‌ପ୍ରଭା ନାମରେ ଯେଉଁ ମନ୍ତ୍ରୀବର ।
ତାହାକୁ ଚାହିଁ ବୋଲଇ ତୁ ଅଟୁ ପଣ୍ଡିତ
ତୁହି ଏକା ଏ କାର୍ଯ୍ୟରେ ହୋଇପାରୁ ଦୂତ ।
ଯେମନ୍ତେ ରମଣୀବର ଆମ୍ଭଙ୍କୁ ଭଜଇ
ନାନାବି ପ୍ରକାରେ ସବୁ କହିବୁ ବୁଝାଇ ।
ତହିଁକି ଦୂତ ପଠାଇ ବୋଲଇ ସେ ପୁଣି
ବାସବକୁ ଯେବେ ଆମ୍ଭେ ପାରିବାଟି ଜିଣି ।
ସବୁ ଦିଗପାଳେ ହେବେ ଆମ୍ଭ ଆଜ୍ଞାକାରୀ
ଆମ୍ଭଙ୍କୁ ଭଜିଲେ ଶତ ଶତ ସୁରନାରୀ ।
ସ୍ୱର୍ଗ ଅପସରା ବଳେ ଆସିବେ ମୋ ପୁରେ
ଯକ୍ଷ ନାଗ ବିଦ୍ୟାଧର ଗନ୍ଧର୍ବ କିନ୍ନରେ ।
ଏମାନେ ମୋ କଥାଭାଙ୍ଗି ନ ପାରିବେ କେବେ
ବିଳମ୍ବ ନ କର ଯିବା ଚାଲ ସ୍ୱର୍ଗେ ଆମ୍ଭେ ।
ଏହା କହି ସେ ମହିଷ ଅସୁର ରାଜନ
ସେନାପତିକି ଡକାଇ କହିଲା ଏସନ ।
ତୋର ନାମ ବିରୂପାକ୍ଷ ତୁହି ମହାବଳ
ରୂପେ ତୋତେ ସରି ନୋହେ ସୁନିଳ ଶଇଳ ।
ବେଗେ ରଥ ଗଜ ଅଶ୍ୱ ପାଇକ ପଦାତି
ସଜକରି ଆସ ନେବା ସ୍ୱର୍ଗର ସମ୍ପତ୍ତି ।
ଆଜ୍ଞାପାଇ ସେନାପତି ସାଜିଲାକ ଥାଟ
ସମସ୍ତେ ବାନ୍ଧି ଅଛନ୍ତି ଶିରେ ଜୟପାଟ ।
ରତ୍ନ ଅଳଙ୍କାରେ ଶୋଭା ପାଉଛି ଶରୀର
ଇନ୍ଦ୍ର ତୁଲ୍ୟ ଏକୁ ଏକ ମହା ବଳୀୟାର ।
ତାହାଙ୍କ ମଧ୍ୟେ ପ୍ରଧାନ ବୀରଥିଲେ ଯେତେ
ତାହାର ସଂଖ୍ୟା କହୁଛି ମୁଁ ତୋର ଅଗ୍ରତେ ।

ଅବୁଁ ଦେକ ନବକୋଟି ମହା ମହା ବୀର
ଦିଶନ୍ତି ସେମାନେ ପୁଣି ପର୍ବତ ଆକାର ।
ଜଣେ ଯେଉଁବାଟେ ଯାଏ ସମସ୍ତେ ସେବାଟେ
ଗମନ କରନ୍ତି ନାହିଁ ବିଶୃଙ୍ଖଳା ଥାଟେ ।
କେହି ଧଳା କେହି କଳା କେହି ରଙ୍ଗବର୍ଣ୍ଣ
କେବଣ ଅସୁର ଗୋଟି ଦିଶଇ ବିବର୍ଣ୍ଣ ।
କେହି ଘୋଡ଼ାମୁହାଁ କେହି କେହି ଗଜମୁଖ
କେହି ବା ଦୁର୍ମୁଖା କେହି କେହି ବା ସୁମୁଖ ।
ଗଜ ଅଶ୍ୱ ଗଧ ଓଟ ବ୍ୟାଘ୍ର ଶ୍ୱାନ ଛାଗ
ପୃଷ୍ଠରେ ବସି ଗମନ୍ତି ହୋଇ ବେଗ ବେଗ ।
ବିଚିତ୍ରଧ୍ୱଜା ପତକା ଉଡ଼ାଇ ଗଗନେ
ମହିଷ ଅସୁର ଦେଖି ଆନନ୍ଦିତ ମନେ ।
ମତ୍ତ ମାତଙ୍ଗ ଉପରେ ବିଜେ କଲା ଯାଇଁ
କାମରୂପୀ ମହାବଳ ଦଇତ ଅଟଇ ।
ମେରୁଗିରି ବାଟେ ଗଲେ ସ୍ୱର୍ଗ ଭୁବନକୁ
ଆଦ୍ୟେ ବେଢ଼ିଲେ ଅମରାବତୀ ନଗରୀକୁ ।
ଅସୁରଙ୍କୁ ଦେଖି ଦେବ ଉଠି କ୍ରୋଧଭରେ
ବାହନ ଆରୋହୀ ବେଗେ ପଶିଲେ ସମରେ ।
ତର୍ଜନ ଗର୍ଜନ କରି କଲେ ଘୋର ରଣ
ଅସୁର ସେନାପତିଙ୍କ ନାମ ତୁହୋ ଶୁଣ ।
ନୀଳକୁକ୍ଷି ମେଘବର୍ଣ୍ଣ ଅଞ୍ଜନ ଅସୁର
ବଳାହକ ଉଦରାକ୍ଷ ଲଲାଟାକ୍ଷ ବୀର ।
ସୁଭୀମ ସ୍ୱର୍ଭାନୁ ଭୀମ ବିକ୍ରମ ଏ ଆଠ
ଅଷ୍ଟବସୁଙ୍କ ଆଗରେ ହେଲେ ଯାଇ ଭେଟ ।
ସ୍ତବ୍ଧକର୍ଣ୍ଣ ଶଙ୍କୁକର୍ଣ୍ଣ ବଜ୍ରକ ଭୀମାକ୍ଷ
ଜ୍ୟୋତିବୀର୍ଯ୍ୟ ବିଦ୍ୟୁନ୍ମାଳୀ ଅସୁର ରକ୍ତାକ୍ଷ ।
ଭୀମଦଂଷ୍ଟ୍ର ବିଦ୍ୟୁଜିହ୍ୱା ବୀର ମହାକାୟ
ଦୀର୍ଘବାହୁ କୃତାନ୍ତକ ଦୈତ୍ୟ ଅତିକାୟ ।
ବାର ଆଦିତ୍ୟଙ୍କ ସଙ୍ଗେ ଭେଟ ଏହି ବାର
କାଳ କୃତାନ୍ତ ପିଙ୍ଗାକ୍ଷ ହରଣ ଆବର ।
ମିତ୍ରହା ଯଜ୍ଞହା ନଳ ବ୍ରହ୍ମହା ଗୋଘନ
ସ୍ତ୍ରୀଘନ ଯେ ସମ୍ବର୍ତ୍ତକ ଏ ଏଗାର ଜଣ ।
ଏକାଦଶ ରୁଦ୍ରସଙ୍ଗେ କଲେ ଘୋର ରଣ
ଏମନ୍ତେ ଜଣଙ୍କ ସଙ୍ଗେ ଦୈତ୍ୟ ଏକଜଣ ।
ଘୋର ଯୁଦ୍ଧ ଆରମ୍ଭିଲେ ଦେବତା ଦାନବ
ମହିଷ ଅସୁର ସଙ୍ଗେ ଯୁଝିଲେ ବାସବ ।

ବ୍ରହ୍ମାବରେ ପ୍ରତାପୀ ସେ ହୋଇଛି ଅସୁର
ଜିଣି ନ ପାରିବେ ତାକୁ ଯୁଦ୍ଧେ ହରି ହର ।
ବହୁତ ଅସୁର ମାରି ପକାଇଲେ ଦେବେ
ଦେବସଇନ୍ୟ ମାଇଲେ ଦୁରନ୍ତ ଦାନବେ ।
ଶୂଳପଟ୍ଟିଶ ମୁଦ୍‌ଗର ଗଦା ଚକ୍ର କାତି
ନାରାଚ ବ୍ରହ୍ମଶକତି ପରିଘ ଶକତି ।
ମରାମରି ହୋଇ ମଲେ ଦୁଇପକ୍ଷ ସୈନ୍ୟ
କେହି ଧରାଧରି ହୋଇ କରୁଛନ୍ତି ରଣ ।
ଗଡ଼ାଗଡ଼ି ହୋଇ ତଳେ ପଡ଼ନ୍ତି କେ ବୀରେ
ଦେବରାଜ ଅସୁରକୁ ନ ପାରି ସମରେ ।
ପଳାଇଲେ ମରଣକୁ ଭୟକରି ବେଗେ
ବାସବ ଭାଗିବା ଦେଖି ଦେବେ ପୃଷ୍ଠଭଙ୍ଗେ ।
ପଛେ ପଛେ ପଳାଇଲେ ନ ରହିଲେ କେହି
ଶରଣ ପଶିଲେ ବ୍ରହ୍ମାଚରଣରେ ଯାଇଁ ।
ଅଭୟ ବର ତାହାଙ୍କୁ ଦେଲେକ ବିଧାତା
ଦ୍ୱିଜ ଗୋପୀନାଥ ବୋଲେ ଶୁଣ ଆନ କଥା ।

.....❋.....

## ଦୂତବାକ୍ୟ ଓ ମହିଷାସୁର ଜନ୍ମ

ଅନ୍ଧକ ଦୈତ୍ୟ ଶୁଣଇ ପ୍ରହ୍ଲାଦ ବୋଲଇ
ବିଦ୍ୟୁତ୍‌ ପ୍ରଭା ଦାନବ ଗଲା ଦୂତ ହୋଇ ।
ମନ୍ଦର କନ୍ଦରେ ଯାଇ ହୋଇଲା ପ୍ରବେଶ
ଦେଖିଲା ଅପୂର୍ବ ପୁର ସ୍ୱର୍ଗର ସଦୃଶ ।
ଯେତେ ନାରୀ ତେତେ ଘର ସବୁ ଦିଶେ ଧଳା
ତୋରଣ ମାଳାରେ ଗୁନ୍ଥା ହୋଇଛି ପୋହଳା
ହୀରା ନୀଳା ଖମ୍ବ ସବୁ ବଇଦୁର୍ଯ୍ୟ ବତା
ସୁବର୍ଣ୍ଣ ରୁଅରେ ଝରା ଲାଗିଛି ମୁକୁତା ।
ରୂପାର କାନ୍ଥେ ପିତୁଳାମାନ ଅଷ୍ଟରତ୍ନେ
କେଉଁ ବିନ୍ଧାଣି ଗଢ଼ିଛି ସେ ପୁରକୁ ଯତ୍ନେ ।
ଗବାକ୍ଷର ଜଳା ସବୁ ଘରେ ବିରାଜଇ
ପୁରକୁ ଦେଖି ଦାନବବର ପ୍ରଶଂସଇ ।
ସିଂହଦ୍ୱାର ଡେଇଁ ଯାଇ ଗଲା ସେ ଅସୁର
ମନା ନ କରିବାରୁ ତା ମନେ ନାହିଁ ଡର ।
ଦେଖିଲା ଜଗତୀ ପରେ ବିଜେ ଠାକୁରାଣୀ
ତିନିପାଖେ ବେଢ଼ିଛନ୍ତି ଅନେକ ରମଣୀ ।
କେହି ପଙ୍ଖାଧରି ଧୀରେ ଧୀରେ ଦିଏ ବିଞ୍ଚି
କେହୁ ବସି ବଜାଉଛି ଆଗରେ ବିପଞ୍ଚି ।
କେହି ବାଳା ଯୋଗାଉଛି କର୍ପୂର ତାମ୍ବୁଳ
କେହି କଣ୍ଠେ ଲମ୍ବାଇଛି ରତ୍ନ ପୁଷ୍ପମାଳ ।
ଏମନ୍ତେ ନିଯୋଗେ ଖଞ୍ଜା ହୋଇଛନ୍ତି ବାମା
ସର୍ବାଙ୍ଗ ସୁନ୍ଦରୀ ସର୍ବେ ରୂପେ ଅନୁପମା ।
ତାରାଗଣ ମଧ୍ୟେ ଯେହ୍ନେ ବିଜେ ଶଶଧର
ତେସନ ତାହାଙ୍କ ମଧ୍ୟେ ବୈଷ୍ଣବୀ ସୁନ୍ଦର ।
ଦାନବ ଦେଖି ମନରେ କରି ମହାଭୀତି
ଚରଣ ତଳରେପଡ଼ି କଲାକ ଭକତି ।
କରଯୋଡ଼ି ବୋଲେ ଦେବୀ ଶୁଣ ସାବଧାନେ
ସୃଷ୍ଟି ଆଦ୍ୟ କଥା କହେ ତବ ସନ୍ନିଧାନେ ।
ସମ୍ବସ୍ୱର ନାମେ ଥିଲେ ଏକ ଋଷିବର
ସୁପାର୍ଶ୍ୱ ନାମରେ ଥିଲେ ତାହାଙ୍କ କୁମାର ।
ସୁପାର୍ଶ୍ୱ ନନ୍ଦନ ନାମେ ଅଟେ ସିନ୍ଧୁ ଦ୍ୱୀପ
ମହା ତେଜୋବନ୍ତ ଋଷି ଅନନ୍ତ ପ୍ରତାପ ।
ମାହୀଷ୍ମତୀ ପୁରେ ବସି ଏହି ଋଷିବର
ଘୋର ତପ କରୁଥିଲେ କରି ଅନାହାର ।
ବିପ୍ରଚିତ୍ତ ଦାନବର ଏକଇ ନନ୍ଦିନୀ
ନାମ ମାହୀଷ୍ମତୀ ସେହି ଭୁବନ ମୋହିନୀ ।
ରୂପ ଗୁଣେ ତିନିପୁରେ ନାହିଁ କେହୁ ସରି
ସଖୀଗଣ ଘେନି ଦିନେ ପରମ ସୁନ୍ଦରୀ ।
ଭ୍ରମଣ କରୁ ମନ୍ଦିର ପର୍ବତର ତଳେ
ଦେଖିଲେ ସେ ତପୋବନ ଥାଇ ସଖୀମେଳେ ।
ନନ୍ଦନବନ କି ସେହି ହର ଉପବନ
ସବୁବେଳେ ବହୁଅଛି ମଳୟ ପବନ ।
ନାନାବିଧ ଫଳ ଫୁଲେ ପାଉଅଛି ଶୋଭା
ସେହି ଆଶ୍ରମରେ ନାହିଁ ସୂର୍ଯ୍ୟଙ୍କର ପ୍ରଭା
ବକୁଳ ଲକୁଚ ଶାଳ ତମାଳ ଯେ ତାଳ
ପିଆଶାଳ ନାରିକେଳ ବୃକ୍ଷ ମାଳ ମାଳ ।
ପଣସ ପୁନ୍ନାଗ ନାଗକେଶର ବହୁତ
ବିବିଧ ଲତାରେ ବନ ହୋଇଛି ଶୋଭିତ ।
ଶୁକ ପିକ ଶାରୀ ଶୁଆ ଧ୍ୱନି କି ସୁନ୍ଦର
ଝିଙ୍କାରି ଝଙ୍କାର ଧ୍ୱନି ଅତି ସୁମଧୁର ।
ଭ୍ରମରଙ୍କ କଳଧ୍ୱନି ମନ ନିଏ ହରି
କୁସୁମର ସୁବାସରେ ତପୋବନ ପୂରି ।
ଅମ୍ବର ଋଷିର ଅଟେ ସେହି ତପୋବନ
ଅସୁର ନନ୍ଦିନୀ ଦେଖି ମନୋହର ସ୍ଥାନ ।

ମନେ ମନେ ବିଚାରିଲା ସେହି ମାହୀଷ୍ମତୀ
ଡରାଇଲେ ପଳାଇବ ବନ ଛାଡ଼ି ଯତି ।
ସଖୀଙ୍କି ଘେନି ଏଠାରେ କରିବି ମୁଁ ବାସ
ଏମନ୍ତ ଭାଳି ସୁନ୍ଦରୀ ହୋଇଲା ମହୀଷ ।
ସଖୀମାନେ ତାରସଙ୍ଗେ ମଇଁଷି ହୋଇଲେ
ମୁହଁକୁ ତଳକୁ କରି ଭୟ ଦେଖାଇଲେ ।
ଦେଖି ମଇଁଷିଙ୍କି ମହାଭୟ କଲେ ଯତି
ଯୋଗବଳେ ଜାଣିଲେ ଏ କନ୍ୟା ମାହୀଷ୍ମତୀ ।
ଅସୁର ଦୁହିତା ମୋତେ ଡରାଉଛି ଆସି
ଜାଣିପାରି ରୋଷଭରେ ଶାପ ଦେଲେ ଋଷି ।
ଆଲୋ ପାପିନୀ ତୁ ମୋତେ ଡରାଉ ଯେ ରୂପେ
ଆଜିଠାରୁ ସେ ମଇଁଷି ହୁଅ ମୋର ଶାପେ ।
ମଇଁଷି ହୋଇ ତୁ ଶଏ ବରଷ ବୁଲିବୁ
ଏଥେ ଆସି ଡରାଇବା ଫଳ ତୁ ପାଇବୁ ।
ଋଷି ଠାରୁ ଘୋର ଶାପପାଇ ମାହୀଷ୍ମତୀ
ଋଷି ଚରଣେ ପଡ଼ିଲା ପାଇ ମହାଭୀତି ।
ବୋଇଲା ବିନୟେ ମୁନି କହ ପ୍ରତିକାର
କୃପା କରି ମୋର ଦୋଷ ବାରେ କ୍ଷମାକର ।
ଏମନ୍ତ ବିନୟେ ଯହୁଁ କହିଲା ବହୁତ
ତାହାର ଭକତି ଦେଖି ବୋଇଲେ ଏମନ୍ତ ।
ମୋହର କଥା ଅନ୍ୟଥା ନୋହିବତ କେଭେ
ପୁତ୍ର ଏକ ପ୍ରସବିବୁ ଏହି ଦେହେ ଯେବେ ।
ସେକାଳେ ତୁ ଏ ଶାପରୁ ହୋଇବୁ ମୁକତ
ଶୁଣି ତହୁଁ ମାହୀଷ୍ମତୀ ଗଲା ଯେ ତୁରିତ ।
ନର୍ମଦା ନଦୀର ତୀରେ ମିଳିଲାକ ଯାଇ
ସିନ୍ଧୁଦ୍ୱୀପ ଋଷି ତହିଁ ତପସ୍ୟା କରଇ ।
ବିଧାତାର ଘଟସୂତ୍ର ଦେଖ ହୋ କେମନ୍ତେ
ଦୈତ୍ୟ କନ୍ୟାଏ ଅଇଲା ସ୍ନାନର ନିମନ୍ତେ ।
ତାର ନାମ ଇନ୍ଦୁମତୀ ସେ ଅତି ସୁନ୍ଦରୀ
ତୀରେ ବସ୍ତ୍ର ରଖି ତହୁଁ ଗଲା ସୁକୁମାରୀ ।
ନର୍ମଦା ଜଳରେ ପଶି କରନ୍ତେ ସେ ସ୍ନାନ
ସିନ୍ଧୁଦ୍ୱୀପ ମୁନିଙ୍କର ବିଚଳିତ ମନ ।
ମନ ଟଳିବାରୁ ବିନ୍ଦୁ ପଡ଼ିଲାକ ଢଳି
ପାଷାଣ ଦ୍ରୋଣ ଉପରେ ଦେଖିଲା ତା ବାଳୀ ।
ଜଳଙ୍କାନେ ମଇଁଷି ତା ପାନକଲା ଆସି
ଶୋଷ କରିବାରୁ ବାରି ନ ପାରି ମଇଁଷି ।
ସହଚରୀଙ୍କି ବୋଇଲା ରହିଲା ମୋ ପ୍ରାଣ
ଏମନ୍ତ କହି ସେ ତୀରେ କଲାକ ଭ୍ରମଣ ।
ଗର୍ଭବତୀ ହୋଇଲାକ ସେ ଜଳ ଭକ୍ଷଣେ
ପୁତ୍ରେକ ପ୍ରସବ କରି ଗଲା ସେ ତତ୍‌କ୍ଷଣେ ।
ପୂର୍ବ ରୂପ ଧରି ପିତା ଗୃହରେ ମିଳିଲା
ସେହି ତନୟର ନାମ ମହିଷ ଯେ ଦେଲା ।
ମାତା ତାହାର ରାକ୍ଷସୀ ପିତା ତାର ଋଷି
ମହାପ୍ରତାପୀ ହୋଇଲା ତପେ ବ୍ରହ୍ମା ତୋଷି ।
ବଳବନ୍ତ ବୁଦ୍ଧିମନ୍ତ ବିକ୍ରମି ହୋଇଲା
ଅମରପୁରେ ବାସବ ଦେବତା ଜିଣିଲା ।
ତିନିଭୁବନରେ ହେଲା ଏକାକେ ସେ ରାଜା
ଦୈତ୍ୟଦାନବେ କରନ୍ତି ତାର ପାଦପୂଜା ।
ଆତ୍ମ ସମର୍ପଣ କର ଡରେ ତୁ ଗୋ ଦେବୀ
କିଛି ଉତ୍ତର ନ ଦେଲେ ପରମ ବୈଷ୍ଣବୀ ।
ମୁଖକୁ ବିସ୍ତାରି ଉଚ୍ଚେ କଲେ ପୁଣି ହାସ୍ୟ
ହସିବା ବେଳେ ଉଦର ମଧ୍ୟେ ହେଲା ଦୃଶ୍ୟ ।
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଯେ ଚରାଚର ମହୀ
ଦେଖି ଦୂତର ମୁଖରୁ କିଛି ନ ସ୍ଫୁରଇ ।
ଜୟାଦେବୀ ବୋଇଲେରେ ଶୁଣ ତୁହି ଦୂତ
ପ୍ରଭୁ ଯାହା କହିଥିଲା କହିଲୁ ତାକୁ ତ ।
ଆମ୍ଭର ଯେ ଠାକୁରାଣୀ ଅଟନ୍ତି କୁମାରୀ
ଜୀବ ଥିବା ଯାଏ ସେହି ଏହି ବ୍ରତାଚାରୀ ।
ତାହାଙ୍କର ଯେଉଁ ବ୍ରତ ଆମ୍ଭର ସେ ବ୍ରତ
ତୋହର ପ୍ରଭୁର ଆଗେ କହ ପାଇଁ ଦୂତ ।
କ୍ଷଣକେ ଏଥି ନ ରହି ଯାଅ ତୁହି ବେଗେ
ଦୂତ ଜଣାଇଲା ଯାଇ ଦାନବର ଆଗେ ।

## ମହିଷାସୁର ବଧ

ଅନ୍ଧକ ଅସୁର ଆଗେ କହଇ ପ୍ରହ୍ଲାଦ
ଏ ସମୟେ ନାଚି ନାଚି ମିଳିଲେ ନାରଦ ।
ଗଗନମାର୍ଗେ ବୋଇଲେ ଆହୋଭାଗ୍ୟ ମୋର
ପ୍ରଥମେ ଦେବୀ ଚରଣ ବନ୍ଦି ମୁନିବର ।
କୁମାରୀମାନଙ୍କ ପାଦ ବନ୍ଦିଲେ ତଦନ୍ତେ
ଆସନ ପାଇ ତହିଁରେ ବସି ବ୍ରହ୍ମା ସୁତେ ।
ବୋଇଲେ ଗୋ ଦେବୀ ମୁହିଁ ଦେବତାଙ୍କ ଭୂତ
ପଠାଇ ଦେଲେ ଆମ୍ଭଙ୍କୁ ଶଚୀଦେବୀ କାନ୍ତ ।

ମହିଷା ଅସୁର ରଣେ ଜିଣିଲା ଆମ୍ଭଙ୍କୁ
ସ୍ୱର୍ଗପୁରୁ ଆସୁଅଛି ନେବାକୁ ତୁମ୍ଭଙ୍କୁ ।
ଯେମନ୍ତେ ମରିବ ଦୈତ୍ୟ କରିବ ବିଚାର
ଏହାକହି ଅନ୍ତର୍ଦ୍ଧାନ ହେଲେ ମୁନିବର ।
ମୁନିର ମୁଖୁ ଏମନ୍ତ ଶୁଣି ବଇଷ୍ଣବୀ
କିଛିକ୍ଷଣ ଆପଣାର ମନ ମଧ୍ୟେ ଭାବି ।
ବୋଇଲେ କିଲୋ କାହିଁକି କରୁଛ ବିଳମ୍ବ
ସଜ ହୁଅ ଲୋ ସମସ୍ତେ ମାରିବା ଦାନବ ।
ଏମନ୍ତ ଶୁଣି ତୁରିତେ ଉଠି ଦେବୀଗଣ
ଖଡ୍‌ଗ ଚର୍ମ ଶକ୍ତି ପାଶ ଚକ୍ର ଧନୁର୍ବାଣ ।
ଧରି ଉଭାହେଲେ କ୍ରୋଧେ ବଳି ଦେବା ପାଇଁ
ବିକଟରୂପ ବିକଟ ବଦନ ଦେଖାଇ ।
ଜିଭ ଲହ ଲହ କରି ହେଲେ ଉଗ୍ରଚଣ୍ଡୀ
କେଶ ମୁକୁଳା କରି କେ ମାରୁଅଛି ହେଣ୍ଡି ।
କହ କହ ନାଦରେ କେ କମ୍ପାଉଛି ମହୀ
ଗହ ଗହ ଗହଳରେ ନ ପାରେ କେ ରହି ।
ଖେମଟା ନୃତ୍ୟେ ମାତି କେ ଧରିଛି ଖପର
ଏମନ୍ତ ବେଳେ ସ୍ୱର୍ଗରୁ ଅଇଲେ ଅସୁର ।
ଗର୍ଜନ୍ତି ତର୍ଜନ୍ତି ଚିରା ମାରନ୍ତି ଦଇତେ
ଦେବତାଙ୍କୁ ଜିଣିବାରୁ ନିର୍ଭୟେ ସମସ୍ତେ ।
ଆନନ୍ଦରେ ନୃତ୍ୟ କରି ଆସୁଛନ୍ତି ମାଡ଼ି
ପବନ ଘାତେ ଯେସନେ ଉଠଇ ଲହଡ଼ି ।
ତା ପଛକୁ ତା ପଛକୁ ଲାଗିଅଛି ଥାଟ
ତିଳଚୋପା ପରମାଣେ ନ ମିଳଇ ବାଟ ।
ଘଞ୍ଚାଘଞ୍ଚ ହୋଇବାରୁ ବେଳେ ବେଳେ ଲାଗି
ଗର୍ଜ୍ଜନଘାତେ ପର୍ବତ ଦେଉଛନ୍ତି ଭାଙ୍ଗି ।
ଅସ୍ତ୍ର ଶସ୍ତ୍ର ବୁଲାଇ କେ ଧାଇଯାନ୍ତି ଆଗେ
ବାହାସ୍ଫୋଟ ମାରିବାଟେ ନାଚଇ କେ ରଙ୍ଗେ ।
ମନ୍ଦର ଗିରି କନ୍ଦରେ ହୋଇଲେ ପ୍ରବେଶ
ପର୍ବତ ପ୍ରାୟ ଦିଶନ୍ତି ପ୍ରତାପୀ ରାକ୍ଷସ ।
ଦେଖି ଦେବୀଗଣ ପୁରୁ ହୋଇଲେ ବାହାର
କ୍ରୋଧଭରେ କଲେ ତହିଁ ରାକ୍ଷସ ସଂହାର ।
କ୍ଷଣକ ମଧ୍ୟେ କାହାର କାଟିଦେଲେ ମୁଣ୍ଡ
କାହାରଦେହକୁ କାଟି କଲେ ଖଣ୍ଡ ଖଣ୍ଡ ।
କାହାର କାଟିଲେ କର କାହାର ଚରଣ
କାହାର ହୃଦୟ ମଣି କଲେ ବିଦାରଣ ।
କାହାର ପେଟକୁ ଚିରି ପକାଇଲେ ନଖେ
କାହାର ଦେହୁ ରୁଧିର ପାନ କଲେ ମୁଖେ ।
ଦାନ୍ତ କଟମଟ କରି ଚୋବାନ୍ତି କା ହାଡ଼
ରକଟି ପଳାଇଦ୍ୟନ୍ତି କାହା ହାତ ଗୋଡ଼ ।
କେଶ ମୁକୁଳାକରି କେ ନାଚିଯାଏ ରଣେ
କେହି ଅସୁରକୁ ଦଳି ଦିଅଇ ଚରଣେ ।
ହାତ ଧରାଧରି ହୋଇ କରନ୍ତି କେ ନୃତ୍ୟ
କାନ୍ଧ ଧରାଧରି ହୋଇ ଗାଆନ୍ତି କେ ଗୀତ ।
ଏମନ୍ତେ ସଂଗ୍ରାମେ କେଳି କଲେ ମାତୃଗଣ
ଭୟେ ଦୈତ୍ୟମାନେ ଛାଡ଼ି ପଳାଇଲେ ରଣ ।
କୋଟି କୋଟି କବନ୍ଧ ଯେ ନୃତ୍ୟକଲେ ତହିଁ
ହାହାକାର ଧ୍ୱନିରେ ଯେ ପୂରିଗଲା ମହୀ ।
ଥାଟର ଦୁର୍ଦ୍ଦଶା ଦେଖି ମହିଷା ଅସୁର
ସେନାପତିକି ପୁଚ୍ଛଇ ଏ କି ଚମତ୍କାର ।
ଯକ୍ଷହନୁ ନାମେ ଥିଲା ଏକ ସେନାପତି
ବୋଲଇ ମୁଁ କି କହିବ ହେ ଦାନବପତି ।
ମଲେ ତୋର ଥାଟଯାକ କୁମାରୀଙ୍କ ବାଣେ
ତେଣୁ ଭାଙ୍ଗି ପଳାନ୍ତି କେ ନ ରହନ୍ତି ରଣେ ।
ଶୁଣି ମହା କୋପେ ଧାଏଁ ମହିଷ ଅସୁର
ଭୟଙ୍କର ଗଦା ଏକ ହସ୍ତରେ ତାହାର ।
ଅସୁର ଆସିବା ଦେଖି ବିଷ୍ଣୁର ଶକତି
ତତକ୍ଷଣେ ଧଇଲେ ସେ ଅପୂର୍ବ ମୂରତି ।
ବିଂଶହସ୍ତେ ବିଂଶ ଶର ପାଉଅଛି ଶୋଭା
ଦଶ ଦିଗକୁ ଉଜ୍ଜ୍ୱଳ କରେ ଦେହପ୍ରଭା ।
ମହାସିଂହ ପୃଷ୍ଠେ ବିଜେ ସଂହାର ମୂରତି
ଏକ ହସ୍ତେ ଧନୁ ଏକ ହସ୍ତରେ ଶକତି ।
ଖଡ୍‌ଗଶୂଳ ଗଦା ଶର ଚକ୍ର ଭିନ୍ଦିପାଳ
ମୁଦ୍‌ଗର ପରଶୁ ଘଣ୍ଟ ଡମ୍ବରୁ ମୂଷଳ ।
ଶଙ୍ଖ ପଦ୍ମ ଦଣ୍ଡ ପାଶ ଭୂଷଣ୍ଡୀ ଆବର
ଧ୍ୱଜା କପାଳରେ ଶୋଭା ପାଉଅଛି କର ।
ଦେବାଧିଦେବ ରୁଦ୍ରଙ୍କୁ କଲେ ସୁମରଣ
ହର ବିଜେ କଲେ ବୃଷ ପୃଷ୍ଠେ ଆରୋହଣ ।
ତାହାଙ୍କ ଚରଣବନ୍ଦୀ ବୋଇଲେ ଭୋ ହର
ଆଜି କରିବି ସମସ୍ତ ଦାନବ ସଂହାର ।
ତୁମ୍ଭେ ପାଶେ ରହି ଦେଖୁଥିବ ତାହା ବସି
ଏମନ୍ତ କହି ପରମଈଶ୍ୱରୀ ଯେ ହସି ।



ଘଡ଼ିକେ ଦାନବ ବଳ ପକାଇଲେ ମାରି
ଏକା ମହିଷ ଅଛଇ ସଂଗ୍ରାମେ ଆବୋରି
ଦେବୀଙ୍କ ସଙ୍ଗେ ସଂଗ୍ରାମ କଲା ଯେ ଅସୁର
ଦୁଇ ଜଣଙ୍କ ସମର ହେଲା ଘୋରତର ।
ଦେବ ବରଷେ ସହସ୍ର ବରଷ ଯେ ଗଲା
କେହି ତାହାକୁ ସଂଗ୍ରାମେ ଜିଣି ନ ପାରିଲା ।
ରୁଦ୍ର ବୋଇଲେ ଦେବୀଙ୍କ ମୁଖକୁ ଅନାଇ
ଯୁଦ୍ଧ ଦେଖୁଥିବା ଆମ୍ଭେ କେତେକାଳ ରହି ।
ଏହା ଶୁଣି ଦେବୀଙ୍କର ଜାତ ହେଲା କୋପ
ବେଳୁ ବେଳ ଦେହେ ବଳ ବଢ଼ିଲା ଅମାପ ।
ଶରଶୃଙ୍ଗ ପର୍ବତରେ ବସିଲେକ ମାଡ଼ି
ଅକାଳ ନିର୍ଘାତ ପ୍ରାୟ ଛାଡ଼ଇ ସେ ରଡ଼ି ।
ଦାନବ ଉପରେ ଦେବୀ ଛିଡ଼ା ହୋଇ କୋପେ
ଛାତିରେ ମାଇଲେ ଶୂଳ ଧରି ବିଶ୍ୱରୂପେ ।
ଏକହସ୍ତେ ଦାନବର କେଶକୁ ଧଇଲେ
ଖଡ଼ଗରେ ମୁଣ୍ଡକାଟି ତଳେ ପକାଇଲେ ।
ତାହାର ଶରୀରୁ ଏକ ପୁରୁଷ ବାହାରି
ଦେବୀଙ୍କ ଚରଣ ବନ୍ଦୀ ଗଲା ସ୍ୱର୍ଗପୁରୀ ।

ବ୍ରହ୍ମାଦି ଦେବତାମାନେ ହରଷ ନିର୍ଭରେ
ସ୍ତୁତି କଲେକ ନିବେଶି କର ଦେଇ ଶିରେ ।
ନମସ୍ତେ ନମସ୍ତେ ମାଗୋ ଅଭୟା ଗମ୍ଭୀରା
ନମସ୍ତେ ନମସ୍ତେ ମାଗୋ ହିଙ୍ଗୁଳା ଅଧୀରା ।
ନମସ୍ତେ ନମସ୍ତେ ମାଗୋ ପରମ ଈଶ୍ୱରୀ
ନମସ୍ତେ ନମସ୍ତେ ମାଗୋ ଧ୍ରୁବା ବିଭାବରୀ ।
ନମସ୍ତେ ନମସ୍ତେ ମାଗୋ ମହିଷ ମର୍ଦ୍ଦିନୀ
ନମସ୍ତେ ନମସ୍ତେ ମାଗୋ ଦନୁଜଦଳିନୀ ।
ନମସ୍ତେ ନମସ୍ତେ ମାଗୋ ପରମ ବୈଷ୍ଣବୀ
ନମସ୍ତେ ନମସ୍ତେ ମାଗୋ ଶିବା ବ୍ରାହ୍ମୀଦେବୀ ।
ନମସ୍ତେ ନମସ୍ତେ ମାଗୋ ଅମୃତ ନୟନା
ନମସ୍ତେ ନମସ୍ତେ ମାଗୋ ବିଶାଳ ଲୋଚନା ।
ନମସ୍ତେ ନମସ୍ତେ ମାଗୋ ତ୍ରିଶୂଳଧାରିଣୀ
ନମସ୍ତେ ନମସ୍ତେ ମାଗୋ ଜଗତତାରିଣୀ ।
ନମସ୍ତେ ନମସ୍ତେ ମାଗୋ ଅନାଦି ଅପର୍ଣ୍ଣା
ନମସ୍ତେ ନମସ୍ତେ ମାଗୋ ଶ୍ୱେତ ପୀତବର୍ଣ୍ଣା ।
ନମସ୍ତେ ନମସ୍ତେ ମାଗୋ ଜଗତ ଜନନୀ
ନମସ୍ତେ ନମସ୍ତେ ମାଗୋ ଦୈତ୍ୟ ନିସୁଦନୀ ।

ନମସ୍ତେ ନମସ୍ତେ ମାଗୋ ବିଂଶ ହସ୍ତା ଜୟା
ନମସ୍ତେ ନମସ୍ତେ ମାଗୋ ଦେବୀ ମହାମାୟା
ଅଭୟ ଚରଣେ ଆମ୍ଭେ ପଶିଲୁ ଶରଣ
ସଦା ତୋର ପାଦତଳେ ଦାସ ଦେବଗଣ ।
ଏମନ୍ତେ ଦେବଙ୍କ ସ୍ତୁତି ଶୁଣି ଦେବୀ ତୋଷେ
ବୋଇଲେ ପ୍ରସନ୍ନହେଲୁ ନିର୍ଭୟ ମାନସେ ।
ବର ମାଗ ଦେବଗଣ ଦେବୁ ନିଶ୍ଚେଁ ତାହା
ଶୁଣି ଆନନ୍ଦେ ବୋଇଲେ ସୁରପୁର ନାହା ।
ଏହି ବର ଦିଅ ମାତ ଭକତିରେ ଯହୁଁ
ତୋହର ସ୍ତୁତି ପଢ଼ିବ ଅନ୍ତକ୍ଷଣେ ସେହୁ ।
ମନର କାମନା ଫଳ ପାଇବ ଅବଶ୍ୟ
ଏତିକି ମାଗୁଛୁ ଆମ୍ଭେ ସକଳ ତ୍ରିଦଶ ।
ବିପଦ ବେଳେ ଆମ୍ଭଙ୍କୁ ରଖିଥିବୁ ମାତ
ସେ ଦେବୀପାଦେ ଶରଣ ସଦା ଗୋପୀନାଥ ।
ମୁଁ ଅତି ପତିତ ମାଗୋ ନାହିଁ ମୋର ଜ୍ଞାନ
ଖଡ଼୍ଗେ ପାତକ ରାଶିକୁ କରିବୁ ଛେଦନ ।

.....❋.....

## ଗୌତମ ରହସ୍ୟ

ବୋଲନ୍ତି ଯେ ସୁତ ପୁଣି ଶୁଣ ମୁନିଜନେ
ପ୍ରହ୍ଲାଦ କହି ଅନ୍ଧକ ଦୈତ୍ୟ ସନ୍ନିଧାନେ ।
ଯେଉଁ ଦେବୀର ମହିମା ଦେବେ ଅଗୋଚର
ତାହାଙ୍କୁ ହରିବା ପାଇଁ ମାନସ ତୋହର ।
ଏଥିରେ ବହୁତ ପାପ ହେଲାଣିରେ ମୂଢ଼
ଦାନବ ଶିରଚ୍ଛେଦନ ସେହି ଯମଦାଢ଼ ।
ଦେବଙ୍କ ପାଇଁ ମୋହିନୀ ମୂରତି ତାହାର
ଦାନବ ପାଇଁ ଭୀଷଣ ରୂପ ଭୟଙ୍କର ।
ଛାଡ଼ ଛାଡ଼ ବାବୁ ତୋର ଏହି ପାପମତି
ଶରଣ ପଶିଲେ ଆମ୍ଭେ ପାଇବା ସମ୍ପତ୍ତି ।
ଅଗମ୍ୟ ଗମନ କଲେ ପାପେ ଯିବୁ ବୁଡ଼ି
ପାପେ ବୁଡ଼ିଲେ ଅଧର୍ମ ବସିବଟି ମାଡ଼ି ।
ଅଧର୍ମ ମାଡ଼ି ବସିଲେ ଧର୍ମ ଯିବ ହଟି
ଧର୍ମ ତୁଟିଗଲେ ଦେହୁ ଶିରୀ ଯିବ ତୁଟି ।
ଶିରୀ ତୁଟିଗଲେ ବାବୁ ଲକ୍ଷ୍ମୀଛଡ଼ା ହେବୁ
ଲକ୍ଷ୍ମୀଛଡ଼ା ହେଲେ କାହୁଁ ସମ୍ପଦ ପାଇବୁ ।
ସମ୍ପଦ ଗଲେ ତୋହର ହଟିଯିବ ବଳ
ବଳ ହଟିଗଲେ ଆସି ଗ୍ରାସିବଟି କାଳ ।
କାଳ ଗ୍ରାସିଲେ ତୋ କଥା ନମାନିବେ କେହି
କଥା ନ ମାନିଲେ ତୋର ପ୍ରଭୁପଣ କାହିଁ ।
ପ୍ରଭୁପଣ ଗଲେ କ୍ରମେ ତୁଟିବ ଆୟୁଷ
ଆୟୁ ତୁଟିଲେଟି ଯମପତି ଦେବ ପାଶ ।
ପାଶରେ ପଡ଼ିବା ମାତ୍ରେ ଦୁତେ ନେବେ ବାନ୍ଧି
ନରକେ ପକାଇ ଦେବେ ହାତ ଗୋଡ଼ ଛନ୍ଦି ।
କରିବୁ ଯାତନା ଭୋଗ ନରକରେ ପଡ଼ି
ଏବେ ମୋର ବୋଲକର ପାପ ବୁଦ୍ଧି ଛାଡ଼ି ।
ସେ ଦେବୀ ଚରଣ ତଳେ ଶରଣ ତୁ ପଶ
ଶରଣ ପଶିଲେ ହେବୁ ତ୍ରିଭୁବନ ଈଶ ।
ତ୍ରିଭୁବନ ଈଶ ହୋଇ ଭୁଞ୍ଜି ସୁଖ ଶିରୀ
ବହୁତ କାଳ ବଞ୍ଚିବୁ ପାଇ ଯଶ ଶିରୀ ।
ଶେଷେ ପୁଣି ସ୍ୱର୍ଗ ସୁଖ ଭୁଞ୍ଜିବୁ ନିଶ୍ଚୟ
ଏମନ୍ତେ ପ୍ରହ୍ଲାଦ ବାଣୀ ଶୁଣି ଦୈତ୍ୟରାୟ ।
କିଛି ନ କହି ମଉନେ ରହିଲାକ ତହିଁ
ପ୍ରହ୍ଲାଦ ଗଲା ସେଠାରୁ ଅନ୍ଧକକୁ କହି ।
ଏଥୁଅନ୍ତେ କଥା ଏକ ଶୁଣ ଦେଇ ମନ
ପୂର୍ବକାଳରେ ଅପୂର୍ବ ରହସ୍ୟ ବଚନ ।
ସହସ୍ର ସହସ୍ର ଗୃହୀ ମୁନି ଏକ ଦିନେ
ମହାଦେବ ପୂଜା ଅର୍ଥେ ଦେବଦାରୁ ବନେ ।
ତପ କରୁଥିଲେ ତହିଁ ହେଲା ଅନାବୃଷ୍ଟି
ଜଳ ବିହୁନେ ଆକୁଳ ହେଲା ନବ ସୃଷ୍ଟି ।
ଫଳ ନ ଫଳିଲା ଫୁଲ ନ ଫୁଟିଲା ଡାଳେ
ମୁନିମାନେ ପଳାଇଲେ ବନରୁ ବ୍ୟାକୁଳେ ।
କ୍ଷୁଧାରେ କାତର ହୋଇ ସେହି ମୁନିଜନ
ଯହିଁ ଅଛନ୍ତି ଗୌତମ ମୁନି ତପୋଧନ ।
ତାହାଙ୍କ ଆଶ୍ରମେ ଯାଇଁ ହୋଇଲେ ଅତିଥି
ଅନ୍ନ ଦେଇ ମୁନି ତାଙ୍କୁ କଲେକ ତୃପତି ।
ବାର ବରଷ ରହିଲେ ସୁଖେ ସେ ଆଶ୍ରମେ
ଉତ୍ତମ ବୃଷ୍ଟି ହେବାରୁ ପୁଣି ଗ୍ରାମେ ଗ୍ରାମେ ।
ଶସ୍ୟ ଉପୁଜିଲା ଫଳ ଫଳିଲା ପାଚିଲା
ବୃକ୍ଷେ ଫୁଲେ ପୁଟିଲା ଯେ ପତ୍ର ପଲ୍ଲବିଲା ।
ସୁସ୍ଥ ହୋଇଲା ଜଗତ ମୁନିଏ ବିଚାରି
ଗଉତମଙ୍କୁ ବୋଇଲେ ଆହେ ତପଚାରୀ ।
ଯିବୁ ଆମ୍ଭେମାନେ ଏବେ ଦିଅ ଅନୁମତି
ଶୁଣି ତାହାଙ୍କୁ ବୋଇଲେ ଗଉତମ ଯତି ।

ଆଉ କିଛିଦିନ ମୋର ଘରେ କର ବାସ
ସୁସ୍ଥ ସମୟେ ଦେବଇଁ ମୁଁ ଉତ୍ତମ ଗ୍ରାସ ।
ତଦନ୍ତେ ଏଠାରୁ ଯିବା ଆପଣା ଇଚ୍ଛାରେ
ଶୁଣି ସେହି ମୁନିମାନେ ରହି ତାଙ୍କ ଘରେ ।
ମାୟା କାଳିଗାଇ ଏକ କଲେକ ନିର୍ମାଣ
ଗଉତମ ମୁନି ସେହି ଗାଇକି ଦେଖିଣ ।
ପାଳିଲେ ଯତନ କରି ଆନନ୍ଦିତ ହୋଇ
ଗୋଗୋଷ୍ଠେ ବାନ୍ଧିବା ପାଇଁ ନିଅନ୍ତେ ଅଡ଼ାଇ ।
ଛୁଇଁବା ମାତେ ଗାଈର ପ୍ରାଣ ଗଲା ଛାଡ଼ି
ଶୋକେ ସନ୍ତାପିତ ହୋଇ ମୁନିଗଲେ ପଡ଼ି ।
ମୁନିମାନେ ବୋଇଲେ ହୋ ଶୁଣ ଦ୍ୱିଜବର
ଗୋହତ୍ୟା କଲୁ ଅଛୁଆଁ ହେଲା ତୋ ଶରୀର ।
ତୋହର ଅନ୍ନ ବା ଆମ୍ଭେ ଖାଇବୁ କିପରି
ଗୌତମୀଙ୍କୁ ପାପୀ କରି ଗଲେ ତପଚାରୀ ।
ଦେବଦାରୁ ବନେ ଯାଇଁ କଲେ ବସି ତପ
ଗଉତମ ମୁନିବର ଅଟନ୍ତି ନିଷ୍ପାପ ।
ଯୋଗବଳେ ତାହାଙ୍କର ମାୟା ଜାଣିପାରି
କ୍ରୋଧଭରେ ତାଙ୍କୁ ଶାପଦେଲେ ତପଚାରୀ ।
ଆରେ ଦୁରାଚାରୀ ଶଠ କପଟୀ ବ୍ରାହ୍ମଣେ
ମହାପାପୀ ହୋଇ ତୁମ୍ଭେ ବୁଲ ବଣେ ବଣେ ।
ବେଦର ଅବିଧିମାନ କରୁଥିବ ତୁମ୍ଭେ
ମୋର ଶାପ ବାର ବାର ଜନମିବ ଭବେ ।
ମୁନିଶାପେ ଅପବିତ୍ର ଦ୍ୱିଜବର ହୋଇ
ହରି ହର ସ୍ତୋତ୍ରପାଠ କଲେ ତହୁଁ ଯାଇଁ ।
ତାହାଙ୍କ ଆରତ ଦେଖି ହରିହର ବେନି
ଏକାଠି ବସି ବିଚାର କଲେ ଏହି ମୁନି ।
ଗଉତମ ଶାପେ ହେଲେ ଅପବିତ୍ର ଦେହୀ
କେମନ୍ତେ ଉଦ୍ଧାର ହେବ କହ ଭାବଗ୍ରାହୀ ।
ହରଙ୍କ ମୁଖୁ ଏମନ୍ତ ଶୁଣି ଚକ୍ରଧର
ବୋଇଲେ ଯେ ଏହାଙ୍କର ନାହିଁ ପ୍ରତିକାର ।
ବେଦ ହିଁ ସିନା ଧର୍ମର ଅଟଇ ଯେ ମୂଳ
ମୂଳ ଛିଡ଼ିଗଲେ କାହୁଁ ରହିବଟି ଡାଳ ।
ଧର୍ମ ଛଡ଼ା ଲୋକେ ଯାଇଁ ନରକେ ପଡ଼ନ୍ତି
ନରକ ଭୋଗ କେବଳ ଏହାଙ୍କର ଗତି ।
କଲାକର୍ମ ଫଳକୁ ଏ ଭୁଞ୍ଜିବେ ନା ଶୁଣି
ଭକତି କଲେଣି ଯେଣୁ ଆହେ ଶୂଳପାଣି ।

ଆମ୍ଭର କର୍ତ୍ତବ୍ୟ କର୍ମ କରିବାନା ଆମ୍ଭେ
ଏହାଙ୍କ ପାଇଁ ଶାସ୍ତ୍ରେକି ଭିଆଇବା ତେବେ ।
ଯହିଁରେ ଏ ପାପୀମାନେ ପାଇବେଟି ରକ୍ଷା
ସେ ଶାସ୍ତ୍ରରେ ଥିବ ସିନା ସେହିସବୁ ଶିକ୍ଷା ।
ମାଧବ ଶିବ ଏମନ୍ତ ମନରେ ବିଚାରି
କପାଳ ନକୁଳ ବାମ ଭଇରବ ଚାରି ।
ପଞ୍ଚରାତ୍ର ପାଶୁପତ ପଶ୍ଚିମ ଆବର
ଏମନ୍ତ ମୋହନ ଗ୍ରନ୍ଥ କଲେ ବହୁତର ।
ଗ୍ରନ୍ଥକରି ସାରି ତାଙ୍କୁ ବୋଇଲେକ ପୁଣି
କଳପେ କଳପେ ତୁମ୍ଭେ ହୋଇ ମହାପ୍ରାଣୀ ।
କେତେଥର ନରକରେ ପଡ଼ିଲଣି ଯାଇଁ
ପୁଣି ମାନବ ଜନମ ପାଇଛ ଗୋସାଇଁ ।
ଏ ଜନମେ ଆମ୍ଭ ସେବା କରିବାର ଫଳେ
ଏ ଗ୍ରନ୍ଥମାନଙ୍କୁ ପଢ଼ି ସାରି ଏହାବଳେ ।
କ୍ଷୀଣ ପାପ ହୋଇ କାଳେ ଆମ୍ଭଙ୍କୁ ପାଇବ
ଏମନ୍ତ କହି ବିପ୍ରଙ୍କୁ ଆପେ ସଦାଶିବ ।
ଅଙ୍ଗେ ଭସ୍ମ ବୋଳିହୋଇ କରେ ଧରି ଥାଳ
ଜଟଉପରେ ଗଳାରେ ବହି ମୁଣ୍ଡମାଳ ।
ବିପ୍ରଙ୍କ ହିତେ ତାହାଙ୍କ ସଙ୍ଗେ ହେଲେ ଯୋଗୀ
ଏହିରୂପେ ଗାଉଛନ୍ତି ବିପ୍ରେ ମାଗି ମାଗି ।
ବହୁତ ଶିଷ୍ୟ ସାଧକ ହେଲେ ବିପ୍ରଙ୍କର
ଏହି ଗ୍ରନ୍ଥ ପଢ଼ି ଗ୍ରନ୍ଥ କଲେ ସେ ଅପାର ।
ଯେତେବେଳେ ସଦାଶିବ ହୋଇଲେ ଭିକାରୀ
ଭଇରବକୁ ଆପଣା ପୁରେ କଲେ ଦ୍ୱାରୀ ।
ବୋଇଲେ ଅଇଲେ ଦୁଷ୍ଟ ସଂହାରିବୁ ବାବୁ
କଦାପି ପୁରକୁ ମୋର ଛାଡ଼ି ତୁ ନ ଦେବୁ ।
ଶିବ ଯୋଗୀହେବା ଦେଖି ଦେବୀ ଯେ ପାର୍ବତୀ
ପୁତ୍ରକୁ ରଖାଇ ଦେଲେ ସେ ବିଷ୍ଣୁର କତି ।
ଇନ୍ଦ୍ର ଆଦି ଦେବତାଙ୍କୁ ରଖାଇଲେ ତହିଁ
ପ୍ରମଥଗଣଙ୍କୁ ପୁଣି ଦେଲେକ ଜଗାଇ ।
ମନ୍ଦର କନ୍ଦରେ ଏକା ରହିବେ ପାର୍ବତୀ
ଇନ୍ଦ୍ର ଆଦି ଦେବଙ୍କର ଯେତେକ ଶକତି ।
ସମସ୍ତେ ଆସି ରହିଲେ ଦେବୀଙ୍କର ପୁରେ
ସେବା କରନ୍ତି ଦେବୀଙ୍କି କୁମାରୀ ରୂପରେ ।
ପବିତ୍ର ଅପୂର୍ବ ଗ୍ରନ୍ଥ ଏ କୂର୍ମ ପୁରାଣ
ଯେ ଶୁଣଇ ଯେ ପଢ଼ଇ ତ୍ରାକୁ ଜନ୍ତୁଗଣ ।

ଦେଖି ନ ପାରଇ କେଭେ କରଇ ଆଦର
ପୁରାଣ ମଧ୍ୟେ ଅଟଇ ଏ ପୁରାଣ ସାର ।
ଯେଣୁ କୂର୍ମରୂପୀ ବିଷ୍ଣୁ କହିଛନ୍ତି ମୁଖେ
ଶ୍ରୋତା ବକତା ନ ପଡ଼େ ଭବଭୟ ଦୁଃଖେ ।
ଯେ ଯାହା ବାଞ୍ଛଇ ତାହା ଶୁଣିଲେ ପାଇବ
ପୁରାଣ ଶୁଣି ବିପ୍ରଙ୍କୁ ଦକ୍ଷିଣା ଯେ ଦେବ ।
ଦକ୍ଷିଣା ନ ଦେଲେ ଫଳ ନ ପାଇ ସେ ଜାଣ
ଶ୍ରୀ ବିଷ୍ଣୁଙ୍କ ମୁଖରୁ ଏ ହୋଇଛି ବଖାଣ ।
ଅମୃତ ରସମୟ ଏ ଅଟେ ହିତକାରି
ନିତ୍ୟ ଶୁଣିଣ ଗୁଣିଣ ଭବୁ ହୁଅ ପାରି ।
ହରି ହର ବୋଲ ମୁଖେ ଦୁଃଖ ଯାଉ ଦୂର
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ପୟର ।

: ଇତି ଶ୍ରୀ କୂର୍ମପୁରାଣ ପ୍ରଥମ ଖଣ୍ଡ ସମାପ୍ତ




# ଦ୍ୱିତୀୟ ଖଣ୍ଡ

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।୧।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।୨।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।୩।
ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳମୁଦ୍ ବିଭ୍ରତେ ।
ଦୈତ୍ୟାନ୍ ଦାରୟତେ ବଳିଂ କଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ ।
ମ୍ଲେଚ୍ଛାନ୍ ମୁଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମ ।୪।

.....✠.....

## ଗଣେଶଙ୍କ ବନ୍ଦନା

ଜୟ ଜୟ ଗଣନାଥ ପାର୍ବତୀ ନନ୍ଦନ
ଶରୀରେ ଶୋଭଇ ତୋର ଶ୍ରୀଖଣ୍ଡ ଚନ୍ଦନ ।
ଗଜର ବଦନ ସ୍ୱାମୀ ଜୟ ଗଣନାଥ
ମସ୍ତକରେ ଜଟା ଶୋହେ ରକ୍ତବର୍ଣ୍ଣ ଗାତ୍ର ।
ଧ୍ୟାନ ଧାରଣା ତୁ ନାଥ ଅଟୁ ମହାଯୋଗୀ
ବର୍ତ୍ତୁଳ ନୟନ ସ୍ୱାମୀ ଶ୍ରୀକର୍ପୂର ଭୋଗୀ ।
ଶ୍ୱେତ ମସ୍ତକେ ସିନ୍ଦୂର ଚିତା ଶୋଭାବନ
ଅଯୋନିସମ୍ଭୂତ ନାଥ ଇନ୍ଦୁର ବାହନ ।
ନମସ୍ତେ ଗଣନାୟକ ସୁଧାଲଡୁ ଭୁଞ୍ଜୁ
ନମସ୍ତେ ତୁ ବ୍ରହ୍ମଜ୍ଞାନୀ କାଳଦର୍ପ ଗଞ୍ଜୁ ।
ବ୍ରହ୍ମା ତୋହର ଚରଣେ କରଇ ବନ୍ଦନ
ତୋତେ ଆଶା କଲେ ଦୁଃଖ ହୁଅଇ ଦହନ ।
ନିମିଷକ ହୁଏ ତୋତେ ଚାରିଯୁଗ ଗଲେ
ସେବାକଲେ ଚଉବର୍ଗ ଦେଉ ସ୍ୱାମୀଭଲେ ।
ଅନ୍ଧ ଚକ୍ଷୁପାଏ ଦୁଃଖୀଜନେ ଦେଉ ଧନ
ଅପୁତ୍ରିକ ପୁତ୍ରପାଏ ଖଣ୍ଡୁ ବ୍ୟାଧିମାନ ।
ପରମବୈଷ୍ଣବ ନାଥ ପୃଥ୍ୱୀ ହିତକାରୀ
ଭକ୍ତଲୋକଙ୍କୁ ବସାଉ ବଇକୁଣ୍ଠପୁରୀ ।
ବିଦ୍ୟା ବର ଦେଉ ନାଥ ମୂର୍ଖ ସେବାକଲେ
କବି ପଣ୍ଡିତ କରାଉ ତୋର ଦୟାହେଲେ ।
ମୁହିଁ ତୋ ଚରଣେ ନାଥ କରେ ନମସ୍କାର
କହିଦିଅ ସ୍ୱାମୀ କୂର୍ମ ପୁରାଣ ବିଚାର ।
ନମସ୍ତେ ଗଜଆନନ ନମସ୍ତେ ନମସ୍ତେ
ଦେବେ ପ୍ରଣାମ କରନ୍ତି ତୋର ପାଦଗତେ ।
ଜୟ ବିଘ୍ନରାଜ ତୁହି ପାର୍ବତୀଙ୍କ ଶିଷ୍ୟ
ଦୟାକରି ଆହେ ସ୍ୱାମୀ ମୋ ହୃଦୟେ ବସ ।
ଗିରିଜା ନନ୍ଦନଙ୍କର ଶ୍ରୀପାଦ କମଳେ
କାମପାଳ ଶରଣ ଯେ ପଶେ ସଦାକାଳେ ।

.....❋.....

## ସମୁଦ୍ର ମନ୍ଥନର ଉଦ୍‌ଯୋଗ

ନାରଦଙ୍କୁ ପୁଚ୍ଛାକଲେ ଇନ୍ଦ୍ରଦ୍ୟୁମ୍ନ ରାଜା
ଆହେ ମୁନି କୁହ କୂର୍ମ ପୁରାଣ ପରିଯା ।
ନାରାୟଣ ଅବତାର ଶୁଣି ହେବି ମୁକ୍ତି
ଭବଜଳକୁ ନଉକା ପରଲୋକ ଗତି ।
କି ରୂପେ କୂର୍ମାବତାର ହେଲେ ଜନାର୍ଦ୍ଦନ
ସୁଧା ଜାତ କଲେ ସିନ୍ଧୁ କରିଣ ମନ୍ଥନ ।
ଏହି କଥା ଶୁଣିବାକୁ ସଦା ଇଚ୍ଛା ମୋର
ଭୋ ମୁନି ହୋ କୁହ କୂର୍ମ ପୁରାଣର ସାର ।
ରାଜା ପଚାରନ୍ତେ ତାହା ଶୁଣି ମୁନିବ୍ରହ୍ମ
କହନ୍ତି ନାରଦ ତହୁଁ ଶୁଣ ଇନ୍ଦ୍ରଦ୍ୟୁମ୍ନ ।
ଗୁହ ରାଜାକୁ ଯେ ଆମ୍ଭେ କହିଥିଲୁ ପୂର୍ବେ
ତୁମ୍ଭେ ପୁଣି ପଚାରିଲ କହୁ ଶୁଣ ଏବେ ।
ପୃଥିବୀ ନବୀନ କାଳେ ଆଦ୍ୟ ସତ୍ୟଯୁଗେ
ସୁଧର୍ମା ସଭାରେ ଦେବେ ବସିଛନ୍ତି ସ୍ୱର୍ଗେ ।
ବ୍ରହ୍ମା ବିଷ୍ଣୁରୁଦ୍ର ଚନ୍ଦ୍ର ସୂର୍ଯ୍ୟ ପ୍ରଜାପତି
ବହନି ବରୁଣ ଇନ୍ଦ୍ର କଶ୍ୟପ ଅଛନ୍ତି ।
ସନକ ସନାତନ ଯେ ମରୀଚି ସହିତେ
ଯକ୍ଷ ବିଦ୍ୟାଧର ଆଦି ଅଛନ୍ତି ସମସ୍ତେ ।
ତେତିଶକୋଟି ଦେବତା ତହିଁ ବିଦ୍ୟମାନ
ସୁରୁଚି ମହାକାଳ ଯେ ଧର୍ମଙ୍କ ନନ୍ଦନ ।
କନ୍ଦର୍ପ ମିତ୍ର ବରୁଣ ଛନ୍ତି ସର୍ବ ସୁରେ
ପରିପୂର୍ଣ୍ଣରେ ଅଛନ୍ତି ସୁଧର୍ମା ସଭାରେ ।
ନୈରତ ଦେବତା ପୁଣି ଅଛନ୍ତି ଶମନ
ଚାରି ମେଘସହ ବାୟୁ ସୁଗନ୍ଧ ଘେନିଣ ।
ଦୁନ୍ଦୁଭି ମର୍ଦ୍ଦଳ ବାଜେ ତହିଁ ସୁରସିନ୍ଧେ
ଗନ୍ଧର୍ବୀ ନୃତ୍ୟ କରନ୍ତି ଦେବ ସଭାମଧ୍ୟେ ।
ଏମନ୍ତ କାଳେ ମିଳିଲେ ସେଠାରେ କୁବେର
ଦେଖିଲେ ଦେବତାଙ୍କର ନୃତ୍ୟର ସମ୍ଭାର ।
ଆପଣେ ଇନ୍ଦ୍ର ଦେବତା ବଜାବନ୍ତି ବାଜା
ନାଚନ୍ତି ଗନ୍ଧର୍ବୀମାନେ ହୋଇ ମହାତେଜା ।
ବ୍ରହ୍ମା ମର୍ଦ୍ଦଳ ବଜାନ୍ତି ବିଷ୍ଣୁ ତାଳ ବାଇ
ରୁଦ୍ର ନୃତ୍ୟ କରନ୍ତି ଯେ ତହିଁ ଗୀତ ଗାଇ ।
ନାନା ରତ୍ନ ଅଳଙ୍କାରେ ଶୋଭେ କଳେବର
ସମସ୍ତଙ୍କ ଦୃଷ୍ଟି ଅଛି ସେ ନୃତ୍ୟ ଉପର ।
ଏହି ରୂପେ ନୃତ୍ୟ ତହିଁ କରିଲେ ବହୁତ
ସେ ନୃତ୍ୟ ତେଜିଣ ପୁଣି ବସିଲେ ସମସ୍ତ ।
ଧନପତି ଜଣାଇଲେ ଦେବ ସଭା ଚାହିଁ
ବେନିକର ମସ୍ତକରେ ଯୋଡ଼ିଅଛି ନେଇ ।
ବୋଇଲେ ସର୍ବ ଦେବତା ମୋର କଥାଶୁଣ
ଦେବଭଣ୍ଡାର ମୋ ମୂଳେ ଦେଲେ ନାରାୟଣ ।

ସେ ଭଣ୍ଡାର ତୁଚ୍ଛା ଏବେ ହୋଇଲା ତ୍ରମ୍ବର
ଏଥିକି ଉପାୟ ଯାହା କର ଚକ୍ରଧର ।
କୁବେର କହନ୍ତେ ଛାଡ଼ି ଆନ କଥାମାନ
ମନ ନିବେଶି ଶୁଣିଲେ କୁବେର ବଚନ ।
ଯହୁଁ କୁବେର କହିଲା ଏହି ରୂପେ ବାଣୀ
ତାହାକୁ ଚାହିଁ ବୋଲନ୍ତି ତହୁଁ ଶୂଳପାଣି ।
କାହାକୁ ବ୍ୟୟ କଲୁ କି ଏ ହେବ ଭଣ୍ଡାର
ତହିଁରେ ଯେ ରତ୍ନକୋଷ ଥିଲାକ ଅପାର ।
କେତେକ ରତ୍ନଯାକ ଯେ କାରେ ଦେଲୁ ନେଇ
ଦେବ ସଭାରେ କହୁଛୁ ତୁଚ୍ଛା ଅଛି ହୋଇ ।
କୁବେର ବୋଇଲେ ସ୍ୱାମୀ କହେ ତାର କଥା
ସାବଧାନେ ଶୁଣ ତୁମ୍ଭେ ଆହେ ପଞ୍ଚମଥା ।
ଇନ୍ଦ୍ରକୁ ଅନେକ ରତ୍ନ ତୁମ୍ଭେ ଅଛ ଦେଇ
ଯେବଣକାଳେ ତାହାକୁ କଲ ସୁରସାଇଁ ।
ସୂର୍ଯ୍ୟ ଚନ୍ଦ୍ରକୁ ଦେଲ ଯେ ନେଇ ହାରମାନ
ଆବରହିଁ ବାଣ୍ଟି ନେଲେ ସର୍ବ ଦେବଗଣ ।
ଆପଣେ ହେ ସଦାଶିବ ତୁମ୍ଭେ ନେଲ କେତେ
ବ୍ରହ୍ମା କେତେନେଲେ ପୁଣି ନେଲେ ଜଗନ୍ନାଥେ ।
ସମସ୍ତେ ମିଶିଣ ରତ୍ନ ନେଇଅଛ ବୋହି
ଏବେ ପଚାରୁଛ ସ୍ୱାମୀ ମନେ କିଛି ନାହିଁ ।
କୁବେର କହନ୍ତେ ଦେବ ହୋଇଲେ ମଉନ
ବ୍ରହ୍ମାଙ୍କୁ ଚାହିଁଣ ଆଜ୍ଞାଦେଲେ ଭଗବାନ ।
କୁବେର ଯାହା କହିଲା ପ୍ରମାଣ ଅଟଇ
ଦେବ ଭଣ୍ଡାରରେ ଆଉ ରତ୍ନ ଆଦି ନାହିଁ ।
କ୍ଷୀର ସମୁଦ୍ର ମନ୍ଥିବା ସୁରଗଣେ ଶୁଣ
ଆହେ ଦେବ ସଦାନନ୍ଦ ଏ କଥା ପ୍ରମାଣ ।
ନାନାଦି ପ୍ରକାର ରତ୍ନ ରହିଅଛି ତହିଁ
ଦେବ ସୁର ଆଦି ଯିବା ତହିଁ ବେଗହୋଇ ।
କୃଷ୍ଣ ବଚନେ ସନ୍ତୋଷ ହେଲେ ବ୍ରହ୍ମା ରୁଦ୍ର
ତକ୍ଷଣେ ସଭାରୁ ଉଠି ଗଲେ ଦେବବୃନ୍ଦ ।
କହନ୍ତି ଯେ ବ୍ରହ୍ମାରୁଦ୍ର ଶୁଣ ନାରାୟଣ
ଅନେକ ରତ୍ନ ତହିଁରେ ଅଛେଇ ପ୍ରମାଣ ।
ତହିଁରୁ ରତ୍ନ ଆଣିଲେ ଅଣ୍ଟିବ ସର୍ବଙ୍କୁ
ଦେବ ଭଣ୍ଡାର ପୂରିବ ଅଣ୍ଟି କୁବେରଙ୍କୁ ।
ରାଜା ପଚାରିଲେ ପୁଣି ଶୁଣ ମୁନିବର
କାହୁଁ ରହେ ରତ୍ନରାଜି ସମୁଦ୍ର ଭିତର ।
ମୁନି କହନ୍ତି ପ୍ରଳୟ ହେଲା ଯେଉଁ କାଳେ
ମେରୁ ରତ୍ନ ଗିଳିଲେ ସେ ସେହି ମହାଜଳେ ।
ସୁଧର୍ମାର ସଭା ଆଦି ଅଷ୍ଟନିଧି ପୁଣ
ମହାଜଳେ ପଡ଼ି ସବୁ ହେଲେ ରଣଭଣ ।
ଯେଇ ରତ୍ନସାର ଥିଲା ଏହି ତିନିପୁରେ
ସବୁ ନାଶଗଲା ସେହି କାରୁଣ୍ୟ ଜଳରେ ।
ଏମନ୍ତକାଳେ ପୃଥିବୀ କଲେ ପ୍ରଜାପତି
ପ୍ରଳୟ ଜଳ ବାଣ୍ଟିଲେ ସପ୍ତସିନ୍ଧୁ ପ୍ରତି ।
ସେହି ରତ୍ନମାନ ରାଜା ରହିଅଛି ତହିଁ
ସେ ରତ୍ନ ଜଳପଙ୍କରେ ଜଡ଼ିତ ଯେ ହୋଇ ।
କ୍ଷୀର ସମୁଦ୍ରକୁ ଦେବେ ମନ୍ଥିଲେକ ଯହୁଁ
ସପତ ସମୁଦ୍ର ରତ୍ନ ଠୁଳ ହେଲା ତହିଁ ।
ପୂର୍ବରୁ ଯେ ରହିଅଛି ଯେବଣ ଚରିତ
ସମୁଦ୍ର ମନ୍ଥିଲେ ରତ୍ନ ହୁଏ ପରାପତ ।
ତହିଁ ସକାଶେ ମନ୍ଥିଲେ କ୍ଷୀରାର୍ଣ୍ଣବ ପାଣି
ପୋଖରୀ ହାଣିଲେ ଯେହ୍ନେ ମୀନପଡ଼େ ଜାଣି ।
ତେମନ୍ତେ ସିନ୍ଧୁ ମନ୍ଥିଲେ ସର୍ବହୁଏ ଜାତ
ଶୁଣିଣ ସନ୍ତୋଷ ହେଲେ ତହୁଁ ନରନାଥ ।
ଇନ୍ଦ୍ରଦ୍ୟୁମନ ପୁଛିଲେ ହେ ମୁନି ପ୍ରଧାନ
କେଉଁରୂପେ କଲେ ପୁଣି ସମୁଦ୍ର ମନ୍ଥନ ।
ନାରଦ କହନ୍ତି ତୁମ୍ଭେ ଶୁଣ ନରରାଣ
ଗରୁଡ଼ ଚଢ଼ିଣ ବିଜେ ପ୍ରଭୁ ନାରାୟଣ ।
ବୃଷଭ ଚଢ଼ି ଚଳନ୍ତି ତହୁଁ ସଦାଶିବ
ହଂସ ଆରୋହିଲେ ବ୍ରହ୍ମା ବିମାନେ ବାସବ ।
ଯେ ଯାହା ଯାନ ବାହନେ ଚଢ଼ି ଦେବଗଣ
ସ୍ୱର୍ଗରୁ ଆସନ୍ତି ଚନ୍ଦ୍ର ସୂର୍ଯ୍ୟାଦି ବରୁଣ ।
ଗହ ଗହ ଶବଦ ଯେ ଶୁଭେ ମହାଘୋର
ସ୍ୱର୍ଗ ମଣ୍ଡଳୁ ଓହ୍ଲାଇ ଆସନ୍ତି ଅମର ।
ଝଟ ଝଟ ବିରାଜଇ ତାହାଙ୍କର ତନୁ
ଗଗନେ ଉଦେ ହେଲାକି କୋଟି କୋଟି ଭାନୁ ।
ତେମନ୍ତ ପରକାରରେ ଦିଶଇ ଗଗନ
ସିନ୍ଧୁ ନିକଟେ ମିଳିଲେ ସର୍ବ ଦେବଗଣ ।
ଦେବଙ୍କୁ ଦେଖି ସମୁଦ୍ର ମାରଇ ଲହଡ଼ି
ଗର୍ଜ୍ଜଇ ମହାଶବଦେ ଯେହ୍ନେ ଘଡ଼ଘଡ଼ି ।
ସମୁଦ୍ରକୁ ଚାହିଁ ତହିଁ ସର୍ବ ଦେବଗଣ
କହନ୍ତି ଯେ ବେଦବର ନାରାୟଣ ଶୁଣ ।

ବାସୁକୀ ଅଇଲେ ସିନା ହେବ ସର୍ବକାର୍ଯ୍ୟ
ଚାର ପଠାଇବା ଏବେ ଆସୁ ଅହିରାଜ ।
ବଳିରାଜା ସହିତରେ ସମସ୍ତେ ଆସନ୍ତୁ
ଦେବାସୁର ଦୁଇ ମିଶି ସମୁଦ୍ର ମନ୍ଥନ୍ତୁ ।
ଶ୍ରୀହରି ବୋଇଲେ ଆଣିପାରେ ବଳିବୀର
ବାସୁକୀ ଆସିବ କାହିଁ ଛାଡ଼ି ମହାଭାର ।
ବ୍ରହ୍ମା ବୋଇଲେ ତୁମ୍ଭେତ ଜାଣ ସବୁକଥା
ତୁମ୍ଭେ ସିନା ନାରାୟଣ ଜଗତକରତା ।
ଯେମନ୍ତେ ଆସିବ ସ୍ୱାମୀ କର ସେହି ବୁଦ୍ଧି
ଯେମନ୍ତେ ମନ୍ଥିବା ପ୍ରଭୁ ଏ କ୍ଷୀରପୟୋଧି
ବ୍ରହ୍ମା କହନ୍ତେ ସନ୍ତୋଷ ହେଲେ ଭଗବାନ
ଲଲାଟରୁ କୂର୍ମ ଏକ କଲେ ଉତପନ୍ନ ।
ଚଳିଗଲା ସେହି କୂର୍ମ ପାତାଳ ଭୁବନ
ନାରାୟଣ କୂର୍ମବର୍ଣ୍ଣ ଯେସନେ ସୁବର୍ଣ୍ଣ ।
ବସୁନ୍ଧରା ବହିଲା ସେ କୂର୍ମର ପିଠିରେ
ଆପଣେ ଧଇଲେ କେହି ନ ଜାଣନ୍ତି ପୁରେ ।
ବ୍ରହ୍ମା ରୁଦ୍ର ଜାଣିଛନ୍ତି ହେଲା କେଉଁପରି
ବିଶ୍ୱାବସୁଙ୍କ ପୁତ୍ରକୁ ଆଣିଲେ ହକାରି ।
ନାରାୟଣଙ୍କ ଆଜ୍ଞାରେ ଛାମୁରେ ମିଳିଲେ
ତାଙ୍କୁ ଚାହିଁ ବାସୁଦେବ ଏହି ଆଜ୍ଞା ଦେଲେ ।
ତୁହି ଆହୋ ମୁନିବର ବେଗ ହୋଇ ଯିବୁ
ପାତାଳରୁ ବାସୁକୀକୁ ଘେନିଣ ଆସିବୁ ।
ପୃଥ୍ୱୀଭାରାଭର ଛାଡ଼ି ଆସିବ ସତ୍ୱରେ
ମୁହିଁ ବସୁନ୍ଧରା ଧରି ଅଛଇ ପିଠିରେ ।
କିଛି ନ ବିଚାରି ସେହୁ ଆସିବ ବହନ
ପ୍ରଭୁ ଆଜ୍ଞାପାଇ ଚଳେ ମୁନିର ସନ୍ତାନ ।
ହିରଣ୍ୟଗର୍ଭର ବାଟେ ପଶିଲା ସେ ଯାଇ
ପ୍ରବେଶେ ଶୂନ୍ୟ ପଡ଼ିବା ପରାୟେକ ହୋଇ ।
ଛାମୁରେ ଯାଇଁ ପ୍ରବେଶ ହେଲା ତପୀବର
ଦେଖେ ସହସ୍ର ଫଣାରେ ଅଛି ପୃଥ୍ୱୀଭାର ।
ସହସ୍ର ଶିରେ ମୁକୁଟ ଦିଶେ ଶୋଭାବନ
ନାନା ଅଳଙ୍କାରେ ଅଙ୍ଗ ଦିଶେ ତେଜିୟାନ୍ ।
ପୁଷ୍ପଗଭା ଶିରେ ଥିଲେ ଯେଉଁରୂପେ ମଣି
ରହିଅଛି ବସୁନ୍ଧରା ସେହିପରି ଜାଣି ।
ଦେଖେ ପୁର ନାନାରତ୍ନେ ଦିଶେ ଜ୍ୟୋତିପୂର୍ଣ୍ଣ
ବାସୁକୀ ମୁଖକୁ ଚାହିଁ ବୋଲନ୍ତି ବଚନ ।

ଆହେ ଦେବ ନାଗେଶ୍ୱର ଶୁଣ ସାବଧାନେ
ତୁମ୍ଭଠାକୁ ପେଷିଛନ୍ତି ଦେବ ଭଗବାନେ ।
କ୍ଷୀର ସମୁଦ୍ର ମନ୍ଥନ କରିବା ନିମନ୍ତେ
ପଦ୍ମନେତ୍ର ପେଶିଛନ୍ତି ତେଣୁକରି ମୋତେ ।
ବ୍ରହ୍ମା ରୁଦ୍ରାଦି ଦେବତା ଆଉ ପୁରନ୍ଦର
ସଙ୍ଗତରେ ରହିଛନ୍ତି ଶଶୀ ଦିବାକର ।
ତୁମ୍ଭର ଯିବାପାଇଁକି ଛନ୍ତି ବାଟ ଚାହିଁ
ତେତ୍ରିଶ କୋଟି ଦେବତା ଏକତ୍ରିତ ହୋଇ ।
ମୋହର ସଙ୍ଗତେ ଆସ ହୋଇଣ ବହନ
ସମୁଦ୍ରତଟେ ଅଛନ୍ତି ପ୍ରଭୁ ଭଗବାନ ।
ତୁମ୍ଭେ ଆହେ ନରପତି କରନାହିଁ ହେଳ
ତୁମ୍ଭର ଏ ବିଳମ୍ୱକୁ ନ ଅଣ୍ଟିବ ବେଳ ।
ବାସୁକୀ ବୋଲେ ଧରିଛି ମୁହିଁ ମହୀଭାର
କି ରୂପେ ଛାଡ଼ିବି ନାଶଯିବ ଏ ସଂସାର ।
ପ୍ରଭୁଙ୍କର ଆଜ୍ଞାକୁ କି ପାରେ ମୁହିଁ ଭାଙ୍ଗି
ସ୍ୱାମୀଙ୍କ ପାଶକୁ ଯାନ୍ତି ହୋଇ ତୋର ସଙ୍ଗୀ ।
ଆଉ କିସ ଆଜ୍ଞା ଦେଇଛନ୍ତି ନାରାୟଣ
କହନ୍ତି ସେ ମୁନିବର ନାଗରାଜ ଶୁଣ ।
ମୋତେ ଆଜ୍ଞାଦେଲେ ତୁ ବାସୁକୀ ଘେନିଆସ
ପୃଥ୍ୱୀ ଛାଡ଼ଆସୁ ମନେ ନ କରୁ ସେ ତ୍ରାସ ।
ତାହା ଶୁଣିଣ ସନ୍ତୋଷ ହେଲା ମହୀଧର
ତକ୍ଷଣେ ଛାଡ଼ିଲା ସେହୁ ବସୁନ୍ଧରା ଭାର ।
ପୂର୍ବର ବିଧି ପରାୟେ ରହେ ବସୁନ୍ଧରୀ
ବାସୁକୀ ବିଚାରେ ନିଶ୍ଚେ ଧଇଲେ ଶ୍ରୀହରି ।
ଏତେକ ବିଚାରି ଆଜ୍ଞା ଦେଲା ନାଗେଶ୍ୱର
ବାହାରିଲେ ନାଗ ସୈନ୍ୟ ବାସୁକୀ ସଙ୍ଗର ।
ନାନା ରତ୍ନରେ ଭୂଷଣ ନାଗଙ୍କର ତନୁ
ମୁକୁଟ କୁଣ୍ଡଳ ଦିଶେ ଯେହ୍ନେ ଦ୍ୟୁତିଭାନୁ ।
ଆସନ୍ତି ସେ ନାଗବଳ ବାସୁକୀ ସହିତେ
ଦେଖିଲେ ପୃଥିବୀ ଧରିଛନ୍ତି ଜଗନ୍ନାଥେ ।
କୂର୍ମରୂପ ହୋଇ ଧରିଛନ୍ତି ବସୁନ୍ଧରୀ
ସର୍ବେ ନମସ୍କାର କଲେ ତାଙ୍କୁ ଦେଖିକରି ।
ତକ୍ଷକ ଯେ କର୍କୋଟକ ଆଦି ଅଷ୍ଟନାଗେ
ତକ୍ଷଣେ ପ୍ରବେଶ ହେଲେ ଆସି ମଧ୍ୟସ୍ୱର୍ଗେ ।
ହିରଣ୍ୟ ଗର୍ଭ ବାଟରେ ହୋଇଲେ ବାହାର
ବିଶ୍ୱାବସୁଙ୍କର ପୁତ୍ର ଅଛନ୍ତି [illegible] ।

ଦେଖିଲା ଦେବେ ଅଛନ୍ତି ସମୁଦ୍ରର ତଟେ
ତକ୍ଷଣେ ବାସୁକୀ ମିଳେ ତାହାଙ୍କ ନିକଟେ ।
ଚାହିଁ ଦେବତା ବୋଇଲେ ଅଇଲା ବାସୁକୀ
ସକଳେ ଚକ୍ଷୁ ଡାଳିଣ ଚାହିଁଲେ ତେଣିକି ।
ଏମନ୍ତ କାଳରେ ଯାଇଁ ମିଳେ ମହୀଧର
ବ୍ରହ୍ମା ବିଷ୍ଣୁ ରୁଦ୍ରଙ୍କୁ ସେ କରେ ନମସ୍କାର ।
ଦେଖି କଲ୍ୟାଣ କରିଣ ସନ୍ତୋଷ ହୋଇଲେ
କେବଣ କାର୍ଯ୍ୟେ ଡାକିଲୁ ବ୍ରହ୍ମାଏ କହିଲେ
ଏହି କ୍ଷୀର ସମୁଦ୍ରକୁ ମନ୍ଥିବା ସମସ୍ତେ
ରତ୍ନ ଜାତକଲେ ବାଣ୍ଟି ନେବା ଯେଝାମତେ ।
ବ୍ରହ୍ମା ବଚନେ ସନ୍ତୋଷ ହେଲେ ମହୀଧର
ସିନ୍ଧୁ ମନ୍ଥିବା ମିଳିବ ଯେବେ ରତ୍ନସାର ।
ଏହା କହି ସମୁଦ୍ରକୁ ଚାହେଁ ରାଜା ଫଣି
ବିଚାରଇ ମନେ ଏହୁ ଅକଳିତ ପାଣି ।
ଏଥୁ ଜାତ ହେବ ଆଜ ସବୁ ରତ୍ନସାର
ବଳିରାଜଠାକୁ ବ୍ରହ୍ମା ପେଶିଦେଲେ ଚାର ।

.....❋.....

## ହିରଣ୍ୟଗର୍ଭ ବିବରଣ ଓ ଶ୍ରୀହରିଙ୍କର କୂର୍ମରୂପ ଧାରଣ

ରାଜା ପଚାରନ୍ତି ଶୁଣ ଆହେ ତପୋବନ୍ତ
କଥାଏ ମୋହର ମନେ ହୋଇଛି ଉଦିତ ।
ତାହାକୁ ସଂକ୍ଷେପି ମୋତେ କୁହ ମୁନିବ୍ରହ୍ମ
ହିରଣ୍ୟଗର୍ଭର ବାଟ ଅଛି କେଉଁ ସ୍ଥାନ ।
କେଉଁ ସକାଶେ ହିରଣ୍ୟଗର୍ଭ ନାମ ତାର
କହନ୍ତି ନାରଦ ମୁନି ଶୁଣ ନୃପବର ।
ଯେ କାଳେ ବ୍ରହ୍ମା ସୃଜନା କଲେ ତ୍ରିଭୁବନ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ଅଟେ ବିଦ୍ୟମାନ ।
ସ୍ୱର୍ଗ ମର୍ତ୍ତ୍ୟ ଏହି ବେନି ଅଟନ୍ତି ଏକତ୍ର
ସ୍ୱର୍ଗରୁ ମର୍ତ୍ତ୍ୟ ମର୍ତ୍ତ୍ୟରୁ ସ୍ୱର୍ଗେ ଅଛି ପଥ ।
ଯେଉଁ ମେରୁ ରହିଅଛି ପୃଥିବୀ ଉପର
ସେ ମେରୁ ଉପରେ ସର୍ବ ଦେବତାଙ୍କ ପୁର ।
ତେଣୁକରି ଆହେ ରାଜା ସ୍ୱର୍ଗ ମର୍ତ୍ତ୍ୟ ସମ
ସୀମା ମାତ୍ର ଦଇବ ଯେ କରିଅଛି ଭିନ୍ନ ।
ମେରୁତଳେ ପାତାଳକୁ ବ୍ରହ୍ମା ବାଟ କଲା
ସେହିପଥେ ବିଶ୍ୱକର୍ମା ପୂଜା ରସାଣିଲା ।
ଆବରହେଁ ପୃଥିବୀର ବିବର ଯା କହି
ତହିଁ ପଶିଲେ ହିରଣ୍ୟଗର୍ଭ ବୋଲି କହି ।
ହିରଣ୍ୟ ପଥ ବୋଲିଣ ଫିଟିଛି ତଳକୁ
ଆଦିତ୍ୟ ସେ ପଥେ ଯାଏ ପାତାଳପୁରକୁ ।
ତେଣୁ ତ୍ରିପୁରେ କିରଣ ବିକାଶେ ସବିତା
ସେ ପଥରେ ଯାନ୍ତେ ନାମ ହିରଣ୍ୟ ଦେବତା ।
ଏହି ଦିନରେ ଆଦିତ୍ୟ ଉଦେ ମର୍ତ୍ତ୍ୟ ସ୍ୱର୍ଗେ
ଲକ୍ଷେ ଯୁଣ ଗମନ୍ତି ସେ ଗଗନର ମାର୍ଗେ ।
କ୍ଷଣକେ କରନ୍ତି ଦେବ ମେରୁ ପ୍ରଦକ୍ଷିଣ
ସେ ପଥରେ ଚଳିଯାନ୍ତି ପାତାଳ ଭୁବନ ।
ତହୁଁ ସ୍ୱର୍ଗ ମର୍ତ୍ତ୍ୟପୁରେ ଘୋଟଇ ଅନ୍ଧାର
ପୁଣି ପୂର୍ବଦିଗେ ଉଦେ ହୋନ୍ତି ଦିନକର ।
ଏ ରୂପେ ତ୍ରିପୁରେ ରାତ୍ରଦିବା ଭୋଗମାନ
ଚକ୍ରପରାୟେ ଭ୍ରମନ୍ତି ସୂର୍ଯ୍ୟନାରାୟଣ ।
ଶୁଣ ନୃପ ଏ ହିରଣ୍ୟଗର୍ଭର ଚରିତ
ଶୁଣି ସନ୍ତୋଷ ହୋଇଲେ ପୁଣି ନୃପନାଥ ।
ରାଜା ପଚାରନ୍ତି ବ୍ରହ୍ମା ପେଷିଥିଲେ ଚାର
ଆଜ୍ଞା ପ୍ରମାଣେ ଆସିଲାଟିକି ସେ ଅସୁର ।
କହନ୍ତି ନାରଦ ଦୂତ ମିଳିଲାକ ଯାଇଁ
ଦେଖିଲା ଆସ୍ଥାନେ ବିଜେ ସେ ଅସୁର ସାଇଁ ।
ଦେବ ଦୂତଙ୍କୁ ଦେଖିଣ ଗଉରବ କଲା
କେବଣ କାର୍ଯ୍ୟେ ଅଇଲ ବୋଲି ପଚାରିଲା ।
ତହୁଁ ଚାର ଜଣାଇଲା ସର୍ବ ଦେବଗଣ
ବ୍ରହ୍ମା ରୁଦ୍ର ପୁରନ୍ଦର ପୁଣି ନାରାୟଣ ।
କ୍ଷୀର ସମୁଦ୍ର ତଟରେ ସମସ୍ତେ ଅଛନ୍ତି
ସମୁଦ୍ର ମନ୍ଥିବାକୁ ସେ ବିଚାର କରନ୍ତି ।
ବାସୁକି ପାତାଳରୁଟି ଆଣିଲେ ଡକାଇ
ସମୁଦ୍ର ମନ୍ଥିବେ ରତ୍ନ ଜାତ ହେବାପାଇଁ ।
ତେଣୁକରି ପଠାଇଣ ଦେଲେ ବ୍ରହ୍ମା ମୋତେ
ତାଙ୍କ ଆଜ୍ଞାରେ ଅଇଲି ଘେନିଯିବି ତୋତେ ।
ତୁ ଏବେ ଅବିଳମ୍ବରେ ଚାଲ ଦୈତ୍ୟନାଥ
ବେଗେ ସଜହୁଅ ସର୍ବେଛନ୍ତି ଦଇବତ ।
ତାହା ଶୁଣିଣ ଆନନ୍ଦ ହେଲା ନୃପବର
ଆସ୍ଥାନୁ ଉଠିଣ ସଜ ହୋଇଲା ସତ୍ୱର ।
ଅଙ୍ଗେ ଭୂଷଣ ହୋଇଲା ନାନା ରତ୍ନମାନ
ଆଜ୍ଞାଦେଲା ସଜ ହୁଅ ଅଛ ଯେବେ ସୈନ୍ୟ ।

ଦୁନ୍ଦୁଭି ଘୁମୁରାମାନ ବାଜେ ମହା ଘୋର
ରଥ ଗଜ ଅଶ୍ୱ ଚଢ଼ି ଗଲେ ସର୍ବ ବୀର ।
ବାର୍ତ୍ତା ପାଇ ବେଗେ ଗଲେ ଦୈତ୍ୟ ଅଧିପତି
ସମୁଦ୍ର ତଟେ ମିଳିଲା ଦେବତାଙ୍କ କତି ।
ଅସୁର ସୈନ୍ୟ ସଙ୍ଗତେ ଅଛନ୍ତି ତାହାର
ବ୍ରହ୍ମାଙ୍କ ଚରଣେ କଲା ଯାଇ ନମସ୍କାର ।
ବିଷ୍ଣୁରୁଦ୍ର ପଦ୍ମପାଦେ କରିଲା ବନ୍ଦନ
ପ୍ରଣମିଲା କଶ୍ୟପଙ୍କ ଧରିଣ ଚରଣ ।
ଅସୁର ସୈନ୍ୟମାନଙ୍କୁ ଦେଖୁଛନ୍ତି ସୁର
ନାନା ଭୂଷଣେ ଭୂଷିତ ତାଙ୍କ କଳେବର ।
ବଳିକି ଚାହିଁ ବୋଲନ୍ତି ଦେବ ପ୍ରଜାପତି
ସିନ୍ଧୁ ମନ୍ଥିବାକୁ ତୋରେ ଆଣିଲୁ ନୃପତି ।
ତାହା ଶୁଣିଣ ସନ୍ତୋଷ ହେଲା ଦୈତ୍ୟନାଥ
ଦେବାସୁର ନାଗଲୋକ ମିଳିଲେ ସମସ୍ତ ।
ଏକ ଗୋଷ୍ଠୀ ହୋଇଣ ଯେ ରଡ଼ିଲେକ ସର୍ବ
ମୁଖରାବରେ ଶବଦ ଶୁଭେ ଅସମ୍ଭବ ।
କହନ୍ତି ନାରଦ ଶୁଣ ଆହେ ନୃପବର
ସିନ୍ଧୁ ମନ୍ଥା ବାର୍ତ୍ତା ଶୁଭେ ବ୍ରହ୍ମାଣ୍ଡ ଭିତର ।
ମୋତେ ଡାକି ଆଜ୍ଞାଦେଲେ ଚତୁର ଆନନ
ଡାକିଣ ଘେନିଆସ ତୁ ମୁନି ନୃପମାନ ।
ବ୍ରହ୍ମା ଆଜ୍ଞା ପାଇ ଆମ୍ଭେ ଗଲୁ ଗଗନରେ
ଘଡ଼ିକେ ଗମିଲୁଁ ମନ ପବନ ଦଣ୍ଡରେ ।
ପ୍ରଥମେ ମିଳିଲୁ ସତ୍ୟବ୍ରତର ଭୁବନ
ଦେଖିଲୁ ଆସ୍ଥାନେ ବସି ଅଛନ୍ତି ରାଜନ ।
ଆମ୍ଭେ ପ୍ରବେଶ ହୁଅନ୍ତେ ତାର ସନ୍ନିଧାନେ
ଆସନ ତେଜ୍ୟା କରିଣ ଉଠିଲା ବହନେ ।
ପ୍ରଦକ୍ଷିଣ କରିପାଦେ ପ୍ରଣିପାତ ହେଲା
କନକ ଆସନ ଦେଇ ଯତ୍ନେ ବସାଇଲା ।
ପବିତ୍ର ଜଳ ଘେନିଣ ଦେଲା ପାଦ ଧୋଇ
ପାଦୋଦକ ଗର୍ଭେ କ୍ଷେପି ଶିରେ ସିଞ୍ଚେ ନେଇ ।
ବୋଇଲା ଆଜି ଦିଶିଲା ମୋହର ଯେ ପୁଣ୍ୟ
ନିସ୍ତରିଲି ଦେଖିଲି ମୁଁ ବ୍ରହ୍ମାଙ୍କ ନନ୍ଦନ ।
ପାଦ ପଡ଼ିଣ ପବିତ୍ର ହେଲା ମୋର ପୁର
କେତେ କାର୍ଯ୍ୟେ ଆଗମନ କଲ ମୁନିବର ।
ରାଜାର ଭକତି ଦେଖି ସନ୍ତୋଷ ମୋ ମନ
ରାଜା ପୁଚ୍ଛନ୍ତେ କହିଲୁ ତାଙ୍କ ସନ୍ନିଧାନ ।

ଦେବାସୁର ମନ୍ଥିବେ ଯେ ଆଜି ସମୁଦ୍ରକୁ
ବ୍ରହ୍ମା ମୋତେ ପଠାଇଲେ ତୋହର ଠାବକୁ ।
ତୁହି ଏବେ ସେ ଠାବକୁ ଚାଲ ନୃପବର
ଆଉ ନୃପତିମାନଙ୍କୁ ପେଷ ବେଗେ ଚାର ।
ସମୁଦ୍ର ତଟରେ ସର୍ବେ ଅଛନ୍ତି ଯେ ରହି
ଆଜି ଚଳ ବିଳମ୍ବରେ ଆଉ କାର୍ଯ୍ୟ ନାହିଁ ।
ତାହା ଶୁଣିଣ ନୃପତି ହୋଇଲା ଆନନ୍ଦ
ମୁଖ ବିକାଶିଲା ତାର ପୂର୍ଣ୍ଣିମାର ଚାନ୍ଦ ।
ଆମ୍ଭ ନିକଟୁ ଶୁଣିଲା ଯହୁଁ ଏ ବଚନ
ନୃପତିମାନଙ୍କଠାକୁ ପେଷେ ଚାରମାନ ।
ଆପଣେ ଯେ ଦିବ୍ୟ ସଜ ହୋଇଲା ନୃପତି
ଆଜ୍ଞା ମାତ୍ରେ ଚତୁରଙ୍ଗ ବଳ ମିଳେ କତି ।
ବିବିଧ ପରକାରରେ ବାଜିଲାକ ବାଜା
କରେ ଅସ୍ତ୍ରଧରି ରଥେ ବସେ ମହାତେଜା ।
ଆମ୍ଭଙ୍କୁ ବୋଇଲା ରଥେ ବସ ମୁନିବର
ତକ୍ଷଣେ ବସିଲୁ ଯାଇ ତାର ରଥବର ।
ଆମ୍ଭଙ୍କୁ ସଙ୍ଗରେ ଘେନି ବାହାରେ ନୃପତି
ରଥ ଗଜ ପଦାତିକ ସଙ୍ଗେ ଚଳିଯାନ୍ତି ।
ନାନାରତ୍ନରେ ମଣ୍ଡିତ ସେ କଣୟ ଯାନ
ରତ୍ନ ଜଡ଼ିତ ଚିରାଳ ଉଡ଼ଇ ଗଗନ ।
କ୍ଷୀର ସିନ୍ଧୁ ସନ୍ନିଧିକୁ ବୋଲି ଧାଡ଼ିଦେଲେ
ଆବର ନୃପତିଗଣ ସକଳେ ଆସିଲେ ।
ବାରତା ଘେନିଣ ଗଲେ ଯେଉଁ ଚାରଗଣ
ତାଙ୍କୁ କହନ୍ତେ ରାଜାଏ କରିଲେ ପ୍ରୟାଣ ।
ଏକଠାବରୁ ବାରତା ଶୁଣିଣ ଆରକ
ସୈନ୍ୟ ଘେନି ଚଳିଗଲେ ସର୍ବ ରାଜାଯାକ ।
ଆମ୍ଭେ ସତ୍ୟବ୍ରତ ରାଜାଏ ରଥେ ବସିଥିଲୁଁ
ଖଣ୍ଡେଦୂର ଯାଇ ପୁଣି ବାହୁଡ଼ି ଅଇଲୁଁ ।
ସେ ସତ୍ୟବ୍ରତ ରାଜାଏ କରିଲେ ପ୍ରୟାଣ
ଚନ୍ଦ୍ର ରାଜାର ନିକଟେ ପ୍ରବେଶି ଯାଇଣ ।
ଆମ୍ଭ ଯିବା ପୂର୍ବୁ ରାଜା ଶୁଣି ଅଛି ସର୍ବ
ସଜ କରୁଅଛି ସୈନ୍ୟ ରଥାଦି ସମ୍ଭର୍ବ ।
ଆମ୍ଭଙ୍କୁ ଦେଖିଣ ଅତି ଆନନ୍ଦ ହୋଇଲା
ଅଇଲେଣି ମୁନି ବାର୍ତ୍ତା ଶୁଣିନା ହୋଇଲା ।
ହସ ହସ ହୋଇ ଆସି କଲା ନମସ୍କାର
ବୋଲେ ସମୁଦ୍ର ମନ୍ଥିବେ ମୁନି ଦେବାସୁର ।

ଏହି ବାର୍ତ୍ତା ଶୁଣି ଆମ୍ଭେ ହେଉଅଛୁ ସଜ
ଶୁଣିଲୁ ଥୋକେ ଗଲେଣି ତହିଁ ନରରାଜ ।
ଏକଥା ତଥ୍ୟ ଅତଥ୍ୟ କୁହ ମୋତେ ମୁନି
ଏହା କହିଣ ବହୁତ କରିଲା ଦଇନି ।
ବୋଇଲୁ ଆମ୍ଭେ ବସିଛୁ ତୋତେ ନେବାପାଇଁ
ବ୍ରହ୍ମା ତହିଁପାଇଁ ମୋତେ ଅଛନ୍ତି ପଠାଇ ।
ଦେବତା ଅସୁରେ ତହିଁ ସମସ୍ତେ ଅଛନ୍ତି
ପାତାଳ ପୁରୁ ବାସୁକୀ ମଧ ଆସିଛନ୍ତି ।
ଶୁଣିଣ ନୃପତି ବଡ଼ ଆନନ୍ଦ ହୋଇଲା
କି ଅବା ଇନ୍ଦ୍ରର ପଦ ତାହାକୁ ମିଳିଲା ।
ସେହିକ୍ଷଣି ରଥ ଗଜ ସାଜିଲେ ସଇନ
ଦିବ୍ୟ ସଜହୋଇ ଗଲା ତହୁଁ ସେ ରାଜନ ।
ବାରତା ପାଇଲୁ ଆମ୍ଭେ ଗଲା ମନୁରାଜା
ଚଳିଯାନ୍ତି ରାଜାମାନେ ହୋଇ ମହାତେଜା ।
ବାଜଇ ଘଣ୍ଟ କାହାଳୀ ନାନା ବାଦ୍ୟମାନ
ମୁଖରାବ ଶବଦରେ ପୃଥ୍ୱୀ କମ୍ପମାନ ।
ରଥ ପନ୍ତି ପନ୍ତି ତହିଁ ହୟ ପଲ ପଲ
ଗଜଦଣ୍ଡଘେନି ଯାନ୍ତି ରାଜା ମହାମଲ୍ଲ ।
ସାତଦ୍ୱୀପ ଯାକର ହେ ଗଲେ ନୃପମଣି
ଚାଲନ୍ତି ସେ ରାଜାମାନେ ଯେହ୍ନେ ବଢ଼ିପାଣି ।
ଛତ୍ର ଚିରାଳ ଉଡ଼ନ୍ତି ହୋଇ ଫର ହର
ଦଶଦିଗରୁ ଚଢ଼ନ୍ତି ସର୍ବ ଦଣ୍ଡଧର ।
ରଥ ହୟ ଚଢ଼ିଣ ସେ ଶୂନ୍ୟମାର୍ଗେ ଗଲେ
ଲକ୍ଷେ ରାଜାଯାକ ତହିଁ ସର୍ବେ ଠୁଳହେଲେ ।
ଦେବାସୁରଙ୍କ ନିକଟେ ପ୍ରବେଶିଲେ ଯାଇ
ପ୍ରଣାମ କରନ୍ତି ସର୍ବ ଦେବତାଙ୍କୁ ଚାହିଁ ।
ସମସ୍ତ ରାଜା ଦେଖନ୍ତି ସବୁଦେବତାଙ୍କୁ
ଥୋକେ ଦେବତା ଚାହାନ୍ତି ସମସ୍ତ ରାଜାଙ୍କୁ ।
ବାସୁକୀକି ରାଜାମାନେ ଦେଖିକରି ତହିଁ
ଏକରଠାରେ ଆରେକ ହୋନ୍ତି କୁହା କୁହି ।
କେବୋଲେ ଏହି ଅଟନ୍ତି ବାସୁକୀ ନୃବର
ବସୁନ୍ଧରା ଥାଏଟିକି ଏହାଙ୍କର ଶିର ।
କେହି ବୋଲେ ଦେଖିଲଇଁ ଅପୂର୍ବ ମୂରତି
ନାଗଙ୍କୁ ଦେଖି ମନୁଷ୍ୟ ସନ୍ତୋଷ ହୁଅନ୍ତି ।
କେହି ବୋଲେ ପୃଥ୍ୱୀ ଧରି ଥିଲା ଏ ଶିରରେ
ଛାଡ଼ି ଆସେ ନ ପଡ଼ିଲା ଯାଇଁ ପାତାଳରେ ।

ତାହା ଶୁଣିଣ ହସିଲା ଅନ୍ୟ ନରପତି
ବୋଲେ ତା ଉପାୟ ସଞ୍ଚିଥିବେ ଶିରୀପତି ।
ଏମନ୍ତେ ବୋଇଲେ ତହିଁ ଜ୍ଞାନୀ ଲୋକମାନେ
ତାହା ଶୁଣିଣ ସନ୍ତୋଷ ହେଲେ ସର୍ବଜନେ ।
ଆମ୍ଭେ ବ୍ରହ୍ମାଙ୍କୁ ପୁଣିହିଁ ଜଣାଇଲୁ ତହିଁ
ସକଳ ନୃପତିମାନେ ଅଇଲେ ଗୋସାଇଁ ।
ଆଜ୍ଞା ପାଇଲେ ରହିବେ ସେହି ରାଜାଗଣ
ଶୁଣିଣ ସନ୍ତୋଷ ହେଲେ କମଳ ଆସନ ।
ବୋଲନ୍ତି ଯେ ବେଦବର ରାଜାଗଣ ଚାହିଁ
ସର୍ବ ରାଜାମାନେ ଥାଅ ଏହିଠାରେ ରହି ।
ସିନ୍ଧୁ ମନ୍ଥନ କରିବେ ମିଶି ଦେବାସୁର
ମଣିରତ୍ନ ଉପୁଜିବ ନେବ ଯେ ଯାହାର ।
ଏଥିକି ତୁମ୍ଭମାନଙ୍କୁ ଆଣିଛୁ ହକାରି
ନାଗ ସହିତେ ଅଛନ୍ତି ଦୈତ୍ୟ ଆଦିକରି ।
ବ୍ରହ୍ମା ଆଜ୍ଞାରେ ସନ୍ତୋଷ ହେଲେ ନୃପଗଣ
ଦେବାସୁର ନରବାଦ୍ୟ ବାଜେ ମହାଟାଣ ।
ପତାକା ଉଡ଼ଇ ଜାଣି ସମୁଦ୍ର ଲହଡ଼ି
ରହିଲେ ସେ ରାଜାମାନେ ବାରକ୍ରୋଶ ମାଡ଼ି ।
ପ୍ରଳୟ ଶବଦ ପ୍ରାୟ ଶୁଭେ ମୁଖବାଣୀ
ବ୍ରହ୍ମାଙ୍କୁ ଚାହିଁ ବୋଲନ୍ତି ପ୍ରଭୁ ଚକ୍ରପାଣି ।
ସିନ୍ଧୁ ମନ୍ଥିବାକୁ ବେଗେ ବିଚାର ତୁ କର
ମନ୍ଦର ଆଣି ପକାଅ ଜଳର ଭିତର ।
ବ୍ରହ୍ମା ବୋଇଲେ ପୃଥ୍ୱୀକି କରିବାକୁ ଭାଣ୍ଡ
କ୍ଷୀର ଯେ ହୋଇବ ସିନ୍ଧୁ ଗିରି ହେବ ଦଣ୍ଡ ।
ବାସୁକୀ ହୋଇବ ରଜ୍ଜୁଟାଣ ଦେବାସୁର
ଆନମତେ ସିନ୍ଧୁ ମନ୍ଥି ନୁହେଁ ଚକ୍ରଧର ।
ନାରାୟଣ ଆଜ୍ଞା କଲେ କର ସେହିମତ
ବିଳମ୍ବ କରିବା ଆଉ ନୁହଇ ଉଚିତ ।
ତ୍ରିଭୁବନେ ଯେତେ ଥିଲେ ଅଇଲେ ସକଳ
ଆଉ କି ବିଚାର କର ତୁମ୍ଭେ ଲୋକପାଳ ।
ଏବେ ଆଜ୍ଞା ଦିଅ ଦେବ ଅସୁରମାନଙ୍କୁ
ସମୁଦ୍ରେ ପକାନ୍ତୁ ଆଣି ମନ୍ଦରଗିରିକୁ ।
ତହୁଁ ବ୍ରହ୍ମା ଆଜ୍ଞାଦେଲେ ଦେବାସୁରେ ଚାହିଁ
ମନ୍ଦରକୁ ଓପାଡ଼ିଣ ଆଣ ବେଗେ ଯାଇ ।
ବ୍ରହ୍ମା ଆଜ୍ଞା ପାଇଣ ଯେ ଗଲେ ଦେବାସୁରେ
ଯାଇ ମିଳିଲେ ମନ୍ଦର ଗିରି ନିକଟରେ ।

ଲକ୍ଷେ ପଞ୍ଚାଶ ସହସ୍ର ଯୋଜନ ତା ଉଚ୍ଚ
ଲକ୍ଷେ ଯୋଜନରେ ପ୍ରତି ହୋଇଅଛି ସଞ୍ଚ ।
ମୁଖ ଟେକି ଗିରି ଚାହିଁ ସର୍ବ ଦେବାସୁରେ
ଧର ଧର ଡାକ ଦ୍ୟନ୍ତି ଏକ ଆରକରେ ।
କେ ବୋଲଇ ପର୍ବତକୁ ପାରିବା ନା ଧରି
କେ ବୋଲଇ କିସ ଛାର ଆମ୍ଭେ ହନ୍ତକାରୀ
କେ ବୋଲଇ ଏ ବିଚାର କି କରୁଛ ଚିତ୍ତେ
ଏହି ପର୍ବତ ପଡ଼ିବ ଅବା କେତେ କେତେ ।
ଅଭରସା କଲ ଏହା ଧରିବା କେମନ୍ତେ
ଧର ହେ ସର୍ବେ ବିଚାର କରୁଅଛ କେତେ ।
ସେହିକ୍ଷଣି ଦେବାସୁରେ ବଢ଼ାଇଲେ କାୟେ
ଶରୀରକୁ ଦୀର୍ଘକଲେ ଯୂଣ ଶଏ ଶଏ ।
ପାଖେ ଦେବତାଏ ପାଖେ ଧଇଲେ ଦଇତ
ଓପାଡ଼ନ୍ତି ହୁଁ ହୁଁ କାରେ ହୋଇ ମହାମତ୍ତ ।
ନ ଚଳଇ ମହାଗିରି ଅଚଳନ୍ତି ମେରୁ
ନ ଛାଡ଼ନ୍ତି ଦେବାସୁରେ ବଡ଼ ହନ୍ତକାରୁ ।
ସିଂହନାଦ କରନ୍ତି କେ ହୁଁ ହୁଁ କାର ଧ୍ୱନି
ଟଳ ଟଳ ମହାଗିରି କମ୍ପଇ ମେଦିନୀ ।
ଉପୁଡ଼ିଗଲା ପର୍ବତ ଭଡ଼ ଭଡ଼ ହୋଇ
ପୃଥ୍ୱୀଦେବୀ ରସାତଳେ ପଡ଼ିଲା କି ଯାଇ ।
ସେହି ପରକାରରେ ଯେ ଶବ୍ଦ ମହାଘୋର
ଦେବତା ନାଗ ମନୁଷ୍ୟ ହେଲେ ଚମତ୍କାର ।
ସମସ୍ତେ ଏକ ଦୃଷ୍ଟିରେ ଗିରି ଛନ୍ତି ଚାହିଁ
ଦେବ ନାଗ ନରଲୋକ ଏକମୁଖ ହୋଇ ।
ସମ୍ଭାଳ ସମ୍ଭାଳ ବୋଲି ପଡ଼ିଲାକ ହୁରି
ବ୍ରହ୍ମାଣ୍ଡ କମ୍ପିଲା କମ୍ପେ ଅନ୍ତରୀକ୍ଷ ପୁରୀ ।
ଧରିଛନ୍ତି ଦେବାସୁରେ ହୋଇ ଟଳ ଟଳ
ସମସ୍ତଙ୍କ ଶରୀରରୁ ବହେ ଶ୍ରମଝାଳ ।
ଚାଲ ଚାଲ ଧର ଧର ଶୁଭୁଅଛି ବାଣୀ
ଗିରି ଧରି ନ ପାରନ୍ତି ଚାଲି ବୀରମଣି ।
ସ୍ୱଭାବେ ମନ୍ଦର ସେହୁ ଅଟେ ମହାଗିରି
ଦେବାସୁରେ ଶୂନ୍ୟେ ତାକୁ ରଖିଛନ୍ତି ଧରି ।
ଚଳି ନ ପାରନ୍ତି ସର୍ବେ ହୁଅନ୍ତି ଆରତ
ବୋଲନ୍ତି ନିଶ୍ଚୟ ମାଡ଼ି ବସିଲା ପର୍ବତ ।
ଧର ଆଣ୍ଟେ ତା ନୋହିଲେ ମରିବାଟି ସବୁ
ଅକାରଣେ ଆମ୍ଭ ପ୍ରାଣ ଯିବଟିରେ ବାବୁ ।
ପର୍ବତକୁ ହସ୍ତେ ସର୍ବେ ଟେକି ଧରିଥିଲେ
ମହାଗରୁ ହୁଅନ୍ତେ ସେ ଶିରେ ବସାଇଲେ ।
ବ୍ରହ୍ମାଙ୍କୁ ଡାକନ୍ତି ସର୍ବେ ନ ପାରୁଛୁ ନେଇ
ଗିରି ମାଡ଼ି ପଡୁଅଛି ରଖ ହେ ଗୋସାଇଁ ।
ଗିରି ବିବର ଅନ୍ଧାର ଦିଶେ ମହାଘୋର
ପଡ଼ିଲେ ସର୍ବେ ମରିବା ଭିତରେ ତାହାର ।
ଓପାଡ଼ିଲୁ ଗିରି ଚଳି ନ ପାରୁଛୁ ସର୍ବେ
ମଲୁ ମଲୁ ଦେବାସୁରେ ରକ୍ଷାକର ଏବେ ।
ଏମନ୍ତ ପ୍ରକାର ଶୁଣି ଦେବାସୁର ବାଣୀ
ଟହ ଟହରେ ହସିଲେ ତହୁଁ କୁଶପାଣି ।
ବ୍ରହ୍ମା ବୋଇଲେ ଓପାଡ଼ି ଆଣିଲ ପର୍ବତ
ବହନରେ ଘେନି ଆସ ଦେବତା ଦଇତ ।
ଧରିଣ ଭାବିତ କିମ୍ପା ହେଉଅଛ ବୋହି
ବେଳୁ ବେଳ ଗରୁ ହେବ ଆସ ବେଗହୋଇ ।
ଦେବାସୁର ବୋଲନ୍ତି ଯେ ନ ପାରୁଛୁ ଚଳି
ବହି ପାରିଲେ କିମ୍ପାଇଁ ପକାନ୍ତୁ ବୋବାଳି ।
ଓପାଡ଼ିଲାବେଳେ ଡାକି ନାହୁଁ ତ ତୁମ୍ଭଙ୍କୁ
ପାରିଲେ କିମ୍ପା ଡାକନ୍ତୁ ବୋଲନ୍ତୁ ଆମ୍ଭଙ୍କୁ
ନିଶ୍ଚୟ ମାଡ଼ି ପଡ଼ିଲା ଏହି ଗିରିବର
ଆହେ ଦେବ କୁଶକେତୁ ପ୍ରାଣ ରକ୍ଷାକର ।
ଶତମେରୁ ପରାୟେକ ଲାଗିଲାଣି ଗରୁ
ନିଶ୍ଚେ ମଲୁ ଦେବାସୁରେ କେହୁ ରକ୍ଷାକରୁ ।
ତାହାଙ୍କ ବଚନ ଶୁଣି କମଳ ଆସନ
ନାରାୟଣଙ୍କୁ ଚାହିଁଣ ବୋଲନ୍ତି ବଚନ ।
ଭୋ ପ୍ରଭୁ ହେ ଭଗବାନ ଧରି ଗିରିବର
ମାଡ଼ି ପଡ଼ିଲେ ମରିବେ ସର୍ବ ଦେବାସୁର ।
ଆତଙ୍କ ହୁଅନ୍ତି ଦେଖ ନ ପାରନ୍ତି ଆଣି
ବିଳମ୍ବ ନ କର ବେଗେ ଧର ଚକ୍ରପାଣି ।
ତୁମ୍ଭ କୃପା ନ ହେଲେ ନ ଆସେ ଗିରିବର
ହସି ବ୍ରହ୍ମାଙ୍କୁ କହନ୍ତି ତହୁଁ ଚକ୍ରଧର ।
ଦେବ ଅସୁର ଅଟନ୍ତି ବେନି ମହାବଳୀ
ଓପାଡ଼ିଣ ଗିରିବର ଶିରେ ଛନ୍ତି ତୋଳି ।
ମୁଁ ଧଇଲେ ବୋଲିବେ ସେ ଓପାଡ଼ିଲୁ ଆମ୍ଭେ
ହସ୍ତେ ଥିଲା ଗିରି ସିନା ବୋହିନେଲ ତୁମ୍ଭେ ।
ଏମନ୍ତ ବୋଲି ଆମ୍ଭଙ୍କୁ କରିବେ ନିନ୍ଦନ
ଏବେ ଗିରିକି ରଖନ୍ତୁ ନେଇ ତାର ସ୍ଥାନ ।

ନୋହିଲେ କି ସେହୁ ଅବା ପାରିବେଟି ଆଣି
ଏକଥା ଆଗହୁଁ ବୁଝ ଆହେ କୁଶପାଣି ।
ବ୍ରହ୍ମା ବୋଇଲେ ସେମାନେ ଆଣିବାର ମିଛ
ଆଣିଲେ କି ବିକଳରେ ଡାକନ୍ତେ ଶ୍ରୀବତ୍ସ ।
ଶୁଣି ସେମାନେ ଡାକନ୍ତି ହୋଇଣ ବିକଳ
ଆସ ଆସ ପର୍ବତକୁ ଧର ଆଦିମୂଳ ।
ତୁମ୍ଭ ଚରଣେ ଶରଣ ଆମ୍ଭେ ଦେବାସୁର
ଆସି ପର୍ବତକୁ ଧରି ପ୍ରାଣ ରକ୍ଷାକର ।
ଆମ୍ଭେ ତୋତେ ବୋଲିବାକୁ ଅଟୁ କି ଭାଜନ
ଭକତ ବତ୍ସଳ ନାଥ ଆସ ଜନାର୍ଦ୍ଦନ ।
ବେକ ମୁଣ୍ଡ ଅଣ୍ଟା ପିଠି ବିନ୍ଧିଲାଣି ସବୁ
ତୁମ୍ଭେ ରକ୍ଷା ନ କରିଲେ ନିଶ୍ଚୟ ମରିବୁ ।
ଆସ ବିଳମ୍ବ ନ କର ଆଉ ଜନାର୍ଦ୍ଦନ
ତାଙ୍କ ବଚନେ ବୋଲନ୍ତିକମଳ ଆସନ ।
ତା ସ୍ଥାନେ ପର୍ବତ ଥୋଇ ତୁମ୍ଭେମାନେ ଆସ
ତତକ୍ଷଣେ ଛାଡ଼ି ଦେଲେ ଦେବତା ରାକ୍ଷସ ।
ଉଶ୍ୱାସ ପାଇଲେ ତୁଟିଯାନ୍ତେ ମହାଭାର
ଝାଳରେ କର୍ଦ୍ଦମ ହେଲେ ତହିଁ ସର୍ବବୀର ।
ପର୍ବତକୁ ଛାଡ଼ିଦ୍ୟନ୍ତେ ଦେବତା ଅସୁର
କୃଷ୍ଣଙ୍କୁ ଚାହିଁ ବସିଲେ ତହିଁ ବେଦବର ।
ଦେବାସୁର ପର୍ବତକୁ ଆଣିଲେକ ବୋହି
ଲାଜେ ଛାଡ଼ି ନ ପାରିଲେ ହେଉଥିଲେ ଦହି ।
ତାହାଙ୍କର ବଳରେ କି ଆସେ ଗିରିବର
ଦ୍ୱିତୀୟ ମେରୁ ଗିରି ଯେ ଅଟଇ ମନ୍ଦର ।
ପୃଥିବୀକି ଯେଉଁ ଗିରି କରିଛି ଧାରଣ
ଦେବାସୁର ଆଣିବାକୁ କାହିଁ ତାଙ୍କ ପ୍ରାଣ ।
ଏବେ ପର୍ବତକୁ ଆଣ ଆହେ ଚକ୍ରପାଣି
ସନ୍ତୋଷ ଶ୍ରୀ ନାରାୟଣ ବ୍ରହ୍ମା ବାକ୍ୟ ଶୁଣି ।
ଗରୁଡ଼ ପିଠିରୁ ତହୁଁ ଉତୁରି ବହନ
ଗିରିବର ନିକଟକୁ କରିଲେ ଗମନ ।
ସେ ଗିରିକି ଅନୁମାନ କରିଣ ଚାହିଁଲେ
ବାମହସ୍ତ ନେଇ ତାର ଚୂଳେ ପକାଇଲେ ।
ଧରନ୍ତେସେ ବିଶ୍ୱରୂପ ପୂରିଲା ଗଗନ
ଉହାଡ଼ ହୋଇଣ ଗଲା ଆଦିତ୍ୟ କିରଣ ।
ଯେସନେକ ମତ୍ତହସ୍ତୀ ପଦ୍ମଫୁଲ ତୋଳି
ବାମକରରେ ତୋଳିଲେ ପ୍ରଭୁ ବନମାଳୀ ।
ଚନ୍ଦ୍ର ସୂର୍ଯ୍ୟ ସଙ୍ଗତରେ ଅନ୍ଧାର ନ ଦିଶେ
ପର୍ବତ ଆଣନ୍ତେ ତହୁଁ ଜ୍ୟୋତି ପରକାଶେ ।
ପର୍ବତକୁ ଶୂନ୍ୟେ ଘେନି ଆସନ୍ତି ବହନ
ସାଧୁ ସାଧୁ କରିଲେ ଯେ ତ୍ରିଭୁବନ ଜନ ।
ସମୁଦ୍ର ତଟରେ ନେଇ କଲେ ଗିରିବର
ବାଳକେ ଟେକା ଯେସନେ ଧରନ୍ତି ହସ୍ତର ।
ଘୁ ଘୁ ଗରଜନ କରେ ବାୟୁ ମହାବଳୀ
ଛତ୍ରପ୍ରାୟ ଗିରିତଳେ ଲୋକଯାନ୍ତି ଚଳି ।
ସେ ରୂପରେ ଭୁଜେ ଧରିଛନ୍ତି ଚକ୍ରଧର
ଫୋପାଡ଼ନ୍ତେ ପଡ଼ିଲା ସେ ସମୁଦ୍ର ଭିତର ।
ପଡ଼ନ୍ତେ ସେ ମହାଗିରି ଜଳେ ଗଲା ବୁଡ଼ି
ଗୋଟିଏ ନିର୍ଘାତ ପ୍ରାୟେ କଲା ଭୁଡ଼ଭୁଡ଼ି ।
ଏହା ଶୁଣି ଇନ୍ଦ୍ରଦ୍ୟୁମ୍ନ ପୁଛାକରେ ଗୀର
ଅଢ଼ାଇ ଲକ୍ଷ ଯୋଜନ ଉଚ୍ଚ ଯେ ଗିରିର ।
ସେ ଗିରି ପଡ଼ନ୍ତେ ଜଳେ ମଗ୍ନ ହେଲା ପୁଣି
ସେ ସମୁଦ୍ରେ ଆହେ ମୁନି କେତେ ଥିଲା ପାଣି ।
ନାରଦ ବୋଇଲେ ତେବେ ଶୁଣ ତା ଚରିତ
କହିଦେବା ଯେତେ ପାଣି ତହିଁ ନରନାଥ ।
ବତ୍ରିଶ ଲକ୍ଷ କାଠି ଯେ ତହିଁ ଅଛି ପାଣି
ପାଞ୍ଚଲକ୍ଷ ଗିରିବର ଅତି ତଥ୍ୟ ବାଣୀ ।
ଷୋଳ ଲକ୍ଷ ଯୋଜନରେ ଏ ସମୁଦ୍ର ଗୋଟି
ରାହୁ ପ୍ରାୟେ ମେଦିନୀକି ସେହୁ ଅଛି ଘୋଟି ।
ଅର୍ଦ୍ଧଆକାଶକୁ ଯାଇ ଲାଗିଅଛି ଜଳ
ଚାହିଁଲେ ବାରି ନୁହଇ ଗଗନ ମଣ୍ଡଳ ।
ଶୁକ୍ଳମେଘ ପ୍ରାୟେ ସବୁ ଦିଶେ ଶ୍ୱେତମୟ
ସମୁଦ୍ରର ଏହି ଗତି ଶୁଣ ଆହେ ରାୟ ।
ରାଜା ବୋଇଲେ ଭୋ ମୁନି ଜାଣିଲଇଁ ଏହା
ଗିରି ବୁଡ଼ିଗଲା କିସ କଲେ ଚଉବାହା ।
କୁହ ଏଥିର ଚରିତ ଯେଉଁ ଦିବ୍ୟ ରୀତି
ଶୁଣ ଆହେ ଇନ୍ଦ୍ରଦ୍ୟୁମ୍ନ କହନ୍ତି ଯେ ଯତି ।
ଗିରି ବୁଡ଼ିଯାନ୍ତେ ସର୍ବେ କଲେ ହାହାକାର
ଗିରିକୁ ଆଣି ବିଅର୍ଥ କଲେ ଚକ୍ରଧର ।
ସ୍ଥିରେ ନ ଥୋଇ ତାହାକୁ ଦେଲେ ଫୋପଡ଼ାଇ
ମହାଜଳେ ପଡ଼ି ଏବେ ସେହୁ ଗଲା କାହିଁ ।
ଏତେ ଜଳରୁ ଆଣିବ ଏବେ କିଏ ଗିରି
ତାଙ୍କ ବଚନେ ବୋଲନ୍ତି ତହୁଁ ଚକ୍ରଧାରୀ ।

ସ୍ଥିରେ ରଖିଲେ ପଥର କିବା ନ ବୁଡ଼ନ୍ତା
ବାଇ ବାତୁଳ ପରାୟେ କହୁଛ ଏ କଥା ।
ବ୍ରହ୍ମା ବୋଇଲେ ସେ ନିଶ୍ଚେ ବୁଡ଼ନ୍ତାପ୍ରମାଣ
ଏବେ କେମନ୍ତେ କରିବା କୁହ ନାରାୟଣ ।
ଶ୍ରୀହରି ବୋଲନ୍ତି ତହୁଁ ବ୍ରହ୍ମା ମୁଖ ଚାହିଁ
ତୁ କିମ୍ପାଇଁ ଚିନ୍ତାକରୁ ତାଙ୍କ ପ୍ରାୟେ ହୋଇ ।
ତହିଁକି ବିଚାର କେହି ନ କରିବ ତୁମ୍ଭେ
ଏକ୍ଷଣି ଉପାୟ କରି ଉଠାଇବା ଆମ୍ଭେ ।
ବ୍ରହ୍ମା ସନ୍ତୋଷ ହୋଇଲେ ପ୍ରଭୁଙ୍କ ବଚନେ
ଆବର ସନ୍ତୋଷ ହେଲେ ଶୁଣି ସର୍ବଜନେ ।
ତୁ ପ୍ରଭୁ ଜଗତକର୍ତ୍ତା ଅଟ ଦେବ ହରି
ସକଳ କାର୍ଯ୍ୟକୁ ସ୍ୱାମୀ ତୁହି ପାରୁ କରି ।
ଗିରି ଭାସିବ ଉପାୟ ଏବେ ପ୍ରଭୁ କର
ବ୍ରହ୍ମାଙ୍କ ବାକ୍ୟେ ସନ୍ତୋଷ ହେଲେ ଚକ୍ରଧର ।
ସେହିକ୍ଷଣି ନାରାୟଣ କୂର୍ମ ରୂପ ଧରି
ମହାଜଳରେ ପଶିଲେ ବଳେ ଚକ୍ରଧାରୀ ।
କୂର୍ମ ଶିରେ କର୍ଣ୍ଣେ ଶୋହେ ମୁକୁଟ କୁଣ୍ଡଳ
ନୀଳୋତ୍ପଳ ନେତ୍ର ତାଙ୍କ ଦିଶଇ ଉଜ୍ଜ୍ୱଳ ।
ଅଙ୍ଗଅଧରରେ ଦନ୍ତ ଦିଶେ ଯେହ୍ନେ ମୋତି
ତିଳପୁଷ୍ପ ପ୍ରାୟେ ନାସା ମଧୁର ମୂରତି ।
କୂର୍ମ ନାରାୟଣଙ୍କର ପାଦ ଚାରିଗୋଟି
ପିଠିରେ ବଜ୍ର ଭିଜିବ ଲକ୍ଷ କୋଟି କୋଟି ।
ବର୍ତ୍ତୁଳାକାର ଅଟଇ କୂର୍ମଙ୍କ ଶରୀର
ଦେଖିଣ ହରଷ ହେଲେ ସର୍ବ ଦେବାସୁର ।
ସଇଁତ୍ରିଶ ଲକ୍ଷ ପଙ୍କପାଣି ଅଟେ ଯହିଁ
ତେତେ ଜଳୁ ଗିରି ଧରି ଉଠି ଉପୁଚ୍ୟାଇ ।
ପର୍ବତ ତଳେ ଅଛନ୍ତି କୂର୍ମ ଚକ୍ରପାଣି
ବିରାଜଇ କୂର୍ମତେଜ ଚନ୍ଦ୍ର ସୂର୍ଯ୍ୟ ଜିଣି ।
ପିଠିରେ ବହି ଅଛନ୍ତି ସେ ମନ୍ଦର ଗିରି
ତିଳ ଚୋପା ପ୍ରାୟ ଯାଙ୍କୁ ଲାଗୁଅଛି ଭାରି ।
କୂର୍ମ ନାରାୟଣଙ୍କର ତଳିପେଟ ତଳେ
ମାଛ ମକର କୁମ୍ଭୀର ବିହରନ୍ତି ହେଳେ ।
ଆହୁରି ଷୋଳ ଯୋଜନ ତଳେ ଅଛି ଜଳ
ମଧ୍ୟରେ ଅଛନ୍ତି ପ୍ରଭୁ କୂର୍ମ ଆଦିମୂଳ ।
ଷୋଳଲକ୍ଷ ଯୂଣ ଉର୍ଦ୍ଧ୍ୱେ ପୁଣି ଅଛି ପାଣି
ତେବେହେଁ ସେ ଗିରିବର ନ ହୁଅଇ ଜାଣି ।
ପୁଣିହିଁ ଉର୍ଦ୍ଧ୍ୱେ ଟେକିଲେ ଦେବ ଚକ୍ରଧର
ତେବେ ସେ ଜଳ ମଧ୍ୟରୁ ଦିଶିଲା ମନ୍ଦର ।
କୂର୍ମ ନାରାୟଣ ନାମ ଜପେ ଯେଉଁଜନ
ବ୍ରହ୍ମହତ୍ୟା ଗୋରୁହତ୍ୟା ହୁଅଇ ମୋଚନ ।
ନିତ୍ୟ ନମସ୍କାର କର ତାଙ୍କ ପାଦତଳେ
ମାୟା ମୋହ ସଂସାରରୁ ତରିଯିବ ହେଳେ ।
ନାରାୟଣ ନାରାୟଣ ଭଜ ସୁଜ୍ଞଜନ
ନାରାୟଣର ସେ ପାଦେ ରହିଥାଉ ମନ ।

.....※.....

## ଶ୍ରୀମନ୍ନାରାୟଣଙ୍କ ଆଜ୍ଞାରୁ ପର୍ବତସ୍ଥିତ ଜୀବଜନ୍ତୁଙ୍କର ପାଷାଣରୂପ ଧାରଣ

ନାରଦଙ୍କ ପାଦ ଧରି ଇନ୍ଦ୍ରଦ୍ୟୁମ୍ନ ରାଣ
ବୋଇଲେ କାରଣ କଲ ଶୁଣାଇ ପୁରାଣ ।
ଓହ୍ଲାରେ କିସ କଲେ କୂର୍ମ ଭଗବାନ
ସେ କଥା ଶୁଣାଇ ମୁନି ତୋଷ ମୋରମନ ।
କହନ୍ତି ନାରଦ ମୁନି ଶୁଣ ପୁଣ୍ୟବନ୍ତ
ଦେବାସୁର ମିଶି କଲେ ଯେମନ୍ତ ଯେମନ୍ତ ।
ବ୍ରହ୍ମାଙ୍କର ମୁଖ ଚାହିଁ ବୋଲନ୍ତି ଅଚ୍ୟୁତ
ସମୁଦ୍ରର ମଧ୍ୟରେ ତ ଦିଶିଲା ପର୍ବତ ।
ଦେବ ଅସୁରଙ୍କୁ ବୋଲ ଦଉଡ଼ି ଗୁଡ଼ାଇ
ମନ୍ଥନ୍ତୁ ଏ ମହାଜଳ ବିଳମ୍ବ କିମ୍ପାଇଁ ।
ଆଜ୍ଞା ପାଇ ବ୍ରହ୍ମା ଚାହେଁ ବାସୁକି ମୁଖକୁ
ବୋଲନ୍ତି ତୁ ରଜ୍ଜୁହୁଅ ଏବେ ପର୍ବତକୁ ।
ବାସୁକିବୋଲେ ଟାଣିବେ ଯେବେ ଦେବାସୁରେ
ମୋର ପ୍ରାଣ କି ରହିବ ଆଉ ମୋ ଶରୀରେ ।
ଗିରିକି ରଜ୍ଜୁ ହେବାକୁ ମୋର ବଳ ନାହିଁ
ତାର ବଚନେ ବୋଲନ୍ତି ସାବିତ୍ରୀଙ୍କ ସାଇଁ ।
ତୁ ତ ମହାବୀର ଅଟୁ ମହାବଳ ତୋର
ତୁ ରଜ୍ଜୁ ନୋହିଲେ କାହୁଁ ଚଳିବ ମନ୍ଦର ।
ଏହି ଟଣା ଛାରେ ପ୍ରାଣ ଯିବ କି ତୋହର
ଏ ମନ୍ଥନ ଅଟେ ତୋତେ କେତେକ ମାତର ।
ତୁହି ପୁଣି ମହାରାଜା ଏହା କିମ୍ପାକହୁ
ତିଳ ମନ୍ଦା ପରକାରେ ବ୍ରହ୍ମାଣ୍ଡ ତୁ ବହୁ ।
କେତେ ମେରୁ ମନ୍ଦର ତୁ ବହିଛୁ ସାଗର
ଏହି କଥା ଅଟେ ତୋତେ କିଞ୍ଚିତ ପ୍ରକାର ।

ଦେବ ଲୋକ ଆଦିକରି ଅଛି ଯେତେ ଯେତେ
ମନୁଷ୍ୟ ନଦୀ ଜନ୍ତୁଙ୍କୁ ବହିଛୁ ତୁ ମାଥେ ।
ବ୍ରହ୍ମାଣ୍ଡ ରଖିବାକୁ ଯେ ତୁହି ହନ୍ତକାରୁ
ଏ ସମୁଦ୍ର ମନ୍ଥାଠାରେ ଅନ୍ୟ ମନ କରୁ ।
ଆସ ଆସ ନୃପତି ତୁ ବିଳମ୍ବ ନ କର
ବ୍ରହ୍ମା ବଚନେ ସନ୍ତୋଷ ହେଲେ ମହୀଧର ।
କାୟା ବିସ୍ତାରି ବାସୁକି ଜଳରେ ପଡ଼ିଲେ
ପର୍ବତ ନିକଟେ ଯାଇ ପ୍ରବେଶ ହୋଇଲେ ।
ଆପଣେଯେ ତିନିବେଢ଼ା ହୋଇଲେ ଗୁଡ଼ାଇ
ମନେ କଳ୍ପି କାମରୂପୀ ପରାୟେକ ହୋଇ ।
ମନେ ଯେତେ ଇଚ୍ଛା ତେତେ ବଢ଼େ କଳେବର
ଅହି ବନ୍ଧନ ପରାୟେ ଦିଶେ ଗିରିବର ।
ବାସୁକି ଯାଇଣ ଯହୁଁ ହେଲେ ଆଗୁଆଇ
ଦେବାସୁରଙ୍କୁ କହିଲେ ତହୁଁ ବ୍ରହ୍ମା ଚାହିଁ ।
ଯାଅ ହେ ଦେବ ଅସୁର ମନ୍ଥ ମହାଜଳ
ତକ୍ଷଣେ ଚଳିଲେ ଦେବ ଦଇତ ସକଳ ।
ସିନ୍ଧୁ ମନ୍ଥିବାକୁ ହେଲେ ଆନନ୍ଦିତ ମନ
ଦେଖିଲେ ବାସୁକି ତହିଁ ରଜ୍ଜୁର ସମାନ ।
ତାହା ଦେଖିଣ ସନ୍ତୋଷ ହେଲେ ସର୍ବେ ପୁଣ
ଆବର ସନ୍ତୋଷ ବ୍ରହ୍ମା ରୁଦ୍ର ନାରାୟଣ ।
ଶୂନ୍ୟେ ବିକ୍ରମି ସମସ୍ତ ଦେବାସୁର ଗଲେ
ପର୍ବତ ଉପରେ ଯାଇ ବିଶ୍ରାମ କରିଲେ ।
ନାନା ବୃକ୍ଷମାନେ ଛନ୍ତି ତହିଁର ଉପରେ
ମରୀଚ ଦ୍ରାକ୍ଷା ଲତାଦି ଶୋଭେ ତଥିପରେ ।
ଚନ୍ଦନର ବନ ତହିଁ ଅଛଇ ବହୁତ
ବାସ ବିକାଶଇ ଯେବେ ବହଇ ମରୁତ ।
ବାଇ ଟଭା ନାରଙ୍ଗ ଯେ ଆବର ଜେଉଟ
ଶାଳ ପିଆଶାଳ ତମାଳ ଅଛି ନାନାବଟ ।
ଦର୍ପଣ ମୁକୁତା ପ୍ରାୟେ ଝୁଲେ ଫଳମାନ
ମନ୍ଦର ପର୍ବତ ଯେହୁ ଦେବତାଙ୍କ ସ୍ଥାନ ।
ଚୂତ ବୃକ୍ଷ ସହିତରେ ଅଛି ନଟୀକାଳ
ପନସର ବୃକ୍ଷ ତହିଁ ଅଛି ମାଳ ମାଳ ।
କଦଳୀ ଗୁବାକ ତହିଁ ଅଛି ଅପ୍ରମିତେ
ଦେବତାଙ୍କ ସ୍ଥାନ ସେହୁ କହିବା ବା କେତେ ।
ନାନା ପୁଷ୍ପମାନଙ୍କରେ ଆମୋଦଇ ବନ
ଗିରିମଲ୍ଲୀ ନାଗେଶ୍ୱର ସୁଗନ୍ଧକମାନ ।
ଗିରି ନଦୀମାନ ତହିଁ ବହେ ଝର ଝର
ନାନା ଜୀବଜନ୍ତୁ ଛନ୍ତି ନାହିଁ ପରାପର ।
ଏହା ଶୁଣି ଇନ୍ଦ୍ରଦ୍ୟୁମ୍ନ ପଚାରିଲେ ଗୀର
ଅପୂର୍ବ କଥା କହିଲ ଆହେ ମୁନିବର ।
ସେହି ମହା ଗିରିବର ବୁଡ଼ିଲା ଜଳରେ
ପ୍ରାଣୀମାନେ କେଉଁରୂପେ ରହିଲେ ପ୍ରାଣରେ ।
ଏ କଥା ସଂକ୍ଷେପି ମୋତେ କହ ମୁନିବର
କହନ୍ତି ନାରଦ ମୁନି ଶୁଣ ନୃପବର ।
ପର୍ବତକୁ ଯେଉଁକାଳେ ଉପାଡ଼ିଲେ ବୀରେ
ଅନେକ ଜୀବଜନ୍ତୁ ଯେ ପଳାଇଲେ ଡରେ ।
ଗନ୍ଧମାଦନ ପର୍ବତେ ରହିଲେ ଯେ ଯାଇ
ସେହି ସବୁ ଜୀବଜନ୍ତୁ ମୃତ୍ୟୁପରେ ନାହିଁ ।
ଆଉ ଯେଉଁ ଜୀବମାନେ ଯାଇ ନ ପାରିଲେ
ପର୍ବତ ଆଣନ୍ତେ ତହିଁ ଉପରେ ରହିଲେ ।
ମୃଗ ଶମ୍ବର ନକୁଳ ନାନା ସର୍ପ ଶଶା
ଅନେକ ଜନ୍ତୁ ସେଠାରେ କରିଥିଲେ ବସା ।
ଦେଖିଲେ ସେ ନାରାୟଣ ଛନ୍ତି ଜୀବମାନ
ବିଚାରନ୍ତି ଏହୁ ଆଜ ହୋଇବେ ନିଧନ ।
କେମନ୍ତେ ରକ୍ଷା କରିବି ଚିନ୍ତି ଭାବଗ୍ରାହୀ
ବୋଇଲେ ପାଷାଣ ରୂପେ ସର୍ବେ ଥାଅ ରହି ।
ମନ୍ଥନ ଅନ୍ତେ ପାଇବ ନିଜ ଦେହମାନ
ତତକ୍ଷଣେ ଜୀବଜନ୍ତୁ ହୋଇଲେ ପାଷାଣ ।
ତେଣୁକରି ସେମାନଙ୍କୁ ନ ଭେଦିଲା ଜଳ
ସମସ୍ତେ ହୋଇଅଛନ୍ତି ପାଷାଣ କେବଳ ।
ନାରାୟଣଙ୍କ ଆଜ୍ଞାରେ ପ୍ରସ୍ତର ସେ ଥିବେ
ସ୍ୱସ୍ଥାନେ ଗିରି ରହିଲେ ଜୀବନ ପାଇବେ ।
ଆବର ଅଛଇ ଯେତେ ସିଦ୍ଧି ସ୍ଥାନମାନ
ସୁବର୍ଣ୍ଣର ଗୃହ ସବୁ ସୁବର୍ଣ୍ଣ ଆସନ ।
ଦେବତାଙ୍କ ଗତାଗତ ପଥ ଅଟେ ଯହିଁ
ନାନା ରତ୍ନମାନଙ୍କର ଜ୍ୟୋତି ହୁଏ ତହିଁ ।
କିଏ କହି ପାରିବ ସେ ଗିରିର ମହିମା
ଲକ୍ଷେ ଯୋଜନରେ ପ୍ରତି ଅଟେ ଯାର ସୀମା ।
ଏହା ଶୁଣିଣ ସନ୍ତୋଷ ହେଲେ ମହୀପାଳ
ସବୁ ରକ୍ଷା କରିବାକୁ ପ୍ରଭୁ ଆଦିମୂଳ ।
ସେହି ଆର୍ତ୍ତତ୍ରାଣ ହରି ଦେବ ନାରାୟଣ
ରଖିଲେ ସର୍ବ ଜନ୍ତୁଙ୍କୁ କରିଣ ପାଷାଣ ।

ହରତା କରତା ପ୍ରଭୁ ଦଇବ ବିଧାତା
ଛପନ କୋଟି ଜୀବର ଅଟ ପିତାମାତା ।
ସର୍ବ ଜୀବଙ୍କୁ ରଖିଛ ଦେଇ ଜୀବଦାନ
ଏକ ମୂର୍ତ୍ତି ବିହରୁଛ ଏ ତିନି ଭୁବନ ।

.....❋.....

## ସମୁଦ୍ର ମନ୍ଥନ ଓ ରକ୍ଷରାଜ ସୁଷେଣ ମନ୍ତ୍ରୀଙ୍କ ଜନ୍ମ ବୃତ୍ତାନ୍ତ

ଏବେ କହ ସିନ୍ଧୁ ମନ୍ଥା ହୋଇଲା କେମନ୍ତ
କହନ୍ତି ନାରଦ ମୁନି ଶୁଣ ନୃପନାଥ ।
ଦେବ ଅସୁର ରହିଲେ ଦୁହେଁ ଭୟକରି
କେହି ନ ପଶନ୍ତି ତହିଁ ଦେଖି ସିନ୍ଧୁ ବାରି ।
କହନ୍ତି ଦେବ ଅସୁର ଶୁଣ ଆଦିମୂଳ
ଜଳେ ପଶିଲେ କି ହେବ ହୋଇଛି ଅଥଳ ।
ଶ୍ରୀ ନାରାୟଣ ବୋଲନ୍ତି କିଛି ଭୟ ନାହିଁ
ତଳକୁ ଓହ୍ଲାଇ ଆସି ରଜ୍ଜୁ ଧର ଯାଇଁ ।
ତୁମ୍ଭର ଜାନୁ ପର୍ଯ୍ୟନ୍ତ ହୋଇବ ଏ ଜଳ
ବହନରେ ଉଠିଆସ ଜଳେ ଅଛି ସ୍ଥଳ ।
ନାରାୟଣଙ୍କ ବଚନେ ଆସନ୍ତି ଓହ୍ଲାଇ
ପର୍ବତ ଧରି ଧରି ତର ତର ହୋଇ ।
ଗୋଡ଼ ବଢ଼ାନ୍ତେ ତାହାଙ୍କୁ ଲାଗିଲାକ ସ୍ଥଳ
ତହିଁ ଜଳେ ଉଭାହେଲେ ସେ ଉଭୟ କୁଳ ।
ବାୟୁକୁ ଚାହିଁ ବୋଲନ୍ତି ପ୍ରଭୁ ଚକ୍ରଧର
ବାରତା ପୁଚ୍ଛା ପୁଚ୍ଛି କି ହେଲା ବହୁଦୂର ।
ସେଠାର ବାରତା ଆଉ ଏଠାର ବାରତା
ଜଣାଉଥିବୁ ସକଳ ହୋଇଣ ତୁ ଜ୍ଞାତା ।
ଆଜ୍ଞା ପାଇଣ ସନ୍ତୋଷ ହୋଇଲା ପବନ
ଏଣୁ ତେଣୁର ବାର୍ତ୍ତାକୁ ଦୂତ ପ୍ରଭଞ୍ଜନ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଉ ଦିଗପାଳ
ବଳି ରାଜନ ଆବର ନର ମହୀପାଳ ।
ଏମାନେ ରହିଅଛନ୍ତି ସମୁଦ୍ରର ତୀର
ବାରତା କହିବାକୁ ଯେ ହୋଇଲା ସମୀର ।
ଇନ୍ଦ୍ରଦ୍ୟୁମ୍ନ ପଚାରନ୍ତି ଶୁଣ ତପୋବନ୍ତ
ଏତେ ଜଳେ ସ୍ଥଳ ପୁଣି ହୋଇଲା କେମନ୍ତ ।
ଏହା ସଂକ୍ଷେପିଣ ମୋତେ କହ ମୁନି ବ୍ରହ୍ମା
କହନ୍ତି ଯେ ଦେବ ଋଷି ଶୁଣ ଇନ୍ଦ୍ରଦ୍ୟୁମ୍ନ ।
କୂର୍ମ ଅବତାରହେଲେ ଦେବ ଚକ୍ରଧର
ଆଠଲକ୍ଷ ଯୂଣ ହେଲା ତାହାଙ୍କ ଶରୀର ।
ଗରୁଡ଼େ ଥାଇ ଡାକନ୍ତି ପ୍ରଭୁ ନାରାୟଣ
ଗିରି ଉପରେ ରହିଲେ ଯାଇ ସର୍ବଜନ ।
ଏମନ୍ତେ ସିନ୍ଧୁ ମନ୍ଥନ କରିବ କି ତୁମ୍ଭେ
ତଳେ ଆସ ଭୟ ନାହିଁ କହୁଅଛୁ ଆମ୍ଭେ ।
ଏକଲକ୍ଷ ଯୋଜନରେ ରହିଲା କି ଗିରି
ସାତଲକ୍ଷ ଯୂଣ ବାକୀ ରହେ ଦଣ୍ଡଧାରୀ ।
ଜଳ ଜନ୍ତୁଙ୍କ ଜୀବନେ ରଖିବା କାରଣ
ତେଣୁକରି ସାତଲକ୍ଷ ଉଗୁଳିଲା ଜାଣ ।
ବିଶେଷେ ସମୁଦ୍ର ମନ୍ଥା ହୋଇବ ଯେମନ୍ତେ
ତହିଁର ଅନୁରୂପରେ ହୋଇଲେ ତେମନ୍ତେ ।
ତେଣୁକରି ସେମାନଙ୍କୁ ହୋଇଲା ଯେ ସ୍ଥଳ
କୂର୍ମର ପୃଷ୍ଠରେ ଉଭା ହୋଇବେ ସକଳ ।
ତାହା ଶୁଣି ମହାରାଜା ହେଲେ ତୋଷମନ
ଏବେ ସାବଧାନେ ଶୁଣ ମନ୍ଥନ ବିଧାନ ।
ଦେବତା ଅସୁରଙ୍କର ଭୟ ଗଲା ଯହୁଁ
ଏକକୁ ଆରେକ ପୁଚ୍ଛା ପୁଚ୍ଛି ହୋନ୍ତି ତହୁଁ ।
ଦେବତାମାନେ ବୋଲନ୍ତି ଶୁଣ ହୋ ଦଇତ
କେବଣ ପାଖ ଧରିବ ହୁଅସି ଆଗତ ।
ଲାଞ୍ଜ ଧରିବ କି ତୁମ୍ଭେ ଅବା ମୁଣ୍ଡ ଆଡ଼
ତାହା ଜାଣିଲେ ହୋଇବା ସର୍ବେ ବାଡ଼ବାଡ଼
ଅସୁର ବୋଇଲେ ଯେଉଁଆଡ଼ ହେଲେ ଆଡ଼େ ।
ଏ କଥାକୁ ହେବା ପୁଣି କିମ୍ପା ବାଡ଼େବାଡ଼େ ।
ମିଶାମିଶିରେ ଧରିବା ଦ୍ୱିପାଖେ ସମସ୍ତେ
ତାହାଙ୍କ ବଚନ ଶୁଣି ବୋଇଲେ ଦୈବତେ ।
ଏମନ୍ତ ଧଇଲେ ନାହିଁ ହେବ ଏକମନ
ପର୍ବତ ଉପୁଡ଼ା ପ୍ରାୟ ହୁଅ ଭିନ୍ନ ଭିନ୍ନ ।
ହେ ଅସୁର ତୁମ୍ଭେମାନେ ଧର ପାଖେ ରହି
ଯେ ପାଖ ରହିବ ତାକୁ ଧରିବାକ ଯାଇ ।
ତାହା ଶୁଣିଣ ଦଇତେ ସନମତ କଲେ
ଆମ୍ଭର ମୁଣ୍ଡ ଆଡ଼ଟା ହୋଇଲା ବୋଇଲେ ।
ତୁମ୍ଭେ ଏବେ ଲାଞ୍ଜଆଡ଼େ ଧର ଯା ଦେବତା
ଏତେ କହି ମୁଣ୍ଡ ଆଡ଼େ ରହିଲେ ଦଇତା ।
ଦେବତାମାନେ ବୋଇଲେ ତୁମ୍ଭେ ଲାଞ୍ଜ ଧର
ଅସୁର ବୋଇଲେ ଏହା ନୁହଇ ବେଭାର ।

ଶ୍ରୀ ନାରାୟଣ ବୋଲନ୍ତି ଲାଞ୍ଜ ଧର ଯାଇଁ
ତହିଁରେ ତ ଅବିଗୁଣ ଆଉ କିଛି ନାହିଁ ।
ଅସୁରେ ବୋଇଲେ ଆମ୍ଭେ କଶ୍ୟପର ସୁତ
ବେଦ ବିଦ୍ୟା ପଢୁ ପୁଣି ଜାଣୁ ଜପ ମନ୍ତ୍ର ।
ଆମ୍ଭେ ଲାଞ୍ଜ ନ ଧରିବା ଜାଣ କଦାଚିତ
ପ୍ରଭୁ ବୋଇଲେ ଲାଞ୍ଜକୁ ଧର ଦଇବତ ।
ଲାଞ୍ଜ ଧରୁଛୁ ବୋଇଲେ ତହୁଁ ସର୍ବ ଦେବ
ଦୈତ୍ୟେ ବୋଇଲେ ନ ଧରି ଆଉ କି କରିବ ।
ଯେଉଁଆଡ଼େ ହେଲେ ପାଖେ ପାଖେ ତ ଧରିବ
ଏଥିକି ଅବିଗୁଣ ବା କେବେ ବିଚାରିବ ।
ଦେବେ ବୋଇଲେ ଯଦ୍ୟପି ଅବିଗୁଣ ନାହିଁ
ଲାଞ୍ଜକୁ ଛାଡ଼ିଣ ମୁଣ୍ଡ ଧଇଲ କିମ୍ପାଇ ।
ତୁମ୍ଭେ ସବୁ ଅଟ ସିନା କଶ୍ୟପ ନନ୍ଦନ
ଏହି ଯେତେ ଦେବେ ଛନ୍ତି ସବୁ ଜାତିହୀନ ।
ପର୍ବତ ଉପୁଡ଼ାବେଳେ କିଛି ନ ପକାଇ
ଯେଝାମତେ ଭିନ୍ନେ ଭିନ୍ନେ ଧରିବେ ଯେ ଯାଇ
ଏ ଠାବରେ ବିଚାରିଣ ଭିଆଇଲେ ମନ୍ଦ
ଯେତେ କଥା କହ ସବୁ କହିବାକୁ ଦ୍ୱନ୍ଦ୍ୱ ।
ତାହା ଶୁଣିଣ ମଉନ ହୋଇଲେ ଦଇତ
ମୁଖ ଚାହାଁଚାହିଁ ମାତ୍ର ହୋଇଲେ କିଞ୍ଚିତ ।
ଦେବତା ବୋଇଲେ ଆମ୍ଭେ ଧଇଲୁ ଲାଞ୍ଜକୁ
ତୁମ୍ଭେ ତେବେ ବହନରେ ଧର ହେ ମୁଣ୍ଡକୁ ।
ତକ୍ଷଣେ ଦଇତ୍ୟମାନେ ଧଇଲେକ ମୁଣ୍ଡ
ଲାଞ୍ଜ ଧରିଣ ଦେବତା ହୋଇଲେ ପ୍ରଚଣ୍ଡ ।
ଏମନ୍ତେ ଶୁଣନ୍ତି ଇନ୍ଦ୍ରଦ୍ୟୁମ୍ନ ନରପତି
ବୋଲେ ପୁଛିବି କଥାଏ କୁହ ମହାମତି ।
ମୁଣ୍ଡ ଆଡ଼କୁ କିମ୍ପାଇ ଧଇଲେ ଅସୁରେ
କେଉଁ କଥାକୁ ବିଚାର କରିଲେ ମନରେ ।
ନାରଦ କହନ୍ତି ସେହୁ ଜାତିରେ ରାକ୍ଷସ
ପାଦଆଡ଼କୁ ଧଇଲେ ହେବ ଉପହାସ୍ୟ ।
ଏମନ୍ତ ବିଚାରି ମୁଣ୍ଡ ଧଇଲେ ସେ ଯାଇ
ତାଙ୍କ ମନେ ମନେ ସର୍ବେ ଆନନ୍ଦିତ ହୋଇ ।
ସାନଲୋକଙ୍କର ମତ ଅଟେ ସେହିମତି
ଆପଣାର ମନେ ମନେ ବଡ଼ ହେଉଥାନ୍ତି ।
ବଡ଼ଲୋକ ହୋଇ ଯେବେ ମନ୍ଦକାର୍ଯ୍ୟ କରେ
ତେବେ କାଳିଚୂନ ଲାଗେ ନିଶ୍ଚୟ ଗାଲରେ ।

ତେଣୁ ମୁଣ୍ଡକୁ ଧଇଲେ ସକଳ ଦଇତ
ପାଦଆଡ଼ ଆଶ୍ରାକଲେ ସର୍ବ ଦଇବତ ।
ଯେମନ୍ତ ନୀରସ ଲୋକ ହୋଇବ ବା କାହିଁ
ଯେତେ ମନେ ମନେ ବଡ଼ପଣକୁ ସେ ଯାଇ ।
ଧରବୋଲି ଦେବତାଏ ବୋଇଲେଯେ କାଳେ
ଠରାଠରି ହୋଇ ମୁଣ୍ଡ ଧଇଲେ ସକଳେ ।
ମୁନି କହନ୍ତେ ହସିଲେ ତହୁଁ ନୃପବର
ବୋଇଲେ କହିବା ହେଉ ମନ୍ଥନ ବେଭାର ।
କହନ୍ତି ନାରଦ ତହୁଁ ଶୁଣ ମହୀପତି
ଦେବାସୁର ବେନିଦଳ ରଜ୍ଜୁ ଓଟାରନ୍ତି ।
ପୃଥିବୀକି ହାଣ୍ଡିକଲେ ଗିରି କଲେ ଦଣ୍ଡ
ସର୍ବ ରଜ୍ଜୁ ଦଧି ସିନ୍ଧୁ ମନ୍ଥିଲେ ପ୍ରଚଣ୍ଡ ।
ଦେବତା ଦଇତେ ତହିଁ ହୋଇଲେ ଗୋପାଳ
ଭ୍ରମନ୍ତେ ସେ ମହାଗିରି ହେଲା ଟଳ ଟଳ ।
ଓଟାରନ୍ତି ସେ ପର୍ବତ ନ ଚଳିଲା ପୁଣି
ଦେବାସୁରେ ରଜ୍ଜୁ ଆଉ ନ ପାରିଲେ ଟାଣି ।
ଡାକନ୍ତି ଯେ ଦେବାସୁରେ ଗିରି ନୁହେଁ ଚାଳି
ନାରାୟଣଙ୍କୁ କହନ୍ତି ଚତୁର ମଉଳି ।
ଦେବାସୁରେ ରଜ୍ଜୁ ଆଉ ନ ପାରନ୍ତି ଟାଣି
ଏଥିକି ଉପାୟ କର ଏବେ ଚକ୍ରପାଣି ।
ବ୍ରହ୍ମା ବଚନେ ସନ୍ତୋଷ ହୋଇ ଚକ୍ରଧର
ଦୁଇ ଦଳ ହୃଦୟରେ କଲେ ସେ ବିଚାର ।
ଯହୁଁ ହୃଦରେ ବିଶ୍ରାମ କଲେ ଜଗଜ୍ୟୋତି
ତେଜରେ ଦେବା ଅସୁର ପ୍ରଚଣ୍ଡ ମୂରତି ।
ଜଣେ ବୋଇଲା ହେ ଧର ଅତି ଦୃଢ଼କରି
ଆରକ ବୋଇଲା ଏକମନେ ଟାଣ କରି ।
ଏମନ୍ତେ ହୁଅନ୍ତେ ଡାକ ଦେଲେ ନାରାୟଣ
ଓଟାର ରଜ୍ଜୁକୁ ଗିରି ବୁଲିବ ଏକ୍ଷଣ ।
ନାରାୟଣଙ୍କ ଆଜ୍ଞାରେ ହୋଇ ତୋଷ ମତି
ଦେବାସୁର ଦୁହେଁ ଧରି ରଜ୍ଜୁ ଓଟାରନ୍ତି ।
ପୁଣ ପୁଣ ଉଚ୍ଛୁଡ଼ନ୍ତେ ଦେବତା ଅସୁର
ଆଉଜି ପଡ଼ିଣ ଗିରି ବୁଲେ ସର ସର ।
ଚାରିଦିଗକୁ ସେ ଗିରି ଲହସିଲା ଯହୁଁ
ଦେବାସୁରେ ଛାଡ଼ିକରି ରହିଲେକ ତହୁଁ ।
ଡାକନ୍ତି ସେ ଦେବାସୁର ଶୁଣ କୁଶଧର
ଅସଳଖ ହୋଇ ଦେବ ବୁଲେ ଗିରିବର ।

ଏମନ୍ତ ମନ୍ଥିଲେ ଫଳ ନ ହୋଇବ କିଛି
ପର୍ବତ ଯେ ଉପରକୁ ମାଡ଼ି ପଡୁଅଛି ।
ସେମାନଙ୍କ କଥା ଶୁଣି ଦେବ କୁଶଧର
ଦେଖିଲେ ଗରୁଡ଼ ପୃଷ୍ଠେ ଛନ୍ତି ଦାମୋଦର ।
ବୋଇଲେ ଭୋଦେବ ଗିରି ହେଲା ଟଳମଳ
ଏଥିକି ବୁଦ୍ଧିଏ କର ପ୍ରଭୁ ଆଦିମୂଳ ।
ବ୍ରହ୍ମାଙ୍କ ବଚନ ଶୁଣି ପ୍ରଭୁ ଜଗଜ୍ୟୋତି
ଆପଣା ଅଙ୍ଗରୁ ଜାତକଲେ ଏକମୂର୍ତ୍ତି ।
ଏକଶିର ଦୁଇଭୁଜ ଦ୍ୱିପାଦ ତାହାର
ପ୍ରବେଶ ହୋଇଲେ ଯାଇଁ ପର୍ବତ ଉପର ।

ମାଡ଼ିଣ ବସିଲେ ସ୍ୱାମୀ କୋପମୂର୍ତ୍ତି ଧରି
ଦେବତାଙ୍କର ସଭାରେ ଛନ୍ତି ଚକ୍ରଧାରୀ ।
ତାହା ଦେଖିଣ ସମସ୍ତେ ହେଲେ ତୋଷମନ
ବୋଇଲେ ଆନରେ କରି ନ ହୁଅ ଏମାନ ।
ପର୍ବତ ଉପରେ ବସିଛନ୍ତି ପଦ୍ମନେତ୍ର
ଡାକନ୍ତି ମନ୍ଥ ହୋ ସର୍ବେ ଦେବତା ଦଇତ ।
ତକ୍ଷଣେ ରଜ୍ଜୁ ଧଇଲେ ଦେବତା ଅସୁରେ
ହୁଙ୍କାରରେ ଉଛୁଡ଼ନ୍ତି ତହୁଁ ସର୍ବ ବୀରେ ।
ବୁଲଇ ଗିରି କୁରାଳଚକ୍ର ପ୍ରାୟ ଜାଣି
ଘୋ ଘୋ ହୋଇଣ ଗର୍ଜଇ ବାରାନିଧି ପାଣି ।

## ସମୁଦ୍ର ମନ୍ଥନ



ଚତୁର୍ଦ୍ଦିଗକୁ ତିଳେହେଁ ନ ଟଳଇ ଗିରି
ବସିଛନ୍ତି ସ୍ୱାମୀ ଗିରିଶିଖ ସଜକରି ।
ଭ୍ରମଇ ସେ ମହାଗିରି ଯେହ୍ନେ ଖୁଆଦଣ୍ଡ
ଦେବ ଦାନବ ମନ୍ଥନ୍ତି ହୋଇଣ ପ୍ରଚଣ୍ଡ ।
ତଳକୁ ପଶଇ ଗିରି ଉପରକୁ ହୁଏ
ଦଧିଭାଣ୍ଡ ମଧ୍ୟେ ଯେହ୍ନେ ଖୁଆଦଣ୍ଡ ପ୍ରାୟେ
କୂରୁମର ପୃଷ୍ଠ କଣ୍ଡୁ କରେ ପୁଣ ପୁଣ
ଉଶ୍ୱାସେ କୂର୍ମଦେବତା ଘୂର୍ମିତ ଲୋଚନ ।
ଷୋଳ ଲକ୍ଷ ଯୋଜନରେ ସମୁଦ୍ର ଅଟଇ
ମନ୍ଦର ବୁଲନ୍ତେ ସେହୁ ହାନ୍ଦୋଳି ବୁଲଇ ।
ପ୍ରଳୟ ସିନ୍ଧୁ ପରାୟେ କରେ ଘୋରନାଦ
ନକ୍ଷତ୍ର ମଣ୍ଡଳ ଯାଏ ବିଶ୍ରାମେ ଶବଦ ।
ଉପରକୁ ଟେକିଣ ଯେ ଚହଟଇ ପାଣି
ଉଗୁଳି ପନ୍ତାରି ମାଡ଼ି ଚଳଇ ଧରଣୀ ।
ମୁଖରାବର ଚହଳ ସମୁଦ୍ର ଗର୍ଜନ
ସତେ କି ପୃଥ୍ୱୀ ପାତାଳେ ହୋଇବ ପତନ ।
ବ୍ରହ୍ମଲୋକ ପରିଯନ୍ତେ ଶୁଭେ ନାଦହାକ
ସମୁଦ୍ରର ଜଳଜନ୍ତୁ ଥିଲେ ଯେ ଯେତେକ ।
କୂର୍ମଙ୍କର ପେଟତଳେ ରହିଲେ ସେ ଯାଇ
ସମୁଦ୍ରର ମହାଜଳ କମ୍ପମାନ ହୋଇ ।
ଭୟେ ଭାଜିଗଲେ ସର୍ବ ଜଳଜନ୍ତୁ ଗଣେ
ଆଶ୍ରୟ କରିଲେ ଯାଇ କୂର୍ମନାରାୟଣେ ।
ଥୋକେ ସମୁଦ୍ରକୂଳରେ ଆଉଜିଲେ ଯାଇ
ଯେ ଯାହାର ବଇରୀକି କାର ଭୟ ନାହିଁ ।
ଅଲଗା ହୋଇଣ ସର୍ବେ ଅଛନ୍ତି କେବଳ
ମହାଭୟକୁ ପାଇଣ ହୁଅନ୍ତି ବିକଳ ।
ପାତାଳ ଭୁବନ କମ୍ପେ ମହା ଘୋରନାଦ
ଅନେକ ଦୂରକୁ ବୋଲି ପ୍ରକାଶେ ଶବଦ ।
ଏକକୁ ଆରେକ ତହିଁ ଛନ୍ତି କୁହାକୁହି
କାହାରି କଥାକୁ ବୁଝି ନ ପାରନ୍ତି କେହି ।
ମୁଖରାବ ଶବ୍ଦେ ପୂରିଅଛି ବସୁନ୍ଧରୀ
କର୍ଣ୍ଣ ଟେକିଣ ଶୁଣନ୍ତେ ନ ପାରନ୍ତି ବାରି ।
ଏଥୁ ଅନନ୍ତରେ ଶୁଣ ଆହେ ମହୀପାଳ
ବେନିଘଡ଼ି ପରିଯନ୍ତେ ମନ୍ଥିଲେ ସେ ଜଳ ।
ସମସ୍ତଙ୍କର ଶରୀରୁ ଶ୍ରମଝାଳ ଗଳି
କିଛି ଜାତ ନ ହେବାରୁ ଦେବତାଏ ଭାଳି ।
ମନ୍ଥିବାର ଛାଡ଼ିଦେଇ ରହିଲେ ସମସ୍ତେ
ଉଭା ହୋଇଣ ବ୍ରହ୍ମାଙ୍କୁ ଡାକନ୍ତି ଦୈବତେ ।
କୂଳକୁ ବହୁତ ଦୂର ଅଛି ଛଡ଼ା ହୋଇ
ପବନ ଦେବ ବାରତା କହେ ଆସି ତହିଁ ।
ଶୁଣି ପ୍ରଜାପତି ତହୁଁ ବିଚାରିଣ ଚିତ୍ତେ
ଡକାଇ ଆଣିବେ ଦେବ ତହୁଁ ରକ୍ଷନାଥେ ।
ଜାମ୍ବବ ବୋଲିଣ ନାମ ଅଟଇ ତାହାର
ତାକୁଚାହିଁ ଆଜ୍ଞାଦେଲେ ଦେବ କୁଶଧର ।
ତୁ ହୋ ରକ୍ଷରାଜ ଏହିକ୍ଷଣି ଚଳିଯାଅ
ପୃଥ୍ୱୀରୁ ଔଷଧ ଆଣି ସମୁଦ୍ରେ ପକାଅ ।
ରକ୍ଷ ବୋଲେ ଔଷଧ ମୁଁ ଚିହ୍ନି ଜାଣେ ନାହିଁ
କେବଣ କେବଣ ବୃକ୍ଷ ଆଣିବି ଗୋସାଇଁ ।
ତା ବଚନେ ବ୍ରହ୍ମା ଦେଲେ ଔଷଧର ପୋଥି
ଏଥିକି ଚାହିଁ ଔଷଧ ଆଣ ରକ୍ଷପତି ।
ବାବୁରେ ତୋତେ ପ୍ରସନ୍ନ ହୁଅନ୍ତି ସାରଦା
ଏ ବିଦ୍ୟା ତୋହରଠାରେ ଥାଉରେ ସର୍ବଦା ।
ଚଳଇ ସେ ରକ୍ଷରାଜ ନମସ୍କାର କରି
ଦିନକ ମଧ୍ୟେ ବୁଲିଲା ସର୍ବ ବସୁନ୍ଧରୀ ।
ସ୍ୱର୍ଗ ନରଲୋକ ଆଣେ ଔଷଧର ଗଛ
ବ୍ରହ୍ମାଙ୍କ ଛାମୁରେ ଦେଲା ନେଇ ସିଦ୍ଧବଚ ।
ବ୍ରହ୍ମା ବୋଇଲେ ମୋତେ ତୁ ଦେଇଛୁ କିପାଇଁ
ସମୁଦ୍ର ଜଳରେ ବାବୁ ବେଗେ ପକା ନେଇ ।
ତକ୍ଷଣେ ସେ ବିକ୍ରମିଲା ରକ୍ଷ ମହାବଳ
ଯାଇଣ ରହିଲା ସେହୁ ଗଗନ ମଣ୍ଡଳ ।
ଔଷଧମାନଙ୍କୁ ମର୍ଦ୍ଦି ପକାଏ ଜଳରେ
ପୁଣିହିଁ ବ୍ରହ୍ମାଙ୍କୁ ଆସି କହିଲା କୂଳରେ ।
ଅନେକ ପ୍ରଶଂସା ତାକୁ କଲେ ବେଦବର
ଏହି ପୋଥିଗୋଟି ବାବୁ ଥାଉ ତୋ ହସ୍ତର ।
ଏ ପୋଥିରେ ଦେବ କାର୍ଯ୍ୟ ହୋଇବ ବହୁତ
ଶୁଣି ସନ୍ତୋଷ ହୋଇଲା ପୁଣି ରକ୍ଷନାଥ ।
ଏ ବଚନେ ପଚାରିଲେ ରାଜା ଇନ୍ଦ୍ରଦ୍ୟୁମ୍ନ
ରକ୍ଷରାଜ କେଉଁରୂପେ ଶିବଙ୍କ ନନ୍ଦନ ।
ଏକଥା ସଂକ୍ଷେପେ ମୋତେ କହ ମୁନିବ୍ରହ୍ମ
କହନ୍ତି ନାରଦ ଶୁଣ ଆହେ ଇନ୍ଦ୍ରଦ୍ୟୁମ୍ନ ।
ହିମାଳୟଙ୍କ ଦୁହିତା ଅଟନ୍ତି ପାର୍ବତୀ
କେତେକାଳେ ବିଭା ତାଙ୍କୁ ହେଲେ ପଶୁପତି ।

ପ୍ରସନ୍ନ ହୋଇ ବିଷ୍ଣୁଙ୍କୁ ଧ୍ରୁବପୁର ଦେଲେ
ପାର୍ବତୀଙ୍କୁ ଘେନି କପିଳାସରେ ରହିଲେ ।
କପିଳାସକୁ ଲାଗିଛି ଯେଉଁ ସ୍ଥାନ ମାନ
ତେଣୁକରି ତାର ନାମ ଦେଲେ ରୁଦ୍ରବନ ।
ଆପଣ ସଦା ଭ୍ରମଣ କରନ୍ତି ଯେ ତହିଁ
ସେ ବନକୁ ନିଜ ନାମ ତେଣୁ ଦେଲେ ଚାହିଁ ।
ଆମ୍ବ ପଣସ କଦଳୀ ଜାମୁ ନଟିକାଳ
ପିପ୍ପଳୀ ମରୀଚଲତା ଦ୍ରାକ୍ଷା ଜାଇଫଳ ।
ନାନାଦି ବୃକ୍ଷମାନେ ଯେ ରହିଛନ୍ତି ତହିଁ
ମୃଗ ସମ୍ବର ଗଣ୍ଡାଦି ଜନ୍ତୁ ଛନ୍ତି ରହି ।
ନାନାଦି ପ୍ରକାର ପୁଷ୍ପ ଅଛି ସେ ବନରେ
ଆମୋଦିତ ହେଉଥାନ୍ତି ବାୟୁ ସହିତରେ ।
ସର୍ବଦା ବସନ୍ତ ବାୟୁ ବହଇ ସେ ବନେ
ହର ପାର୍ବତୀ ବୁଲନ୍ତି ତହିଁ ତୋଷମନେ ।
ଦିନେ ସଦାଶିବ ହେଲେ ଭଲ୍ଲୁକର କାୟ
ତାହା ଦେଖିଣ ହସିଲେ ଗିରିଜାଙ୍କ ଝିଅ ।
କେତେ ବିଡ଼ମ୍ବନା ରୂପ ଦେଉଛ ହେ ନାଥ
ତୁମ୍ଭର ମହିମା ଜାଣି ନ ପାରେ କିଞ୍ଚିତ ।
ଦେବୀ ବଚନେ ହରଷ ହୋଇ ପଞ୍ଚାନନ
ବୋଇଲେ ଏ ରୂପ ଧର ସଖୀ ତୁ ବହନ ।
ସ୍ୱାମୀଙ୍କ ବଚନେ ଦେବୀ ସେରୂପ ଧଇଲେ
ଦୁହେଁ ହାସ୍ୟକଉତୁକେ ସଂଯୋଗ ହୋଇଲେ ।
ବନରେ ଭ୍ରମଣ କରି ହୋଇଣ ସନ୍ତୋଷ
ପୁଣି ଦୁହେଁ ନିଜରୂପ କରିଲେ ପ୍ରକାଶ ।
ଏଥୁଅନ୍ତେ ତୁମ୍ଭେ ଶୁଣ ଆହେ ଦଣ୍ଡଧାରୀ
ତହୁଁ ପୁତ୍ରେକ ଜନ୍ମିଲା ଭାଲୁରୂପ ଧରି ।
ମୁଖ ଗୋଟିକ ଭାଲୁର ନର କଳେବର
କୋଳରେ ଘେନି ପାର୍ବତୀ ତାକୁ ଦେଲେବର ।
କୋଟିଏ ସିଂହର ବଳ ତୋ ଶରୀରେ ହେଉ
ତିନିବ୍ରହ୍ମାଣ୍ଡରେ ତୋତେ ଜିଣନ୍ତା କେ ନୋହୁ ।
ଯୁଗ ଯୁଗାନ୍ତରେ ତୁହି ହୋଇବୁ ଅମର
ସକଳ ଶାସ୍ତ୍ରରେ ଜ୍ଞାନ ହୋଇବ ତୋହର ।
ଏମନ୍ତ ବୋଲି ସ୍ତନରୁ କ୍ଷୀରପାନ ଦେଲେ
ପାନ କରନ୍ତେ କୁମର ଉଠିଣ ବସିଲେ ।
ପାର୍ବତୀ ବୋଇଲେ ତୁହି ଋକ୍ଷରାଜ ହୁଅ
ଏ ବନସ୍ତେ କୁମରରେ ତୁହି ରହିଥାଅ ।
ଇଚ୍ଛା ହେଲେ ଭ୍ରମଣ ତୁ କର ଯହିଁ ତହିଁ
ମୋହର ପ୍ରସାଦେ ତୋତେ କାହିଁ ଭୟ ନାହିଁ ।
ଏତେ କହିଣ ଈଶ୍ୱର ପାର୍ବତୀ ଚଳିଲେ
କପିଳାସ ସ୍ଥାନେ ଯାଇ ପ୍ରବେଶ ହୋଇଲେ ।
ଆଶ୍ରମ କରି ଜାମ୍ବବ ସେ ସ୍ଥାନେ ରହିଲା
ଫଳମୂଳ ଖାଇ ନିଜ ଆତ୍ମାକୁ ରଖିଲା ।
ସ୍ୱର୍ଗ ପାତାଳ ଯହିଁକି ତା ଇଚ୍ଛା ଗମଇ
ମଞ୍ଚପୁରରେ ଗମଇ ଭୟ କାହିଁ ନାହିଁ ।
କାଳେ ସମୁଦ୍ର ମନ୍ଥନ କରିଲେ ଦେବତା
ବ୍ରହ୍ମା ତା ହସ୍ତରେ ଦେଲେ ଔଷଧିର ପୋଥା ।
ସମୁଦ୍ର ମନ୍ଥନ ବ୍ରହ୍ମା ଡକାନ୍ତେ ଅଇଲା
ପୂର୍ବର ଯେ ପୁଣ୍ୟବଳ ତାକୁ ପ୍ରାପ୍ତ ହେଲା ।
ଶୁଣିଲ କି ନରପତି ଜାମ୍ବବ ଚରିତ
ଶୁଣିଣ ସନ୍ତୋଷ ହେଲି ବୋଲେ ନରନାଥ ।
ଦୀନ କାମପାଳ ବୋଲେ ବୋଲ ହରି ହରି
ଏ ଭବସାଗରୁ ନିଶ୍ଚେ କରିବେ ସେ ପାରି ।

## ଅମୃତ, ଐରାବତ, ସୁରା ଏବଂ ଲକ୍ଷ୍ମୀଠାକୁରାଣୀଙ୍କ ଜନ୍ମ

ନାରଦଙ୍କ ମୁଖ ଚାହିଁ ପୁଣି ପୁଚ୍ଛେ ରାଏ
ସମୁଦ୍ର ମନ୍ଥନେ କିସ କଲେ ଦେବତାଏ ।
କହନ୍ତି ଯେ ମହାମୁନି ପଡ଼ନ୍ତେ ଔଷଧି
ଦେବ ଦଇତେ ରଜ୍ଜୁକୁ ଧଇଲେ ନିରୋଧି ।
ବ୍ୟାପିତ ହୋଇ ଔଷଧ ଭାସେ ସବୁଠାରେ
ଗିରିପ୍ରାୟ କୁଢ଼ କୁଢ଼ ସମୁଦ୍ର ଭିତରେ ।
ମନ୍ଥିବାର ଦେବାସୁରେ ପ୍ରଶଂସା କରନ୍ତି
ସାଧୁ ସାଧୁ ଅଟୁ ତୁହି ଆରେ ଋକ୍ଷପତି ।
ଧନ୍ୟ ପରାକ୍ରମ ବହେ ତୋହର ଶରୀର
ଭଲ ଜାଣି ପଠାଇଲେ ତୋତେ କୁଶଧର ।
ଧନ୍ୟ ତୋହର ଜନମ ଧନ୍ୟ ପିତାମାତା
ପ୍ରଶଂସା କରନ୍ତି ତହିଁ ଅସୁର ଦେବତା ।
ଗିରି ସମାନ ଔଷଧ ପଡ଼ନ୍ତେ ଜଳରେ
ମହାବଳେ ବଳୀୟାର ହେଲେ ସର୍ବବୀରେ ।
ଓଟାରନ୍ତେ ଭ୍ରମଣ ଯେ କରେ ମହାଗିରି
ମନ୍ଥନ୍ତି ସେ ଦେବାସୁରେ ହୁଁ ହୁଁ କାର କରି ।

ଔଷଧରୁ ସୁ- ଅମୃତ ଜନମ ହୋଇଲା
ମନ୍ଦର ଖୁଆ ଦଣ୍ଡ ଯେ ମନ୍ଥି ଜାତକଲା ।
ତକ୍ଷଣେ ଅମୃତ ତହୁଁ ହୋଇଲାକ ଜାତ
ସମୁଦ୍ର ଭାଣ୍ଡରେ ସେହୁ ହୋଇଅଛି ସ୍ଥିତ ।
ଭାସୁଅଛଇ ଜଳରେ ଚନ୍ଦ୍ର ଜ୍ୟୋତି ଜାଣି
ମୁଖରେ ଘୋଡ଼ା ହୋଇଛି ତାହାର ଢାଙ୍କୁଣି
ଦେବତାଏ ଦେଖିଲେ ଯେ ଭାସୁଛି ଜଳରେ
ତହୁଁ ଡାକନ୍ତି ଦେବତା ରୁହରେ ଅସୁରେ ।
କି ଦ୍ରବ୍ୟ ଜାତ ହୋଇଲା ଦେଖିବାରେ ଆସ
ମନ୍ଥନକୁ ଛାଡ଼ିଗଲେ ଦେବତା ରାକ୍ଷସ ।
ତତକ୍ଷଣରେ ଜଳରୁ ଆଣିଲେ ସେ ଛାଣି
ଶତ ସୁବର୍ଣ୍ଣ ଭାଣ୍ଡରେ ମୁଦହିଁ ଢାଙ୍କୁଣି ।
ଅସୁର ଫିଟାଇ ଯାନ୍ତେ ଦେବେ କଲେନାହିଁ
ଆମ୍ଭେ ମନ୍ଥିବା ସେମାନେ ଦେଖନ୍ତୁ ଫିଟାଇ
ତାହା ଶୁଣିଣ ଅସୁରେ ସନ୍ତୋଷ ହୋଇଲେ
ବ୍ରହ୍ମାଙ୍କ ଛାମୁରେ ଦେବେ ନେଇ ସମର୍ପିଲେ ।
ତାକୁ ଦେଖିଣ ସନ୍ତୋଷ ହେଲେ ପ୍ରଜାପତି
ଅମୃତ କୁମ୍ଭକୁ ସେହୁ ଫିଟାଇ ଦେଖନ୍ତି ।
ଚହଟି ଉଠିଲା ବାସ ପ୍ରଫୁଲ୍ଲିତ କାୟେ
ତାହା ଦେଖିଣ ଆନନ୍ଦ ହେଲେ ଦେବତାଏ ।
ଅମୃତ ବୋଲି ଚିହ୍ନିଲେ ତାକୁ ବେଦବର
ଉବୁରା ପଡ଼ିଦେଖନ୍ତି ଦେବତା ଅସୁରେ ।
ଦଣ୍ଡରେ ଲାଗି ଅମୃତ ଭାସଇ ଜଳରେ
ତାକୁ ଛାଣି ଦେବାସୁରେ ରଖନ୍ତି ଭାଣ୍ଡରେ ।
ବ୍ରହ୍ମାଙ୍କ ଛାମୁରେ ଦେଲେ ପୁଣି ତାହାନେଇ
ବୋଇଲେ ଏ ଜାତ ହେଲା ନିଅ ହେ ଗୋସାଇଁ ।
ତକ୍ଷଣେ ତାହା ଘେନିଲେ ଦେବ ପ୍ରଜାପତି
ଏ ମଧ୍ୟ ଅମୃତ ବୋଲି ସର୍ବଙ୍କୁ କହନ୍ତି ।
ନାଗ ନର ଦେବ ଆଉ ଯେତେକ ରାକ୍ଷସ
ତାହା ଶୁଣି ବିଷ୍ଣୁ ରୁଦ୍ର ହୋଇଲେ ସନ୍ତୋଷ ।
ଦୈତ୍ୟେ ବୋଲନ୍ତି ଆମ୍ଭଙ୍କୁ ଏ ପଦାର୍ଥ ଦିଅ
ଆଉ ଯାହା ଉପୁଜିବ ପଛେ ତାହା ନିଅ ।
ବ୍ରହ୍ମା ବୋଇଲେ ଏମନ୍ତ ଉଚିତ ନୁହଇ
ସମସ୍ତଙ୍କର ଅମୃତ କେମନ୍ତେ ଦେବଇଁ ।
ଏହି ଅମୃତକୁ ନେଇ କୋଠରେ ରଖିବା
ଆଉ କି କି ଉପୁଜିବ ତାହାହିଁ ଦେଖିବା ।

ରତ୍ନାଦି ଜନ୍ମିଲେ ବାଣ୍ଟି ନେବା ପରସ୍ପର
ଅମୃତ ଭୁଞ୍ଜିବା ବସି ଦେବତା ଅସୁର ।
ସବୁ ଜାତ ହେବାଯାଏ ତୁନି ହୋଇଥାଏ
ଏ ଦ୍ରବ୍ୟ ମୋହର ବୋଲି ଧରା ଧରି ନୁହ ।
ସକଳ ଦ୍ରବ୍ୟ କୋଠରେ ନେଇ ରଖିଥିବା
ବାଣ୍ଟି ନେଲାବେଳେ ସବୁ ଏକାବେଳେ ନେବା ।
ତୁମ୍ଭେ ଆମ୍ଭେ ବେନି ସିନା ଅଧିକାରୀ ଏଥେ
ପୁଣି ଭିନ୍ନା ଭିନ୍ନ କିମ୍ପା କରୁଅଛ ଚିତ୍ତେ ।
ଯେତେବେଳେ ସବୁ ଦ୍ରବ୍ୟ ହୋଇଲାକ ଠୁଳ
ଯେ ଯେମନ୍ତ ବାଣ୍ଟି ନେବା ନ ହୁଅ ବିକଳ ।
ତାହା ଶୁଣିଣ ସନ୍ତୋଷ ହୋଇଲେ ଦଇତ
ବୋଇଲେ ଅମୃତ ଥାଉ ତୋହର ଅଗ୍ରତ ।
ବ୍ରହ୍ମା ବୋଇଲେ ଏ ସବୁ ରହିଲା ମୋ ଠାଇଁ
ପୁଣି ମନ୍ଥନ୍ତି ସମୁଦ୍ର ପ୍ରଚଣ୍ଡତା ହୋଇ ।
ସେହିକ୍ଷଣି ଐରାବତ ହସ୍ତୀ ହେଲାଜାତ
ଭାସଇ ଜଳରେ ଯେହ୍ନେ ଶ୍ୱେତ ପରବତ ।
ରହ କିସ ଜାତ ହେଲା ଡାକନ୍ତି ଦଇତେ
ଧାଇଁ ହସ୍ତୀକୁ ଧଇଲେ ଦେବତା ସମସ୍ତେ ।
ଥୋଡ଼ ହସ୍ତୀକୁ ଟେକନ୍ତେ ତାହାକୁ ଚିହ୍ନିଲେ
ଥୋଡ଼ ହସ୍ତ ଧରି ତାକୁ ଜକୁ ଘେନିଗଲେ ।
ବ୍ରହ୍ମାଙ୍କ ଛାମୁରେ ନେଇ ଭେଟିଲେ ତକ୍ଷଣି
ଦିଶଇ ସେ ମହାଗଜ ମନ୍ଦରକୁ ଜିଣି ।
ଶ୍ୱେତ ଶରୀର ଲକ୍ଷଣ ପୂର୍ଣ୍ଣ ତାର କାୟେ
ସିନ୍ଧୁର ଜାତ ସେ ହସ୍ତୀ ଭାଷ ଦେବ ପ୍ରାୟେ ।
ଦେଖିଣ ସନ୍ତୋଷ ହେଲେ କମଳ ଆସନ
କୋଠରେ ରଖିଲେ ତାକୁ କରିଣ ଯତନ ।
ପୁନଃ ପୁନଃ ମନ୍ଥିଲେ ସେ ସର୍ବ ମହାବୀରା
ତକ୍ଷଣେ ଜାତ ହୋଇଲା ସମୁଦ୍ରରୁ ସୁରା ।
ରଜତ କୁମ୍ଭରେ ଥାଇ ଭାସଇ ଜଳରେ
ଧାଇଁ ଯାଇଣ ତକ୍ଷଣେ ଧଇଲେ ଅସୁରେ ।
ବ୍ରହ୍ମାଙ୍କର ସନ୍ନିଧିରେ ତାହା ଦେଲେ ନେଇ
ମୁଦ ଭାଙ୍ଗିଣ ଦେଖନ୍ତି ସାବିତ୍ରୀର ସାଇଁ ।
ଅମେଧ ପଦାର୍ଥ ସେହୁ ବଡ଼ଇ ଦୁର୍ଗନ୍ଧ
ଟୋପାଏ ଖାଇଲେ ଝାଙ୍କି କରଇ ପ୍ରମାଦ ।
ଚାରିବର୍ଣ୍ଣେ ଯେ ଭକ୍ଷଇ ପତିତ ହୁଅଇ
ଅନ୍ତିମ କାଳରେ ପୁଣି ନରକେ ପଡ଼ଇ ।

ସୁରା ବୋଲିଣ ତାହାକୁ ଅଲଗା ରଖିଲେ
ପୁଣି ଯାଇଁ ଦେବାସୁରେ ସମୁଦ୍ର ମନ୍ଥିଲେ ।
ତକ୍ଷଣେ ଜନ୍ମିଲେ ଲକ୍ଷ୍ମୀ ଦେବୀ ମାହେଶ୍ୱରୀ
ଅମୃତଭାଣ୍ଡ କାଖରେ ଅଛନ୍ତି ସେ ଧରି ।
ଦେବବାସନାଳଙ୍କାରେ ଅଛନ୍ତି ଭୂଷଣ
ସହସ୍ର ଚନ୍ଦ୍ରମା ଜିଣି ବିକାଶେ କିରଣ ।
ବେନିଭୁଜେ ରହିଅଛି ହୀରା ବାହି ବେନି
ଶରୀରର ପଟାନ୍ତର ସୁବର୍ଣ୍ଣ ରସାଣି ।
ନୀଳ ମେଘର ପରାୟେ ଦିଶେ କେଡ଼େ ଶୋଭା
ନାସାରେ ରତ୍ନ ବସଣି ଚନ୍ଦ୍ର ପ୍ରଭା ଆଭା ।
ବିମ୍ବଫଳ ପ୍ରାୟେ ଓଷ୍ଠ ଦନ୍ତ ଗଜମୋତି
ରୂପକୁ ସରି ନୁହଁନ୍ତି କୋଟିଏ ପାର୍ବତୀ ।
ସୁବର୍ଣ୍ଣ ଫଳ ପରାୟେ କର୍ଣ୍ଣ ଶୋଭାପାଏ
ନାସା ପଟାନ୍ତର ତିଳ ପୃଷ୍ପର ପରାୟେ ।
ବେନି ଭୁଜ ଯେ ବୃଷଳ ଜାନୁରେ ପଡ଼ଇ
ହସ୍ତର ପାପୁଲି ଜବାଫୁଲକୁ ଜିଣଇ ।
ଚମ୍ପା କଢ଼ର ପରାୟେ ଅଙ୍ଗୁଷ୍ଠି ଶୋଭନ
ନଖଙ୍କର ଜ୍ୟୋତି ଶୁଦ୍ଧ ମୁକୁତାର ବର୍ଣ୍ଣ ।
ଡମ୍ବରୁ ମଝା କଟୀ ଯେ ସୁନ୍ଦର ଦିଶଇ
ପାଦର ପଟାନ୍ତରକୁ କିଛି ନ ମିଳଇ ।
ଚାହିଁ ଦେଲେ ମୃତ ପ୍ରାଣୀ ପାଇବ ଯେ ପ୍ରାଣ
ହସିଣ ଦେଲେ ଅମୃତ ହେବ ବରଷଣ ।
କୋଟିଏ ଲକ୍ଷଣ ଶୁଣି ଅଛି ତାଙ୍କ ତହିଁ
ସହସ୍ର ବର୍ଷରେ ଗୁଣ ନ ହୋଇବ କହି ।
ନୀଳୋତ୍ପଳ ନୟନରେ ମୋହେ ସର୍ବ ଲୋକ
ଆଶ୍ଚର୍ଯ୍ୟ ହୋଇଲେ ଥିଲେ ସେଠାରେ ଯେତେକ ।
ସମୁଦ୍ର ମନ୍ଥନ ଛାଡ଼ି ଘେନିଣ ଆସନ୍ତି
ଦେବସଭା ମଧ୍ୟେ ନେଇ ଉଭା କରାବନ୍ତି ।
ସୁବର୍ଣ୍ଣ ଶତ ପଦ୍ମର ଧରିଛନ୍ତି ମାଳି
ମୋହିତ ହୋଇଣ ସର୍ବେ ପଡ଼ିଲେକ ଢଳି ।
ପୁଣହିଁ ଚେତା ଆସିଣ ପଶିଲା ଶରୀରେ
ସକଳେ ଚାହାଁନ୍ତି ତାଙ୍କୁ ବିକଳ ନେତ୍ରରେ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଆଦି ଭୋଳ ହୋଇଗଲେ
ଦେହରେ ଯେ ଜ୍ଞାନ କେହି ରଖିନ ପାରିଲେ ।
ରୁଦ୍ର ଦେବଙ୍କ ମନରେ ନେବାକୁ ବିଚାର
ବିଷ୍ଣୁଙ୍କ ବିଚାର ମଧ୍ୟ ସେହି ପରକାର ।
ବ୍ରହ୍ମାଙ୍କର ଟିକେ ଟିକେ ରହିଅଛି ମନ
ନେବୁ ବିଚାରନ୍ତି ଚନ୍ଦ୍ର ସୂର୍ଯ୍ୟ ଭଗବାନ ।
ଇନ୍ଦ୍ର ଦେବତାର ମନ ହେଉଛି ଅସ୍ଥିର
ପବନ ଯମ କୁବେର ମନ ସେ ପ୍ରକାର ।
ଅସୁରଙ୍କର ବିଚାର ଘେନି ପଳାଇବେ
ଆନନ୍ଦରେ ଦେଖୁଛନ୍ତି ସର୍ବ ନୃପ ଦେବେ ।
ତ୍ରିଦଶ ପୁର ଦେବତା ନାଗ ନର ଆଦି
ସବୁର ଚିତ୍ତ ରହିଛି ନାରୀରତ୍ନ ନିଧି ।
ଚାରିମେଘ ଅଷ୍ଟବସୁ ବସୁଦେବ ଛନ୍ତି
ସିଦ୍ଧି ସାଧକ ଋଷିଏ ପୁଣି ନାଗପତି ।
ସମସ୍ତଙ୍କର ଚିତ୍ତ ଯେ ହୋଇଲା ମୋହିତ
ପଲକ ନ ପକାଇଣ ଚାହାଁନ୍ତି ନିରତ ।
ଭରସି କେହି କାହାକୁ ନ ପାରନ୍ତି କହି
ଅସୁରମାନେ କହନ୍ତି ତହିଁ ରୁଣ୍ଡ ହୋଇ ।
ଆହେ ଦେବତା ଆମ୍ଭଙ୍କୁ ଏ କନ୍ୟାଟି ଦିଅ
ଯେତେ ଉପୁଜିଛି ସବୁ ତୁମ୍ଭେ ମାନେ ନିଅ ।
ଆବର ଏଣିକି ପୁଣି ଉପୁଜିବ ଯେତେ
ତାହା ମଧ୍ୟ ସବୁ ନିଅ ଦେଲୁ ତୋଷଚିତ୍ତେ ।
ବ୍ରହ୍ମା ବୋଇଲେ ଏ କଥା ଉଚିତ ନୁହଇ
କୋଠରେ ରଖିଣ ଥିବା ଥାନ୍ତୁ ସେହି ରହି ।
ଏରୂପେ ଦିଆ ନୋହିବ ଶୁଣ ହେ ଦଇତେ
କହିଲେ ନ ବୁଝ ଦ୍ୱନ୍ଦ୍ୱ ଭିଆଉଛ କେତେ ।
ସ୍ୱଇଛାରେ ଆବୋରିଲେ କିଏ ତାଙ୍କୁ ଦେବ
ଆମ୍ଭେ ଯାହା କହୁଥାଇ ଶୁଣ ତାହା ସର୍ବ ।
ଏହି କନ୍ୟାକୁ କୋଠରେ ଆମ୍ଭେ ରଖିଥିବା
ଯାହାକୁ ବରିବ କନ୍ୟା ତାକୁ ସିନା ଦେବା ।
ଆଉ ତୁମ୍ଭେମାନେ କେହି ଗୋଳ ନ କରିବ
ଯାହାକୁ ତାହାର ମନ ବରିଲେ ସେ ନେବ ।
ଏକ ଜଣକୁ ତୁମ୍ଭେ କି ନେବ ହେ ସମସ୍ତେ
ସମସ୍ତଙ୍କ ହୋଇଥାଉ ଏହି କୋଠଗତେ ।
କିଛି ନ ବିଚାରି ସୁଖେ ତୁମ୍ଭେ ରହିଥାଅ
ତୁମ୍ଭ ସବୁଙ୍କୁ କହୁଛୁ ଅଧୈର୍ଯ୍ୟ ନ ହୁଅ ।
ତାହା ଶୁଣିଣ ସନ୍ତୋଷ ହୋଇଲେ ଦଇତେ
ଲକ୍ଷ୍ମୀଙ୍କ କୋଠରେ ତହିଁ ରଖିଲେ ସମସ୍ତେ ।
ନାରଦଙ୍କୁ ପଚାରିଲେ ଇନ୍ଦ୍ରଦ୍ୟୁମ୍ନ ନୃପ
ମହାଲକ୍ଷ୍ମୀ ସମୁଦ୍ରରୁ ଜନ୍ମିଲେ କିରୂପ ।

କାହିଁଥିଲେ ମହାମ୍ୱାଣି କେଉଁ କୁଳେ ଜାତ
ଜଳୁ କି ଭୂମିରୁ ସେହୁ ହୋଇଲେ ସଂଭୂତ ।
ଏକଥା ସଂକ୍ଷେପି ମୋତେ କହ ବ୍ରହ୍ମଚାରୀ
ଲକ୍ଷ୍ମୀଙ୍କ ଜନମ ଶୁଣି ଭବୁ ହେବୁ ପାରି ।
ତହୁଁ ସେହି ନରପତି ପୁଚ୍ଛିଲେ ଏସନ
କହନ୍ତି ନାରଦ ଶୁଣ ଆହେ ଇନ୍ଦ୍ରଦ୍ୟୁମ୍ନ ।
ଯେବଣ କାଳରେ ମହା ପ୍ରଳୟ ହୋଇଲା
ଚଉଦ ଭୁବନ ସବୁବେଳେ ନାଶ ଗଲା ।
ବଟପୁଟେ ରହି ସୃଷ୍ଟି କଲେ ଚକ୍ରପାଣି
ପରମ ଲୋକରେ ଲୀନ ଲକ୍ଷ୍ମୀ ଠାକୁରାଣୀ ।
ସେହି ଆଦ୍ୟାମାତାଙ୍କର ଭଙ୍ଗ ନୁହେଁ ବର୍ଣ୍ଣ
ସ୍ତିରୀ ଅଙ୍ଗ ସେହି ଯେଣୁ ଲକ୍ଷ୍ମୀହେଲେ ଲୀନ ।
କାଳେ ପୃଥିବୀ ପୁଣିହିଁ ହୋଇଲାକ ଜାତ
ପରମ ଲୋକ ଜନମି ହେଲେ ପୃଥ୍ୱୀଗତ ।
ବରୁଣର ଭୁବନରେ ହେଲେ ଉତପତ୍ତି
ସେ ପାଳିଲା ତା କୁମାରୀ ବୋଲିଣ ଡାକନ୍ତି ।
ରତ୍ନମୟ ପୁରୀ ଯେହୁ ଶତଯୁଣ ସ୍ଥଳୀ
ସେହି ଗୃହରେ ବଢ଼ିଲେ ସେ ପରମାବଳୀ ।
ସମୁଦ୍ର ମନ୍ଥନ ଯହୁଁ କରିଲେ ଦେବତା
ତାଙ୍କୁ ତିଆରି କହିଲେ ତାଙ୍କ ପିତାମାତା ।
ରତ୍ନମାଳାରୁ ଗୋଟିଏ ତାଙ୍କ ହସ୍ତେ ଦେଲେ
ନାରାୟଣଙ୍କୁ ବରିବୁ ପ୍ରକାଶି ବୋଇଲେ ।
କହିଣ ବରୁଣ ଗଲେ ଦେବତାଙ୍କ ପାଶ
ପିତା ବଚନରେ ଦେବୀ ବୋଇଲେ ପ୍ରକାଶ ।
ଲୋଭରେ ଦେବତାମାନେ କାଠେ ରଖିଛନ୍ତି
ନାରାୟଣଙ୍କୁ କରିବେ ଜନ୍ମେ ଜନ୍ମେ ପତି ।
କୌଣସିକାଳେ ନୁହନ୍ତି ସେହୁ ଯୋନିଜାତ
ସଦା ଅଯୋନି ସମ୍ଭବା ପୃଥ୍ୱୀ ତାଙ୍କ ମାତ ।
ପ୍ରଥମ ଜନ୍ମ ତାଙ୍କର ହୋଇଲାକ ଏହୁ
ପୃଥିବୀ ଆପରୁ ଜନ୍ମ ହୋଇଲେକ ସେହୁ ।
ମୂଳମାତା ତାହାଙ୍କର ଅଟେ ବସୁନ୍ଧରୀ
ଜଳୁ ଆସନ୍ତେ ବୋଲନ୍ତି ସିନ୍ଧୁର କୁମାରୀ ।
ନିଶ୍ଚୟ ସେ ନରପତି ପୃଥ୍ୱୀରୁ ସେ ଜାତ
ଯେବଣ ଦିନେ ହେଲା ତା କହିବା ତଦନ୍ତ ।
ମାଘ ଶୁକଳ ପଞ୍ଚମୀ ପୁଣି ଗୁରୁବାରେ
ସେ ଦିନ ସିନ୍ଧୁ ମନ୍ଥିଲେ ସର୍ବ ଦେବାସୁରେ ।
ସ୍ୱାତୀ ନାମରେନକ୍ଷତ୍ର ମାହେନ୍ଦ୍ରର ଯୋଗ
ମକର ସଂକ୍ରାନ୍ତି ପଞ୍ଚବିଂଶ ଦିନ ଭୋଗ ।
ସେ ଦିନ ପୂଜାକରନ୍ତି ଯେଉଁ ଯେଉଁ ଜନ
ସକଳ ହୁଅଇ ସିଦ୍ଧି ବାଞ୍ଛା ହୁଏ ପୂର୍ଣ୍ଣ ।
ସେହିଦିନ ମହାଲକ୍ଷ୍ମୀ ହେଲେ ଉତପତ୍ତି
ଆବର ଯହିଁରୁ ଜାତ ହେଉଛନ୍ତି ମୂର୍ତ୍ତି ।
ମୂର୍ତ୍ତିବନ୍ତ ହୋଇ ହସ୍ତୀ ଜଳୁ ହେଲା ଜାତ
ପୃଥିବୀ ଜଳ ଔଷଧ ହେଲେ ଏ ଏକତ୍ୱ ।
ଜଳ ପଙ୍କ ନ ଲାଗଇ ନିର୍ମଳ ତା କାୟେ
ଯେମନ୍ତେ ପଙ୍କରୁ ପଦ୍ମ ଜନ୍ମ ହୋଇଥାଏ ।
ବେଦ ଅନୁକ୍ରମେ ବ୍ରହ୍ମା ଚିନ୍ତାକରେ ଯାହା
ସମୁଦ୍ର ମନ୍ଥନେ ତେଣେ ଜାତହୁଏ ତାହା ।
ଦଇବର ମାୟା ସବୁ ଅଗୋଚର ସେହୁ
ଶୁଣିଣ ପରମ ତୋଷ ହେଲେ ନୃପରାହୁ ।
ଶ୍ରୀହରି ପାଦପଦ୍ମରେ ରଖି ଦୃଢ଼ମନ
କୂର୍ମ ପୁରାଣ ଲେଖଇ କାମପାଳ ହୀନ ।

## ଅଷ୍ଟ ଅପ୍‌ସରୀ, ଚନ୍ଦ୍ର ଓ ଅଷ୍ଟନିଧିଙ୍କର ଜନ୍ମ

ଏଥୁ ଅନନ୍ତରେ ତୁମ୍ଭେ ଶୁଣ ନୃପବର
ସିନ୍ଧୁ ମନ୍ଥିଲେ ପୁଣିହିଁ ଦେବତା ଅସୁର ।
ଅଷ୍ଟ ଅପସରୀ ପୁଣି ହୋଇଲେ ସଂଭୂତ
ତାହାଙ୍କର ଜନ୍ମ ହେଲା ଲକ୍ଷ୍ମୀ ଜନ୍ମବ୍ରତ ।
ଲକ୍ଷ୍ମୀ ପ୍ରାୟେକ ଦିଶନ୍ତି ସେହୁ ଶୋଭାବନ
ଶରୀରରେ ରତ୍ନମାନ ଚନ୍ଦ୍ରମା ବଦନ ।
ରତ୍ନବସନେ ଭୂଷଣ ସମସ୍ତ ତରୁଣୀ
ସବୁରି ହସ୍ତରେ ଚୁଡ଼ି କୁରଙ୍ଗୀ ନୟନୀ ।
କଟୀରେ କିଙ୍କିଣୀ ପାଦେ ନୂପୁରାଭରଣ
ନୀଳମେଘର ବିଦ୍ୟୁତ୍ ଜ୍ୟୋତି ରୂପ ଜାଣ ।
କଟୀଦେଶ ଅତି ସରୁ ହୃଦୟ ବିସ୍ତାର
ସୁରଙ୍ଗ ଅଧର ଦୀର୍ଘ ତାହାଙ୍କର କର ।
ଅପୂର୍ବ ନାରୀ ମୋହନ୍ତି ସେହୁ ତ୍ରିଭୁବନ
ଚକିତ ହୋଇ ଚାହାଁନ୍ତି ତାଙ୍କୁ ସର୍ବଜନ ।
ରମ୍ଭା ମେନକା ଉର୍ବଶୀ ଚିତ୍ରରେଖା ନାରୀ
ମୋହିନୀ ମଦନା କାନ୍ତି ଚନ୍ଦ୍ରିକା କୁମାରୀ ।

ନୀଳେନ୍ଦ୍ରି ସ୍ୱରୂପ ଅଷ୍ଟ ଅପସରୀ ଜାତ
ନେଇ ଦେବାସୁରେ ଦେଲେ ବ୍ରହ୍ମାଙ୍କ ଅଗ୍ରତ ।
ତାଙ୍କୁ ଦେଖି ପ୍ରଜାପତି ସନ୍ତୋଷ ହୋଇଲେ
ସେ ଅଶ୍ୱକନ୍ୟାଙ୍କୁ ନେଇ କୋଠରେ ରଖିଲେ
ରୂପ ଅନୁସାରେ ବ୍ରହ୍ମା ତାଙ୍କ ନାମ ଦେଲେ
ପୁଣି ମନ୍ଥ ବୋଲି ଦେବାସୁରଙ୍କୁ କହିଲେ ।
ପୁଣି ମନ୍ଥନ୍ତେ ଜଳରେ ଚନ୍ଦ୍ର ହେଲେ ଜାତ
ଶୁଦ୍ଧ ପୁରୁଷ ନିର୍ମଳ ଅଟେ ତାଙ୍କ ଗାତ୍ର ।
ଧବଳମୟ ତା ରୂପ ଦିଶେ ତେଜପ୍ରଭା
ନୀଳେନ୍ଦ୍ରିଦଳ ଲୋଚନ ସୁଧାଳୟ ଆଭା ।
ପଦ୍ମନାଡ଼ର ପରାୟେ ଦିଶେ ଭୁଜମାନ
ଶରୀରେ ରତ୍ନାଳଙ୍କାର ହୋଇଛି ଭୂଷଣ ।
ଅମୃତବିନ୍ଦୁରୁ ସେହୁ ହୋଇଅଛି ଜାତ
ଅଙ୍ଗେ ଠୁଳ ହୋଇଅଛି ରତନ ସମସ୍ତ ।
ଜଳରେ ପ୍ରକାଶ ଯହୁଁ ହେଲା ତାର ବର୍ଣ୍ଣ
ତକ୍ଷଣେ ଦେଖିଲେ ଯାଇଁ ଦେବ ଦୈତ୍ୟଗଣ
ପୁରୁଷର ରୂପ ବୋଲି ମନେ ବିଚାରନ୍ତି
ଜଳରୁ ଉଠିଣ ଚନ୍ଦ୍ର ଶୂନ୍ୟରେ ଚଳନ୍ତି ।
ବିମାନ ଗୋଟିକ ରତ୍ନ ଖଟୁଳି ଯେ ଜାଣି
ଦେବ ସଭାରେ ମିଳିଲେ ଆସି ସେହିକ୍ଷଣି ।
ତିନିପୁରଲୋକ ତହିଁ ରହିଛନ୍ତି ଚାହିଁ
ବିଚାରନ୍ତି ଏ ଅପୂର୍ବ ଥିଲା ଅବା କାହିଁ ।
ବିମାନ ଚାଳେ ସାରଥି ଅଶ୍ୱର ବିହୁନେ
ଯାଇଁଣ ମିଳିଲା ସେହୁ ବ୍ରହ୍ମା ସନ୍ନିଧାନେ ।
ତାଙ୍କୁ ଦେଖି ବେଦବର ସନ୍ତୋଷ ହୋଇଲେ
ଚନ୍ଦ୍ରମା ହୋଇଲେ ବୋଲି ଧ୍ୟାନରେ ଜାଣିଲେ ।
ଗଉରବ କରି ତାଙ୍କୁ ବସାନ୍ତି ପାଖରେ
ବ୍ରହ୍ମାଙ୍କୁ ଦେଖିଣ ଚନ୍ଦ୍ର ନମସ୍କାର କରେ ।
ଦେଖନ୍ତି ଦେବ ଅସୁର ଚନ୍ଦ୍ର ରୂପ ଗୋଟି
ଦେବ ସଭାରେ କିରଣ ରହିଅଛି ଘୋଟି ।
ଏଥୁଅନନ୍ତରେ ଶୁଣ ଆହେ ନୃପନାଥ
ମନ୍ଥନ କରନ୍ତେ ଅଷ୍ଟ ନିଧି ହେଲା ଜାତ ।
ଶଙ୍ଖନିଧି ଆଗକରି ସଂଭୂତ ହୋଇଲା
ଧବଳ ରୂପ ତାହାର ଜଗତ ମୋହିଲା ।
ହୀରା ମାଣିକ୍ୟର ପ୍ରାୟେ ଦେହଟିର ବର୍ଣ୍ଣ
ବେନି ଭୁଜ ପାଦ ନେତ୍ର ଗୋଟିଏ ଆନନ ।

ସେ ରତ୍ନ ପୁରୁଷ ଯହୁଁ ହୋଇଲାକ ଜାତ
ଅଙ୍ଗରୁ ହୀରା ମାଣିକ୍ୟ ଖସେ ଅବିରତ ।
ନ ସରିବ ଅଙ୍ଗୁରତ୍ନ ପୂରିଲେ ମେଦିନୀ
ଜନ୍ମ ହେଲେ ଅଷ୍ଟନିଧି ନାନା ରତ୍ନ ଘେନି ।
ପଦ୍ମନିଧିର ଚରିତ ଶୁଣ ନୃପବର
ନୀଳା ସୁବର୍ଣ୍ଣେ କେବଳ ଶରୀର ତାହାର ।
ଶରୀରର କମ୍ପମାନେ ରତ୍ନ ହୁଏ ଜାତ
ପାଦ ପାଣି ଚକ୍ଷୁ କର୍ଣ୍ଣ ସବୁଠୁ ନିର୍ଗତ ।
ମହାପଦ୍ମର ଚରିତ ଶୁଣ ମହୀପତି
ଅଷ୍ଟରତ୍ନ ତା ଶରୀର ଶୋଭେ ଦିବ୍ୟକାନ୍ତି ।
ଭିନ୍ନ ଭିନ୍ନ ରତ୍ନେ ଅଙ୍ଗ ନିର୍ମାଣ ତାହାର
ରତ୍ନ ବସନ ପିନ୍ଧିଣ ମୋହେ ତିନିପୁର ।
କଳେବର ନାନାବର୍ଣ୍ଣେ କିରଣ ଦିଶଇ
ସୂର୍ଯ୍ୟ କିରଣହୁଁ ତେଜ ଭିନ୍ନେ ପ୍ରକାଶଇ ।
କେବଣ କିରଣ ଗୋଟି ଦିଶେ ଶୁକ୍ଳବର୍ଣ୍ଣ
ନୀଳୋତ୍ପଳ ପ୍ରାୟେ କେହୁ ବର୍ଣ୍ଣ ଦିଶେ ପୁଣ ।
ରକ୍ତ କିରଣ ପରାୟେ ଦିଶେ କେଉଁ ଗୋଟି
ସୁବର୍ଣ୍ଣ ରଙ୍ଗ ପରାୟେ କେହି ଅଛି ଘୋଟି ।
ଧୂମ୍ର ବର୍ଣ୍ଣ ପରକାରେ କେବଣ କିରଣ
କୃଷ୍ଣବର୍ଣ୍ଣ ହୋଇ ଦିଶେ କେହି କେହି ପୁଣ ।
କେବଣ ମଣିର ତେଜ ଶାଗୁଆ ପ୍ରକାର
ଜଳବର୍ଣ୍ଣ ପ୍ରାୟ ତେଜ ଦିଶଇ କାହାର ।
ହୀରା ନୀଳା ମୋତି ମଣି ସୁବର୍ଣ୍ଣ ପୋହଳା
ବଇଡୁର୍ଯ୍ୟ ମୁକୁତା ଯେ ପୂର୍ଣ୍ଣ ସିନ୍ଧୁ ବଳା ।
ଅଷ୍ଟ ପ୍ରକାର କିରଣ ତା ରଙ୍ଗରେ ଘୋଟି
ଚାହାଁନ୍ତେ ଅତି ସୁନ୍ଦର ଦିଶୁଅଛି ଫୁଟି ।
ଅଷ୍ଟଜାତି ରତ୍ନ ତାର ଠାରୁ ହେବ ଜାତ
ଅଣିମା ନିଧିର କଥା ଶୁଣ ନରନାଥ ।
ସୁବର୍ଣ୍ଣରେ ସେ ପୁରୁଷ ଦିଶେ ଶୋଭାବନ
ତାର ପାଦ ପାଣି ମୁଖ ଅଛଇ ନୟନ ।
ସୁବର୍ଣ୍ଣ ଦୃଷ୍ଟି କରଇ କନକ ପୁରୁଷ
ଗୁଣନିଧି ନାମ ପୁଣ ହୋଇଛି ପ୍ରକାଶ ।
ସକଳ ତାହାର ଠାରୁ ହୁଏ ଉତପନ୍ନ
ରଙ୍ଗ ଶୁକଳ ପରାୟେ ଦିଶେ ତାର ବର୍ଣ୍ଣ ।
ଅନନ୍ତ ନିଧିର କଥା ଶୁଣ ଅଲୌକିତ
ଅନେକ ରତ୍ନେ ତା ଦେହ ଦିଶେ ତେଜବନ୍ତ ।

ନାନା ରତ୍ନ ତା ଶରୀରୁ ଜନମ ହୁଅଇ
ନାନାପରକାର ଜ୍ୟୋତି ପ୍ରକାଶ କରଇ ।
ମହାପଦ୍ମ ପରକାରେ ଦିଶେ ତାର ଜ୍ୟୋତି
ଅକ୍ଷୟ ନିଧି ଯେ ସେହୁ ହୋଇଛି ଉତ୍ପତ୍ତି ।
କେବଳହିଁ ପଞ୍ଚରତ୍ନ କରେ ବରଷଣ
ସର୍ବଗୁଣ ନିଧି ହୋଇ ହୋଇଅଛି ଜନ୍ମ ।
ସପ୍ତନିଧିଙ୍କ ଶରୀରେ ରତ୍ନ ଅଛି ଯେତେ
ସର୍ବଗୁଣ ନିଧି ଅଙ୍ଗେ ରହିଅଛି ତେତେ ।
ଶତ କିରଣ ତାହାର ଭିନ୍ନ ଭିନ୍ନ ଜ୍ୟୋତି
ନାନାରତ୍ନ ଜାତକରି ପୂର୍ଣ୍ଣ କରେ ପୃଥ୍ୱୀ ।
ରତ୍ନ ଅନୁକ୍ରମେ ସର୍ବ ତେଜ ଏହିମତି
ନକ୍ଷତ୍ରଙ୍କ ବର୍ଣ୍ଣ ପ୍ରାୟେ ଭିନ୍ନ ଭିନ୍ନ ଜ୍ୟୋତି ।
ଏହିରୂପେ ଅଷ୍ଟନିଧି ହୋଇଲେକ ଜାତ
ଦେବ ସଭାରେ ଯାଇଣ ମିଳିଲେ ତୁରିତ ।
କୁଶପାଣିଙ୍କ ନିକଟେ ତାଙ୍କୁ ଗଲେ ନେଇ
ହସ ହସ ହେଲେ ତାଙ୍କୁ ଦେଖି ଦେବସାଇଁ ।
ବୋଇଲେ ପୁରୁଷଗଣ ତୁମ୍ଭେମାନେ ବସ
ରହିଲେ ସେ ଅଷ୍ଟନିଧି ବ୍ରହ୍ମାଙ୍କର ପାଶ ।
ରତ୍ନ ପୁରୁଷଙ୍କୁ ଦେଖି ଆନନ୍ଦିତ ମନ
ନିରେଖି ଚାହାଁନ୍ତି ତାଙ୍କୁ ନ ଟଳେ ନୟନ ।
ଦେଖିବା ରତ୍ନ ପୁରୁଷ ପଡ଼ିଗଲା ହୁରି
ତ୍ରିପୁର ଲୋକେ ଦେଖନ୍ତି ଉବୁରା ଉବୁରି ।
ଦେବାସୁର ନର ତାଙ୍କୁ ଦେଖି ଛନ୍ତି ରହି
ଏମନ୍ତ ଅପୂର୍ବ ମୂର୍ତ୍ତି ଦେଖିଲାର ନାହିଁ ।
ବ୍ରହ୍ମା ପଚାରନ୍ତି ଶୁଣ ଅଷ୍ଟ ନିଧି ତୁମ୍ଭେ
ସିନ୍ଧୁ ମନ୍ଥନୁ ତୁମ୍ଭଙ୍କୁ ଜାତକଲୁ ଆମ୍ଭେ ।
ମୋର ନାମ ବ୍ରହ୍ମା ଏହି ରୁଦ୍ର ଚକ୍ରଧର
ତୁମ୍ଭପାଇଁ ତିନିପୁର ଲୋକ ଏହିଠାର ।
ବ୍ରହ୍ମାଙ୍କ ବଚନ ଅଷ୍ଟନିଧିଏ ଶୁଣିଲେ
ବ୍ରହ୍ମା ବିଷ୍ଣୁ ରୁଦ୍ରପାଦେ ନମସ୍କାର କଲେ ।
ସର୍ବେ ଏକ ଠୁଣ୍ଠ ହୋଇଛନ୍ତି ସୁରଗଣ
ବ୍ରହ୍ମାଏ ବୋଇଲେ ତୁମ୍ଭେ ନିଧିଗଣ ଶୁଣ ।
ଆମ୍ଭ ଦେବ ଭଣ୍ଡାରରେ ନାହିଁ ରତ୍ନମାନ
ତୁମ୍ଭେ ଅଷ୍ଟନିଧି ଏବେ ହୋଇବ ପ୍ରସନ୍ନ ।
ଦେବତାଙ୍କର ଭଣ୍ଡାର ପୂରିବ ଯେମନ୍ତେ
ସୁଦୟାରେ ରତ୍ନବୃଷ୍ଟି କରିବ କେମନ୍ତେ ।

ତୁମ୍ଭରିପାଇଁକି ଆମ୍ଭେ ମନ୍ଥିଲୁ ଏ ଜଳ
ଆମ୍ଭ ଭାଗ୍ୟେ ଜାତ ହୋଇ ମିଳିଲେ ସକଳ ।
ଯହୁଁ ନିଜେ ପ୍ରଜାପତି କହିଲେ ଏସନ
ଶୁଣିଣ ସନ୍ତୋଷ ହେଲା ନିଧିଙ୍କର ମନ ।
ତହୁଁ ନିଧିଏ ବୋଇଲେ ଭାବନା ନ କର
ଦେବ ଭଣ୍ଡାର ତୁମ୍ଭର କେତେକ ମାତର ।
ରତ୍ନ ପୂରାଇଣ ପାରୁ ଆମ୍ଭେ ନବ ସୃଷ୍ଟି
ମନକଲେ ରତ୍ନଜାତହେବ କୋଟି କୋଟି ।
ଦେବ ଭଣ୍ଡାରେ ଆମ୍ଭଙ୍କୁ ନେଇ ଥୋଇଥିବ
ରତ୍ନ ବହି ଦେଉଥିଲେ କେବେ ନ ସରିବ ।
ଶୁଣିଣ ସନ୍ତୋଷ ହେଲା ବ୍ରହ୍ମାଙ୍କର ମନ
ସମସ୍ତେ ଶୁଣିଲେ ରତ୍ନ ପୁରୁଷ ବଚନ ।
ରୂପ ଦେଖିଣ ସମସ୍ତେ ସନ୍ତୋଷ ହୁଅନ୍ତି
ନୟନ ଆନନ୍ଦ ସୁଖେ ଛାଡ଼ି ନ ପାରନ୍ତି ।
ଅଷ୍ଟନିଧିଙ୍କି ବ୍ରହ୍ମାଏ ଅଷ୍ଟନାମ ଦେଲେ
ଲକ୍ଷ୍ମୀଙ୍କର ସନ୍ନିଧିରେ ନେଇ ବସାଇଲେ ।
ଦେବାସୁର ନରଙ୍କୁ ସେ ଦେଖି ତୋଷହୋନ୍ତି
ଅପୂର୍ବ ପରାୟେ ତାଙ୍କୁ ସମସ୍ତେ ଦିଶନ୍ତି ।
ନାରଦଙ୍କୁ ପୁଚ୍ଛାକଲେ ପୁଣି ନୃପବର
ସେ ରତ୍ନ ପୁରୁଷ କାହୁଁ ଜାତ ମୁନିବର ।
ଅପୂର୍ବ ଚରିତ ଏହା ଶୁଣିବି ଶ୍ରବଣେ
କହନ୍ତି ନାରଦମୁନି ଯା ଅଛି ପୁରାଣେ ।
ସେ ରତ୍ନପୁରୁଷ ପୂର୍ବେ ଜଳେ ହେଲେ ହତ
ସେହି ଜଳୁ ପୁଣି ଏବେ ହୋଇଲେ ସଂଭୂତ ।
ଯେସନେ ଦଧିରୁ ଘୃତ ଜନମ ହୁଅଇ
ତହିଁରେ ଥିବାର ଚିହ୍ନ ବର୍ଣ୍ଣ ନ ମିଳଇ ।
ଭାଣ୍ଡରେ ମନ୍ଥିଲେଯେହ୍ନେ ହୁଅଇ ସଂଭୂତ
ସମୁଦ୍ର ମନ୍ଥନେ ଯେହ୍ନେ ଘୃତ ପ୍ରାୟେ ଜାତ ।
ନାନା କଳ୍ପ ଠୁଳହୋଇ ଜୀବର ସଞ୍ଚାର
ପୃଥିବୀରୁ ଜାତ ହୁଏ ଔଷଧ ପ୍ରକାର ।
ପୂର୍ବ ବିଧି ଯେଉଁ ରୂପେ ହୁଅନ୍ତି ସେ ଜାତ
ଦେବ ଅନୁକ୍ରମେ ସେହୁ ହୋଇଥାନ୍ତି ବ୍ୟକ୍ତ ।
ବିଦ୍ରୁମ ସବୁ ସମୁଦ୍ର ମଧ୍ୟୁ ହେଲା ଜାତ
ହୀରାନୀଳା ମୋତି ଆଦି ହୋଇଲେ ସଂଭୂତ ।
ବଇଡୁର୍ଯ୍ୟ ଅହିଶ୍ରେଷ୍ଠ ଗରୁଡ଼ ଉଦ୍‌ଗାର
ଏହି ପ୍ରକାରରେ ଜାତ ହେଲେ ଯେ ଯାହାର ।

ଶଙ୍ଖଜୀବ ଗୋଟି ହେଲା ସମୁଦ୍ରରୁ ଜାତ
ମୁକ୍ତା ତହିଁରୁ ପୁଣ ହୋଇଲା ସମ୍ଭୂତ ।
ଏମନ୍ତେ ପୃଥ୍ୱୀରେ ରତ୍ନ ଜାତ ହେଲା ସର୍ବ
କହନ୍ତି ନାରଦ ଶୁଣ ଆହେ ନୃପଦେବ ।
ସବୁ ରତ୍ନ ପୃଥିବୀର ମଧ୍ୟଗତେ ଥିଲେ
ସମୁଦ୍ର ମନ୍ଥନେ ଜଳୁ ବାହାର ହୋଇଲେ ।
ଯେମନ୍ତ ଗଭୀର ଜଳେ ମୀନ ରହିଥାଇ
ଖୋଜିଲେ ସହଜେ ସେକି ପ୍ରାପତ ହୁଅଇ ।
ସେହିପରି ରତ୍ନରାଜି ସମୁଦ୍ରେ ଲୁଚିଛି
ସେଥିପାଇଁ ରତ୍ନାକର ନାମ ବୋଲାଇଛି ।
ସପତ ସିନ୍ଧୁରୁ ଜାତ ହେଲେ ସର୍ବରତ୍ନ
ଶୁଣିଣ ସନ୍ତୋଷ ହେଲା ରାଜା ଇନ୍ଦ୍ରଦ୍ୟୁମ୍ନ ।
ବୋଇଲେ ଶୁଣିଲ ଏବେ ରତ୍ନଜାତ କଥା
ମନ୍ଥନରୁ ଆଉ କିସ ପାଇବେ ଦେବତା ।
ଏହା ସଂକ୍ଷେପିଣ ମୋତେ କୁହ ମୁନି ବ୍ରହ୍ମ
କହନ୍ତି ନାରଦ ମୁନି ଶୁଣ ଇନ୍ଦ୍ରଦ୍ୟୁମ୍ନ ।

.....❋.....

## ଉଚ୍ଚୈଶ୍ରବା ଆଦି ସପ୍ତଅଶ୍ୱ, ଅଷ୍ଟରତ୍ନ ପାରିଜାତ, ସୁମନ୍ତକମଣି, ସିଂହନାଦ ପୁଷ୍ପକବିମାନ, ନନ୍ଦିଘୋଷ

ପୁଣି ସମୁଦ୍ରମନ୍ଥିଲେ ଯାଇ ଦେବାସୁରେ
ସତଗୋଟି ଅଶ୍ୱଜାତ ହୋଇଲେ ଜଳରେ ।
ଉଚ୍ଚୈଶ୍ରବା ବୋଲିକରି ନାମଟି ତାଙ୍କର
ଷଡ଼ ଅଶ୍ୱ ତାର ସଙ୍ଗେ ହୋଇଲେ ବାହାର ।
ଜଳ ଉପରେ ଭାସନ୍ତେ ଆଣିଲେକ ଯାଇ
ବ୍ରହ୍ମାବିଷ୍ଣୁଙ୍କ ଛାମୁରେ ତାଙ୍କୁ ଦେଲେ ନେଇ ।
ଦେଖିଲେ ସେ ଅଶ୍ୱଙ୍କର ତେଜ ମହାଘୋର
ଦିନକେ ଭ୍ରମି ଯାଆନ୍ତି ସେହୁ ତିନିପୁର ।
ବୁକୁମୋଟା ଅଣ୍ଟା ସରୁ ଲାଞ୍ଜ ଅଟେ ସାନ
ତେଜ ପ୍ରକାଶନ୍ତି ଥାଇ ନାନା ତାଙ୍କ ବର୍ଣ୍ଣ ।
ନାନା ଲକ୍ଷଣେ ଲକ୍ଷଣବନ୍ତ ତାଙ୍କ କାୟେ
କିଏ ଶୁକ୍ଳ କିଏ କଳା କିଏ ରଙ୍ଗ ପ୍ରାୟେ ।
ମନୁଷ୍ୟମାନଙ୍କ ପରି କହନ୍ତି ବଚନ
ଦେଖିଣ ସନ୍ତୋଷ ହେଲେ ସର୍ବ ଦେବଗଣ ।
ପ୍ରଥମ ଅଶ୍ୱର ନାମ ଉଚ୍ଚୈଶ୍ରବା ଦେଲେ
ଷଡ଼କୁ ଷଡ଼ନାମରେ କୋଠରେ ରଖିଲେ ।
ତାରକ ଅଦୃଶ୍ୟ ବିଦ୍ୟୁଚ୍ଛିତ ଶୂନ୍ୟ ସମ
ମହାଜିତ ସୁନନସ ଷଡ଼ ଅଶ୍ୱନାମ ।
ରାଜା ପୁଚ୍ଛା କଲେ ଶୁଣ ହେ ମୁନି ଆପଣ ।
କେବଣ ଠାବରୁ ଜାତ ହେଲେ ଅଶ୍ୱଗଣ ।
ଏକଥା ବିଚାରି ମୋତେ କୁହ ବ୍ରହ୍ମଚାରୀ
କହନ୍ତି ନାରଦ ମୁନି ଶୁଣ ଦଣ୍ଡଧାରୀ ।
ନିଠାଇ ସିନ୍ଧୁ ମନ୍ଥିଲେ ଯହୁଁ ଦେବାସୁର
ଚକଟି ଗୋଳି ହୋଇଲା ସମୁଦ୍ରର ନୀର ।
ପଙ୍କ ଔଷଧର ରସ ଜଳ ନାଦ ମିଶି
ବାୟୁସଙ୍ଗେ ମିଶି ଫେଣ ଭାସିଲା ପ୍ରକାଶି ।
ତହିଁରୁ ସେ ଅଶ୍ୱମାନେ ହୋଇଲେ ଯେ ଜାତ
ପୁଣି ଐରାବତ ଜନ୍ମ ଅଟେ ସେହିମତ ।
ବ୍ରହ୍ମା ଯାହା ନିଜ ମନେ କଳ୍ପନା କରଇ
ଯାହା ବିଚାରଇ ତାହା ଜନମ ହୁଅଇ ।
ଏବେ ସାବଧାନ ହୋଇ ଶୁଣ ମହୀପତି
କହିଦେବା ଏବେ ଯାହା ହେବ ଉତପତ୍ତି
ପୁଣି ମନ୍ଥନ କରନ୍ତେ ଅଷ୍ଟରତ୍ନ ଜାତ
ପାଣିରୁ ତାହାକୁ ଛାଣି ଆଣିଲେ ସମସ୍ତ ।
ଦେବ ସଭାରେ ତାହାକୁ ବାଛି କଲେ ଭିନ୍ନ
ପୁଣି ଦେବାସୁର କଲେ ଯାଇଣ ମନ୍ଥନ ।
କନକର ଦଣ୍ଡଛତ୍ର ହୋଇଲାକ ଜାତ
ଜଳରୁ ଘେନି ଆଣି ଗୋ ଦେଖନ୍ତି ସମସ୍ତ ।
ପଦ୍ମ ପୁଷ୍ପ ଯେଉଁରୂପେ ଜଳେ ବିକାଶଇ
ସେହି ପରକାରେ ଛତ୍ର ଜଳରେ ଦିଶଇ ।
ସେ ଛତ୍ର ଟେକନ୍ତେ ରତ୍ନ ପଡୁଥାଏ ତଳେ
ତାହା ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ସକଳେ
ଚନ୍ଦ୍ର ଦେବତା ପରାୟେ ଦିଶେ ତେଜ ତାର
ଭିନ୍ନ ଭିନ୍ନ ଅଷ୍ଟରତ୍ନ ଦିଶଇ ସୁନ୍ଦର ।
ବ୍ରହ୍ମାଙ୍କର ହସ୍ତେ ଦେଲେ ସେ ଛତ୍ରକୁ ନେଇ
ବୋଇଲେ ଏ ଦଣ୍ଡ କଥା ଆଶ୍ଚର୍ଯ୍ୟ ଅଟଇ ।
ଏକ ରତନ ପରାୟେ ଦିଶୁଅଛି ବର୍ଣ୍ଣ
ସେ ଛତ୍ରରୁ ଝଡୁଅଛି ନାନାଜାତି ରତ୍ନ ।
ଝାଡ଼ିଦେଲେ ନାନାରତ୍ନ ହେଉଅଛି ବୃଷ୍ଟି
ଝାଡ଼ିଦେଇ ଦେଖ ତୁମ୍ଭେ ଆହେ ପଦ୍ମଯୋନି ।

ବ୍ରହ୍ମା କରେ ଧରି ତାକୁ ଧୀରେଦେଲେ ଝାଡ଼ି
ରତ୍ନବୃଷ୍ଟି ହୋଇ ଗଦା ହେଲାତଳେ ପଡ଼ି ।
ତାହା ଦେଖିଣ ସନ୍ତୋଷ ହେଲେ ପ୍ରଜାପତି
ଦେବତା ଅସୁରେ ମିଳି ଦଣ୍ଡକୁ ଦେଖନ୍ତି ।
କନକ ଦଣ୍ଡ ନାମକୁ ଦେଲେ ବେଦବର
ଶିରେ ଧରନ୍ତେ ସୁନ୍ଦର ଦିଶେ କଳେବର ।
କୋଠ ଗଦାରେ ରଖିଲେ ସେ ଦଣ୍ଡକୁ ନେଇ
ସମୁଦ୍ର ମନ୍ଥିଲେ ପୁଣି ଏକମୁଖ ହୋଇ ।
ଆନନ୍ଦ ହୋଇ ମନ୍ଥନ କଲେ ସମୁଦ୍ରକୁ
ରତ୍ନଲୋଭେ ପରିଶ୍ରମ ନଲାଗେ ଦେହକୁ ।
ଲାଭେ ଲୋଭ ତାହାଙ୍କର ହେଉଛି ଅପାର
ମନ୍ଥନ୍ତି ସେ ମହାଜଳ ଅତି ଭୟଙ୍କର ।
କାମଧେନୁ ମାନେ ଜାତ ହେଲେ ସେହିକ୍ଷଣି
ତାଙ୍କ ସଙ୍ଗେ ବାହାରିଲା ପଦ୍ମରାଗମଣି ।
ତୁଳସୀ ବୃକ୍ଷ ଗୋଟିଏ ହୋଇଲାକ ଜାତ
ବାସ ବିକାଶଇ ତାହାଘେନିଲେ ଅଚ୍ୟୁତ ।
ରତି ଛତ୍ର ବସ୍ତ୍ର ଆଦି ପୁଷ୍ପ ପାରିଜାତ
ଘେନି ଆଣି ତା କୋଠରେରଖିଲେ ସମସ୍ତ ।
ଚହଟଇ ପୁଷ୍ପବାସ ଅତି ମନୋହର
ପାରିଜାତ ବୋଲି ନାମ ଦେଲେ ବେଦବର ।
ରତନ ମୁକୁଟ ସବୁ ହେଲା ଉତପତି
ସେ ମଣିମୟ ମୁକୁଟ ଜ୍ୟୋତି ବିରାଜନ୍ତି ।
ସୁମନ୍ତକ ମଣି ସିଂହନାଦ ଉତପନ୍ନ
ଜଳେ ପ୍ରକାଶନ୍ତି ଚନ୍ଦ୍ର ସୂର୍ଯ୍ୟର ସମାନ ।
ତାହାକୁ ଘେନି ଆସିଣ ରଖିଲେ କୋଠରେ
କଉସ୍ତୁଭ ମଣି ପୁଣ ଜାତହେଲା ନୀରେ ।
ସୂର୍ଯ୍ୟ ଦେବତା ପରାୟ କିରଣ ତାହାର
ପାଣିରୁ ଆଣି ଆର୍ପିଲେ ବ୍ରହ୍ମାଙ୍କର କର ।
ସୂର୍ଯ୍ୟକାନ୍ତ ମଣି ପୁଣି ହୋଇଲାକ ଜାତ
ଆଉ ଆଉ ମଣି ଜାତ ହେଲା ଅପ୍ରମିତ ।
ପୁଣି ପୁଣିହିଁ ମନ୍ଥନ କଲେ ରୋଷଭରେ
ରତ୍ନ ଲୋଭରେ ପ୍ରଚଣ୍ଡ ହୋଇ ଦେବାସୁରେ ।
କୋଟିଏ ଡାହାଣାବର୍ତ୍ତ ଶଙ୍ଖ ହେଲା ଜାତ
ପୁଣି ନାନାଜାତି ଶଙ୍ଖ ହୋଇଲା ସମ୍ଭୂତ ।
ଦେବଦତ୍ତ ମଣି ପୁଷ୍ପଆଦି ଶଙ୍ଖମାନ
ନିଅନ୍ତି ସେ ଦେବତାଏ ବ୍ରହ୍ମା ସନ୍ନିଧାନ ।
ସୁନାଦ ବିକରାଳ ଯେ ତୁରୀ ଜିତ ଶଙ୍ଖ
ଜାତ ହୋଇଲେ ଏମାନେ ହୋଇଣ ଅଲେଖ ।
କୋଠରେ ରଖିଲେ ତହୁଁ ଯେ ସବୁକୁ ନେଇ
ପୁଣିହିଁ ମନ୍ଥିଲେ ଆଉ ଜାତ ହେବା ପାଇଁ ।
ପୁଷ୍ପକ ନନ୍ଦିଘୋଷ ଯେ ତହୁଁ ବାହାରିଲା
ଚାରିଗୋଟି ହୟ ତହିଁ ଅଛଇ ଯୋଚିଲା ।
ସେ ରଥରେ ଶୋଭା ପାଏ ନାନାରତ୍ନମାଳ
ହୟ ଚାରିଗୋଟି ବର୍ଣ୍ଣ ଶୁକଳ କେବଳ ।
ପୁଷ୍ପକ ବିମାନ ତହୁଁ ଜନମ ହୋଇଲା
ଆଉ ରାତ୍ର ବିଦାରିଣ ମଣି ଜନମିଲା ।
ମାୟାରଥ ଏକ ଗୋଟି ହୋଇଲାକ ଜାତ
ତାକୁ ଦେଖିଣ ଦେବତା ହୋଇଲେ ଉଷତ ।
ସବୁ ରଥକୁ ରଖିଲେ କୋଠଘରେ ନେଇ
ପୁଣିହିଁ ମନ୍ଥିଲେ ଜାତ ହୋଇବାର ପାଇଁ ।
ଇନ୍ଦ୍ରଦ୍ୟୁମ୍ନଙ୍କୁ କହନ୍ତି ବ୍ରହ୍ମାଙ୍କର ଶିଷ୍ୟ
ନାରାୟଣଙ୍କ ଶରଣ କାମପାଳ ଦାସ ।
ନାରାୟଣ ନାମ ଗୋଟି ଅଟେ ମୁକ୍ତିପଥ
ସୁଜ୍ଞଜନମାନେ ଭଜ ସେ ନାମକୁ ନିତ୍ୟ ।

.....❀.....

## ନନ୍ଦିଘୋଷ ରଥ ପ୍ରଭୃତି ବିବରଣ, ବକ୍ରହଳଲଙ୍ଗଳର ଉତ୍ପତ୍ତି ଓ ବ୍ରହ୍ମା ମହେଶଙ୍କ କଥାବାର୍ତ୍ତା

ଇନ୍ଦ୍ରଦ୍ୟୁମ୍ନ ପଚାରିଲେ ଶୁଣ ମୁନିବର
ଜଳୁ କେମନ୍ତେ ବାହାର ହେଲା ରଥବର ।
ଏ କଥା ସଂକ୍ଷେପି କୁହ ମୁନି ମହାଶୟ
କହନ୍ତି ନାରଦ ମୁନି ଶୁଣ ନରରାୟ ।
ଆଉ କିମ୍ପାଇଁ ସନ୍ଦେହ କରୁଅଛ ଚିତ୍ତେ
ବ୍ରହ୍ମା ଭିଆଣେ ସମ୍ଭୂତ ଦେବ ଅନୁମତେ ।
ବିଚାର କରନ୍ତି ରଥ ଜନ୍ମିବ ଏ ଘାନ୍ତି
ମନେ ଚିନ୍ତିଣ ବସିଲେ ଯହୁଁ ପ୍ରଜାପତି ।
ତେଣୁ ସିନ୍ଧୁ ଜଳୁ ରଥ ହୋଇଲା ନିର୍ଗତ
ପୃଥିବୀ ଦେବୀ ତାହାକୁ କରିଲା ସମ୍ଭୂତ ।
ଯେଉଁ ଜନ ଏ ପୃଥିବୀ କରେ ଆତଯାତ
ଏ କଥାମାନ ତାକୁ କି ଅଟେ ଆଚମ୍ବିତ ।

ଯାହାଙ୍କର କଳ୍ପନାରୁ ପୃଥ୍ୱୀ ଜାତହୁଏ
ତାହାଙ୍କୁ ଅସାଧ କିଛି ନାହିଁ ନୃପରାୟେ ।
ଔଷଧ ରସରୁ ସବୁ ହେଉଛି ଉତ୍ପତ୍ତି
ରଥର ଚରିତ ଏବେ ଶୁଣ ନରପତି ।
ନନ୍ଦିଘୋଷ ରଥଙ୍କର ଅଟେ ଚାରି ଚକ
ସୁବର୍ଣ୍ଣର ଦଣ୍ଡମାନ ବକ୍ର ଅଟେ ନଖ ।
ତିନି ରଥରୁ ଏ ରଥ ସୁନ୍ଦର ଦିଶଇ
ନାନା ରତ୍ନରେ ମଣ୍ଡିତ ସେହୁ ହୋଇଥାଇ ।
ଧ୍ୱଜେ ଗରୁଡ଼ ପିତୁଳା ଦିଶିବାରୁ ତେଜ
ତେଣୁ ତା ନାମ ହୋଇଛି ଯେ ଗରୁଡ଼ଧ୍ୱଜ ।
ଶ୍ୱେତ ଚାରି ହୟ ଯୋଚା ସେ ରଥରେ ଜାଣ
ତେଣୁ ଯେ ରଥରେ ବିଜେ ଦେବ ନାରାୟଣ ।
ରଥ ଅଶ୍ୱ ଅବିନାଶି ସର୍ବଦା ଅଟନ୍ତି
ଯେବଣ ରଥେ ବିଜୟ ଦେବ ଶିରୀପତି ।
ହରି ବିନା ଆନକୁ ସେ ରଥ ଯୋଗ୍ୟ ନୁହେଁ
ତେଜ ପ୍ରକାଶଇ ତାର ସୂର୍ଯ୍ୟ ଜ୍ୟୋତି ପ୍ରାୟେ ।
ନାନା ରତ୍ନରେ ମଣ୍ଡଣି ସେହି ରଥବର
ତହିଁ ଉପରେ ବସିଲେ ଦିଶେ ତିନିପୁର ।
ସୁବର୍ଣ୍ଣର ପଦ୍ମମାଳ ଅତି ଶୋଭାପାଏ
ପୁଷ୍ପକ ରଥର କଥା ଏବେ ଶୁଣ ରାୟେ ।
ସେ ପୁଷ୍ପକ ବିମାନରେ ଶତପୁର ହୋଇ
ରତ୍ନେ ନିର୍ମିତ ହେବାରୁ ସୁନ୍ଦର ଦିଶଇ ।
ସାନ ଦିଶୁଥାଇ ବଢ଼େ ଯେତେ ମନୋଭାବ
ତ୍ରିପୁର ଲୋକ ବସିଲେ ସେହୁ ଦେବଠାବ ।
ସହସ୍ରେକ ଅଶ୍ୱ ତହିଁ ଅଛି ଯୋଚା ହୋଇ
ନାନାବର୍ଣ୍ଣ ଅଶ୍ୱ ସେହୁ କେ ପାରିବ କହି ।
କଳା ଶୁକଳ ସୁରଙ୍ଗ ପୁଣି ରଙ୍ଗ ବର୍ଣ୍ଣ
ଏହିରୂପେ ଅଶ୍ୱଙ୍କର ରଙ୍ଗ ଭିନ୍ନ ଭିନ୍ନ ।
ସେ ମାୟାରଥ ମହିମା ଅଟେ ଆଚମ୍ବିତ
ଅଷ୍ଟରତନରେ ସେହୁ ହୋଇଛି ନିର୍ମିତ ।
ଷଡ଼ଭୁଜ ବିମାନେ ସେ ଶୋଭିତ ଦିଶଇ
ଅଶ୍ୱଯୋଚା ହେବେ ବହୁ ଶ୍ରୀବୃଦ୍ଧି କରଇ ।
ସେ ରଥେ ଥିଲେ ନ ବାଜେ ଅଙ୍ଗେ ଅସ୍ତ୍ରମାନ
କ୍ଷଣକେ ଭୂମିରେ କ୍ଷଣେ ଲୁଚଇ ଗଗନ ।
ତେଣୁକରି ମାୟାରଥ ସେହୁ ଯେ ବୋଲାଏ
ସେ ରଥେ ବସିଲେ ରୋଗଶୋକ ହିଁ ନ ଥାଏ ।
ଯାମିନୀ ବିଦାରଣ ସେ ରଥ ହୀରାମୟେ
ସହସ୍ରେ ହଂସ ତହିଁରେ ସଦା ଯୋଚା ହୁଏ ।
ପଞ୍ଚପୁର ସେ ବିମାନ ଚନ୍ଦ୍ର ଜ୍ୟୋତି ଜିଣି
ଆଉ ରଥ ଜାତ ହେଲେ କନକ ରସାଣୀ ।
ସହସ୍ର ଆଲୋକ ନାମେ ରଥ ହେଲା ଜାତ
ନାନା ରତ୍ନରେ ମଣ୍ଡିତ ତେଜ ଅପ୍ରମିତ ।
ବଜ୍ର ହଳ ଲଙ୍ଗଳ ଯେ ଜାତ ହେଲେ ପୁଣ
ଯାକୁ ସଦା ଧରିଥାନ୍ତି ଦେବ ସଙ୍କର୍ଷଣ ।
ଏରୂପେ ଜାତ ହୋଇଲା ତହୁଁ ଅପ୍ରମିତେ
ଏକ ଏକ ନାମ ଧରି କହିବା ବା କେତେ
ତାହା ଶୁଣିଣ ସନ୍ତୋଷ ହେଲେ ମହୀପତି
ଆନନ୍ଦେ ନାରଦଙ୍କୁ ସେ ପୁଣି ପଚାରନ୍ତି ।
ଭୋ ମହାମୁନି ମନ୍ଥିଲେ ସେହି ମହାଜଳ
ପୁଣି କି କି ଜାତ ହେବା କୁହ ତତକାଳ ।
କହନ୍ତି ନାରଦ ମୁନି ଶୁଣ ଇନ୍ଦ୍ରଦ୍ୟୁମ୍ନ
ଦେବାସୁରେ ମନ୍ଥିଲେ ଯେ କରି ମହାଟାଣ ।
ଶ୍ରୀ ରୁଦ୍ର ଦେବ ବୋଇଲେ ଦେବାସୁରେ ଚାହିଁ
ଯାହା ଜନ୍ମିଲା ରଖିଲ ସବୁ କୋଠେନେଇ ।
ଆମ୍ଭେ ସହିଲାକୁ ସିନା ଗଲା ଏହା ସବୁ
ଏବେ ଯାହା ଉପୁଜିବ ଆମ୍ଭେ ସବୁ ନେବୁ ।
ଯେଉଁ ଦ୍ରବ୍ୟ ଉପୁଜିଲା ରଖିଛ କିମ୍ପାଇଁ
ଯାହାକୁ ଯାହା ଦେବାର ତାହାକୁ ନ ଦେଇ ।
ତାହା ଶୁଣି ବେଦବର ଆସନୁ ଉଠିଲେ
ରୁଦ୍ରଙ୍କ ସନ୍ନିଧେ ବସି ଗୁପତେ କହିଲେ ।
ସଙ୍ଗତରେ ମନ୍ଥୁଛନ୍ତି ଦଇତ ସକଳ
ଭଲ ବାଛିନେଲେ ବୋଲି କରିବେ ସେ ଗୋଳ ।
ଜାତ ହେଲାକ୍ଷଣି ବାଣ୍ଟି ଦେଉଥାନ୍ତୁ ଯେବେ
ଆମ୍ଭଙ୍କୁ ଦିଅ ବୋଲିଣ ମାଗନ୍ତେ ସେ ତେବେ ।
ଭଲ ତ ନ ଦେବା ତାଙ୍କୁ ଆମ୍ଭେ କଦାଚିତ
ଗୋଳ ଉପୁଜିଲେ ସବୁ ହୁଅନ୍ତା ବିଅର୍ଥ ।
ସମୁଦ୍ର ମନ୍ଥିବାକୁ ଯେ ଗୋଟିଏ ନ ଯାନ୍ତେ
ଏହି ରତ୍ନକୋଷ ସବୁ ବିଅର୍ଥ ହୁଅନ୍ତେ ।
କଳି ଦ୍ୱନ୍ଦ୍ୱ ଆଦିକରି ହୁଅନ୍ତା ଅପାର
ସେହି ସକାଶୁ ରଖିଛି ଏକଇ ଠାବର ।
କୋଠ ବୋଲିକରି ଏବେ ସବୁ ରଖିଥିବା
ମନ୍ଥନ ସରିଲେ ପଛେ ଦେବତାଏ ନେବା ।

ଏବେ ତାହାଙ୍କଠ ମନ ହେଉଥାଉ ତୋଷ
ମନ୍ଥୁଛନ୍ତି ଉପୁଜୁଛି ନାନା ରତ୍ନକୋଷ ।
ଶେଷରେ ତାହାଙ୍କୁ ଅଳ୍ପ କିଛି କିଛି ଦେବା
ଭଲ ଭଲ ଯାହା କିଛି ଦେବତାଏ ନେବା ।
କେତେବେଳେ ଗୋଳ ହେଲେ ଭୟ କିଛି ନାହିଁ
କାର୍ଯ୍ୟ କରିବାର ଯାଏ ଥାଅ ତୁନି ହୋଇ ।
ପୁଣିହିଁ ଆସିଅଛନ୍ତି ପୃଥିବୀ ରାଜନ
ସେମାନଙ୍କୁ କିଛି କିଛି ଦେବା ମଣି ରତ୍ନ ।
ସେହୁ ନରଲୋକମାନେ ଯିବେ ବୋଧହୋଇ
ଏହି ବଚନ ବୋଲନ୍ତି ପାର୍ବତୀର ସାଇଁ ।
ସେହି କଥାରେ ମୋହର ନାହିଁ ନା କାରଣ
ଦିଅ ବା ନ ଦିଅ ତାଙ୍କୁ ତୁମ୍ଭେ ତାହା ଜାଣ ।
ଏ ଯେତେ ଜାତ ହୋଇଛି ନିଅ ସବୁ ତୁମ୍ଭେ
ଏଥରକ ଯାହା ହେବ ନିଷ୍ଠା ନେବୁ ଆମ୍ଭେ ।
ଶୁଣି ତ ସନ୍ତୋଷ ହେଲେ ବ୍ରହ୍ମା ନାରାୟଣ
ବୋଇଲେ ଯା ଉପୁଜବ ନେବ ହେ ଈଶାନ ।
ତାହା ଶୁଣି ସଦାଶିବ ସନ୍ତୋଷ ହୋଇଲେ
ଇନ୍ଦ୍ରଦ୍ୟୁମ୍ନନ ଆଗରେ ନାରଦ କହିଲେ ।
କୂର୍ମ ନାରାୟଣଙ୍କର ଚରଣ କମଳେ
ନିତ୍ୟ ପ୍ରଣିପାତ କରେ ବିପ୍ର କାମପାଳେ ।

.....✲.....

## ସାଗର ମନ୍ଥନରୁ ବିଷ ଜାତ, ସେ ବିଷକୁ ମହାଦେବଙ୍କର ପାନ

କହନ୍ତି ସାରଦା ଶୁଣ ଆହେ ଇନ୍ଦ୍ରଦ୍ୟୁମ୍ନ
ଅତି ମନ୍ଥନ କରନ୍ତେ ବିଷ ହେଲା ଜନ୍ମ ।
ଦେଖ ନୃପତି କର୍ମର କେମନ୍ତଟି ଭୋଗ
ଶ୍ରୀ ରୁଦ୍ରଙ୍କୁ ଥିଲା ପୁଣି ବିଷ ଭୋଗ ଯୋଗ ।
ଏତେ ବେଳଯାଏ ରତ୍ନ ବାହାର ହୋଇଲା
ରତ୍ନ ନେବାକୁ ବୋଲନ୍ତେ ବିଷ ଜନମିଲା ।
ଆପଣା କର୍ମର କଥା ନୁହଇ ମେଣ୍ଟଣ
ରୁଦ୍ର ଦେବଙ୍କ କର୍ମରେ ବିଷ ଥିଲା ପୁଣ ।
ଯେତେ ରତ୍ନ ଉପୁଜିଲା ଘେନିଲେ ଦେବତା
ରୁଦ୍ରଦେବ କାଳେ ହେଲେ ବିଷକୁ ଗ୍ରହୀତା ।
ରାଜା ପଚାରିଲେ ବିଷ କାହୁଁ ହେଲା ଜାତ
କହନ୍ତି ନାରଦ ଶୁଣ ଆହେ ନରନାଥ ।
ବାସୁକି- ଦଉଡ଼ି ହୋଇ ମନ୍ଥିଲା ସାଗରେ
ଅତି ଘର୍ଷଣ ହେବାରୁ ବାଧେ ମହୀଧରେ ।
ଆନ ଲୋକ ହୋଇଥିଲେ ପାଆନ୍ତା କି ପ୍ରାଣ
ପୁଣି ପଚାରନ୍ତି ଇନ୍ଦ୍ରଦ୍ୟୁମ୍ନ ନରରାଣ ।
ଆହେ ମୁନି ଦେବାସୁରେ ଝିଙ୍କିଲେ ଉଚ୍ଛୁଡ଼ି
ପାଷାଣରେ କଳେବର ଗଲା ନାହିଁ ଛିଡ଼ି ।
ମୁନି ବୋଇଲେ ବଜ୍ରରୁ ଆଣ୍ଟ ଅଟେ ଅଙ୍ଗ
ପାଷାଣ ଘର୍ଷଣେ ଅଙ୍ଗ ହେବ କି ବିଭଙ୍ଗ ।
ସେ ବାସୁକି ମହାଅହି ବଜ୍ରରଜ୍ଜୁ ଜାଣ
ପାଷାଣ ଛିଡ଼ିଲା କିଛି ନ ହୋଇଲା ପୁଣ ।
ତେଣେ ସର୍ବେ ଜାଣି ରଜ୍ଜୁ କରିଲେ ତାହାକୁ
ମୁଖ ବାଟେ ଉଦ୍‌ଗାରିଲା ବିଷ ସେ ଜଳକୁ ।
ଲୋଭ କରିଣ ମନ୍ଥିଲେ ଯହୁଁ ଦେବାସୁର
କୋପ ବିଷ ଜାତକଲା ତହୁଁ ମହୀଧର ।
ପୁନଃ ପୁନଃ ବିଷ ସେହୁ କରଇ ବମନ
ସହସ୍ର ମୁଖରୁ ପଡ଼େ ବୃଷ୍ଟିର ସମାନ ।
ଘୋର ଘରଷଣେ ପୁଣି ଅଗ୍ନି ହେଲା ଜାତ
ଦେଖି ଭୟେ ପଳାଇଲେ ଦେବତା ଦଇତ ।
ସମୁଦ୍ର ଭିତରୁ ଜଳ ପକାଇଲେ ନେଇ
ନିଭନ ନ ହୋଇ ଜଳେ ପ୍ରଜ୍ୱଳିତ ହୋଇ ।
ତାହା ଦେଖିଣ ଚକିତ ଦେବତା ଦଇତ
ପ୍ରଚଣ୍ଡ ସେ ଦାବାନଳ ଜଳେ ଅପ୍ରମିତ ।
ପବନ ବହନ୍ତେ ତାହା ଜାଣି ଭଗବାନ
ମେଘମାନଙ୍କୁ ତକ୍ଷଣେ ରାଇ ସନ୍ନିଧାନ ।
ମେଘ ଆସନ୍ତେ କହିଲେ ତାଙ୍କୁ ଚକ୍ରଧର
ମନ୍ଥନରୁ ଅଗ୍ନି ଜାତ ବୃଷ୍ଟିକର ନୀର ।
ସେହିକ୍ଷଣି ଆକାଶକୁ ଘୋଟି ମେଘଗଣ
ଗଗନ ଲୁଚି ବିଜୁଳି ମାରେ ଘନ ଘନ ।
ଯହୁଁ ସେ ମେଘମାନଙ୍କୁ ପେଷିଲେ ଶ୍ରୀହରି
ପବନ ଘେନି ଶୀତଳ ବରଷନ୍ତି ବାରି ।
ବରଷା ହୁଅନ୍ତେ ଅଗ୍ନି ହୋଇଲାକ ହତ
ଏଥୁ ଅନନ୍ତରେ ଶୁଣ ଆହେ ନରନାଥ ।
ତକ୍ଷଣେ ସେ ମହାବିଷ ଘୋଟିଲା ଭୁବନେ
ବ୍ୟାକୁଳ ହୋଇଲେ ତହିଁ ଦେବଦୈତ୍ୟମାନେ ।
କେ ବୋଲନ୍ତି କିମ୍ପା ଅଙ୍ଗବ୍ୟାକୁଳ ହୋଇଲା
କେ ବୋଲେ ଅତି ମନ୍ଥନେ ଶରୀର ବାଧିଲା ।

ଅତି ବ୍ୟାକୁଳ ହୁଅନ୍ତେ ଚାହିଁଲେ ସମସ୍ତେ
ବିଷ ଜାତ ହୋଇଅଛି ଦେଖିଲେ ଦଇତେ ।
ଅସୁର ବୋଇଲେ ବିଷଜାତ କଲା ଫଣୀ
ମନ୍ଥନର ଭୋଳେ ଆମ୍ଭେ ନ ବାରିଲୁ ଜାଣି ।
ମନ୍ଥନ ଛାଡ଼ି ସମସ୍ତେ ଚାହୁଁଛନ୍ତି ବୀରେ
ବୋଲନ୍ତି ବିଷମ ବିଷ ଜାତ ହେଲା ନୀରେ ।
ଥର ଥର ହୋଇ ଅଙ୍ଗ କମ୍ପେ ତାହାଙ୍କର
ଭୟକରି ପଳାଇଲେ ସର୍ବ ଦେବାସୁର ।
ଦେବତାଙ୍କର ସଭାରେ ମିଳିଲେ ସେ ଯାଇ
ସର୍ବେ ଅସୁର ହୁଅନ୍ତି ବିଷଜ୍ୱାଳା ପାଇ ।
ଦେଖିଣ ଦେବତାମାନେ ହୋଇଲେ ଚକିତ
ବୋଇଲେ କେବଣ ଭୟ ପାଇଲ ସମସ୍ତ ।
ଦେବ ଦଇତେ ବୋଲନ୍ତି ବିଷ ଜାତ ହେଲା
ବାସୁକୀ ସକାଶେ ଜାଣ ସବୁ ନାଶ ଗଲା ।
ତାଙ୍କ ବଚନେ ଉଠିଲେ ସର୍ବ ଦିଗପାଳେ
ସମୁଦ୍ରର ଭିତରକୁ ଚାହାଁନ୍ତି ସକଳେ ।
ମୁଖରାବର ଶବଦ ଉଠେ ଅପ୍ରମିତ
ତାହା ଶୁଣିଣ ମାନବେ ହୋଇଲେ ତରସ୍ତ ।
କୁବେର ବରୁଣ ଆଉ ନୈର୍ଋତ ସହିତେ
ବିଶ୍ୱକର୍ମା ବିଶ୍ୱଦେବା ଭାବିଲେ ସମସ୍ତେ ।
ଚାରିମେଘ ଆଉ ପୁଣି ପଞ୍ଚ ହୁତାଶନ
କାଶ୍ୟପ ପ୍ରଜାପତିହିଁ ଆବର ଶମନ ।
ମରୀଚି ସ୍ୱାରୁଚି ଆଦି ଅଷ୍ଟ ଗ୍ରହରାଜି
ଯକ୍ଷ ବିଦ୍ୟାଧର ଆଦି ପଳାଇଲେ ଭାଜି ।
ସମସ୍ତ ଦେବତା ତହୁଁ ଭୟରେ ପଳାଇ
ହିମଗିରିର ମଧ୍ୟରେ ପଶିଲେ ସେ ଯାଇଁ ।
କପିଳାସେ ପଳାଇଲେ ଦେବ ସଦାଶିବ
ବ୍ରହ୍ମଲୋକରେ ଯାଇଣ ହୋଇଲେ ଦଇବ ।
ଅମରାବତୀକୁ ବିଜେ ଦେବ ଦଣ୍ଡଧାରୀ
ରଥେ ଆରୋହି ଭାଜିଲେ ସର୍ବ ଦଣ୍ଡଧାରୀ ।
ବାର ଯୋଜନେ ରହିଲେ ଯାଇ ରାଜାଗଣ
ବିଚାରନ୍ତି ଆସିବାର ହେଲା ଅକାରଣ ।
କେ ବୋଲଇ ସବୁବେଳେ ଥିବ କି ଏକଥା
ଯେମନ୍ତେ ହେଲେ ଉପାୟ କରିବେ ଦେବତା ।
କେହୁ ବୋଲଇ ସମସ୍ତେ ଗଲେଣି ପଳାଇ
କେହୁ ବୋଲେ ତୁମ୍ଭେମାନେ କିଛି ଜାଣ ନାହିଁ ।
ଯେତେ ଯେତେ ରତ୍ନ ତହିଁ ହୋଇଅଛି ଜାତ
ସେମାନଙ୍କ କଥା ପୁଣି ହୋଇବ କେମନ୍ତ ।
ବିଷ ନିଶ୍ଚୟ ଛାଡ଼ିବ ରତ୍ନ ସବୁ ନେବେ
ତାହା ବୁଝିକରି ଯିବା ରହିଣ ଏଠାବେ ।
ଏତେକ ବିଚାରି ରାଜା ରହିଲେ ସକଳ
ବାରଯୋଜନକୁ ଲାଗେ ପୁଣି ବିଷଜ୍ୱାଳ ।
ଦେଖିଣ ନୃପତିଗଣ ଗଲେକ ପଳାଇ
ରହିଲେ ସେମାନେ ଆଉ ପାଞ୍ଚଯୂଣ ଯାଇ ।
ଏଥୁ ଅନନ୍ତରେ କଥା ଶୁଣ ନୃପବର
ପଳାଇ ପଶିଲେଦୈତ୍ୟ ଅମର ନଗର ।
ନାଗସୈନ୍ୟ ପଳାଇଣ ପାତାଳକୁ ଗଲେ
ଏକା ନାରାୟଣ ସେତୁ ସ୍ଥାନରେ ରହିଲେ ।
ଗରୁଡ଼ ଉପରେ ସ୍ୱାମୀ ରହିଛନ୍ତି ବସି
ଆବରହିଁ ସଙ୍ଗତରେ ରହିଛନ୍ତି ଶଶୀ ।
ଅଷ୍ଟ ଅପସରୀ ସହ ଲକ୍ଷ୍ମୀ ମଧ୍ୟଛନ୍ତି
ନିଧି ପୁରୁଷଙ୍କ ନାହିଁ ବିଷଜ୍ୱାଳା ତାତି ।
ରକ୍ତମାଂସ ନୁହଇ ଯେ ତାଙ୍କ କଳେବର
ତେଣୁ ବିଷକୁ ତାଙ୍କର କିଛି ନାହିଁ ଡର ।
ସେ ରତ୍ନମାନଙ୍କୁ ଦେବେ ପଳାଇଲେ ଛାଡ଼ି
କୁଡ଼ କୁଡ଼ ହୋଇ ତହିଁ ରହିଅଛି ପଡ଼ି ।
ମୁନିଙ୍କି ପୁଚ୍ଛିଲେ ତହୁଁ ଶୁଣି ନୃପବର
ସେ ବିଷକୁ ନ ଡରିଲେ କିମ୍ପା ଚକ୍ରଧର ।
ମୋ ବିଷକୁ ଭୟକଲେ କିମ୍ପା ନାଗଗଣେ
ଲକ୍ଷ୍ମୀ ଅଷ୍ଟନାୟିକା ଯେ ଥିଲେ କେଉଁସ୍ଥାନେ ।
ଆବରହିଁ ଐରାବତ ରହିଲାଟି କାହିଁ
ଉଚ୍ଚୈଃଶ୍ରବା ହୟବର ଆଦିକରି ହୋଇ ।
ଏହା ସଂକ୍ଷେପିଣ ମୋତେ କୁହ ମୁନି ବ୍ରହ୍ମ
କହନ୍ତି ନାରଦ ମୁନି ଶୁଣ ଇନ୍ଦ୍ରଦ୍ୟୁମ୍ନ ।
ଲକ୍ଷ୍ମୀ ନାୟିକା ରହିଲେ ଚନ୍ଦ୍ରଙ୍କର ପାଖେ
ବିଷଜ୍ୱାଳା ନ ଲାଗିଲା ତାହାଙ୍କୁହିଁ ରେଖେ ।
ଚନ୍ଦ୍ରର ଅଟଇ ଯେଣୁ ସୁଧାମୟ ତନୁ
ହିମ ବରଷଣ ହୁଏ କାହାଙ୍କୁ କିରଣୁ ।
ତେଣୁ କରିଣ ତାହାଙ୍କ ବିଷ ନ ଭେଦିଲା
ଚନ୍ଦ୍ରଙ୍କ ଦେହରୁ ଯହୁଁ ସୁଧା ଜାତ ହେଲା ।
ସ୍ୱଭାବେ ସକଳ ଜାଣ ସୁଧା କଳେବର
ସହି ଅମୃତ ଜଳରୁ ହେଲା ଅବତାର ।

ଜାତ ହେବା ଦ୍ରବ୍ୟ ସବୁ ଅଛି ଏକଠାଇଁ
ରତ୍ନ ଶୀତଳ କରିଣ ମିଶେ ଚନ୍ଦ୍ର ତହିଁ ।
ତେଣୁ ଯେ ଗଜ ଅଶ୍ୱଙ୍କୁ ନ ଲାଗିଲା ବିଷ
ରତ୍ନ ଚନ୍ଦ୍ରର କିରଣ ନ ହୋଇଲା ଧ୍ୱଂସ ।
ତୁ ଅବା ବିଚାରୁ ଥିବୁ ସର୍ବେ ଥାନ୍ତି ତହିଁ
ନିକଟ ଶୀତଳ ଦୂରେ ପାଆନ୍ତେ ସେ କାହିଁ ।
ସମସ୍ତେ ରହିବାରୁ ସେ ସ୍ଥାନ କାହିଁ ଥିଲା
ହେମ ହେତୁରୁ ତାଙ୍କର ବିଷ ନ ଭେଦିଲା ।
ଏହିପରି ଭେଦାଭେଦ ନ ଜାଣିଲେ କେହି
ତରସ୍ତ ହୋଇଣ ସର୍ବେ ଗଲେ ଯେ ପଳାଇ ।
କେତେ ଦୂରେରହିଛନ୍ତି ପ୍ରଭୁ ନାରାୟଣ
ଗରୁଡ଼ଙ୍କର ପିଠିରେ ଅଛନ୍ତି ବସିଣ ।
ନାରାୟଣ ରହିଥିଲେ ବଡ଼ପଣ କରି
ଏ ବିଷ କିସ କରିବ ମନରେ ବିଚାରି ।
ଭୟ କରିଣ ସେଠାରୁ ଭାଜିଲେ ତ୍ରିଦଶ
ଦେଖିବା ଆମଙ୍କୁ ବିଷ କରିପାରେ କିସ ।
ଏହା ବିଚାରି ରହିଲେ ତହିଁ ନାରାୟଣ
ତହିଁରୁ ଯେମନ୍ତ ହେଲା ହେ ନୃପତି ଶୁଣ ।
ସେ ବିଷର ତେଜ ଘୋଟେ ଅତି ମହାଘୋର
କୃଷ୍ଣଙ୍କୁ ପକ୍ଷ ଘୋଡ଼ାଇ ରଖେ ଖଗେଶ୍ୱର
ଭେଦିଗଲା ବିଷଜ୍ୱାଳା ନୋହିଲା ବାରଣ
ନାରାୟଣଙ୍କ ଶରୀର ହେଲା କୃଷ୍ଣବର୍ଣ୍ଣ ।
ଦିଶୁଥିଲା ସେ ଶରୀର ସୁବର୍ଣ୍ଣକୁ ଜିଣି
ନୀଳମେଘ ପ୍ରାୟେ ଅଙ୍ଗ ଦିଶିଲାକ ପୁଣି ।
କୋଟିଏ କନ୍ଦର୍ପ ପ୍ରାୟ ଦିଶଇ ଶରୀର
ଜମ୍ବୁପଟଳରେ କାୟା ମୋହେ ତିନିପୁର ।
ଯେଉଁ ବର୍ଣ୍ଣ ହେଲେ ତାଙ୍କୁ ଦିଶିଲାକ ଶୋଭା
ମନ କଲେ ହେବ ସେହୁ କୋଟିବର୍ଣ୍ଣେ ପ୍ରଭା ।
ସେ କିମ୍ବା ପଳାନ୍ତେ ପୁଣି ବିଷେ ଭୟପାଇ
ନୀଳବର୍ଣ୍ଣ ରୂପ ଧରି ରହିଛନ୍ତି ତହିଁ ।
ଗରୁଡ଼ ପକ୍ଷ ସ୍ୱଭାବେ ବିଷ ସଂହାରଣ
ତାହାକୁ ସେ ବିଷ ଅବା କରିବ କି ପୁଣ ।
ନାଗଲୋକେ ପଳାଇଣଗଲେ ପାତାଳକୁ
ଥିଲେ ରତ୍ନନେଲେ ବୋଲିବୋଲନ୍ତେ ତାହାଙ୍କୁ
ଏତେ ଭାଳି ସେହୁ ନିଜ ଗୃହେ ଚଳିଗଲେ
ନାରାୟଣ ଚନ୍ଦ୍ର ଥିବା ଲୟ ସେ ନ କଲେ ।

ତରସ୍ତ ହୋଇ ପଳାଇ ଚଳିଲେ ସମସ୍ତେ
ତାହାକୁ କେହି ନ ଦେଖି ଗଲେ ଯେଝାମତେ।
ବିଷର ଜ୍ୱାଳାକୁ ସେହୁ ଡରିଲେ କିମ୍ପାଇ
ଏକମାତ୍ରକ ବାସୁକୀ ରହିଅଛି ତହିଁ ।
ଏମନ୍ତ ଶୁଣି ସନ୍ତୋଷ ହେଲା ମହୀପତି
ଏଣିକି ପୁଚ୍ଛାକରିଲେ ଶୁଣ ଆହେ ଯତି ।
ସେ ବିଷଜ୍ୱାଳା କେମନ୍ତେ ସାମ୍ୟ ହେଲା ପୁଣ
କହନ୍ତି ନାରଦ ମୁନି ଶୁଣ ନରରାଣ ।
ବ୍ରହ୍ମଲୋକକୁ ବୋଲିଣ ଟେକେ ବିଷ ତେଜ
ଦେଖିଣ ଚକିତ ଚିତ୍ତ ହେଲେ ବିପ୍ରରାଜ ।
ଜୀବ ଜନ୍ତୁହିଁ ସକଳେ ହୋଇଲେ ବିକଳ
ବ୍ରହ୍ମାଣ୍ଡଯାକରେ ସବୁ ଘୋଟେ ବିଷଜାଳ ।
ତାହା ଦେଖିଣ ଚିନ୍ତିତ ହେଲେ କୁଶପାଣି
ବିଚାରିଲେ ବିଷଘାଏ ନାଶ ଯିବେ ପ୍ରାଣୀ ।
ରୁଦ୍ରଙ୍କର ଭାଗ ବିଷ ସେ କରନ୍ତୁ ଗ୍ରାସ
ତାହାଙ୍କଠାରୁ ନ ଗଲେ ମହୀ ଯିବ ନାଶ ।
ସର୍ବ ଦେବତାମାନଙ୍କୁ ସଙ୍ଗତରେ ଘେନି
କପିଳାସକୁ ଗମନ୍ତି ବେଗେ ପଦ୍ମଯୋନି ।
କପିଳାସର କ୍ଷେତ୍ରରେ ମିଳିଲେ ସେ ଯାଇଁ
ଦୂରରୁ ରୁଦ୍ର ଦେବତା ବିଚାରନ୍ତି ଚାହିଁ ।
ବିଷଜ୍ୱାଳାର ନିମନ୍ତେ ଆସେ ପ୍ରଜାପତି
ଏହିକ୍ଷଣି ନାନାରୂପେ ହୋଇବେ ବିନତି ।
ଏମନ୍ତ ବିଚାରୁ ବ୍ରହ୍ମା ପ୍ରବେଶିଲେ ପାଶ
ତାଙ୍କୁ ଦେଖି ସଦାଶିବ ହେଲେ ହସ ହସ ।
ଶିରେକରଦେଇ ଉଭା ହେଲେ ପ୍ରଜାପତି
ରୁଦ୍ରଦେବଙ୍କୁଚାହିଁଣ କରିଲେ ସେ ସ୍ତୁତି ।
ଜୟ ଜୟ ମହାଦେବ ଜୟ ବିରୁପାକ୍ଷ
ସ୍ୱରୂପାୟ ବିରୁପାୟ ଜୟ ଅନ୍ତରୀକ୍ଷ ।
ଜୟ ଜୟ ସଦାଶିବ ବୃଷଭ ବାହନ
ଜୟ ତୁ ତ୍ରିଶୂଳଧାରୀ ଜୟ ତୁ ଈଶାନ ।
ଜୟ ତୁହି ସୂକ୍ଷ୍ମସ୍ଥୂଳ ବ୍ରହ୍ମ ନମୋସ୍ତୁତେ
ଜୟ ପାର୍ବତୀଙ୍କ ପତି ନମୋ ବିଶ୍ୱନାଥେ ।
ଜୟ ତୁ ଜଗତଗୁରୁ ହାଡ଼ର ଭୂଷଣ
ନମୋ ଲାଙ୍ଗଟାରୂପାୟ ଭସ୍ମ ବିଲେପନ ।
ନମସ୍ତେ ପଞ୍ଚଶିରାୟ ଜଟାରେ ଶୋଭନ
ନମୋ ଧବଳ ରୂପାୟ ସ୍ଫଟିକର ବର୍ଣ୍ଣ ।

ତ୍ରିଶୂଳ ପାଶୁପତ ଯେ ହସ୍ତରେ ଶୋଭିତ
ଜୟ ହେ ଡମ୍ବରୁଧର ଗୀତରେ ମୋହିତ ।
ଜୟ ତୁହି ଫଣିଧର ଜଗତର ପିତା
ନମସ୍ତେ ହେ ବିଶ୍ୱନାଥ ପରମ ଦେବତା ।
ତୁହି ବ୍ରହ୍ମା ତୁହି ବିଷ୍ଣୁ ତୁ ଅଖିଳ ପତି
ନଦୀ ସିନ୍ଧୁ ଗଗନ ତୁ ତୁହି ଅଟୁ ପୃଥ୍ୱୀ ।
ତୁହି ଯେ ପବନଦେବ ତୁହି ହୁତାଶନ
ଚନ୍ଦ୍ର ସୂର୍ଯ୍ୟନକ୍ଷତ୍ର ତୁ ଅଟୁ ଗଣମାନ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ତିନିପୁର ତୁହି
ତୁହି ସ୍ୱର୍ଗର ଦେବତା କରିଥାଉ ତ୍ରାହି ।
ନମୋ ସଦାଶିବ ତୁହି ଜଗତ ଜୀବନ
ଇନ୍ଦ୍ରକୁ ସ୍ଥାପିଛୁ ତୁହି ନମସ୍ତେ ଈଶାନ ।
ଚଉଦବ୍ରହ୍ମାଣ୍ଡ ଯାକ ତୋର ପାଦତଳେ
ଅମରଗଣ ବନ୍ଦନ୍ତି ନମସ୍ତେ ସୁଢ଼ଳେ ।
ନାଗ ଯକ୍ଷ ରକ୍ଷ ତୁହି ତୁ ପୁଣି ମନୁଷ୍ୟ
ସମସ୍ତଙ୍କ ହୃଦେ ଅଛୁ ଜୟ ଦିର୍ଗବାସ ।
ମନ ବୁଦ୍ଧି ଅହଙ୍କାର ସବୁ ଅଟୁ ତୁହି
ତୁହି ଯେ ପର୍ବତ ମେରୁ ହାଦେ ଅଛୁହୋଇ ।
ତୁହି ସ୍ଥାବର ଜଙ୍ଗମ ଅଟୁ ଦେବ ହର
କୀଟ ପତଙ୍ଗାଦି କରି ନୁହନ୍ତି ଅନ୍ତର ।
ତୁହି ଚାରିବେଦ ଅଟୁ ସୁରଭି ହିଁ ତୁହି
ତୁହି ରକ୍ଷାକରୁ ଚାରି ଯୁଗ ରାଜା ହୋଇ ।
ତୁ ଦେବ ସୃଷ୍ଟିକି ପୁଣ କରୁ ସଂହାରଣ
ନମୋ ସଦାଶିବ ନମୋ ତୁହି ଦେବବ୍ରହ୍ମ ।
ନମସ୍ତେ ପରମେଶ୍ୱର ସର୍ବ ବିଦ୍ୟାଦକ୍ଷ
ଗୋ ବ୍ରାହ୍ମଣଙ୍କ କାରଣ ପାପପୁଣ୍ୟ ସାକ୍ଷ୍ୟ ।
ଭକତବତ୍ସଳ ନାଥ ପୂର୍ଣ୍ଣକରୁ ବାଞ୍ଛା
ନମସ୍ତେ ଶିବ ପ୍ରଳୟ କାଳକୁ ତୁ ବଞ୍ଚା ।
ତୁ ଅଟୁ ଦେବ ପ୍ରଳୟ ତୁ ଅଟୁ ଜଗତ
ବ୍ରହ୍ମାଙ୍କର ସ୍ତୁତି ଶୁଣି ତୋଷ ବିଶ୍ୱନାଥ ।
ବୋଇଲେ କିମ୍ପା ବିନୟ କରୁଅଛୁ ଏତେ
କହନ୍ତି ଯେ ଦେବବ୍ରହ୍ମା ଶୁଣ ବିଶ୍ୱନାଥେ ।
ସମୁଦ୍ର ମନ୍ଥନୁ ସ୍ୱାମୀ ବିଷେ ହେଲା ଜାତ
ବ୍ରହ୍ମଲୋକକୁ ଘୋଟିଲା ପୋଡ଼ାଇ ଜଗତ ।
ଜୀବଜନ୍ତୁ ସମସ୍ତେ ଯେ ହୁଅନ୍ତି ବିକଳ
ଘୋଟିଛି ବିଷ ସମସ୍ତ ଭୁବନ ମଣ୍ଡଳ ।
ଦେବାସୁର ମନ୍ଥନରୁ ଗଲେଣି ପଳାଇ
ଆଉ ହେ ଦେବ ସେଠାରେ ଜଣେ କେହି ନାହିଁ ।
ଏକମାତ୍ରକ ଅଛନ୍ତି ତହିଁ ନାରାୟଣ
ବିଷଜ୍ୱାଳାରେ ସେ ପୁଣି ହେଲେ କୃଷ୍ଣ ବର୍ଣ୍ଣ ।
ଦଗଧ ସୁବର୍ଣ୍ଣ ପ୍ରାୟ ରୂପ ଦିଶୁଥିଲା
ସେ ରୂପଟି ଯାଇ ଏବେ କୃଷ୍ଣ ବର୍ଣ୍ଣ ହେଲା ।
ଯୋଗବଳେ ଆହେ ସ୍ୱାମୀ ଦୃଶ୍ୟହେଲା ମୋତେ
ତେଣୁକରି ଆହେ ସ୍ୱାମୀ କହୁଅଛି ତୋତେ ।
ତୁ ଏବେ ଯାଇ ବିଷକୁ ଭକ୍ଷ ତ୍ରିଲୋଚନ
ନୋହିଲେ ନିଶ୍ଚୟ ନାଶ ଯିବ ତ୍ରିଭୁବନ ।
ତୁହି ସିନା ଆବୋରିଛୁ ଏ ଭାଗ ତୋହର
ବିଷ ଭକ୍ଷିଣ ସଂସାର ଏବେ ରକ୍ଷାକର ।
ଦଗ୍ଧ ସୁବର୍ଣ୍ଣ ପ୍ରାୟ ଅଙ୍ଗ ଦିଶୁଥିଲା
ଜନାର୍ଦ୍ଦନଙ୍କୁ ସେ ବିଷ କୃଷ୍ଣ ବର୍ଣ୍ଣ କଲା ।
ଯହୁଁ ଦେବ ବ୍ରହ୍ମାଙ୍କର ଶୁଣିଲେ ବଚନ
ମନରେ ବିଚାର କଲେ ପ୍ରଭୁ ତ୍ରିଲୋଚନ ।
ବିଷ ନ ଭକ୍ଷିଲେ ମହୀ ନିଶ୍ଚେ ଯିବ ନାଶ
ଆବର ଆମ୍ଭେ ଥାଇଣ କରିବା ବା କିସ ।
ଆମ୍ଭେ ଆବୋରି ନ ଥିଲେ କାହାକୁ କହନ୍ତ
ଦୃଶ୍ୟ ହୁଏ ତେବେ ମଧ ମୋଠାକୁ ଆସନ୍ତ ।
ମୁହିଁ ସେ ବିଷକୁ କରି ପାରଇ ଭକ୍ଷଣ
ସ୍ୱଭାବେ ସ୍ତୁତି କଲାଣି ଏବେ ବଡ଼ ଜଣ ।
ମୁହି ନ ଗଲେ ନିଶ୍ଚୟ ମହୀ ନାଶ ଯିବ
କୃଷ୍ଣବର୍ଣ୍ଣ ହେଲେ ହରି କେ ପୁଣି ତାରିବ ।
ଏତେ ବିଚାରି ଉଠିଲେ ତହୁଁ ସଦାଶିବ
ବୋଇଲେ ଚାଲ ସେଠାକୁ ଯିବା ହେ ଦଇବ ।
ଚଳିଗଲେ ବ୍ରହ୍ମା ରୁଦ୍ର ଘେନି ଦେବଗଣ
ମନ୍ଥନ ସ୍ଥାନେ ପ୍ରବେଶ ହୋଇଲେ ଯାଇଣ ।
ରହି ଅନ୍ତର ହୋଇଲେ ଦେବତା ସକଳେ
ବିଷଜ୍ୱାଳା ଘୋଟିଅଛି ଗଗନମଣ୍ଡଳେ ।
ଦେଖିଲେ ସେ ମହାରୁଦ୍ର ସେ ବିଷର ଜ୍ୟୋତି
ଶ୍ରୀଭୁଜକୁ ବଢ଼ାଇଣ ଦେଲେ ସେ ତଡ଼ତି ।
ଗରଳ ଫେଣ ପରାୟେ ଜଳରେ ଭାସୁଛି
ନୀଳ ଧନୁ ପରାୟେକ ତେଜ ପ୍ରକାଶୁଛି ।
ତକ୍ଷଣରେ ସଦାଶିବ ଧଇଲେକ ଯାଇ
କରପଲ୍ଲବ ତହିଁରେ ପୂରାଇଲେ ନେଇ ।

ସେହି ବିଷର ଜ୍ୟୋତିକି ଚାହିଁଲେ ଈଶାନ
ନୀଳବର୍ଣ୍ଣ କିରଣରେ ଛାଇଛି ଗଗନ ।
ଆନ ଚାହିଁବାକୁ କାର ଭାଜନ ଯେ କାହିଁ
ଯେ ଯାହାକୁ ଭକ୍ଷିପାରେ ସେ ତାହାକୁ ଚାହିଁ ।
ସମସ୍ତଙ୍କୁ ବିଷଜ୍ୱାଳା ହେଲା କାଳଫାଶ
କରେ ତାକୁ ଧରିଛନ୍ତି ଦେବ ଦିଗବାସ ।
ତକ୍ଷଣେ ସେହି ବିଷକୁ ଦେବ ଦେଲେ ଭକ୍ଷି
ଅଧେ ଗର୍ଭେ ପଡ଼ି ଅଧେ କଣ୍ଠେ ଗଲା ଲକ୍ଷି ।
କ୍ରମଶ କ୍ରମଶ ସବୁ ହେଲା ଗର୍ଭଗତ
ସଦାଶିବ ଭାଙ୍ଗିଦେଲେ ବିଷ ଉତପାତ ।
ତକ୍ଷଣରେ ବିଷଜ୍ୱାଳା ହୋଇଗଲା ଲୀନ
ସର୍ବଦେହୀ ସୁଖୀ ହେଲେ ବହେ ସୁପବନ ।
ଗଗନଯାକ ନିର୍ମଳ ହୋଇଲା ସକଳ
ସାଧୁ ସାଧୁ କହି ପୁଷ୍ପ ବର୍ଷିଲେ ଦିଗ୍‌ପାଳ ।
ଶିରେ କର ଦେଇ ପାଦେ ନମିଲେ ସକଳେ
ସକଳ ଦେବତା ଆଦି ଯେତେ ଦିଗ୍‌ପାଳେ ।
କହନ୍ତି ନାରଦ ତୁମ୍ଭେ ଶୁଣ ହେ ରାଜନ
ସେଦିନୁ ନାଗଭୂଷଣ ହୋଇଲେ ଈଶାନ ।
ପ୍ରସନ୍ନରେ ବର ତାଙ୍କୁ ଦେଲେ ମହୀଧର
ନାଗଭୂଷଣକୁ ରୁଦ୍ର ମାଗିନେଲେ ବର ।
ତେଣୁକରି ନାଗଭୂଷା ହୋଇଲେ ଈଶାନ
ଏଥୁ ଅନନ୍ତରେ ଶୁଣ ଆନ କଥାମାନ ।
ଦେବତା ରାକ୍ଷସମାନେ ମିଳିଲେକ ଯାଇ
ରାଜାମାନେ ବାହୁଡ଼ିଲେ ବାରତାକୁ ପାଇ ।
ପଥେ ଆସୁ ବିଚାରନ୍ତି ସର୍ବ ନରନାଥେ
ଯାହା କହିଥିଲୁ ଦେବେ କଲେ ସେହିମତେ ।
ରାଜାମାନେ ଯାଇ ତହୁଁ ହୋଇଲେ ପ୍ରବେଶ
ଦେଖିଲେ ରୁଣ୍ଡ ହୋଇଣ ଅଛନ୍ତି ତ୍ରିଦଶ ।
ପାତାଳୁ ଅଇଲେ ପୁଣି ନାଗବଳମାନ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ରାଜନ ।
ଯହୁଁ ବିଷକୁ ଭକ୍ଷଣ କଲେ ସଦାନନ୍ଦ
ଅଖଣ୍ଡ ଗରଳ ସେହୁ ଅଟେ ବଡ଼ ମନ୍ଦ ।
ତୋ ବିଷ ପଡ଼ି ପାଷାଣ ଦେଇପାରେ ଜାଳି
ତାହାକୁ ଭକ୍ଷଣ କଲେ ଦେବି ଦେବ ଶୂଳୀ ।
କଣ୍ଠ ଆକୃତି ଦିଶିଲା ଅତି ନୀଳବର୍ଣ୍ଣ
ସନ୍ତୋଷରେ ଦେବେ ଦେଲେ ନୀଳକଣ୍ଠ ନାମ ।

ବିଷ ଘାରିଲା ଅସ୍ଥିର ହେଲେ ସଦାଶିବ
ଦେଖିଣ ଚକିତ ଚିତ୍ତ ହେଲେ ସର୍ବଦେବ ।
ବ୍ରହ୍ମା ବୋଲେ ଗଙ୍ଗାଚନ୍ଦ୍ର ଦେବାଦେବୀ ଚାହିଁ
ରୁଦ୍ରଶିରେ ବସ ଗଙ୍ଗା ଚନ୍ଦ୍ର ଅର୍ଦ୍ଧ ହୋଇ ।
ସ୍ୱଭାବେ ସିନ୍ଧୁରୁ ତୁହି ହୋଇଛୁ ଜନମ
ରୁଦ୍ରଙ୍କ ଶିରେ ବରଷି ବିଷକର ସାମ୍ୟ ।
ବ୍ରହ୍ମାଙ୍କ ବଚନେ ଚନ୍ଦ୍ର ତକ୍ଷଣେ ଉଠିଲା
ଅଖଣ୍ଡିତ ଚନ୍ଦ୍ର ତହୁଁ ଅର୍ଦ୍ଧେକ ହୋଇଲା ।
ରୁଦ୍ର ଶିରେଚନ୍ଦ୍ର ଗଙ୍ଗା ବସିଲେକ ଯାଇଁ
ଶୋଭା ଦିଶେ ରୁଦ୍ର ଶିରେତେଜ ପ୍ରକାଶଇ ।
ଚନ୍ଦ୍ରରୁ ସୁଧା ଝରିଣ ହ୍ୱନ୍ତେ ବରଷଣ
ତକ୍ଷଣେ ଚେତା ପାଇଲେ ପାର୍ବତୀରମଣ ।
ମସ୍ତକରୁ ଝର ଝର ବହେ ଗଙ୍ଗାଧାର
ଅଙ୍ଗ ବୁଡ଼ନ୍ତେ ଶୀତଳ ବହିଲା ସମୀର ।
ଶରୀର ସୁସ୍ଥ ହୁଅନ୍ତେ ଦିବ୍ୟଜ୍ଞାନହେଲା
ଚନ୍ଦ୍ର ଦେବଙ୍କୁ ଚାହିଁଣ ବୋଇଲେ ଯେ ଭୋଳା ।
ବିଷର ଜ୍ୱାଳାରେ ମୁହିଁ ହୋଇଲଇଁ ବାଇ
ସୁସ୍ଥ କଲୁ ଦେହ ତୋରଠାରୁ ପ୍ରିୟ ନାହିଁ ।
ମାଗ ମାଗ ଆରେ ଚନ୍ଦ୍ର ବର ଦେବିତୋତେ
ରୁଦ୍ର ବାକ୍ୟେ ନ ମାଗନ୍ତେ ଚନ୍ଦ୍ର ଦଣ୍ଡବତେ ।
ପୁଣି ବୋଲେ ସଦାନନ୍ଦ କୃପା କଲୁ ଯେବେ
ମାଗୁଅଛି ବରଦିଅ ନିଶ୍ଚୟରେ ତେବେ ।
ମୋ ଜନ୍ମ ଦିବସ ସୋମବାର ଯେ ଅଟଇ
ସେହି ଦିବସରେ ପୂଜା ମୁହିଁ ପାଇବଇଁ ।
ତୋତେ ସେବି ମୋତେ ପୂଜା କରିବ ଯେ ନର
ଯଜ୍ଞଫଳ ପାଇ ସେହୁ ରହିବ ତୋ ପୁର ।
ସେଦିନ ତୋ ମୁଣ୍ଡେ ଯେହୁ ନିଉଡ଼ିବ ଜଳ
ତାହାକୁ ଯେ ଦେବୁ ତୁହି କୋଟି ତୀର୍ଥଫଳ ।
ମୋର ଶିରେ ଚମ୍ପା ବେଲପତ୍ର ନେଇଦେବ
ଗନ୍ଧର୍ବ ରୂପେ ଦେବତା ସଙ୍ଗେ ସ୍ୱର୍ଗେ ଥିବ ।
ଯେ ଏହା ବାଞ୍ଛା କରିବ ଦେବୁ ସ୍ୱାମୀ ତାକୁ
ମୋହର ଫଳକୁ ଦେବୁ ତ୍ରିପୁର ଜନଙ୍କୁ ।
ଚମ୍ପା ବେଲପତ୍ର ସଦା ଘେନିଥିବୁ ଶିର
ଯେତେଦିନ ଥିବୁ ଆମ୍ଭେ ଚନ୍ଦ୍ର ଦିବାକର ।
ମୋର ଦର୍ଶନେ ଖଣ୍ଡିବ ତାର ସର୍ବ ପାପ
ଅପରାଧ କଲେ ଦେବ ନ କରିବୁ କୋପ ।

ଚନ୍ଦ୍ର ଶେଖର ତୋ ନାମ ହେଉ ଗଙ୍ଗାଧର
ମୁଁ ଗଙ୍ଗା ରହିଲି ଯେଣୁ ମସ୍ତକେ ତୋହର ।
ଚନ୍ଦ୍ର ବଚନେ ସନ୍ତୋଷ ହେଲେ ଶୂଳପାଣି
ବୋଇଲେ ଯାହା ମାଗିବୁ ଦେବି ସତ୍ୟବାଣୀ ।
ଶ୍ରବଣା ମଘା ନକ୍ଷତ୍ରେ ଚନ୍ଦ୍ର ଯାଇ ହେବ
ବାଣିଜ୍ୟ ବିଷ୍ଟି ସଂଯୋଗେ ଶିବଯୋଗ ଥିବ
କୃଷ୍ଣ ଚତୁର୍ଦ୍ଦଶୀ ଥିବ ପଡ଼ିବ ତୋ ବାରେ
ଯେ ଫଳ ମାଗିବୁ ପୂଜିପାଇବେ ତା ନରେ ।
ଆବର ଦେବତା ସିଦ୍ଧ ପୁଣି ନାଗଗଣ
ଏ ଯୋଗେ ସେବା କରିଲେ ପାଇବେ କାରଣ ।
ତୋହର ବାରରେ ମୋତେ ଯେ ପୂଜାକରିବ
ଗନ୍ଧ ଜଳ ଫଳ ପୁଷ୍ପ ଯେହୁ ଭୋଗ ଦେବ ।
ମେରୁ ପରାୟେ କରିଣ ଘେନିବି ମୁଁ ତାହା
ଅବଶ୍ୟ ଦେବଇଁ ଚିତ୍ତେ କଳ୍ପିବ ସେ ଯାହା ।
ଉଦାସୀ ହୋଇଣ ଦେଲେ ମୋକ୍ଷ କରିବଇଁ
ଏହି କଥା ସତ୍ୟ ମୋର ଅନ୍ୟଥା ନୁହଇ ।
ତୁହି ସତ୍ୟ କର ମୋର ଶିରେଥାଅ ରହି
ସର୍ବଦାହିଁ ବସିଥିବୁ ନ ଯିବୁ ତୁ କାହିଁ ।
ଆଜହୁଁ ଚନ୍ଦ୍ର ଶେଖର ନାମ ହେଲା ମୋର
ମୁଁ ରହିଲି ଚନ୍ଦ୍ର କରେ ସତ୍ୟ ତିନିବାର ।
ଦୁହିଁଙ୍କ ପ୍ରସଙ୍ଗେ ତୁଷ୍ଟ ହେଲେ ଦେବଗଣ
ନାରାୟଣଙ୍କୁ ପୁଚ୍ଛନ୍ତି ବ୍ରହ୍ମା ରୁଦ୍ର ପୁଣ ।
ବିଷଜ୍ୱାଳାରେ କାଳିଆ ହେଲେ ଚକ୍ରଧର
ଅଧିକ ରୂପେ ସୁନ୍ଦର ଦିଶୁଛି ଶରୀର ।
ବ୍ରହ୍ମା ରୁଦ୍ର ବୋଲନ୍ତି ଯେ ଶୁଣ ଭଗବାନ
ଆଜିଠାରୁ ତୁମ୍ଭ ନାମ ହୋଇଲାକ କୃଷ୍ଣ ।
ତାହା ଶୁଣି ନାରାୟଣ ସନ୍ତୋଷ ହୋଇଲେ
ଶୁଣ ଆହେ ଇନ୍ଦ୍ରଦ୍ୟୁମ୍ନ ନାରଦ କହିଲେ ।
ଶ୍ରୀକୂର୍ମନାରାୟଣଙ୍କ ଚରଣ କମଳେ
ବିପ୍ର କାମପାଳ ପଶେ ଅତ୍ୟନ୍ତ ବିକଳେ ।
ସମୁଦ୍ର ମନ୍ଥନ କଥା ଯେ ଜନ ଶୁଣଇ
ଅନ୍ତେ ବୈକୁଣ୍ଠରେ ତାକୁ ଠାବ ଯେ ମିଳଇ ।

.....❋.....

## ଲକ୍ଷ୍ମୀ ନାରାୟଣଙ୍କୁ ବରଣମାଳା ଦେବା ଏବଂ ସମୁଦ୍ରୋତ୍ପନ୍ନ ପଦାର୍ଥମାନ ବଣ୍ଟନ

ଇନ୍ଦ୍ରଦ୍ୟୁମ୍ନ ପୁଚ୍ଛାକଲେ ଶୁଣ ମୁନିବର
ଚନ୍ଦ୍ରଦେବଙ୍କ କେମନ୍ତେ ହେଲା ସୋମବାର ।
ଏହା ମତେ ବିସ୍ତାରିଣ କହ ବ୍ରହ୍ମଚାରୀ
ଏ ବିଷ୍ଣୁ ପୁରାଣ ଶୁଣି ଯିବଇଁ ମୁଁ ତରି ।
କହନ୍ତି ନାରଦ ତୁମ୍ଭେ ଇନ୍ଦ୍ରଦ୍ୟୁମ୍ନ ଶୁଣ
ଯେଦିନ ସିନ୍ଧୁ ମନ୍ଥନ କଲେ ଦେବଗଣ ।
ସୂର୍ଯ୍ୟଦେବତା ସର୍ବଦା ରହିଲେ ଯେ ତହିଁ
ପାଞ୍ଚଦିନ ଭୋଗ ହେଲା ଦିନ ପ୍ରାୟ ହୋଇ ।
ରାତ୍ର ସେହିଠାରେ ଆଉ ପ୍ରକାଶ ନୋହିଲା
ସୋମବାର ଦିବସରେ ଚନ୍ଦ୍ର ଜାତ ହେଲା ।
ସେ ସକାଶୁ ସେହିଦିନ ହେଲା କୋଟି ତାର
ସନ୍ତୋଷରେ ରହେ ଚନ୍ଦ୍ର ହରଙ୍କର ଶିର ।
ସୋମେ ରୁଦ୍ରଙ୍କୁ ସେବିଲେ ଅତି ଫଳହୋଇ
ଅନ୍ୟ ଦିବସରେ ଫଳଲାଭ ଯେ ନୁହଇ ।
ଆବର କଥାଏ ଶୁଣ ଆହେ ନୃପରାଣ
ଯେହୁ ଯେ ଦିନ ଜାତ ତା ସେହିଦିନ ଜାଣ ।
ଗୁରୁବାରେ ଲକ୍ଷ୍ମୀ ଜାତ ହେଲେ ବାରାନିଧି
ନାନାବିଧିରେ ପୂଜିଲେ କାର୍ଯ୍ୟ ହୁଏ ସିଦ୍ଧି ।
ପୁଣି ଗୁରୁବାର ଦିନ ଜାତ ବୃହସ୍ପତି
ତେଣୁ ତାଙ୍କର ସେ ଦିନ ଅଟେ ଅତି ପ୍ରୀତି ।
ଏହିମତେ ସମସ୍ତଙ୍କ ଜନ୍ମଦିନମାନ
କରି ଥାଆନ୍ତି ତାଙ୍କର ଉତ୍ସବ ବିଧାନ ।
ଜନ୍ମ ଦିବସର କଥା ଏହିରୂପେ ଜାଣ
ସର୍ବେ ସେଦିନ ଚନ୍ଦ୍ରାନ୍ନ କରିଲେ ଗ୍ରହଣ ।
ରୁଦ୍ର ଚନ୍ଦ୍ର ଦେବତାଙ୍କୁ ପ୍ରସନ୍ନେ ବୋଇଲେ
ଚନ୍ଦ୍ରଙ୍କୁ ପୂଜିବେ ସେହି କାଳେ ଆଜ୍ଞାକଲେ ।
ରାଜାବୋଲେ ସେ ମାଗିଲେ କିବା ଦେଲେ ବଳେ
ଏହି କଥାଗୋଟି ମୋତେ କୁହ ତପଶୀଳେ ।
ଦେବର୍ଷିବୋଇଲେ ତୁମ୍ଭେ ଇନ୍ଦ୍ରଦ୍ୟୁମ୍ନ ଶୁଣ
ଯେତେବେଳେ ପଡ଼ିଲା ସେ ଦିବସ କାରଣ ।

ଚନ୍ଦ୍ରମାନେ ବୋଇଲେ ଯେ ଆମ୍ଭର ଏ ବଂଶ
ଏ ଦିନ ପ୍ରାପତ ହେଉ ଦିଅ ଦିଗବାସ ।
ଶୁଣିକରି ସଦାଶିବ ସନ୍ତୋଷ ହୋଇଲେ
ଚନ୍ଦ୍ରଙ୍କୁ କହି ସେ ବାର ସମସ୍ତଙ୍କୁ ଦେଲେ ।
ଶୁଣିଲୁ ନୃପତିଚନ୍ଦ୍ର ଦିବସ ଚରିତ
ମୁନି ବଚନେ ସନ୍ତୋଷ ହେଲେ ନରନାଥ
ପୁଣି ପ୍ରକାଶନ୍ତି ମୁନି ଆହେ ରାଜା ଶୁଣ
ଶିବ ବ୍ରହ୍ମା ବୋଇଲେକ ଆହେ ନାରାୟଣ ।
ମନ୍ଦର ପର୍ବତ ଏବେ ଘେନି ଆସ ଯାଇ
ତାହାର ସ୍ଥାନରେ ଗିରି ରଖ ଭାବଗ୍ରାହୀ ।
ତାହା ଶୁଣି ନାରାୟଣ ସନ୍ତୋଷ ହୋଇଲେ
ପ୍ରଶଂସା କରି ସଭାରେ ତାଙ୍କୁ ବସାଇଲେ ।
ବାସୁକିର ପୂର୍ବ ଦେହ ହୋଇନାହିଁ ଭଙ୍ଗ
ବ୍ରହ୍ମାଙ୍କ ଆଜ୍ଞା ପ୍ରମାଣେ ବସେ ଦେବସଙ୍ଗ ।
ବ୍ରହ୍ମା ବୋଇଲେ ତୋ ପାଇଁ ମିଳେ ରତ୍ନକୋଷ
ଅନର୍ଥ ଜାତ ହୋଇଲା ଉପୁଜନ୍ତେ ବିଷ ।
ଶୁଣି ବାସୁକି ବୋଇଲେ ମୋ ଆୟତ୍ତ ନାହିଁ
ଅତି ଘର୍ଷଣେ ଗରଳ ପଡ଼ିଲାକ ବହି ।
ତାହା ଶୁଣିଣ ସମସ୍ତେ ସନ୍ତୋଷ ହୋଇଲେ
ଯାହା ଭାଗ୍ୟେ ଥିଲା ଜାତ ହୋଇଲା ବୋଇଲେ ।
କେହି ବୋଲେ ଗଜଅଶ୍ୱ ରହିଲେ ଅପାର
ବ୍ରହ୍ମା ବୋଇଲେ ଥାଆନ୍ତୁ ଜଳର ଭିତର ।
ସଭାରେ ଆସି ବସିଲେ ଯହୁଁ ଫଣିବର
ବାମେ ପର୍ବତ ଧଇଲେ ତହୁଁ ଚକ୍ରଧର ।
ରାଜା ପଚାରିଲେ ପୁଣି ହେ ମୁନି ପ୍ରଧାନ
କିମ୍ପାଇ ନ କଲେ ଆଉ ସମୁଦ୍ର ମନ୍ଥନ ।
ନାରଦ କହନ୍ତି ତହୁଁ ବିଷ ହେଲା ସ୍ଥିର
ବାସୁଦେବଙ୍କୁ କହିଲେ ତହୁଁ ବେଦବର ।
ହେ ପ୍ରଭୁ ସମୁଦ୍ର ଆଉ ମନ୍ଥିବା କି ଥିବ
ବ୍ରହ୍ମା ବଚନେ କହନ୍ତି ତହୁଁ ବାସୁଦେବ ।
ନିସତ ହୋଇ ବାସୁକି ବିଷ କଲା ଜାତ
ସମୁଦ୍ର ମନ୍ଥନ ଏବେ ରହୁ ଚଉମାଥ ।
ପ୍ରଭୁ ବଚନେ ସନ୍ତୋଷ ହେଲେ ସର୍ବଜନ
ଏବେ ସାବଧାନେ ଶୁଣ କେ ନୃପ ପ୍ରଧାନ ।
ପୂର୍ବ ଜନ୍ମେ ତୁମ୍ଭେ କେତେ ପୁଣ୍ୟ କରିଥିଲ
ଅମୃତ ରସମୟ ଯେ ଚରିତ ଶୁଣିଲ ।

ଗିରିକି ରଖିଲେ ତାର ସ୍ଥାନେ କରି ସିଦ୍ଧି
ଯେମନ୍ତେ ତାହାର ଥିଲା ଗତାଗତ ବିଧି ।
ଜୀବଜନ୍ତୁ ପାଇଲେ ଯେ ତାଙ୍କ ନିଜରୂପ
ତେବେ ଭ୍ରମଣ କରନ୍ତି ପୂର୍ବର ସ୍ୱରୂପ ।
କୁରୁମ ଅବତାର ଯେ ହୋଇଥିଲେ ହରି
ଆପଣା ଶରୀରେ ପୁଣି ତାହାକୁ ସଂହରି ।
ଗିରି ଉପର ପୁରୁଷ ଅଙ୍ଗେ ଲୀନ କଲେ
ନିର୍ଭୟରେ ଜଳଜନ୍ତୁ ଜଳେ ବିହରିଲେ ।
ଯେସନେ ମେଘ ସଂହାର କରିପାରେ ଜଳ
ଯେପରି ମୂର୍ତ୍ତି ସଂହରି ନେଲେ ଆଦିମୂଳ ।
କୂର୍ମାବତାର ଛାଡ଼ିଲେ ପ୍ରଭୁ ଦେବ ହରି
କହନ୍ତି ନାରଦ ଶୁଣ ଆହେ ଦଣ୍ଡଧାରୀ ।
ତାହା ଦେଖିଣ ସନ୍ତୋଷ ହୋଇ ସର୍ବ ସୁର
ସମସ୍ତେ ବସିଣ ତହିଁ କରନ୍ତି ବିଚାର ।
ଏବେ ଏହି ରତ୍ନଯାକ ଆସ ହେ ବାଣ୍ଟିବା
ଏହି ଯୁବତୀକି ନେଇ କାରେ ପୁଣ ଦେବା ।
ସମସ୍ତଙ୍କର ମନ ଯେ ଅଛି ତାର ତହିଁ
ଶ୍ରୀ ଦେବବ୍ରହ୍ମା ବୋଇଲେ ସମସ୍ତଙ୍କୁ ଚାହିଁ ।
ଏହି ନାରୀ ନିଜ କରେ ରତ୍ନମାଳା ଧରୁ
ଯାହାକୁ ତାହାର ମନ ତାହାକୁ ସେ ବରୁ ।
ଏମନ୍ତ ହୋଇଲେ ଏଥୁ ଯିବ କଳି ଦ୍ୱନ୍ଦ୍ୱ
ଜଣକୁ ଯାଚିଣ ଦେଲେ ଉପୁଜିବ ମନ୍ଦ ।
ସମସ୍ତଙ୍କର ମନକୁ ଆସୁଛି କି ନାହିଁ
ସର୍ବେ ବୋଇଲେ ଏ କଥା ପ୍ରମାଣ ଗୋସାଇଁ ।
ବିଷ୍ଣୁ ରୁଦ୍ରଙ୍କୁ ପୁଛିଲେ ଚାହିଁ ଚଉମାଥ
ସେହି ବେନି ଆଜ୍ଞା ଦେଲେ କର ଏହିମତ ।
ତାହା ଇଚ୍ଛାରେ ଯାହାକୁ ବରିବ ସେ ନାରୀ
କଳିଦ୍ୱନ୍ଦ୍ୱ ନାହିଁ ନିଶ୍ଚେ ହୋଇବ ତାହାରି ।
ଏକା ଜଣକୁ ସମସ୍ତେ ଘେନିବ କେମନ୍ତ
ଯାଚି ଜଣକୁହିଁ ଦେଲେ ହୋଇବ ଅନର୍ଥ ।
ଏବେ ସେହି ନାରୀ ତାର ଇଚ୍ଛାରେ ବରିବ
ଯାହାକୁ ବରିବ ସେହି ତାକୁ ଘେନିଯିବ ।
ସକଳେ କହିଲେ ଏହା ପ୍ରକୃତ ବଚନ
ତୁମ୍ଭର କଥା କିଏ ସେ କରିପାରେ ଆନ ।
ସମସ୍ତଙ୍କ ସନମତ ଜାଣି ବେଦବର
ରତନମାଳା ଗୋଟିଏ ଘେନିଲେ ସେ କର ।

ଅମୃତ କୁମ୍ଭକୁ ଥୋଇ ଉଭାଛନ୍ତି ନାରୀ
ତାଙ୍କ ସନ୍ନିଧିକୁ ତହୁଁ ଗଲେ କୁଶଧାରୀ ।
ଲକ୍ଷ୍ମୀଙ୍କ ହସ୍ତରେ ଦେଲେ ସେହି ମାଳାଦେଇ
ବୋଇଲେ ଯାହାକୁ ଇଚ୍ଛା ବର ଚାନ୍ଦମୁହିଁ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଆଦି ଦକ୍ଷ ପ୍ରଜାପତି
ଚନ୍ଦ୍ର ସୂର୍ଯ୍ୟ ଯକ୍ଷପତି ପବନ ଅଛନ୍ତି ।
ପଞ୍ଚ ହୁତାଶନ ଆଉ ସପ୍ତ ତପୋଧନ
ସନକ ନୈରତ ଆଦି ଅଛନ୍ତି ଶମନ ।
ଚାରିମେଘ ରହିଛନ୍ତି ଛନ୍ତି ପୁରନ୍ଦର
ନାଗ ମନୁଷ୍ୟ ଅଛନ୍ତି ଅଛନ୍ତି ଅସୁର ।
ଯାହାକୁ ତୁମ୍ଭର ମନ ବର ଗୋ ବହନ
ଶୁଣି ଦେବୀ ରତ୍ନମାଳା ଧଇଲେ ଯାଇଣ ।
ଚଉଦ ବ୍ରହ୍ମାଣ୍ଡଲୋକ ଅଛନ୍ତି ରହିଣ
ବିଳମ୍ବ ନ କରି ଯାଅ କର ଗୋ ବରଣ ।
ବ୍ରହ୍ମା ବଚନେ ସନ୍ତୋଷ ହେଲା ତାଙ୍କ ମନ
ଚଉଦିଗକୁ ଚାହାନ୍ତି ହୋଇ ଛନ୍ନ ଛନ୍ନ ।
ସର୍ବଦେବେ ଏକ ଦୃଷ୍ଟି ଦେଇଛନ୍ତି ଚାହିଁ
କାହାକୁ ବରିବ ବୋଲି ଛନ୍ନ ଛନ୍ନ ହୋଇ ।
ଏମନ୍ତେ ଏକ ଆଗରେ ଆରେକ ମିଳନ୍ତି
ଆପଣାର ଦିବ୍ୟରୂପ ପ୍ରକାଶ କରନ୍ତି ।
ତାହାଙ୍କୁ ଦେଖି ତାଙ୍କର ନ ଚଳଇ ଚିତ୍ତ
ଲକ୍ଷ୍ମୀ ବିଷ୍ଣୁଙ୍କ ଘରଣୀ ଜଗତର ମାତ ।
ସେ କାହିଁ ଦେବାସୁରକୁ ଯାଇଣ ବରିବ
ତାର ପତି ନାରାୟଣ ସ୍ବରେ ବାସୁଦେବ ।
ଚତୁର୍ଦ୍ଦିଗକୁ ନିଶ୍ଚଳେ ଦେବୀ ଦେଲେ ଚାହିଁ
ଦେଖିଲେ ଦେବେ ଅଛନ୍ତି ନାନାବର୍ଣ୍ଣ ବହି ।
କାହାରିକୁ ବରିବାକୁ ନୁହେଁ ତାଙ୍କ ମନ
ଦେଖିଲେ ଅଛନ୍ତି ତହିଁ ପ୍ରଭୁ ଭଗବାନ ।
ଗରୁଡ଼ ପିଠିରେ ବିଜେ ଶଙ୍ଖ ଚକ୍ର ଧରି
କୋଟି କନ୍ଦର୍ପ ପାଦକୁ ନ ହୋଇବ ସରି ।
ମୟୂର କଣ୍ଠ ପରାୟେ ଦିଶେ ଦେହବର୍ଣ୍ଣ
କରେ ସୁଦର୍ଶନ ଚକ୍ର କୋଟିଏ କିରଣ ।
ଶଙ୍ଖ ଚକ୍ର ଗଦା ପଦ୍ମ କିରୀଟ ଭୂଷିତ
ପଞ୍ଚରତ୍ନ ମାଳ ତାଙ୍କ ହୃଦୟେ ଶୋଭିତ ।
ଅଧର ଯେ ରଙ୍ଗବର୍ଣ୍ଣ ଦନ୍ତ ଗଜମୋତି
ତିଳପୁଷ୍ପ ପ୍ରାୟେ ନାସା କପୋଳରେ ଦ୍ୟୁତି ।
କପୋଳ ତିଳକ ଆଉ କଉସ୍ତୁଭ ରେଖ
ପଦ୍ମଦଳ ଲୋଚନ ଯେ ହରଷ ମୟୂଖ ।
କରରେ ରତ୍ନ କଙ୍କଣ ମୁଦି ତେଜ ଝଳି
ନୀଳମେଘରେ ଯେସନେ ନାଚଇ ବିଜୁଳି ।
ତେସନ ପରକାରରେ ଦିଶେ ତେଜସ୍କର
ନୀଳ ଜଳଧର ଶୋଭା ତାଙ୍କ କଳେବର ।
ଶରୀରରେ ଲେପିଛନ୍ତି ସୁଗନ୍ଧ ଚନ୍ଦନ
ଅଙ୍ଗେ ପୀତାମ୍ବର ବାସ ଦିଶେ ଶୋଭାବନ ।
ବନମାଳ ହୃଦୟରୁ ନାଭିଯାଏ ପଡ଼ି
ନବଗୁଣରେ ପଇତା ହୃଦେ ଅଛି ପଡ଼ି ।
ନୀଳବର୍ଣ୍ଣ ଦେହକାନ୍ତି ତେଜ ମହାଘୋର ।
ସୁଗନ୍ଧ ବିକାଶ କରେ ବହିଲେ ସମୀର ।
ଅଧିକରେ ରୂପଗୋଟି ଲକ୍ଷ୍ମୀ ବରିବାକୁ
ସବୁଙ୍କ ରୂପ ବୁଡ଼ିଲା ସମ ନୋହି ତାଙ୍କୁ ।
ବିଚାରନ୍ତି ଜଗନ୍ନାଥ ଏ ସକଳେ ବାଇ
ମୋତେ ଛାଡ଼ି ଲକ୍ଷ୍ମୀୟାଙ୍କୁ ବରିବ ବା କାହିଁ ।
ଲକ୍ଷ୍ମୀ ନାରାୟଣ ଏକ ଅଙ୍ଗ ସବୁକାଳେ
ଦେବା ସୁରଙ୍କୁ ଚିତ୍ତରେ ଆଣିବାକି ଭାଳେ ।
ଏହିକ୍ଷଣି ଲକ୍ଷ୍ମୀଆସି ବରିବାକ ମୋତେ
ଏହା ବିଚାର କରନ୍ତି ତହିଁ ପଦ୍ମନେତ୍ରେ ।
ଜଗତ ବନ୍ଧୁ ଜୀବକୁ ଦ୍ୟନ୍ତି ମୁକ୍ତିଦାନ
ଯାର ହୃଦୟରେ ଧ୍ୟାନ କରେ ଯୋଗୀଜନ ।
ଦେବସଭାର ମଧ୍ୟରେ ଦେବେ ଛନ୍ତି ରହି
ସର୍ବେ ନକ୍ଷତ୍ର ଦିଶନ୍ତି ସେହୁ ସୋମ ହୋଇ ।
ଲକ୍ଷ୍ମୀ ଚିନ୍ତନ୍ତି ବରିବି ଯାଇ ଚକ୍ରଧର
ଜନ୍ମେ ଜନ୍ମେ ଏହି କାନ୍ତ ଅଟେ ଯେ ମୋହର ।
ତାଙ୍କର ରୂପ ଦେଖିଣ ମୋହିତ ମୋ ମନ
ବୁକୁ ଦମ ଦମ ହୁଏ ଚିତ୍ତ ଛନ୍ନ ଛନ୍ନ ।
ପୁଣି ବିଚାରନ୍ତି ନିଶ୍ଚେ ବରିବି ମୁଁ ହରି
ଏହି ରତ୍ନମାଳ କଣ୍ଠେ ଦେବଇଁ ତାଙ୍କରି ।
ଏତେ ଭାଳି ନାରାୟଣ ସନ୍ନିଧିକୁ ଗଲେ
ଭଗବାନଙ୍କ କଣ୍ଠରେ ରତ୍ନମାଳ ଦେଲେ ।
ଏକ ଦୃଷ୍ଟିରେ ସକଳେ ରହିଛନ୍ତି ଚାହିଁ
ତକ୍ଷଣେ ବିଷ୍ଣୁଙ୍କ ଗଳେ ଲମ୍ବାଇଲେ ନେଇ ।
ଦେଖିଣ ଦେବତାମାନେ ସାଧୁ ସାଧୁ କଲେ
ନାରାୟଣଙ୍କ ଶିରରେ ପୁଷ୍ପ ବରଷିଲେ ।

ଲକ୍ଷ୍ମୀଙ୍କି ପାଇ ସନ୍ତୋଷ ହେଲେ ଭଗବାନ
ବହୁତ ଆନନ୍ଦ ହେଲେ ଦେଖି ଦେବଗଣ ।
ନାଗ ନର ଦେଖି ହେଲେ ଅତୀବ ଆନନ୍ଦ
ଅତି ପୁଲକରେ ଶିରେଦେଲେ କରଦ୍ୱନ୍ଦ ।
ନାରାୟଣ ପାଇ ଲକ୍ଷ୍ମୀ ହେଲେ ତୋଷମନ
କୁମୁଦ ଫୁଟଇ ଯେହ୍ନେ ଦେଖିଲେ ତପନ ।
ଲକ୍ଷ୍ମୀଙ୍କୁ ଦେଖିଣ ହରି ମୋହିତ ହୋଇଲେ
କୁମୁଦ ଚନ୍ଦ୍ର ବେନି ଯେ ଏକାଠି ରହିଲେ ।
କେତେକ ଦିନ ପର୍ଯ୍ୟନ୍ତେ ଥିଲେ ଛଡ଼ାଛଡ଼ି
ସମୁଦ୍ର ମନ୍ଥନ କାଳେ ଦୁହେଁ ଭେଟ ପଡ଼ି ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ନୃପବର
ମନ ବିରସ କରିଲେ କେବଳ ଅସୁର ।
ବିଚାରିଲେ ଏ ଯୁବତୀ କେଡ଼େ କର୍ମ କଲା
ଆମ୍ଭ ମଧ୍ୟରୁ କାହାକୁ ଜଣେ ନ ବରିଲା ।
ଏତେ ବିଚାରି ରହିଲେ ସର୍ବେ ତୁନିହୋଇ
ଏକକୁ ଆରେକ ମୁଖ ହେଲେ ଚାହାଁଚାହିଁ ।
ତାହାଙ୍କର ମନକଥା ଜାଣି ନାରାୟଣ
ବିଚାରନ୍ତି ବୁଝିବାରେ ତୁମ୍ଭ ବଡ଼ପଣ ।
ଗରୁଡ଼ ପୃଷ୍ଠ ଦେଶରେ ଲକ୍ଷ୍ମୀଙ୍କି ବସାଇ
ବ୍ରହ୍ମା ରୁଦ୍ରଙ୍କ ନିକଟେ ମିଳିଲେ ସେ ଯାଇଁ ।
ବୋଲନ୍ତି ଶ୍ରୀ ନାରାୟଣ ବସିଛ କିମନ୍ତେ
ରତ୍ନମାନ ବାଣ୍ଟିଦିଅ ନିଅନ୍ତୁ ସମସ୍ତେ ।
ବ୍ରହ୍ମା ବୋଇଲେ ଏକ୍ଷଣି ତାହା ଦେବା ନେଇ
ଅସୁରମାନେ ବୋଲନ୍ତି ତାହାଙ୍କୁ ଅନାଇ ।
ଆମ୍ଭମାନଙ୍କର ଭାଗ ଆଗକରି ଦିଅ
ବ୍ରହ୍ମା ବୋଲେ ଥୟଧର ଆତୁର ନ ହୁଅ ।
ବାଣ୍ଟି ଦେଲେ ରତ୍ନସିନା ନେବ ହୋ ଦାନବେ
ଅସୁର ବୋଲନ୍ତି ବେଗେ ବାଣ୍ଟିଦିଅ ତେବେ ।
ଦେବତାଙ୍କୁ ଅବିଶ୍ୱାସ ହେଲା ତାଙ୍କ ମନ
ବାଣ୍ଟ ବାଣ୍ଟ ବୋଲିକରି କରିଲେ ଉଚ୍ଛନ୍ନ ।
ତୁମ୍ଭେବେଗେ ବାଣ୍ଟ ବୃଥା ଯାଉଅଛି କାଳ
ତକ୍ଷଣେ ବାଣ୍ଟି ବସିଲେ ତହୁଁ କାମପାଳ ।
ଶ୍ରୀବିଷ୍ଣୁ ବୋଲନ୍ତି ଆଗ ଦେବତାଙ୍କୁ ଦିଅ
ବାକିଥିବା ଯେତେ ପଛେ ଆଉମାନେ ନିଅ ।
ବ୍ରହ୍ମା ବୋଇଲେ ମୁଁ ତାହା ଜାଣଇ ଶ୍ରୀହରି
ଏହା କହିଣ ଡାକିଲେ ତହୁଁ ବଜ୍ରଧାରୀ ।

ସେହିକ୍ଷଣି ଇନ୍ଦ୍ର ଦେବ ପ୍ରବେଶିଲେ ଯାଇ
ତହୁଁ ତାଙ୍କୁ ପ୍ରଜାପତି ବୋଇଲେ ଅନାଇଁ ।
ଐରାବତ ଅଷ୍ଟସଖୀ ଦେଉଅଛୁଁ ନିଅ
ଶୁଣି ହରଷ ହୋଇଲେ କଶ୍ୟପର ପୁଅ ।
ଆବରହିଁ ରତ୍ନଛତା ତାଙ୍କୁ ନେଇ ଦେଲେ
ପୁଣି ଅଳକାପତିଙ୍କୁ ଡକାଇ ଆଣିଲେ ।
ତକ୍ଷଣେ ଆସି ମିଳିଲେ ସେଠାରେ କୁବେର
ଅଷ୍ଟନିଧିଯାକ ବ୍ରହ୍ମା ଦେଲେ ତାଙ୍କ କର ।
ବୋଇଲେ ଦେବ ଭଣ୍ଡାରେ ଯାଙ୍କୁ ରଖନେଇ
ତାଙ୍କ ବଚନେ କୁବେର ସନ୍ତୋଷେ ଘେନଇ ।
ସୂର୍ଯ୍ୟଦେବତାଙ୍କୁ ପୁଣି ଡାକି ବେଦବର
ସାତ ଅଶ୍ୱ ଦେଲେ ଯୋଚିବାକୁ ରଥବର ।
କଉସ୍ତୁଭମଣି ସୂର୍ଯ୍ୟକିରଣକୁ ଜିଣି
ନାରାୟଣଙ୍କ ଗଳାରେ ଦେଲେ କୁଶପାଣି ।
ତାହା ଦେଖି ନାରାୟଣ ସନ୍ତୋଷ ହୋଇଲେ
ସ୍ୟମନ୍ତ ମଣି କୁଣ୍ଡଳ ସୂର୍ଯ୍ୟଙ୍କୁ ଅର୍ପିଲେ ।
ଚନ୍ଦ୍ର କିରଣ ପରାୟେ ସେ ଦୁହିଁଙ୍କ ଜ୍ୟୋତି
ଗଳେ ଥିଲେ କ୍ଷୁଧା ତୃଷା କିଛି ନ ବାଧନ୍ତି ।
ଯାହାର ଗଳାରେ ଥିବ ସେହି ମଣି ରହି
ତାର ଶରୀରକୁ କେଭେ ମାତ୍ର ବାଧା ନାହିଁ ।
ସେ ଅମୃତ କୁଣ୍ଡଳକୁ କର୍ଣ୍ଣେ ଭରିଥିଲେ
ମୃତ୍ୟୁ ହୋଇଥିଲେ ପୁଣ ଜିଅଇଁ ସେ ଭଲେ ।
ଅମୃତ ଧରି ଯେ କାଳେ ପଶେ ତାର ତୁଣ୍ଡେ
ଉଠିଣ ବସଇ ସେହୁ ପ୍ରାଣ ପାଇ ପିଣ୍ଡେ ।
କର୍ଣ୍ଣ କଣ୍ଠରେ ଭରିଲେ ନେଇ ଦିନମଣି
ବରୁଣକୁ ଡକାଇଲେ ତହୁଁ କୁଶପାଣି ।
ସେହିକ୍ଷଣି ପ୍ରବେଶିଲେ ଆସି ଜଳେଶ୍ୱର
ସହସ୍ର ଉଲ୍ଲୋଳ ରଥ ଦେଲେ ତାଙ୍କ କର ।
ଆବର କନକ ଦଣ୍ଡଛତ୍ର ଦେଲେ ନେଇ
ଜଳପତି ଆନନ୍ଦରେ ଗ୍ରହଣ କରଇ ।
ବ୍ରହ୍ମା ବୋଇଲେ ଏ ଦ୍ରବ୍ୟ ତୋରଠାରେ ଥାଉ
ଘେନିଣ ସନ୍ତୋଷ ଚିତ୍ତ ହୋଇଲାକ ସେହୁ ।
ସହସ୍ର ଉଲ୍ଲୋଳ ରଥ ହୋଇଲେ ତାହାର
ଏଥିରେ ବସି ବୁଲିବୁ ତୁହି ତିନିପୁର ।
ବ୍ରହ୍ମା ବୋଇଲେ ରୁଦ୍ରଙ୍କୁ ତୁମ୍ଭେ କିଛି ନିଅ
ଶିବ ବୋଇଲେ ଆମ୍ଭଙ୍କୁ ସିଂହନାଦ ଦିଅ ।

ଆନ ଦ୍ରବ୍ୟ ମାନଙ୍କରେ ନାହିଁ ପ୍ରୟୋଜନ
ସେ ସବୁ ତୁମ୍ଭଙ୍କୁ ଦେଲୁ ହୋଇ ତୋଷମନ ।
ଏଥିରୁ ପଦାର୍ଥେ ସୁଦ୍ଧା କିଛି ନେବୁନାହିଁ
ଆମ୍ଭର ଯା ଭାଗ ତାହାଆଗ ଅଛୁଁ ଖାଇ ।
ତୁମ୍ଭେ ଯାଚିବାରୁ ଆମ୍ଭେ ମାଗିଲୁ ଯେ ତାହା
ତାହା ଶୁଣିଣ ହସିଲେ ତହୁଁ ଅଷ୍ଟବାହା ।
ସିଂହନାଦ ରୁଦ୍ରଙ୍କର ହସ୍ତେ ନେଇ ଦେଲେ
ମୋର ଭାଗରୁ ମୁଁ ଏହା ଦେଉଛି ବୋଇଲେ ।
ଦେବସଙ୍ଗେନେଲେ ସିନା ଲାଗିଥାନ୍ତା ଦୋଷ
ଶୁଣିଣ ତୋଷେ ଘେନିଲେ ତାହା ଦିଗବାସ ।
ରାଜା ପଚାରିଲେ ସେହି ସିଂହନାଦ ଗୋଟି
କିସ କରିବେ ତାହାକୁ ଘେନିଣ ଧୂର୍ଜଟୀ ।
ସମୁଦ୍ର ମନ୍ଥନୁ ସିନା ସେହୁ ହେଲା ଜାତ
ତାହାର ଯେ ରୂପ ଗୁଣ ଅଟଇ କେମନ୍ତ ।
ନାରଦବୋଇଲେ ତାହା ଦିଶେ ଶୁକ୍ଳବର୍ଣ୍ଣ
ସୂର୍ଯ୍ୟ ଦେବତା ପରାୟ ପ୍ରକାଶେ କିରଣ ।
ମୁଖେ ଭରିଣ ଫୁଙ୍କିଲେ ଛାଡ଼ିବ ସେ ରଡ଼ି
ତିନିପୁର କମ୍ପି ମେରୁ ପଡ଼ିଯିବ ଝଡ଼ି ।
ଶତ୍ରୁଯହିଁ ଥିଲେ ମଧ ମିଳଇ ତା ଆଗ
ଶୁଣ ସେହି ସିଂହନାଦ ଏସନକ ବାଗ ।
ଶବଦ ତାହାର ମୂଳ ତହିଁରୁ ସେ ଜାତ
ସବୁ ନାଦ ଭରି ସେହୁ ହୋଇଲା ସଂଭୂତ ।
ମୂର୍ଚ୍ଛା ହେବେ ପ୍ରାଣୀମାନେ ତାହାନାଦ ଶୁଣି
ତେଣୁ ସିଂହନାଦ ନାମ ଦେଲେ କୁଶପାଣି ।
ରାଜା ପୁଚ୍ଛିଲେ ଏଣିକି କିସ ହେଲା କୁହ
ତାହା ଶୁଣିଣ ପବିତ୍ର ହେବ ମୋର ଦେହ ।
କୂର୍ମଙ୍କର ଅବତାର ସୁଧାମୟ ରସ
ନାରାୟଣଙ୍କ ଶରଣ କାମପାଳ ଦାସ ।

.....❀.....

## ମୋହିନୀ ବେଶେ ଶ୍ରୀହରିଙ୍କର ସୁଧା ପରଷିବା ଏବଂ ରାହୁ ଦୈତ୍ୟ ଶିର ଛେଦନ

କହନ୍ତି ନାରଦ ମୁନି ଶୁଣ ନୃପବର
ଶେଷଦେବଙ୍କୁ ତକ୍ଷଣେ ଡାକି କୁଶଧର ।
ବଜ୍ର ହଳ ମୂଷଳକୁ ତାଙ୍କ ହସ୍ତେ ଦେଲେ
ତାହା ଘେନି ବଳଦେବ ସନ୍ତୋଷ ହୋଇଲେ ।
କୁବେରକୁ ସମର୍ପିଲେ ସବୁ ରଥମାନ
ତାହାଙ୍କୁ ଚାହିଁ ବୋଲନ୍ତି କମଳ ଆସନ ।
ଦେବଭଣ୍ଡାରେ ଏ ଯାନ ସବୁ ରଖିଥାଅ
ଆବର ଶଙ୍ଖ ରତ୍ନାଦି ବସ୍ତ୍ରମାନ ନିଅ ।
ସେହିକ୍ଷଣି ରଥମାନ କୁବେର ଘେନିଲେ
ପୁଣି ତାଙ୍କୁଚାହିଁ ବ୍ରହ୍ମା ବଚନ ବୋଇଲେ ।
ଗରୁଡ଼ଧ୍ୱଜ ରଥରେ ନ ବସିବେ କେହି
ଦିଗ ବିଜୟେ ବସିବେ ଏଥି ଭାବଗ୍ରାହୀ ।
ଆନ ରଥରେ ବସିବେ ସକଳ ଅମର
ଶୁଣିଣ ସନ୍ତୋଷ ଚିତ୍ତ ହୋଇଲେ କୁବେର ।
ଏହି ପୁଷ୍ପକବିମାନ ଦିଆହେଲା ତୋତେ
ତୁହି ଏବେ ଆରୋହଣ କର ସବୁ ରଥେ ।
କଶ୍ୟପ ଆଦି କରିଣ ସକଳ ମୁନିଙ୍କୁ
କାମଧେନୁମାନ ବ୍ରହ୍ମା ସମର୍ପିଲେ ତାଙ୍କୁ ।
ବ୍ରହ୍ମା ଡାକିଲେ ସକଳ ରାଜାମାନେ ଆସ
ନୃପତିମାନେ ଆସିଲେ ବ୍ରହ୍ମାଙ୍କର ପାଶ ।
ବିଷ୍ଣୁଙ୍କୁ ବୋଲନ୍ତି ଯାଇ ଦେବ ବେଦପତି
ମଣିରତ୍ନ କିଛି ଦେବା ଘେନନ୍ତୁ ନୃପତି ।
ଶୁଣି ନାରାୟଣ ଯହୁଁ ସନମତ କଲେ
ତହୁଁ ମଣି ମୁକୁଟାଦି ବ୍ରହ୍ମା ଯେ ଘେନିଲେ ।
ରାଜାମାନଙ୍କୁ ଚାହିଁଣ ବୋଲନ୍ତି ଯେ ଗୀର
ସମସ୍ତଙ୍କୁ ଦେଲୁ ବାଣ୍ଟି ନିଅ ନୃପବର ।
ଦଣ୍ଡେହେଁ ନ ରହ ତୁମ୍ଭେ ଯାଅ ବେଗ ହୋଇ
ପ୍ରଣମି ରାଜାଏ ରତ୍ନ ବସ୍ତ୍ର ଘେନି ଯାଇ ।
ସେ ସର୍ବ ରାଜାଏ ସବୁ ବାଣ୍ଟିଣ ଘେନିଲେ
ସୈନ୍ୟବଳ ଘେନି ନିଜ ନିଜ ରାଜ୍ୟେ ଗଲେ ।
ମଣି ରତ୍ନାଦି ପାଇଣ ତୋଷ ତାଙ୍କ ମନ
ନିଜପୁରେ ନିଶ୍ଚିନ୍ତରେ ରହିଲେ ରାଜନ ।
ରାଜା ପଚାରନ୍ତି ତୁମ୍ଭେ ଶୁଣ ମୁନିବର
ରାଜାଙ୍କୁ ମେଲାଣି କିମ୍ପା ଦେଲେ ବେଦବର ।
ନାରଦ କହିଲେ ଯେହୁ ଭବିଷ୍ୟତଜ୍ଞାତା
ବ୍ରହ୍ମାଣ୍ଡ ରଚି ଅଛନ୍ତି ଯେବଣ ବିଧାତା ।
ତାହାଙ୍କୁ କେବଣ କଥା ଅଛି ଅଗୋଚର
ଜାଣିଲେ ଦ୍ୱନ୍ଦ୍ୱ କରିବେ ନିଶ୍ଚୟ ଅସୁର ।
ଭଲ ଭଲ ଦ୍ରବ୍ୟସବୁ ନେଲୁଇଁ ତ ଆମ୍ଭେ
ଅମୃତକୁ ଅସୁରେ ତ ନ ପାଇବେ କେଭେ ।

ଅବଶ୍ୟ ଆଜ ଏଠାରେ ଉପୁଜିବ ଦ୍ୱନ୍ଦ
ମେଲାଣି କରିଲେ ବ୍ରହ୍ମା ତେଣୁ ରାଜବୃନ୍ଦ ।
ସୁଧାସୁରା ଦେବ ସୁରେ ଭୁଞ୍ଜିବେ ଯେ ତହିଁ
ନରଲୋକେ ରହିଥାନ୍ତେ ସେଠାରେ କିମ୍ପାଇଁ ।
ତେଣୁ ତାହାଙ୍କୁ ବିଦାୟ କରିଲେ ବିଧାତା
ସନ୍ତୋଷ ହୋଇଲେ ରାଜା ଶୁଣି ସେହିକଥା
ଏଥୁ ଅନନ୍ତରେ ଶୁଣ ଆହେ ନୃପବର
ଅମୋଘମଣିକୁ ବ୍ରହ୍ମା ଭରିଲେ କଣ୍ଠର ।
ସେହି ମଣିଗୋଟି ଥିଲେ ନ ବାଧଇ ମୋହ
ମାୟାସଂସାର ଗୋଟିକୁ ନ ଲାଗେ ସେନେହ ।
ଏ ମଣିଙ୍କର ମହିମା ଏରୂପ ନୃପତି
କଉସ୍ତୁଭମଣି ପିନ୍ଧି ଅଛନ୍ତି ଶ୍ରୀପତି ।
ତାହାର ମହିମା ଏବେ କହୁଅଛି ଶୁଣ
ସିଂହମାସ ସୂର୍ଯ୍ୟପ୍ରାୟ ମଣିର କିରଣ ।
ନିର୍ମଳ ଗଗନେ ଯେହ୍ନେ ଦିଶେ ଚନ୍ଦ୍ର ଜ୍ୟୋତି
ନାରାୟଣ ହୃଦେ ତେଜେ ବିରାଜନ୍ତି କାନ୍ତି ।
ଷଡ଼ଋତୁରେ ଅମୃତ ଜାତ ସେ କରଇ
ଯାମିନୀ ନାହିଁ ସେଠାରେ ମୃତ୍ୟୁ ନ ପଶଇ ।
ସୁନ୍ଦରପଣେ ଅଧିକ ଦିଶେ କଳେବର
ବୃଦ୍ଧ ହେଲେ ହେଁ ଦିଶିବ ଯୁବା ମନୋହର ।
ଏହିରୂପେ ନାନାମଣି ହୋଇଅଛି ଜାତ
ନାମ ଧରିଣ କରିବି କେତେ ନରନାଥ ।
ଅନେକ ରତ୍ନ ବାଣ୍ଟିଣ ଦେଲେ ଏହିମତେ
ତାହା ଦେଖିଣ ବ୍ରହ୍ମାଙ୍କୁ ବୋଲନ୍ତି ଦଇତେ ।
ରାଗଭରେ କମ୍ପୁଅଛି ତାହାଙ୍କର ଦେହ
ବ୍ରହ୍ମାଙ୍କୁ ଚାହିଁ ବୋଲନ୍ତି ଶୁଣ ପିତାମହ ।
ଭଲ ଭଲ ବାଛି ସବୁ ଦେଲୁ ଦେବଗଣେ
ଆମ୍ଭେମାନେ ତୋହର କି ନପଡ଼ିଲୁ ମନେ ।
କେତେ ଶ୍ରମ କରି ଆମ୍ଭେ ମନ୍ଥିଅଛୁ ବଳ
ତୋହର ଏ ଦୁଷ୍ଟପଣ ଅଟଇ କେବଳ ।
ରତ୍ନ ବସ୍ତ୍ରମାନ ବାଣ୍ଟିନେଲେ ଯେ ସମସ୍ତ
ଆମ୍ଭମାନଙ୍କୁ ଦେବାକୁ ନ ବଳୁଛି ଚିତ୍ତ ।
ଏଥିରୁ ଜାଣିଲୁ ଜାଣ ବିଷ୍ଣୁ ଦୋଷ ନାହିଁ
ନିଜେ ଦେଉଅଛୁ ସବୁ ଟାଣପଣ ବହି ।
ଜାଣି ଭିଆଣ କରୁଛୁ ତୁହି କଳିମାନ
ପଛେ ଆମ୍ଭଙ୍କୁ ନିନ୍ଦିବୁ ଚତୁର ବଦନ ।
ସଙ୍ଗେ ଅଛୁ ଆମ୍ଭଙ୍କୁ ତୁ କିଛି ନ କହିଲୁ
ଭଲ ଭଲଯାକ ଆଗ ଦେବତାଙ୍କୁ ଦେଲୁ ।
ଐରାବତ ଗଜ ଆଉ ଅଷ୍ଟନିଧିମାନ
ପାରିଜାତ ପୁଷ୍ପ ଆଣି ଅଷ୍ଟ ନାରୀଗଣ ।
ନାନା ମଣିରତ୍ନ ଛତ୍ର ବସ୍ତ୍ର ଶଙ୍ଖ ନେଲୁ
ଭଲ ଭଲ ଆମ୍ଭଙ୍କୁ ଯେ କିଛିହିଁ ନ ଦେଲୁ ।
ପୁଣି ଯାହା ନେଲ କେତେ କହିବା ବିଶେଷି
ଆଉ କେଉଁ ଲାଗେ ତୁହି ବାଣ୍ଟୁଅଛୁ ବସି ।
ତୋର ହୃଦୟରେ ପରା ନାହିଁ ଅହଙ୍କାର
ନିଜେ ନିଜେ ତୁହି କୂଟ କଲୁ ବେଦବର ।
ନୀଚଲୋକମାନେ ସିନା କରନ୍ତି ଏସନ
ଏତେ ଲୋକ ମଧ୍ୟେ ତୋର ବୁଦ୍ଧି ହୀନମାନ ।
ଏମନ୍ତ ପ୍ରକାରେ ଦୈତ୍ୟ କରନ୍ତେ ଧିକ୍କାର
ବ୍ରହ୍ମା ସହିତେ ଶୁଣିଲେ ସକଳ ଅମର ।
କର ସମାର୍ଜନ୍ତି ବ୍ରହ୍ମା ରହ ରହ ବାବୁ
ରତ୍ନ ଯାକ ଅଛି ଦେଖ ଆସିକରି ସବୁ ।
ଦେବତାମାନେ ଅଛନ୍ତି ତହିଁ ତୁନି ହୋଇ
ଅସୁରଙ୍କୁ ବୋଧି ବ୍ରହ୍ମା କହନ୍ତି ଯେ ତହିଁ ।
କୁବେରଠାରେ ରହିଛି ସମସ୍ତଙ୍କ କୋଠ
ଇନ୍ଦ୍ରରାଜା ଅଟଇ ଯେ ସର୍ବଦେବ ଶ୍ରେଷ୍ଠ ।
ପାରିଜାତ ପୁଷ୍ପ ଆଉ ହସ୍ତୀକି ଦେଲଇ
କେହି ହେଲେ ତ ଅବଶ୍ୟ ତାକୁ ଥାନ୍ତା ନେଇ ।
ତୁମ୍ଭେ ନିଅ ଆମ୍ଭେ ନେଉ ସବୁ ତ ତୁମ୍ଭର
ଏଥିପାଇଁ କର କିମ୍ପା କୋପ ଗୁରୁତର ।
ଇନ୍ଦ୍ରଙ୍କୁ ଅଷ୍ଟଯୁବତୀ ଆମ୍ଭେ ଅଛୁ ଦେଇ
ତୁମ୍ଭେ ଦେଖୁଅଛ ଦେଲୁ ସର୍ବମତ ନେଇ ।
ଆଦିତ୍ୟକୁ ଅଶ୍ୱ ଦେଲି ସମସ୍ତଙ୍କ ହିତେ
ଉଦୟ ହୋଇଲେ ସୁଖୀ ହୋଇବେ ସମସ୍ତେ ।
ବରୁଣେ କନକ ଦଣ୍ଡ ଆମ୍ଭେ ଅଛୁ ଦେଇ
ସବୁ ତ ଅଛଇ ତାହା ଘେନି ଯାଇ ନାହିଁ ।
ମଣିଗୋଟିକ ଯେ ନେଲେ ଦେବ ଚକ୍ରଧର
ସେହି ତ ଅଶେଷ କୋଟି ବ୍ରହ୍ମାଣ୍ଡ ଈଶ୍ୱର ।
ନରରାଜାଏ ଆସିଲେ ବହୁ କଷ୍ଟ ପାଇ
ତାହାଙ୍କୁ ନ ଦେଲେ ପୁଣି ନିନ୍ଦା ପାଆନ୍ତେଇ ।
କିଛି ମଣିରତ୍ନ ଦେଲୁ ସନ୍ତୋଷେ ସେ ନେଲେ
କଳିଦ୍ୱନ୍ଦ ନାହିଁ କିଛି ନିଜପୁରେ ଗଲେ ।

ଆବର ତ ରତ୍ନମାନ ସବୁଅଛି ରହି
ତୁମ୍ଭେମାନେ ମନଦୁଃଖ କର କାହିଁପାଇଁ ।
ଆଉ ଅଳପ ସମୟ ତୁନି ହୋଇଥାଅ
ରତ୍ନ ସବୁ ବାଣ୍ଟିଦେବା ତୁମ୍ଭ ଭାଗ ନିଅ ।
ଦଇତେ ବୋଇଲେ ଜଣା ପଡ଼ିଲାଣି ସର୍ବ
ଭଲ ରତ୍ନ ନେଇ ମନ୍ଦ ହାବୋଡ଼ାଇ ଦେବ ।
ପୁଣି ଅସୁର ବୋଇଲେ ଛନ୍ତି ଅଷ୍ଟନାରୀ
ତହିଁରୁ ଆମ୍ଭଙ୍କୁ ଏବେ ଦିଅ ଜଣା ଚାରି ।
ରତ୍ନଯାକ ନେଲେ ତହିଁ ଶୋଚନା ତ ନାହିଁ
ନାରୀ ଚାରିଗୋଟି ନେବୁ ଏ ଦୃଢ଼ ଅଟଇ ।
ତାଙ୍କ ବଚନେ ହସିଲେ ଦେବ ଚଉମାଥ
ଦେଲା ପଦାର୍ଥକୁ ପୁଣି ଆଣିବା କେମନ୍ତ ।
ସେ ପଦାର୍ଥକୁ ଆଣିଲେ ବଡ଼ ଦୋଷୀ ହୋଇ
ସର୍ବ ଧର୍ମ ନଷ୍ଟ ହୋଇ ନରକକୁ ଯାଇ ।
ପ୍ରଥମରୁ ମାଗିଥିଲେ ନେଇଥାନ୍ତୁ ସବୁ
ଦେଲା ପଦାର୍ଥ ଆଣିଲେ ବଡ଼ ଦୋଷ ବାବୁ ।
ସେ ସବୁ କଥାକୁ ଆଉ ତୁଣ୍ଡରେ ନ ଧର
ଦେଲା ପଦାର୍ଥକୁ ଏବେ ମନରୁ ପାଶୋର ।
ବ୍ରହ୍ମାଙ୍କ ବଚନ ଶୁଣି ବୋଲନ୍ତି ଦଇତେ
ସୁଧା ମାଗିଲୁ ପ୍ରଥମେ ଦେଲୁଟି ଯେମନ୍ତେ ।
ଚାରିଗୋଟି ମାଗିଲେ ତ ବୋଲୁଅଛ ନାହିଁ
ସବୁଯାକ ମାଗିଥିଲେ ଦିଅନ୍ତୁ ବା କାହିଁ ।
ରତ୍ନ ଯାକ ସବୁ ନେଲେ ତୁମ୍ଭ ଲୋଭ ଏଡ଼େ
ସବୁକାଳେ ଦେବତାଏ ତୁମ୍ଭ ଦୁଷ୍ଟେ ମୂଢ଼େ ।
ସର୍ବେ ମନ୍ଥିଲୁ ଅଧିକ ନେଲ ବଳୀୟାଇ
ଏଥିରେ ତ ଦୋଷଗୁଣ ଅଛି କିବା ନାହିଁ ।
କହିକରି ନେଲେ ଦୋଷ ପାଇବୁ କି ଆମ୍ଭେ
ଅଗୋଚରେ ନେଲେ ଦୋଷ ନ ଜାଣକି ତୁମ୍ଭେ
ବ୍ରହ୍ମା ବୋଇଲେ ଅମୃତ ସମସ୍ତଙ୍କ ଗ୍ରାସ
ତାକୁ ମାଗିଲେ ସର୍ବେ କି ଯାନ୍ତେ ଉପବାସ ।
ଏବେ ସେହି ଅମୃତକୁ କିଏ ନେଇଛି କି
ସମସ୍ତ ବଣ୍ଟା ସରିଲେ ଭୁଞ୍ଜିବା ନାହିଁକି ।
ବ୍ରହ୍ମାବଚନେ ଅସୁରେ ସନ୍ତୋଷ ହୋଇଲେ
ରତ୍ନସବୁ ବାଣ୍ଟ ତେବେ ବୋଲିଣ ବୋଇଲେ
ଖାଇବା ପଦାର୍ଥ ବୋଲି ଅମୃତ ନ ଦେଲ
ରତ୍ନଯାକ ଆଗକରି କାହାବୋଲେ ନେଇ ।

ଭୁଞ୍ଜିଲା ପଦାର୍ଥ ସେହୁ ଆଉ କିଛି ନାହିଁ
ମନହେଲେ ଦିଅ ଏବେ ନ ହେଲେ ତ ନାହିଁ ।
ସେ ଥର ବାଣ୍ଟି ବସିଣ ନେଲ ହେ ଯେମନ୍ତ
ଏବେ ବାଣ୍ଟି କରି ନିଅ ତୁମ୍ଭେ ସେହିମତ ।
ବ୍ରହ୍ମା ବୋଇଲେ ନୁହଇ ତେମନ୍ତ ବିଧାନ
ପଥର ବାଣ୍ଟିବା ସବୁ କରିଣ ସମାନ ।
ଇନ୍ଦ୍ରଦ୍ୟୁମ୍ନ ପୁଚ୍ଛାକଲେ ଏହା କିମ୍ପା କଲେ
ଏହି କଥାକୁ ବିସ୍ତାରି ମୁନି କୁହ ଭଲେ ।
ନାରଦ ବୋଇଲେ ଦେବେ କରିଲେ ବିଚାର
ଦେବତାଙ୍କୁ ଭଲ ଦିଅ ଆଜ୍ଞା ଚକ୍ରଧର ।
କାହାକୁ ଯେ କିସ ଦେବା ବ୍ରହ୍ମା ପଚାରିଲେ
ଶ୍ରୀହରି ଆଜ୍ଞା ଯେମନ୍ତ ବ୍ରହ୍ମା ତାହାକଲେ ।
ଶ୍ରୀହରି ଆଜ୍ଞାକୁ କିଏ କରିବ ମେଣ୍ଟଣ
ଆହେ ଦଣ୍ଡଧାରୀ ଏବେ ସାବଧାନେ ଶୁଣ ।
ତକ୍ଷଣେ ବାଣ୍ଟି ବସିଲେ ବ୍ରହ୍ମା ରତ୍ନମାନ
ଚାରିଭାଗ କରି ସବୁ କଲେ ଭିନ୍ନ ଭିନ୍ନ ।
ବସ୍ତ୍ର ଶଙ୍ଖ ଛତ୍ର ଅଷ୍ଟରତ୍ନ ଥିଲା ଯେତେ
ସମାନ ବାଣ୍ଟି ରଖିଲେ ଦେବ ଚଉମାଥେ ।
ଭାଗେ ରଖି ତିନିଭାଗ ଆଣିଲେ ତକ୍ଷଣ
ଦେବତାମାନଙ୍କୁ ନେଇ ଦିଅନ୍ତି ବାଣ୍ଟିଣ ।
ଇନ୍ଦ୍ର ବରୁଣ କୁବେର ପୁଣି ନଇରତ
ବ୍ରହ୍ମା ବିଶ୍ୱଦେବା କୃଷ୍ଣ ଆବର ମରୁତ ।
ଚାରିମେଘ ମନମଥ ପୁଣି ହୁତାଶନ
ସାଧକ ଯକ୍ଷ ଆଉ ସେ ବିଦ୍ୟାଧରମାନ ।
ଶମନ କାଶ୍ୟପ ଆଦି ଦକ୍ଷ ପ୍ରଜାପତି
ନାନାଦି ଅଳଙ୍କାରରେ ଭୂଷଣ ହୁଅନ୍ତି ।
ଚନ୍ଦ୍ର ସୂର୍ଯ୍ୟ ଆଦିକରି ସକଳେ ଘେନିଲେ
ତେତ୍ରିଶ କୋଟି ଦେବତା ସମସ୍ତେ ପାଇଲେ ।
ଶଙ୍ଖ ନାନାଦି ଭୂଷଣ ନିଜକରେ ଘେନି
ଦେହକୁ ଚାହିଁ ଆନନ୍ଦ ହେବେ ଦେବସୈନି ।
ବାଣ୍ଟି ନେଇଣ ଉଠିଲେ ତହୁଁ ବେଦବର
ପୁଣି କିଛି ରତ୍ନ ଦେଲେ ବାସୁକୀର କର ।
ବୋଇଲେ ନୃପତି ତୁମ୍ଭେ ଏହିତକ ନିଅ
ତୁମ୍ଭର ନାଗବଳଙ୍କୁ ବାଣ୍ଟି କରି ଦିଅ ।
ସବୁ ରତନଯାକ ତ କ୍ୱୋଠେ ରଖିଲଙ୍କ
ଅଳପ ଅଳପ ସିନା ବାଣ୍ଟି ନେଉଥାନ୍ତି ।

ଏଥିରେ ମନରେ ଦୁଃଖ ନ କରିବ କିନା
କୋଠେ ଯେ ପଦାର୍ଥ ଅଛି ସବୁରି ସେ ସିନା ।
ତାହା ଶୁଣିଣ ବାସୁକୀ ସନ୍ତୋଷ ହୋଇଲେ
ତୁମ୍ଭେ ଯା ଦେବ ଆମ୍ଭର ପ୍ରମାଣ କହିଲେ ।
ସେହି ରତ୍ନଯାକ ଘେନି ବାଣ୍ଟିଲେ ବହନ
ନାଗଙ୍କୁ ଦେଲେ ସେମାନେ ହୋଇଲେ ଭୂଷଣ ।
ଥୋକେ ତହୁଁ ନରରାଜା ଭୂଷଣ ହୋଇଲେ
ଥୋକେ ରତ୍ନ ନେଇ ବ୍ରହ୍ମା ଗରୁଡ଼କୁ ଦେଲେ ।
ତକ୍ଷଣେ ଭୂଷଣ ହେଲେ ସେହି ପକ୍ଷୀବର
କ୍ଷୀରସିନ୍ଧୁ ରତ୍ନହାରେ ରାଜାର ଶରୀର ।
ରତ୍ନଭୂଷଣେ ଦିଶିଲେ ସର୍ବେ ତେଜୋମୟ
ଦାଉ ଦାଉ ବିରାଜନ୍ତି ସୂର୍ଯ୍ୟତେଜ ପ୍ରାୟ ।
ଅସୁରମାନେ ମୁଖକୁ ଦେଲେକ ଶୁଖାଇ
ବୋଇଲେ ଆମ୍ଭ ଏତିକି ପଡ଼ିଛି ଏଠାଇଁ ।
ଦୈତ୍ୟଙ୍କ ଭାଗ ଭୂମିରେ ରହିଅଛି ପଡ଼ି
ତା ଦେଖି ଦନୁଜମାନେ ହେଲେ ମୁଖମୋଡ଼ି ।
ରତ୍ନଭାଗଠାରୁ ଗଲେ ଅପମାନ ପାଇ
ରାଜାଙ୍କର ନିକଟରେ ପ୍ରବେଶିଲେ ଯାଇ ।
ରାଜା ବୋଇଲେ ସେମାନେ ନେଲେଣି ସମସ୍ତ
ତୁମ୍ଭେ କିମ୍ପାଇ ସେଠାରେ ଥିଲ ହୋ ଦଇତ ।
ମଉନ ହୋଇ ବସିଲେ ତହିଁ ସର୍ବ ବୀର
ଦେବତାଙ୍କୁ ଚାହିଁ କମ୍ପେ ତାଙ୍କ କଳେବର ।
ବ୍ରହ୍ମା ବୋଇଲେ ତୁମ୍ଭର ରତ୍ନମାନ ନିଅ
ତୁଚ୍ଛା ଅଙ୍ଗ ହୋଇଅଛ ଆଭରଣ ହୁଅ ।
ଅସୁରେ ବୋଇଲେ ପୁଣି ଶୁଣ ଚଉମଥା
କି କରିବୁ ତାହା ଏବେ ଜାଣିଲୁ ତୋ କଥା ।
ଏତିକି ରତ୍ନ ଆମ୍ଭଙ୍କୁ ଅଣ୍ଟିବ ବା କାହିଁ
ଥୋକେ ପିନ୍ଧିବୁ ଯେ ଥୋକେ ଥିବେ ତୁଚ୍ଛାହୋଇ ।
ବ୍ରହ୍ମା ବୋଇଲେ ତୁମ୍ଭଙ୍କୁ ଅଣ୍ଟି ଯିବ ସବୁ
ବୋଧହୋଇ ରୁହ ଦ୍ୱନ୍ଦ୍ୱ ନକରରେ ବାବୁ ।
ଏମନ୍ତ କହିଣ ରତ୍ନ ଘେନିଲେ ଭୁଜରେ
ଆସ ହୋ କର ପ୍ରସାରି ଡାକନ୍ତି ସଧୀରେ ।
ବଳୀ ରାଜାଙ୍କ ଛାମୁରେ ଏହା ଦିଅ ନେଇ
ତୁମ୍ଭ ସମସ୍ତଙ୍କୁ ବାଣ୍ଟିଦେବେ ସେ ବୁଝାଇ ।
ଶୁଣନ୍ତି ନାହିଁ ଅସୁରେ ବ୍ରହ୍ମାଙ୍କର ବାଣୀ
କୋପେ ନ ଶୁଣିଲା ପରି ହୁଅନ୍ତି ସେ ଜାଣି ।

ଶ୍ରୀହରି ବୋଲନ୍ତି ତାଙ୍କୁ ବିନୟ କିମ୍ପାଇ
ନେଲେ ନେଉନ୍ତୁ ନୋହିଲେ ପଡ଼ିଥାଉ ତହିଁ ।
ନାରାୟଣଙ୍କ ବଚନେ ସେ ରତ୍ନ ଥୋଇଲେ
ବିଷ୍ଣୁଙ୍କୁ ଦାନବମାନେ କୋପରେ ଚାହିଁଲେ ।
ସେ ବୋଇଲେ ନାରାୟଣ କହିଲୁ କେମନ୍ତ
ଆଗ ବାଣ୍ଟି ଘେନିଗଲ ଉତ୍ତମ ସମସ୍ତ ।
ବାକି ଯାହା ଯାହା ଥିଲା ତା ମଧ୍ୟ ନ ଦେଲ
ସେହିଠାରେ ପଡ଼ିଥାଉଁ ବୋଲିଣ ବୋଇଲ ।
ତୁହି ବୋଲି କହିଦେଲୁ ଏମନ୍ତ ବଚନ
ସବୁ କୂଟ କଥାମାନ ତୋର ଭଗବାନ ।
ଏତେ କଷ୍ଟ କରି ମନ୍ଥି ପାଇଲଇଁ ଯାହା
ସମାନ କରି ଆମ୍ଭର ନ ବାଣ୍ଟିଲ ତାହା ।
ଉତ୍ତମ ଉତ୍ତମ ଯାହା ବାଛି ଘେନିଗଲ
ତହୁଁ ଯା ଥିଲା ଅର୍ଦ୍ଧେକ ଆମ୍ଭଙ୍କୁ ନ ଦେଲ ।
ତୁମ୍ଭେ ବାଣ୍ଟିନିଅ ଯାହା ଅଛି ଅତଃପର
ଏ କଥା ନ ଧରୁ କିଛି ମନେ ଚକ୍ରଧର ।
ଅନୁକ୍ଷଣେ କହୁଥାଉ ଅହନ୍ତା ବଚନ
ତୋହର ଭିଆଣ ବୋଲି କଲୁ ଅନୁମାନ ।
ଶ୍ରୀହରିବୋଇଲେ ତୁମ୍ଭେ କହୁଛ କେମନ୍ତ
ଦେବ ନାଗଆଦିକରି ଅଛନ୍ତି ବହୁତ ।
ତୁମ୍ଭେ ଦୈତ୍ୟମାନେ ଯେଣୁ ଅଳ୍ପ ସଂଖ୍ୟାଅଛ
ଭାଗ ପାଆନ୍ତ କେମନ୍ତ କରି ସମକଚ୍ଛ ।
ତହିଁରୁ ଥୋକେ ଘେନିଣ ଗଲେ ତ ରାଜନ
ବାଣ୍ଟି ଦେଲେ ଆଉ କେତେ ହୋଇବ ହୋ ରତ୍ନ ।
ନ ଶୁଣି ମଉନ ହେଲେ ସର୍ବ ଦୈତ୍ୟଗଣ
ମୁଖ ଶୁଖାଇ ବସିଲେ ଆପଣା ଆସନ ।
ରାଜା ନିକଟକୁ ତହୁଁ ଗଲେ ବେଦବର
ରତନର ହାରମାନ ଘେନାଇ ସଙ୍ଗର ।
ମନେ ବିଚାରନ୍ତି ନିଶ୍ଚେ ହୋଇଲାକ ଦ୍ୱନ୍ଦ୍ୱ
ଦଇତେ ଦୁଷ୍ଟ ପ୍ରକୃତି ଅଟନ୍ତି ସେ ମନ୍ଦ ।
ଏକେ ବିଚାରି ଚଳନ୍ତି ଦେବ ପ୍ରଜାପତି
କାଶ୍ୟପଙ୍କୁ ହକାରିଣ ସଙ୍ଗରେ ଘେନନ୍ତି ।
ପଥେ ଯାନ୍ତେ କାଶ୍ୟପଙ୍କୁ କହନ୍ତେ ବଚନ
ପ୍ରବୋଧି କହିବା ଦୈତ୍ୟେ ନ ଘେନିଲେ ରତ୍ନ
କାଶ୍ୟପ ବୋଇଲେ ସେହୁ ନ ନେଲେ କିମ୍ପାଇ
ବହୁତ ରତନ ତାଙ୍କୁ ଦିଅନ୍ତି ବା କାହିଁ ।

ଏମନ୍ତ ବିଚାର କରି ଯାନ୍ତି ବେନି ଜନ
ସଙ୍ଗେ ରହିଛନ୍ତି ଆନ ଆନ ଦେବଗଣ ।
ରାଜାଙ୍କର ନିକଟରେ ମିଳିଲେ ସେ ଯାଇ
ତାଙ୍କ ପାଶେ ରତ୍ନମାନ ଥୋଇଲେକ ନେଇ ।
ଦେଖିଣ ବଳୀ ରାଜନ ନ କହିଲା କଥା
ମାନେ ମଉନରେ ପୋତି ବସିଲା ସେ ମଥା ।
କୁଶପାଣି କହନ୍ତି ଯେ ଶୁଣ ହେ ରାଜନ
ଆମ୍ଭ ଉପରେ ତୋହର ବଡ଼ ଅଭିମାନ ।
ଏହିସବୁ ରତ୍ନଯାକ ଉପୁଜିଲା ଯେତେ
ଥୋକେ କୋଠରେ ରଖିଲ କୁବେରର ହାତେ ।
କେହୁ ତ କୋଠଭଣ୍ଡାରେ ନେଇ ଥୋଇଥିବ
କାଳେ ଧର୍ମ କର୍ମେ ସେହୁ ସମସ୍ତଙ୍କୁ ଦେବ ।
ହସ୍ତୀ ଯୁବତୀ କେବଳ ଇନ୍ଦ୍ରଙ୍କୁ ଦେଲଇଁ
ଆଉ ତ ରତନ ମାନ ନେଇ ନାହିଁ କେହି ।
ବଳୀକି କାଶ୍ୟପମୁନି କହିଲେ ବହୁତ
ଆରେ ବାବୁ ଘେନ ରତ୍ନ ନ ହୁଅ ଦୁଃଖିତ ।
ବଳୀରାଜା ବୋଲେ ପିତା ସବୁ ଜାଣିଲିଣି
ଏତେ ହୀନମାନ ମୋତେ କଲେ କୁଶପାଣି
ନାରାୟଣ କହୁଥାନ୍ତି କଳି କଥାମାନ
ଏ କେମନ୍ତ କଥା କୁହ ଚତୁର ବଦନ ।
ତାଙ୍କ ମନରେ ଆମ୍ଭଙ୍କୁ ବଡ଼ ଅହଙ୍କାର
ଆମ୍ଭେ ସଭାରେ ବସିଲେ ସୁଖ ନୁହେଁ ତାର ।
ଐରାବତ ଆଦି ସର୍ବ ଭଲ ଦ୍ରବ୍ୟ ନେଲ
ଆମ୍ଭେମାନେ ମଛିଥିଲୁଁ କିଞ୍ଚିତ ନ ଦେଲ ।
ଯହୁଁ ଏମନ୍ତ ବୋଇଲେ ସେ ଦଇତେଶ୍ୱର
ସେ କଥାକୁ ଦୂର କର ବୋଲେ କୁଶଧର ।
ବ୍ରହ୍ମାଣ୍ଡ ଠାକୁର ସେହୁ ସମସ୍ତଙ୍କ ବାପ
ତାଙ୍କ ବଚନକୁ କେତେ କରୁଥାଉ ତାପ ।
ଏବେ ଏହି ରତ୍ନହାର ଘେନ ହେ ରାଜନ
ବ୍ରହ୍ମା କଶ୍ୟପ କହନ୍ତେ ତୋଷ କଲା ମନ ।
ରତ୍ନ ଘେନି ଅସୁରଙ୍କୁ ଯାଇଁ ବାଣ୍ଟିଦେଲା
କେହି ପାଇଗଲେ କାରେ ନିଅଣ୍ଟ ହୋଇଲା ।
ଆପଣେ ଦିବ୍ୟ ଭୂଷଣ ହେଲେ ଦୈତ୍ୟେଶ୍ୱର
ଦିବ୍ୟ ରତ୍ନ ଭୂଷଣରେ ଶୋଭେ କଳେବର ।
ଯେଉଁମାନଙ୍କୁ ନିଅଣ୍ଟ ହୋଇଲା ରତନ
ବ୍ରହ୍ମା ସେମାନଙ୍କୁ ଦେଲେ ହୋଇଲେ ଭୂଷଣ ।

ବ୍ରହ୍ମା ବୋଲେ କୃଷ୍ଣକଥା ନଧରିବୁ ବଳୀ
ସଂସାର କରତା ସବୁ ପାରନ୍ତି ସେ ବୋଲି ।
ବଳୀ ବୋଇଲା ସେ କଥା ମୁହିଁ ଧରି ନାହିଁ
ଅସୁରମାନଙ୍କୁ ପରା ଦେଲିଣି ବତାଇ ।
ବ୍ରହ୍ମାଙ୍କୁ ଅନାଇ ପୁଣି ବୋଲେ ଦୈତ୍ୟସାଇଁ
ଏବେ ଅମୃତକୁ ବାଣ୍ଟି ଭୁଞ୍ଜିବା କି ନାହିଁ ।
କି ଅବା ତାହାକୁ ପୁଣି କରିବ ଏମିତି
ବ୍ରହ୍ମା ବୋଇଲେ ଏହାକି ଅଟଇ ଯୁକତି ।
ଭୁଞ୍ଜିବାର ବେଳେ ଜାଣ ଏହି କଥା ନାହିଁ
ଯାହାକୁ ବୋଲିବ ତୁମ୍ଭେ ପରଶିବ ସେହି ।
ସୁଜାଣ ନୃପତି ଶୁଣି ସନ୍ତୋଷ ହୋଇଲେ
ଦେବ ଦଇତ ସକଳେ ତହୁଁ ଉଠିଗଲେ ।
ଶ୍ରୀହରି ବୋଲନ୍ତି ସୁଧା ସୁରା ଦୁଇ ଆଣ
ସଭା ମଧ୍ୟେ ତାହା ଆଣି କଲେ ଦେବଗଣ ।
ନାରାୟଣ ବାକ୍ୟେ ଯହୁଁ ଅମୃତ ଆଣିଲେ
ଯେହୁ ଯହିଁ ଥିଲେ ଉଠି ନିକଟକୁ ଗଲେ ।
ଶ୍ରୀହରି ବୋଲନ୍ତି ତହୁଁ ପରଷିବ କେହୁ
ତାହାଙ୍କ ବାକ୍ୟେ ବୋଲନ୍ତି ଦେବ ଅଷ୍ଟବାହୁ ।
ଦୈତ୍ୟ ଯାହାକୁ ବୋଲିବେ ସେହୁ ପରଷିବ
ପୁଣି ତହିଁପାଇଁ କିମ୍ପା ଦ୍ୱନ୍ଦ୍ୱ ହେଉଥିବ ।
କେ ପରଷିବ ବୋଲନ୍ତି କମଳ ଆସନ
ଦୈତ୍ୟେ ବୋଇଲେ ପର୍ଷନ୍ତୁ ପ୍ରଭୁ ଭଗବାନ ।
ସେ ଆମ୍ଭଙ୍କୁ କରିଥାନ୍ତି ସିନା ଅହଙ୍କାର
ଆମ୍ଭ ମନେ ତାଙ୍କ ପ୍ରତି ନାହିଁ ଅହଂକାର ।
ତାହାଙ୍କଠାରେ ଆମ୍ଭର ଅନ୍ତର ତ ନାହିଁ
ଅଳପ ହସିଲେ ବ୍ରହ୍ମା ବିଷ୍ଣୁ ମୁଖ ଚାହିଁ ।
ଶ୍ରୀବିଷ୍ଣୁ ବୋଇଲେ ମୁହିଁ ପରଶିବି ଯେବେ
ସମାନ ଭାବରେ ଦେବି ଭୁଞ୍ଜିବ ଯେ ସର୍ବେ ।
ତୁମ୍ଭେ କରିଥାଅ ସିନା ମୋତେ ଅହଙ୍କାର
କିନ୍ତୁ ମୋର ମନରେ ତା ନ ଥାଏ ବିଚାର ।
ଏ କଥା ଶୁଣି ସନ୍ତୋଷ ହୋଇଲେ ଦଇତ
ନାରଦଙ୍କୁ ପୁଚ୍ଛାକଲେ ପୁଣି ନରନାଥ ।
ନାରାୟଣ ଦୈତ୍ୟଙ୍କର କେଭେ ନ ପଡ଼ଇ
ପରଷ ବୋଲିଣ ତାଙ୍କୁ ବୋଲଲେ କିମ୍ପାଇଁ ।
ନାରଦ ବୋଇଲେ ଦୈତ୍ୟେ ଚିତ୍ତେ ଲୟକଲେ
ବିଶ୍ୱାସ କଲେ ଅମୃତ ପାଇବେ [illegible] ।

ତାଙ୍କ ବ୍ୟତିରେକ କେହି ନ ପାରିବେ ପଶି
ଏଡ଼େ ବଡ଼ କଥା କାହୁଁ କରିବେ ଭରସି ।
ତାହା ଶୁଣିଣ ସନ୍ତୋଷ ହେଲେ ନୃପବର
ବୋଇଲେ କୁହ ଅମୃତ ଭୁଞ୍ଜିବା ବେଭାର ।
କହନ୍ତି ନାରଦ ଶୁଣ ଆହେ ନୃପନାଥ
ଦେବତାମାନେ ବିଚାର କରିଲେ ଯେମନ୍ତ ।
ଗୁପତରେ ପଚାରନ୍ତି ପ୍ରଭୁ ଭଗବାନ
ଏଠାରେ କି ବୁଦ୍ଧି ତୋତେ ଦିଶେ କଞ୍ଜାସନ ।
ବ୍ରହ୍ମା ବୋଇଲେ ତୁମ୍ଭେ କି ନ ଜାଣ ଅଚ୍ୟୁତ
ଅମୃତ ପାନ କି ପୁଣ କରିବେ ଦଇତ ।
ତୁମ୍ଭେ କି ନ ଜାଣ ପ୍ରଭୁ ପଚାରୁଛ ମୋତେ
ଅମୃତକୁ ଦେବେ ସୁରା ଖାଆନ୍ତୁ ଦଇତେ ।
ସେ ଅମୃତକୁ ଖାଇଲେ ହୋନ୍ତି ଚିରଜୀବୀ
ଅସୁର ଅମର ହୋଇ ରହିବେ ବି ଭୂବି ।
ଯା ଖାଇଲେ ରୋଗ ଶୋକ ନ ବାଧିବ ଅଙ୍ଗ
କଳ୍ପ କଳ୍ପାନ୍ତରେ ଥିବ ହୋଇଣ ଅଭଙ୍ଗ ।
ସେହି ଦ୍ରବ୍ୟକୁ ଅସୁରେ ଖାଇବେ କେମନ୍ତେ
କପଟରେ ସୁରା ତାଙ୍କୁ ପରଷ ଯେମନ୍ତେ ।
ତାହା ଶୁଣିଣ ସନ୍ତୋଷ ହେଲେ ଭଗବାନ
ବୋଇଲେ ବିଚାରୁଥିଲି ଏମନ୍ତ ବିଧାନ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଯାହା ବିଚାର କରିଲେ
ଅସୁର ସକଳେ କେହି ଜାଣି ନ ପାରିଲେ ।
ଏକଥା ଯେବଣଠାରେ ଗୁପତେ ହୋଇଲା
କାନ ପାତି ତାହା ଏକା ରାହୁ ଶୁଣୁଥିଲା ।
ଦେବତା ଶରୀର ଧରି ରହ ଯାତୁଧାନ
ଦୈତ୍ୟମାୟା ନ ଜାଣିଲେ ତହୁଁ ଦେବଗଣ ।
ରାହୁ ବିଚାରେ କହିବି ଆନକୁ କି ଯାଇଁ
କହିଲେ ହୋଇବ ଦ୍ୱନ୍ଦ୍ୱ ପ୍ରୟୋଜନ ନାହିଁ ।
ଅସୁରେ ପାଆନ୍ତୁ ଅବା ନ ପାନ୍ତୁ ଅମୃତ
ମୁହିଁ ଗୁପତେ ଭୁଞ୍ଜିବି ଦେବତା ସହିତ ।
ଏତେକ ବିଚାରି ଯେହୁ ରହେ ତୁନି ହୋଇ
ବ୍ରହ୍ମା ବିଶ୍ୱକରମାକୁ ବୋଇଲେକ ଚାହିଁ ।
ପାତ୍ରମାନ ଭିଆଇଣ ଆଣ ଅତଃପରେ
ସୁଧା ଭକ୍ଷଣ କରିବେ ଅମର ଅସୁରେ ।
ସୁବର୍ଣ୍ଣ ଆଉ ରଜତ ଦୁଇ ପାତ୍ର ଆଣ
ଦେବ ନାଗ ଅସୁରଙ୍କୁ ଅଣ୍ଟିବ ଯେସନ ।

ସେହିକ୍ଷଣି ବିଶ୍ୱକର୍ମା ଭିଆଇଲା ପାତ୍ର
ରୂପା ସୁବର୍ଣ୍ଣ ଏମନ୍ତେ କରି ଦୁଇ ମତ ।
କୁଶପାଣିଙ୍କ ନିକଟେ ଦେଲାକ ସେ ନେଇ
ଦେବାସୁରଙ୍କୁ ଶ୍ରୀହରି ବୋଇଲେ ସେ ଚାହିଁ ।
ବସ ଆହେ ଦେବାସୁରେ ଉଭା କିପାଁ ହୁଅ
ଅମୃତକୁ ପରଷିବା ଯଥାସ୍ଥାନେ ରୁହ ।
କୃଷ୍ଣ ବଚନେ ବସିଲେ ଯାଇଁ ଦେବାସୁରେ
ମିଶାମିଶି ହୋଇକରି ଏକଇ ପଂକ୍ତିରେ ।
ଶ୍ରୀକୃଷ୍ଣ ହସିଲେ ତାଙ୍କ ବସିବାର ଚାହିଁ
ଏମନ୍ତ ହେଲେ ପରଷି ପାରିବି ମୁଁ କାହିଁ ।
ଅସୁରେ ବୋଇଲେ ଶୁଣି କାହିଁକି ନୋହିବ
ଏବେ ଅମୃତ ପରଷି ଯାଅ ବାସୁଦେବ ।
ଏମନ୍ତ ନୁହଇ ଆଜ୍ଞା କଲେ ହୃଷୀକେଶ
ଭିନ୍ନ ଭିନ୍ନ ହୋଇକରି ପଂକ୍ତି ଧରି ବସ ।
ଦେବଙ୍କୁ ବୋଇଲେ ତୁମ୍ଭେ ଭିନ୍ନହୋଇ ବସ
ତୁମ୍ଭେ ଅନ୍ୟ ସ୍ଥାନେ ଯାଇ ବସ ହେ ରାକ୍ଷସ ।
ନାରାୟଣଙ୍କ ବଚନେ ସନ୍ତୋଷ ହୋଇଲେ
ଭିନ୍ନ ଭିନ୍ନ ପଂକ୍ତି ହୋଇ ଗୋଷ୍ଠୀରେ ବସିଲେ ।
ବ୍ରହ୍ମା ଶ୍ରୀ ଶଙ୍କର ଆଉ ଦେବ ପୁରନ୍ଦର
ଶମନ ଅଳକାପତି ଶଶୀ ଦିବାକର ।
ଅଗ୍ନି ପବନ କନ୍ଦର୍ପ ପୁଣି ବିଶ୍ୱକର୍ମା
ନୈର୍ଋତ ବକ୍ରମାହାଳ ଏ ଦୁଇ ମହାତ୍ମା ।
ଚାରି ମେଘର ସହିତେ ସପତ ବରୁଣ
ଦକ୍ଷ ପ୍ରଜାପତି ଆଉ କାଶ୍ୟପ ପ୍ରଧାନ ।
ଯକ୍ଷ ବିଦ୍ୟାଧର ଆଦି ବସିଲେ ସମସ୍ତେ
ତ୍ରେତିଶକୋଟି ଦେବତା ଯହିଁଥିଲେ ଯେତେ ।
ପୂର୍ବକୁ ମୁଖ କରିଣ ବସିଲେ ଦେବତା
ପଶ୍ଚିମକୁ ମୁଖକରି ରହିଲେ ଦଇତା ।
ନାଗଲୋକ ମୁଖକଲେ ଉତ୍ତର ଦିଗକୁ
ସୁବର୍ଣ୍ଣର ପାତ୍ରମାନ ଦେଲେ ସମସ୍ତଙ୍କୁ ।
ନାରାୟଣ ପାତ୍ରସବୁ ଦେବତାଙ୍କୁ ଦେଲେ
ରଜତର ପାତ୍ରସବୁ ଅସୁର ପାଇଲେ ।
ସବୁଙ୍କୁ ଚାହିଁ ବୋଲନ୍ତି ପ୍ରଭୁ ଭଗବାନ
ପଂକ୍ତି ପଂକ୍ତି ବସିବାରୁ ହୋଇଲା ସମାନ ।
ରଜତ ପାତ୍ର ଦାନବେ ଦେଖିଲେକ ତହୁଁ
ମୁହାଁ ଚାହାଁ ଚାହିଁ ସର୍ବେ ହୋଇଲେ ଯେ ଯହୁଁ ।

ମଉନ ହୋଇ ରହିଲେ ନ ବୋଇଲେ କିଛି
ଚନ୍ଦ୍ର ସୂର୍ଯ୍ୟ ମଧ୍ୟେ ରାହୁ ଗୁପତେ ବସିଛି ।
ଏକ ଅସୁର ଆନକୁ ବୋଲେ ତୁନି କରି
ରଜତ ପାତ୍ର ଆମ୍ଭଙ୍କୁ କିମ୍ପା ଦେଲେ ହରି ।
ତାହାର ବଚନ ଶୁଣି ବୋଲେ ସେ ଅସୁର
ସୁଧା ଭୁଞ୍ଜିବା ପାତ୍ରର କି କରୁ ବିଚାର ।
ବଳୀ ବୋଲେ ଏତେବେଳେ ଏହି ପାତ୍ରଥାଉ
ମନ ଛନ ଛନ କରେ ବସି କରି ରାହୁ ।
ନାରାୟଣ ଦେବତାଙ୍କ ମନ ଛନ ଛନ
ଜାଣି ନ ପାରନ୍ତି ଦୈତ୍ୟେ ତାଙ୍କ ମାୟାମାନ ।
ନାରାୟଣ ବିଚାରନ୍ତି ଯୁବତୀ ହୋଇବା
ରୂପେ ଦୈତ୍ୟେ ଭୁଲିଯିବେ ଅମୃତ ବାଢ଼ିବା ।
ଏହା ବିଚାରି ଯୁବତୀହୋଇଲେ ଶ୍ରୀପତି
ତାଙ୍କୁ ଦେଖି ଦେବାସୁରେ ସମସ୍ତେ ହସନ୍ତି ।
ନାନା ରତନେ ଭୂଷଣ ହେଲେ ଚକ୍ରପାଣି
ବେନି ଭୁଜରେ କଙ୍କଣ ନାସାରେ ବସଣୀ ।
ନୀଳ ମେଳ ପରାୟେକ ଦିଶେ ଦେହ ବର୍ଣ୍ଣ
ବିଜୁଳି ପ୍ରାୟେ ଝଟକ ଅଙ୍ଗ ରତ୍ନଗଣ ।
ନାରାୟଣଙ୍କ ରୂପକୁ ଚାହାଁନ୍ତି ଅସୁରେ
ବିଚାରନ୍ତି ଏ ଯୁବତୀଅଛି କି ସଂସାରେ ।
ଏଇ ରୂପକୁ ବିଚାର କରନ୍ତି ଅସୁର
ହସ ହସ ବିମ୍ବାଧର ମୋହେ ତିନିପୁର ।
ତକ୍ଷଣେ ସୁଧା ଆଣିଲେ ପ୍ରଭୁ ଚକ୍ରଧର
ସୁରାକୁମ୍ଭ ସହିତରେ ରଖିଲେ ପାଶର ।
କୋଟିଏକ ରୂପ ପ୍ରଭୁ ହୋଇଲେ ତକ୍ଷଣି
ବିଷ୍ଣୁଙ୍କର ମାୟା କେହି ନ ପାରିଲେ ଜାଣି ।
ସମସ୍ତ ଲୋକଙ୍କୁ ପ୍ରଭୁ ଏକ ଦିଶୁଛନ୍ତି
ବ୍ରହ୍ମା ରୁଦ୍ର ବେନିଗଣ ସମସ୍ତ ଜାଣନ୍ତି ।
ଭଣ୍ଡାରୁ ନେଇ ସୁବର୍ଣ୍ଣ ପାତ୍ରେ ଓଜାଡ଼ିଲେ
ଦେବତା ପଂକ୍ତିକି ଯାଇ ଆଗ ପରଶିଲେ ।
ଚାଲିବାର ଛଟକ ଯେ ବିଜୁଳିର ଗତି
ଚକ୍ଷୁ ମଟକେ ଦେଖିଲେ ସୁଧାଭାଣ୍ଡ ପ୍ରତି ।
ନାଗଲୋକଙ୍କୁ ଅମୃତ ପରଶିଲେ ନେଇ
ଅସୁରଙ୍କ ସନ୍ନିଧିକୁ ସୁରା ଘେନିଯାଇ ।
ସୁରା ପରଶି ଦେଇଣ ଗଲେ ଯେ ତାହାଙ୍କୁ
ଅସୁର ପୁଛା କରନ୍ତି ଶ୍ରୀନାରାୟଣଙ୍କୁ ।

ସୁଧା ନ ଦେଲେ ଆମ୍ଭଙ୍କୁ କିହେ ଚକ୍ରଧର
ପ୍ରଭୁ ବୋଲନ୍ତି ପଛକୁ ଅଛି ସୁଧା ଧାର ।
ପ୍ରଥମରୁ ସମସ୍ତଙ୍କୁ ସୁରା ମୁଁ ଦେଲଇଁ
ଏବେ ଦ୍ୱିତୀୟେ ଅମୃତ ପରଷିବି ନେଇ ।
ଏମନ୍ତ କହି ଅମୃତ ଭାଣ୍ଡଠାରେ ହେଲେ
ଦେବନାଥ ଆଦିକରି ସୁଧା ଭକ୍ଷି ଦେଲେ ।
ଅସୁରେ ସୁରାକୁ ଖାଇ ବସିଛନ୍ତି ଚାହିଁ
ଅମୃତ ଭାଣ୍ଡ ଶ୍ରୀହରି ହସ୍ତେ ନେଲେ ଯାଇଁ ।
ବେନି ହସ୍ତକୁ ଟେକିଣ ତୁଣ୍ଡ ବିସ୍ତାରିଲେ
ଅମୃତ ଯେତେକ ଥିଲା ସବୁ ପିଇ ଦେଲେ ।
ଅମୃତ କୁମ୍ଭକୁ ପୁଣି ଥୋଇଲେ ଧରଣୀ
ସମସ୍ତ ରୂପ ଯାକକୁ ସଂହାରିଲେ ଆଣି ।
ଶ୍ରୀହରିଙ୍କୁ ଡାକନ୍ତି ଯେ ସର୍ବ ଦୈତ୍ୟଗଣ
ଅମୃତ ଘେନିଣ ଆସି ଦେବ ନାରାୟଣ ।
ଶ୍ରୀ ନାରାୟଣ ବୋଲନ୍ତି ରୁହ ଗଲି ଗଲି
ଚନ୍ଦ୍ର ସୂର୍ଯ୍ୟ ଶ୍ରୀକୃଷ୍ଣଙ୍କୁ ଚାହିଁ ପୁଣି ବୋଲି ।
ଆମ୍ଭ ପାଖରେ ବସିଲା ରାହୁ ଯେ ଅସୁର
ତାହାକୁ ଅମୃତ ଦେଲେ ଆହେ ଚକ୍ରଧର ।
ଅସୁରର ମାୟା ସ୍ୱାମୀ ନ ପାରିଲେ ଜାଣି
ରାହୁ ଅମୃତ ଭକ୍ଷଣ କଲା ଚକ୍ରପାଣି ।
ଶ୍ରୀହରି ବୋଇଲେ ତୁମ୍ଭେ ଆଗୁ ନ କହିଲ
ଏତେବେଳ ଯାଏ କିମ୍ପା ତୁନି ହୋଇଥିଲ ।
ତୁମ୍ଭ ପାଖେ ବସିଅଛି ନ ଜାଣିଲ ତୁମ୍ଭେ
ପରଶିବା ଲୋକ କାହୁଁ ଜାଣିବୁଟି ଆମ୍ଭେ ।
ଚନ୍ଦ୍ର ସୂର୍ଯ୍ୟ ବୋଇଲେ ଯେ ଲୟତ ନକଲୁ
ଦେବତା ପ୍ରାୟେକ ଚିତ୍ତ ଭ୍ରମରେ ବୁଝିଲୁ ।
ହରି ବୋଇଲେ ଖାଇଲା ଏବେ ହେବ କିସ
ଏହା କହିଣ ଚାହିଁଲେ କରିଣ ଆକ୍ରୋଶ ।
ବ୍ରହ୍ମା ବୋଇଲେ ତାହାକୁ ଛାଡ଼ ବାସୁଦେବ
ନିୟତ ହୋଇ ଖାଇଲା ଯେବେ ବା ଦାନବ ।
ଗୋଳ କରିଲେ ଅନର୍ଥ ହେବ ଭାବଗ୍ରାହୀ
ହରି ବୋଇଲେ ଅଛି ମୁଁ ଭାଳୁ କାହିଁପାଇଁ ।
ଓଷ୍ଠ ଚାପିଣ ବୋଲନ୍ତି ତାକୁ ଭଗବାନ
ଅମୃତ କିମ୍ପା ଖାଇଲୁ ଆରେ ଜନ୍ମହୀନ ।
ଆରେ ପାମର ତୁ ମାୟା ତନୁ ଧରି ଆସି
ଦେବତାଙ୍କ ମଧ୍ୟେ ସୁଧା ଖାଇଲୁ ତୁ ବସି ।

ଏଡ଼େକ ଭରସା ତୁତ କଲୁରେ ପାମର
ଗୋଷ୍ଠୀତେଜି ବସିଲୁ ତୁ ଦେବଙ୍କ ସଙ୍ଗର ।
କୃଷ୍ଣ ବଚନେ ଡରଇ ସେ ରାହୁ ଅସୁର
ଶରୀର ଥରଇ ଯେହ୍ନେ ବରଡ଼ା ପତର ।
ଚକ୍ରକୁ ପେଶିଲେ ପ୍ରଭୁ ଅତୀବ କୋପରେ
ସେ ଚକ୍ର ଯାଇଁ ପଡ଼ିଲା ରାହୁର କଣ୍ଠରେ ।
ମୁଣ୍ଡ ଛିଡ଼ିଣ ତାହାର ଭୂମିରେ ପଡ଼ଇ
ଶିରେ ମୁକୁଟ କୁଣ୍ଡଳ ତାର ବିରାଜଇ ।
ସୁଧା ଖାଇଥିବାରୁ ତା ପ୍ରାଣ ନୁହେଁ ନାଶ
ବେନିଗୋଟି ହୋଇଣ ଯେ ରହିଲା ରାକ୍ଷସ ।
ଗଣ୍ଡି ମୁଣ୍ଡ ଯେ ତାହାର ହେଲା ଭିନ୍ନ ଭିନ୍ନ
ସୁଧା ସକାଶୁ ତାହାର ନ ଗଲା ଜୀବନ ।
ଉଭା ହୋଇଣ ଶ୍ରୀହରି ତାହାକୁ ଦେଖନ୍ତି
ଆଶ୍ଚର୍ଯ୍ୟ ହୋଇଣ ସର୍ବେ ତାହାକୁ ଚାହାଁନ୍ତି ।
ଏକକୁ ଆରେକ ତହିଁ ବୁଝାନ୍ତି ସମ୍ବାଦ
ଅମୃତ ସେ ଖାଇବାରୁ ଶିର ହେଲା ଛେଦ ।
ଏହି ପରକାରେ ସର୍ବେ ହେଲେ କୁହାକୁହି
ସଭାରେ ଶିର ଛେଦନ ହେବା ନ ଯୋଗାଇ ।
ନିସତ ହୋଇ ଅମୃତ ଖାଇଲା ସେ ଯେବେ
ବାସୁଦେବ ଶିର ଛେଦ କିମ୍ପା କଲ ତେବେ ।
ଏରୂପେ ବିଚାର ତହିଁ କରନ୍ତି ସମସ୍ତେ
ରାଗରେ କମ୍ପୁଅଛନ୍ତି ସମସ୍ତ ଦଇତେ ।
ଏଥୁଅନ୍ତେ ଯାହା ହେଲା ଶୁଣ ହେ ରାଜନ
ଶ୍ରୀ ନାରାୟଣ ଅଛନ୍ତି ରାହୁ ସନ୍ନିଧାନ ।
ପଦ୍ମାସନରେ ବସିଛି ରାହୁ ପିଣ୍ଡ ଖଣ୍ଡ
ତାହାର ବାମ ପାରୁଶେ ଅଛି ଛେଦ ମୁଣ୍ଡ ।
ରୁଧିର ପ୍ରବଳ ବେଗେ ଯାଉଅଛି ବହି
ଚନ୍ଦ୍ର ସୂର୍ଯ୍ୟଙ୍କ ଦେହରେ ସିଞ୍ଚାପଡ଼େ ଯାଇ ।
ଫରହର ହୋଇ ନିଶ ଲାଗିଅଛି କର୍ଣ୍ଣେ
ରଙ୍ଗବର୍ଣ୍ଣ ଦିଶୁଅଛି ରକ୍ତ ବିଲେପନେ ।
ଶ୍ରୀହରିଙ୍କୁ ରାହୁମୁଣ୍ଡ ବୋଲୁଅଛି ଚାହିଁ
ଅକାରଣେ ଶିର କିମ୍ପା ଛେଦିଲୁ ଗୋସାଇଁ ।
ଅମୃତ ପରଶି ଦେଇ ଗଲୁ ତ ଆପଣ
ଯାରେ ସଞ୍ଚିଲୁ ମାଇଲୁ ପୁଣି ନାରାୟଣ ।
ତୁ ତ ଦୟାସିନ୍ଧୁ ପ୍ରଭୁ ସବୁ କଥା ଜାଣୁ
ଭୂତ ଭବିଷ୍ୟତ କଥା ସର୍ବ ପରିମାଣୁ ।
ତୁହି ଉତ୍ପତ୍ତି ପ୍ରଳୟ କରୁ ପଦ୍ମନେତ୍ର
ସମସ୍ତ ଲୋକ ହିଁ ତୁହି ତୁ ସିନା ଜଗତ ।
ଏଡ଼େ ବଡ଼ ପ୍ରଭୁ କିମ୍ପା ଅଧର୍ମକୁ କଲୁ
ଆହାର ଦେଇଣ ମୋର ଶିରକୁ ଛେଦିଲୁ ।
ମୁଖକୁ ଚାହିଁ ପରଶି ଦେଲୁ ସିନା ତୁହି
ତେବେ ଚିହ୍ନି ନ ପାରିଲୁ ତୁହି ଭାବଗ୍ରାହୀ ।
ତୁ ସିନା ପରମେଶ୍ୱର ନ ଲାଗିବ ତୋତେ
ନ ଜାଣୁ କି ପାପପୁଣ୍ୟ ଏଥେ ଅଛି ଯେତେ ।
ଭୁଞ୍ଜିବା ସ୍ଥାନରେ କଲେ ଏସନ ଚରିତ
ମେଦିନୀ ଥିବା ଯାଏ ଯେ ହୁଏ ନର୍କଗତ ।
ତୁ ପାପ ପୁଣ୍ୟ କରିଛୁ ସିନା ଭଗବାନ
ତୁହି ଲଙ୍ଘନ କରିଲେ ପାଳିବ କି ଆନ ।
ଯହୁଁ ସେହି ରାହୁ ଦୈତ୍ୟ ବୋଲେ ଏ ବଚନ
ଯାହାକୁ ପ୍ରସନ୍ନ ହେଲେ ପ୍ରଭୁ ଭଗବାନ ।
ଶ୍ରୀ ନାରାୟଣ ବୋଲନ୍ତି ମାଗ ମାଗ ବର
ଯେମନ୍ତ ଇଚ୍ଛା ତୋହର ଦେବଇଁ ନିକର ।
ରାହୁ ବୋଲେ ସତ୍ୟଟିକି ଅଟେ ଏ ବଚନ
ଯାହା ମୁଁ ମାଗିବି ସ୍ୱାମୀ ତା ଦେବ ବହନ ।
ଶ୍ରୀକୃଷ୍ଣ ବୋଇଲେ ସତ୍ୟ ସତ୍ୟ ଏହି କଥା
ଯାହା ମାଗିବୁ ଦେବି ମୁଁ ନ କରି ଅନ୍ୟଥା ।
ରାହୁଦୈତ୍ୟ ବୋଲେ ତେବେ ଶୁଣ ନାରାୟଣ
ଚନ୍ଦ୍ର ସୂର୍ଯ୍ୟ ବେନି ସିନା ମୋର ଶତ୍ରୁଜାଣ ।
ଏ ବେନି ଯଦ୍ୟପି ତୋତେ ନ ଦିଅନ୍ତେ କହି
ତୁମ୍ଭେ ଅବା ଶିରଚ୍ଛେଦ କରନ୍ତ କିମ୍ପାଇଁ ।
ଏହାଙ୍କର ହେତୁ ସିନା ମୁହିଁ ଗଲି ନାଶ
ଦିଅ ମୋତେ ବର ଯାଙ୍କୁ କରିବି ମୁଁ ଗ୍ରାସ ।
ଯହୁଁ ସେ ରାହୁ ମାଗିଲା ଏସନକ ବର
ଶୁଣି ଚନ୍ଦ୍ର ସୂର୍ଯ୍ୟଙ୍କର କମ୍ପିଲା ଶରୀର ।
ରାହୁ ବଚନେ ବୋଲନ୍ତି ପ୍ରଭୁ ଭଗବାନ
ଏ ବେନି ମାରିଲେ ନାଶ ଯିବ ଯେ ଭୁବନ ।
ଶ୍ରୀହରି ବୋଇଲେ ତୁହି ରାହୁ କେତୁ ହୁଅ
ଦୁଇଗୋଟି ଗ୍ରହ ହୋଇ ଦେବ ସଙ୍ଗେ ଥାଅ ।
ଯେତେକାଳ ଯାଏ ଥିବେ ଚନ୍ଦ୍ର ସୂର୍ଯ୍ୟ ବେନି
ତୁମ୍ଭେ ଯେତେକାଳ ଥିବ ଏହି ଦେହଘେନି ।
ପୂର୍ଣ୍ଣମୀ ଯାଇଣ ପ୍ରତିପଦ ଆସୁଥିବ
ଚନ୍ଦ୍ରେ ଭକ୍ଷିବୁ ବୋଇଲେ ତାକୁ ବାସୁଦେବ ।

ଦ୍ୱିଜା ନାମରେ ନକ୍ଷତ୍ର ବିଷକୁମ୍ଭ ଯୋଗ
ଅମାସ୍ୟା ପୂର୍ଣ୍ଣିମା ଯାଇ ପ୍ରତିପଦ ଭୋଗ ।
ଏ ଯୋଗେ ଅମାସ୍ୟା ଯାଇ ପ୍ରତିପଦ ଥିଲେ
ସୂର୍ଯ୍ୟ ଦେବଙ୍କୁ ଗ୍ରାସ କରିବୁ ତୁହି ଭଲେ ।
ଆବର ନକ୍ଷତ୍ର ଯୋଗ ଆଦିକି କହିଲେ
ଗ୍ରାସ ତୁ କରିବୁ ଯାଇ ଏମନ୍ତ ବୋଇଲେ ।
ତୁଣ୍ଡେ ଭରିଣ କେବଳ ଆସ୍ୱାଦ ପାଇବୁ
କେତେକ ବେଳ ଉତ୍ତାରୁ ଉଦ୍‌ଗାର କରିବୁ ।
ନ ଉଦ୍‌ଗାରି ଗର୍ଭ ମଧ୍ୟେ ରଖିଲେ ତୋହର
ମୂର୍ଦ୍ଧନା ଫାଟି ତୋ ଜୀବ ହୋଇବ ବାହାର ।
ଆଜିକାର ଦୋଷପାଇଁ ପାଉଥିବୁ ଦଣ୍ଡ
ଭୁଞ୍ଜି ହୋଇଥିବ ତୋର ତୁଣ୍ଡେ ଏହାପିଣ୍ଡ ।
ନିଜ କଲା କର୍ମଦୋଷ ଭୁଞ୍ଜିବ ଯେ ସେହୁ
ନାରାୟଣଙ୍କ ବଚନେ ତୁଷ୍ଟ ହେଲା ରାହୁ ।
ଏ ବେନିଙ୍କୁ ଦେଉଥିବା କାଳରେ ଦୁର୍ଗତି
ତେବେ କେହି ଦାନକଲେ ହେବ ସେ ମୁକତି ।
ତୁ ଭୁଞ୍ଜିବା କାଳେ ଜୀବହତ୍ୟା କଲେ କେହି
ଏ ପାପ ଭାଗରୁ ଜାଣ ଆଉ ପାପ ନାହିଁ ।
କହିଦେବା ଲୋକ ସିନା ପାପରେ କାରେଣି
ଏ ଦୋଷରୁ ମୁକ୍ତିଦାନ କରିଲେ ଧରଣୀ ।
ସୁନା ଧେନୁ ଅନ୍ନବସ୍ତ୍ର ପୁଣି ରତ୍ନମାନ
ନରଲୋକ ଦେବେ ତାହା ଘେନିବେ ବ୍ରାହ୍ମଣ ।
ବେଦବାକ୍ୟ ଅନୁକ୍ରମେ ସ୍ନାନ ଶୁଚିମନ୍ତେ
ତୁମ୍ଭ ତିନିଙ୍କି ସ୍ମରଣ କରିବେ ସେ ଚିତ୍ତେ ।
ସକଳ ପାପରୁ ସେହୁ ମୁକତ ହୋଇବେ
ମୋ ନାମକୁ ଜପି କୋଟି ଯଜ୍ଞକୁ ପାଇବେ ।
ମୋର ପ୍ରୀତିଅର୍ଥେ ତେବେ ଯେହୁଁ ଦାନଦେବ
ସଂସାରରୁ ତରି ମୋର ଅଙ୍ଗେ ଲୀନହେବ ।
କୋଟିଶାଳଗ୍ରାମ କୋଟି କନ୍ୟା ଦେଲେ ଦାନ
ମୋହର ନାମକୁ କେହି ନୋହିବେ ସମାନ ।
ଯେବେ ପ୍ରାଣୀଙ୍କ ଅଙ୍ଗରେ ପୀଡ଼ା ଦେଉଥିବୁ
ବିପ୍ର ତୁମ୍ଭଙ୍କୁ ପୂଜିଲେ ଶାନ୍ତିକୁ ଲଭିବୁ ।
ଅଗ୍ନିରେ ଆହୁତି ତୁହି ପାଅ ବେଦବାକ୍ୟେ
ଆଜ୍ଞାଦେଲି ଆନ କିଏ କରିବ ତ୍ରୈଲୋକ୍ୟେ ।
ଚନ୍ଦ୍ର ସୂର୍ଯ୍ୟଙ୍କୁ ଯେ କାଳେ ମୁଖେ ଧରିଥିବୁ
ନରଲୋକ ଦାନ ଧ୍ୟାନେ ବେଗେ ଛାଡ଼ିଯିବୁ ।

ଏବେ ଯେ ତୁମ୍ଭଙ୍କୁ ମୁହିଁ କଲଇଁ କାରଣ
ବେଦବାକ୍ୟେ ନାମ ଥିବ ସବୁକାଳେ ଜାଣ ।
ଆଜଠାରୁ ଦାନ ଧ୍ୟାନ ଲୋକରେ କରିବେ
ନ କଲେ ସେମାନେ ନିଶ୍ଚେ ନର୍କଗତି ହେବେ ।
ନହେଲେ ମୋହର ନାମ ଜପିବ ସେକାଳେ
ନିଶ୍ଚେ ତରିଯିବ ସେହୁ ମୋହର ମଣ୍ଡଳେ ।
ଚନ୍ଦ୍ର ସୂର୍ଯ୍ୟ ବୋଇଲେ ଯେ ମୁଖରେ କହିଲୁ
ହେ ବାସୁଦେବ ଦୁଃସହ ସଙ୍କଟେ ପଡ଼ିଲୁ ।
ହରି ବୋଲନ୍ତି କାହିଁବା ଅଟେ ଦୋଷଗୁଣ
ଲାଗିଲା କିଏ କରିବ ତାହା ଅପ୍ରମାଣ ।
ଚନ୍ଦ୍ର ସୂର୍ଯ୍ୟ ଶୁଣିକରି ହୋଇଲେ ମଉନ
ନ କହିଲେ କଥା ତିଳେ ପୋତିଲେ ବଦନ ।
ପୁଣି ରାହୁ ବୋଇଲେ ଯେ କୃଷ୍ଣ ମୁଖ ଚାହିଁ
ଗତାଗତ ହେବି କାହୁଁ ପାଦପାଣି ନାହିଁ ।
ଏଥିକି କୃପା ମୋତେ ଯେ କର ଚକ୍ରପାଣି
ପ୍ରସନ୍ନ ହୋଇଲେ ପ୍ରଭୁ ରାହୁବାକ୍ୟ ଶୁଣି ।
ବାହାର ହେଉ ତୋ କର୍ଣ୍ଣମୂଳୁ ବେନିଭୁଜ
ତକ୍ଷଣେ ବାହାର ହସ୍ତ କୃଷ୍ଣବର୍ଣ୍ଣ ତେଜ ।
କଣ୍ଠତଟରୁ ବାହାର ଉଦରେକ ପୁଣ
ସ୍ଥୂଳଗର୍ଭ ହେଲା କୃଷ୍ଣ ବଚନ ପ୍ରମାଣ ।
ହରି ବୋଇଲେ ନୋହିବ ପାଦ କଦାଚିତେ
ମୋହର କୀରତି ଥାଉ ଏ ତିନି ଜଗତେ ।
ଦୁଇଗୋଟି ଭୁଜ ହେଲା ପାଦ ତାର ନାହିଁ
ଶୂନ୍ୟରେ ଯିବୁ ବୋଇଲେ ତାକୁ ଭାବଗ୍ରାହୀ ।
ଶୁଣିଣ ସନ୍ତୋଷ ଚିତ୍ତ ହେଲା ରାହୁବୀର
କେତୁକୁ ଚାହିଁ ବୋଲନ୍ତି ତହୁଁ ଚକ୍ରଧର ।
ଛେଦନ କଣ୍ଠ ତୋହର ଶିରୀ ତୁଣ୍ଡ ହେଉ
ବେନିଗୋଟି ନୟନ ଯେ ତହିଁ ପରେ ଥାଉ ।
ନାରାୟଣଙ୍କ ବଚନେ ହେଲା ସେହିମତ
ଅଳପେ ମସ୍ତକ ମୁଖ ନେତ୍ର ହେଲା ଜାତ ।
ସେହିକ୍ଷଣି ସେ କେତୁକୁ ଜଗତ ଦିଶିଲା
ମୁଣ୍ଡ ମୁଖ ନୟନ ଯେ ଏକାଠି ହୋଇଲା ।
ଲୋକଙ୍କୁ ନ ଦିଶେ ତହିଁ ମୁଣ୍ଡ ଥିଲା ପ୍ରାୟ
ସ୍ୱରୂପଗୋଟି ଦେଖିଲେ ଲାଗେ ବଡ଼ଭୟ ।
କେତୁ ବୋଲେ ସ୍ୱାମୀ ମୁହିଁ ଯିବି କେଉଁପଥେ
କୃଷ୍ଣ ବୋଇଲେ ଯାଅ ତୁ ଦେବତା ସଙ୍ଗତେ ।

ମଞ୍ଚପୁରରେ ତୁମ୍ଭଙ୍କୁ ଦେଲି ମୁହିଁ ପୂଜା
ଏକଦେହ ଥିଲ ତୁମ୍ଭେ ବେନି ଗ୍ରହରାଜା ।
ନିଶବଦ ହୋଇକରି ସମସ୍ତେ ଅଛନ୍ତି
ଅପୂର୍ବ ଦେଖିଣ କେହି କଥା ନ କହନ୍ତି ।
କୃଷ୍ଣବାକ୍ୟେ ବେନିଗ୍ରହ ସନ୍ତୋଷ ହୋଇଲେ
ନିର୍ଭୟ ହୋଇ ସେ ଦେବ ସଙ୍ଗରେ ରହିଲେ
ରୁଧିରର ସ୍ରାବମାନ ରହିଲା ତାଙ୍କର
ଅଭୟବର ତାହାଙ୍କୁ ଦ୍ୟନ୍ତେ ଚକ୍ରଧର ।
ଯେ ନାରାୟଣ ଅଟନ୍ତି ସଂସାରାଧିକାରୀ
ତାହାଙ୍କ କ୍ଷମତା ସିନା ଅଟେ ଏହିପରି ।
ରାଜା ପୁଚ୍ଛନ୍ତି ଚକିତ ଲାଗିଲାକ ମୋତେ
କେଡ଼େ ତୁଣ୍ଡ ତାର ଚନ୍ଦ୍ର ଗିଳିବ କେମନ୍ତେ ।
ମୁନି ବୋଲନ୍ତି ଅଟଇ ସେ ବ୍ରହ୍ମ ଦଇତ
କାଶ୍ୟପ ରେତେ ସିଂହିକାଗର୍ଭରୁ ସଂଭୂତ ।
ନାରାୟଣଙ୍କ ଆଜ୍ଞାରେ ସେ ସିନା ଗିଳଇ
କାମରୂପୀ ତୁଣ୍ଡ ତାର ଆକାଶ ଘୋଟଇ ।
ଯେବଣ ଦିଗରେ ଯୋଗ ପଡ଼ଇ ତାହାର
କୋଟିଏ ଶମନତେଜ ଧରେ ମହାବୀର ।
ଶିରରେ ମୁକୁଟ ତା'ର କର୍ଣ୍ଣରେ କୁଣ୍ଡଳେ
ତାମ୍ର ଚକ୍ରର ପରାୟେ ବୁଲେ ବେନିଡୋଳେ ।
ଫରହର ନିଶ ତାର ବିକଟ ଦଶନ
ଲହ ଲହ ଜିହ୍ୱା ସଦା ବୁଲାଏ ବଦନ ।
ନାସା ଫୁଲାଇ ଦିଅନ୍ତେ ଦିଶେ ମହାଘୋର
ନିଃଶ୍ୱାସ ଖର ଚାପିଣ ଥାଇ ସେ ଅଧର ।
କଟୀ ବାହୁଟି ମୁଦ୍ରିକା ଅତି ବିତପନ
ଲୋହିତ ବସନ ତାର ସଦା ଆଭରଣ ।
ନାନାରତ୍ନେ ଦାଉ ଦାଉ ଅଟେ କଳେବର
ନଖ ଅତି ତୀକ୍ଷଣ ତାର ଦିଶେ ମହାଘୋର ।
ସ୍ୱର୍ଗପୁର ରତ୍ନ ଘରୁ ବାହାର ଯେ ହୋଇ
ଶୂନ୍ୟେ କ୍ଷେପନ୍ତି ଗଗନ ଅତ୍ୟନ୍ତ କମ୍ପଇ ।
ଦେବତାମାନଙ୍କ ସଙ୍ଗେ ଅଟେ ସେହୁ ଏକ
ବାହାନାଦରେ କମ୍ପନ୍ତି ଶୁଣି ସର୍ବଲୋକ ।
ନିଃଶ୍ୱାସକେ ସୂର୍ଯ୍ୟରଥେ ବସେ ବୀରଯାଇ
ତାହାଙ୍କୁ ଦେଖି କମ୍ପନ୍ତି ଛାୟାଦେବୀସାଇଁ ।
ବିକଟ ରୂପ ତାହାର ହୋଇ ଊର୍ଦ୍ଧ୍ୱମୁଖୀ
ତାମ୍ର ଚକ୍ର ପରକାରେ ବୁଲେ ଡିମାଆଖି ।
ପୂର୍ବର ଶାପେ ଦୁର୍ବଳ ଜାଣି ଦିନକର
ଭୁଜଆଡୁ ତୁଣ୍ଡେ ଭରେ ସେହି ନିଶାଚର ।
ରଥରେ ଥାଇଣ ସେହୁ କରଇ ଆହାର
ସୂର୍ଯ୍ୟ ନ ପାରନ୍ତି ଏଣେ ଚଳେ ରହୁବର ।
ପାଖ ଲୋକମାନେ ତହିଁ ତରସ୍ତରେ ଥାନ୍ତି
ଅହିବର ଯେଉଁରୂପେ ମଣ୍ଡୁକୀ ଧରନ୍ତି ।
ସେତେବେଳେ ଯେ କରିବ ଅନ୍ନାଦି ଭୋଜନ
ଶତଜନମ ଦରିଦ୍ର ହେବ ସେହୁ ଜନ ।
ମୈଥୁନ କରିଲେ ତେବେ ବଡ଼ ଦୋଷପାଇ
ସ୍ନାନ ନ କଲେ ଚାଣ୍ଡାଳ ଜନମ ଲଭଇ ।
ପାପ ଅହଙ୍କାର ସବୁ କରିବ ବର୍ଜନ
ନାରାୟଣ ନାମଗୋଟି କରୁଥିବ ଧ୍ୟାନ ।
ଯେ ଯାହା ନଖାଏ କେଭେ ଯେବେ ତାହା ଖାଇ
ଚାଣ୍ଡାଳ ବୋଲିଣ ଜାଣ ତାହାକୁଟି କହି ।
ତେଣୁ ଚାଣ୍ଡାଳ ବୋଲନ୍ତି ତାକୁ ତିନିପୁରେ
ସ୍ନାନ ଦାନ ପବିତ୍ର ଯେ ହେଉଥାନ୍ତି ନରେ ।
ଶୁଣିଲୁ କି ନରପତି ରାହୁ ଗ୍ରହ କଥା
ତାହା ଶୁଣିଣ ସନ୍ତୋଷ ହେଲେ ମହାରଥା ।
ଶ୍ରୀ କୂର୍ମ ନାରାୟଣଙ୍କ ଚରଣ କମଳ
ଅନୁକ୍ଷଣ ଚିନ୍ତା କରେ ବିପ୍ର କାମପାଳ ।

.....❋.....

## ଦେବାସୁର ବଧ

ଏଥୁ ଅନନ୍ତରେ ଶୁଣ ଆହେ ନୃପବର
ଖାଇବା ସ୍ଥାନେ ଅଛନ୍ତି ସକଳ ଅସୁର ।
ଆହେ ପଦ୍ମନେତ୍ର ସୁଧା ପରଶ ତୁରିତେ
କୃଷ୍ଣ ବୋଲନ୍ତି ସରିଲା ମାଗୁଅଛ କେତେ ।
ଏହାଶୁଣି ଏକଦୈତ୍ୟ ବୋଲେ ଆନେ ଚାହିଁ
ଆମ୍ଭମାନଙ୍କୁ ଅମୃତ ମିଳିବ ବା କାହିଁ ।
ଦେଖ ତାଙ୍କ ସଙ୍ଗତରେ ରାହୁ ବସିଥିଲା
ବସି ଦେବତାଙ୍କ ସଙ୍ଗେ ଅମୃତ ଖାଇଲା ।
ତାହାକୁ ଦେଖିଲା ଟିକି ପକାଇଲେ ହାଣି
ସୁଧା ଖାଇବ ବୋଲୁଛ ଦେବେ ଚକ୍ରପାଣି ।
ମୁଖରେ ଲାଜ ସଙ୍କୋଚ ନାହିଁ କି ତୁମ୍ଭର
ଶିର ଛେଦନ ଉତାରୁ ମାଗ ପୁନର୍ବାର ।
ଧିକ ତୁମ୍ଭର ଜୀବନ ବସିଛ ସଭାରେ
ରହ ରହ ବୁଝାଯିବ ବୋଲନ୍ତି ଅସୁରେ ।

ଦୈତ୍ୟଙ୍କ ଶରୀର ହେଲା କୋପେ ଥରହର
ଡାକନ୍ତି ଅମୃତ ଆଣ ଆହେ ଚକ୍ରଧର ।
ହରି ବୋଇଲେ ଅମୃତ ଆଉ ଭାଣ୍ଡେ ନାହିଁ
ସକଳେ ଉଠିଣ ଯାଅ ବସିଛ କିମ୍ପାଇଁ ।
ଦେବଙ୍କୁ ଚାହିଁ ବୋଲନ୍ତି ତହୁଁ ଭଗବାନ
କିପାଇଁ ବସିଛ ସର୍ବେ ଉଠ ହୋ ବହନ ।
ଶୁଣି ଦେବତା ଉଠିଲେ ହୋଇ ତତପର
କୃଷ୍ଣଙ୍କୁ ଚାହିଁଣ କୋପେ ବୋଲନ୍ତି ଅସୁର ।
ଦେବତାମାନଙ୍କୁ ଆଗ ସୁଧା ପରଶିଲୁ
ଆମ୍ଭେ ପଚାରନ୍ତେ ଭଣ୍ଡ କଥା ତୁ କହିଲୁ ।
ଆମ୍ଭଙ୍କୁ ତୁ କରାଇଲୁ ଆଣି ମଦ୍ୟପାନ
ଏ କେମନ୍ତ କଥା ତୋର ଅଟେ ଭଗବାନ ।
ଭାଣ୍ଡରେ ଯେତେକ ଥିଲା ଆପେ ଦେଲୁ ଖାଇ
ମାଗିଲେ ହସ୍ତ ହଲାଇ ବୋଲୁ ନାହିଁ ନାହିଁ ।
ଆମ୍ଭେ ବିଶ୍ୱାସ କରିଲୁ ତୋତେ ଭଗବାନ
ବିଶ୍ୱାସ ନ ଘେନି ତୁହି କଲୁ ହିନିମାନ ।
ବିଶ୍ୱାସଘାତକ ତୁହି ହେଲୁ ଚକ୍ରପାଣି
ସୁଧା ପଛେ ଦେବୁ କହି ସୁରା ଦେଲୁ ଆଣି ।
ଏ ସଭା ମଧ୍ୟେ ରାହୁର କଲୁ ଶିରଚ୍ଛେଦ
ରେ ପାମର ଦୁଷ୍ଟ ଅଟୁ ବଡ଼ାଇ ପ୍ରମାଦ ।
ସଂସାର ମଧ୍ୟରେ କାହିଁ ଅଛି ଏହି କଥା
ସଭା ମଧ୍ୟେ ଶିରଚ୍ଛେଦ ଦିଅନ୍ତି ବ୍ୟବସ୍ଥା ।
ଭୁଞ୍ଜି ବସିବାର ବେଳେ ଶିର ତୁ ଛେଦିଲୁ
ବିଡ଼ମ୍ବଣ କରି ପୁଣି ତାହାକୁ ରଖିଲୁ ।
ରାହୁ କେତୁ କରି ତାକୁ କଲୁ ଗ୍ରହ ଦୁଇ
ବୋଇଲୁ ମୋ କୀର୍ତ୍ତି ଥାଉ ପୁରାଣରେ ରହି ।
ଆବର ଯହିଁକି ସବୁ କରିଥିଲୁ ଆଶ ।
ଅଧେ ସୁଧା ନ ପାଇଲୁ ସବୁ କଲୁ ଗ୍ରାସ ।
କେମନ୍ତେ ସତ ବଳିଲା ତୋର ଭଗବାନ
ସଂସାରର ପ୍ରଭୁ ହୋଇ ଏଡ଼େ ତୁହି ହୀନ ।
ପିଣ୍ଡେ ପ୍ରାଣ ରହିଥିଲେ କେ ପାରିବ ସହି
ବ୍ରହ୍ମାଣ୍ଡେ ଛନ୍ତି ଯେମନ୍ତେ ପୁଣି ଦେହ ବହି ।
ଖାଇବାଠାରେ ଆମ୍ଭଙ୍କୁ କରାଇଲୁ ଲାଜ
ନିଶ୍ଚେ ତୋ ପ୍ରାଣ ଘେନିବୁ ଶୁଣ ଦେବରାଜ ।
ତୁ ସିନା ଆମ୍ଭ ବଇରୀ ଅଟୁ ଚକ୍ରଧର
ମାରରେ ଅସୁର ଆଉ ଉପ୍ରୋଧ ନ କର ।
ସମସ୍ତ ଦ୍ରବ୍ୟଯାକ ଏ ଏହିମତେ ନେଲା
ସବୁ କାଳରେ ଆମ୍ଭଙ୍କୁ ଅହନ୍ତା ବହିଲା ।
ମାର ମାର ବୋଲିକରି ପକାଇଲେ ହୁରି
ତକ୍ଷଣେ ସ୍ତିରୀ ରୂପକୁ ତେଜିଲେ ଶ୍ରୀହରି ।
ଗରୁଡ଼ ପିଠିରେ ପୁଣି ବସିଲେ ସେ ଯାଇ
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହୋଇ ।
ଶୂନ୍ୟଶୂର କର୍ଣ୍ଣକେତୁ ନାମ ଦୁଇବୀରେ
ଅମୁକ କାଳକେତୁ ଯେ ଉଭା ଧାଡିକାରେ ।
ମହାସୁର ମିହାସୁର ଯେଉଁ ଦୁଇ ବୀର
ସେହି ସ୍ଥାନରୁ ଉଠିଲେ ସକଳ ଅସୁର ।
କୋପଭରରେ ଉଠିଲା ବଳୀ ନରପତି
କରେ କୋଦଣ୍ଡ ଧରିଣ ପ୍ରଚଣ୍ଡ ମୂରତି ।
ଜୟ ହୃଦୟ ବୋଲିଣ ବେନି ଦୈତ୍ୟ ପୁଣି
ଚନ୍ଦ୍ର ଶିରା ଅଗ୍ନିନୀଳ ଉଠେ ଶିର ଝୁଣି ।
ଏହି ରୂପରେ ଅସୁର ଛନ୍ତି ଅପ୍ରମିତେ
ଏକ ଏକ ନାମ ଧରି କହିବି ମୁଁ କେତେ ।
ସମସ୍ତେ ଧରିଅଛନ୍ତି କରେ ଧନୁର୍ବାଣ
ଓଗାଳନ୍ତି ବେଦବ୍ରହ୍ମା କଶ୍ୟପ ଯାଇଣ ।
କହନ୍ତି ସେ ବେନିଜନ ଆମ୍ଭ ବୋଲକର
ନାରାୟଣଙ୍କ ସଙ୍ଗରେ ନ କର ସମର ।
ଆପଣା ଆପଣେ କିମ୍ପା ହେବା ମରାମରି
ଏହା ବିଚାରିଣ ରୁହ ଶାନ୍ତ ମନ ଧରି ।
ଅସୁର ବୋଲନ୍ତି ଶୁଣି ନ ମାନୁ ତୁମ୍ଭଙ୍କୁ
ସବୁକାଳେ ହୀନିମାନ କରୁଛ ଆମ୍ଭଙ୍କୁ ।
ରତ୍ନଯାକ ନେଇ ପୁଣ ଅମୃତ ଖାଇଲ
ଏତେ କହି ପେଲିଦେଲେ ତାଙ୍କୁ ଦୈତ୍ୟ ପଲ
ମାରିବୁ ତାହାଙ୍କୁ ସେହୁ ଆମ୍ଭର ବଇରୀ
ଘୁଞ୍ଚିଲେ କାଶ୍ୟପ ବ୍ରହ୍ମ ତହୁଁ ବେଗ କରି ।
ନାରାୟଣ ଉପରକୁ ଧାଇଁଲେ ଅସୁରେ
ନାନା ଅସ୍ତ୍ର ଧରିଛନ୍ତି ଆପଣା କରରେ ।
ଶ୍ରୀହରିଙ୍କ ଉପରକୁ ପ୍ରହାରିଲେ ନେଇ
ଦେଖିକରି ଦେବ ସୈନ୍ୟ ପଡ଼ିଲେ ଯେ ଧାଇଁ ।
ରହ ରହ ବୋଲି ଡାକ ଦ୍ୟନ୍ତି ସର୍ବ ସୁର
ସମର ନ କର ଆହେ କ୍ରୋଧ ଶାନ୍ତକର ।
ନଶୁଣନ୍ତି ସେ ଅସୁରେ ଦେବତାଙ୍କ ବାଣୀ
ପେଷିଲେ ବାଣ ତୁଷାର ବୃଷ୍ଟି ପରମାଣି ।



ଦେବତାଙ୍କ ଯୁଦ୍ଧ

ଝଟକେ ନାରାଚମାନ ବିଜୁଳିର କାନ୍ତି
ଶାରଙ୍ଗ ଧନୁକୁ କୋପେ ଧଇଲେ ଶ୍ରୀପତି ।
ପ୍ରତି ଶରରେ ଛେଦନ୍ତି ପ୍ରଭୁ ଭଗବାନ
ଗରୁଡ଼ର ଦେହେ ଥୋକେ ହେଉଛନ୍ତି ଚୂର୍ଣ୍ଣ ।
ବେଳକୁ ବେଳ ସମର ହୋଇଲାକ ବଢ଼ି
ସର୍ବେ ଧନୁଷ୍ୱୀ ଅଟନ୍ତି ଧନୁର୍ବିଦ୍ୟା ପଢ଼ି ।
ସକଳ ନବ ଯୌବନ ଦେବତା ଅସୁର
ବ୍ରହ୍ମାଣ୍ଡ ଭିତରେ ଏହା ପ୍ରଥମ ସମର ।
ନାରାୟଣଙ୍କୁ ବେଢ଼ିଣ ମାରନ୍ତେ ଦଇତା
ତାହା ଦେଖି ମହାକୋପ କରିଲେ ଦେବତା ।

ଇନ୍ଦ୍ର ବରୁଣ କୁବେର ଯମ ନଇରତ
ହୁତାଶନ ଚନ୍ଦ୍ର ସୂର୍ଯ୍ୟ ଆବର ମରୁତ ।
ତେତ୍ରିଶ କୋଟି ଦେବତା ଗଲେ ଅସ୍ତ୍ର ଧରି
ନାଗଗଣ ସହିତରେ ସମର ଆବୋରି ।
ଧନୁ ଧରିଣ ବାଣକୁ ମାରନ୍ତି ଆକର୍ଷି
ରେରେକାର ଶବଦରେ ସମରରେ ପଶି ।
ସୋମାସୁର ବଜ୍ର ବାଣ ହିରଣ୍ୟକ ବୀର
ସୁବୀରା ବୀର ଏମନ୍ତେ ସବୁ ସହୋଦର ।
ବିକଟ ନାଭି ତ୍ରିମୁଖା ସୁକାନ୍ତି ଦଇତ
ବୀଇଭକ୍ଷ୍ୟ ଅଗ୍ନି ବାହୁ ବିଭବ ତ୍ରିନେତ୍ର ।

ଧାମନ୍ତି ବୀରେ କମ୍ପାଇ ଦେଇ ବସୁନ୍ଧରୀ
ମୁଖରାବ ଶବଦରେ ସ୍ଥାନ ଅଛି ପୂରି ।
ହସ୍ତୀ ଘୋଡ଼ା ରଥ ସବୁ ଦିଶେ ପନ୍ତି ପନ୍ତି
ଗଦା ମୁଦ୍‌ଗର ଖଡ଼ଗ ପର୍ଶୁ ବିରାଜନ୍ତି ।
ଚକ୍ରକାତି ଭାଲ ଆର୍ଦ୍ରାବଳି ସମ ଧନୁ
ସିନ୍ଧୁ ଢେଉ ପ୍ରାୟେ ଧାଇଁ କମ୍ପାନ୍ତି ସେ ତନୁ ।
ବାଜେ ବାଦ୍ୟ ଦୁନ୍ଦୁଭି ଯେ ଆବର ମର୍ଦ୍ଦଳ
ଶଙ୍ଖ କାହାଳୀ ଶବଦେ ମେଦିନୀ ଚହଳ ।
ମଣିମୟ ମୁକୁଟାଦି ଶିରରେ ଭୂଷଣ
ନାନାରଙ୍ଗେ ଦେହ ଦିଶେ ପିଙ୍ଗଳାଗ୍ନି ବର୍ଣ୍ଣ ।
ଘୋଡ଼ାହାତୀ ସୈନ୍ୟଙ୍କର ଭୟଙ୍କର ନାଦ
ନକ୍ଷତ୍ର ମଣ୍ଡଳେ ଯାଇ ବିଶ୍ରାମେ ଶବଦ ।
ପରଶୁ ଖଣ୍ଡା ବେନିରୁ ଅଗ୍ନି ଝଲକନ୍ତି
ଦେବ ଅସୁର ମିଶିଣ ସମର କରନ୍ତି ।
ପ୍ରହାରନ୍ତି ଗଦାବର ନିର୍ଘାତକୁ ଜାଣି
ପେଶନ୍ତି ଶର ବରଷା ଧାରା ପରିମାଣି ।
ମାର ମାର ହାଣ ହାଣ ଶୁଭେ ଚଉପାଶ
ଦେବତାଙ୍କ ମାରଣିରେ ପଡ଼ନ୍ତି ରାକ୍ଷସ ।
ମୁଦ୍‌ଗର ଭୂଷଣ୍ଡ ତହିଁ ପଡ଼େ କୋଟି କୋଟି
କ୍ଷଣେ କୋପେ କରନ୍ତି ସେ ବହୁ ଅଗ୍ନିବୃଷ୍ଟି ।
କ୍ଷଣକେ ମାୟା ମେଘରେ ଘୋଟନ୍ତି ଦଇତ
ପବନ ଶରେ ଉଡ଼ାନ୍ତି ତାକୁ ଦଇବତ ।
ପୁଣି ଆକାଶୁ ପାଷାଣ ବରଷା କରନ୍ତି
ଦେବତାଙ୍କ ମୁଣ୍ଡେ ବାଜି ଘୁମାଇ ପଡ଼ନ୍ତି ।
ଘଡ଼ଘଡ଼ି ଚଡ଼ଚଡ଼ି ହୁଏ ଘନ ଘନ
ଦଶଦିଗ ଅନ୍ଧକାର ଉଲୁକା ପତନ ।
ପବନା ଶରରେ ଇନ୍ଦ୍ର ଉଡ଼ାଇଲେ ତାହା
କୋପେ ବଜ୍ର ପ୍ରହାରିଲେ ପୁଣି ନରନାହା ।
ତ୍ରିକୋଟି ସୈନ୍ୟ ପଡ଼ିଲେ ବଜ୍ରର ଆଘାତେ
ହସ୍ତୀ ଘୋଡ଼ା ରଥ ଆଦି ନିପାତ ସମସ୍ତେ ।
ଛତ୍ର ଚିରାଳ ହୋଇଲା ତହିଁ ଖଣ୍ଡ ଖଣ୍ଡ
ବରୁଣ କୁବେରଙ୍କର ପ୍ରହାରେ ପ୍ରଚଣ୍ଡ ।
ଏକଗୋଟି ଅସ୍ତ୍ରାଘାତେ ସହସ୍ର ଛେଦନ୍ତି
ଚକ୍ର କୁନ୍ତ ଖଡ଼ଗରେ ସବୁ ନିପାତନ୍ତି ।
ନାଚନ୍ତି କବନ୍ଧ ବହେ ରକତର ନଈ
ସମୁଦ୍ର ଜଳେ ପଶନ୍ତେ ସୁରଙ୍ଗ ଦିଶଇ ।
ରଥ ଗଜ ଅଶ୍ୱମଡ଼ା ତହିଁରେ ଭାସନ୍ତି
ରକ୍ତେ ଜର ଜର ହୋଇ ସମୁଦ୍ରେ ପଶନ୍ତି ।
କ୍ଷୀର ସିନ୍ଧୁ ନିକଟରେ ରଣ ମହାଘୋର
ଦେବତା ଲୋକେ ମାରନ୍ତି ମରନ୍ତି ଅସୁର ।
ଅସୁରମାନେ କୋପରେ ନାନା ଅସ୍ତ୍ର ଘେନି
ଧାମନ୍ତେ ପାଦଘାତରେ କମ୍ପଇ ମେଦିନୀ ।
ଦେବତାମାନଙ୍କ ଅଙ୍ଗେ ପ୍ରହାରନ୍ତି ନେଇ
ଢଳି ପଡ଼ନ୍ତି ବିଷମ ଆଘାତ ସେ ପାଇ ।
ଗଡ଼ନ୍ତି ପଡ଼ନ୍ତି ପୁଣି ଧରନ୍ତି ଯେ ବୀର
ମାଲଯୁଦ୍ଧ କରନ୍ତି ସେ ରକତ ଉପର ।
ବିମ୍ୱଫଳ ପରକାରେ ଦିଶେ ଦେହଗୋଟି
କେ ମାଲଯୁଦ୍ଧରେ ମୁଣ୍ଡ ମୋଡନ୍ତି ତରାଟି ।
ଦେବଙ୍କ ହସ୍ତେ ନିପାତ ହୋନ୍ତି ଦୈତ୍ୟଗଣେ
ଭୁଜ ଅଣ୍ଟା ଛିଡ଼ିଯାଏ ସୁତୀକ୍ଷଣ ମାର୍ଗଣେ ।
ଜାନୁ ଛିଡ଼ିଲା କାହାର ହୃଦ ଗଲା ଫୁଟି
କୋଟି ଦାନବ ପଡ଼ିଲେ ତହିଁ ମହୀ ଲୋଟି ।
ରଣ ଝଣ ହୋଇ ଖଡ଼୍‌ଗ ପଡ଼େ ଚଉପାଶେ
ଗହ ଗହ ଶବଦରେ ପୂରଇ ଆକାଶେ ।
ସୈନ୍ୟହତ ଦେଖିକରି ସୋମାସୁର ବୀର
ଇନ୍ଦ୍ରର ଆଗେ ନେଇଣ ଟେକେ ରହୁବର ।
ନାନାରଙ୍ଗେ ଦେହ ତାର ଦିଶେ ଦାଉ ଦାଉ
ପାଦରେ ତୋଡ଼ର ତାର ଭୁଜେ ବୀରବାହୁ ।
ଇନ୍ଦ୍ରଙ୍କୁ ଚାହିଁ ବୋଲଇ ଯିବୁ ଆଜି କାହିଁ
ସୁଧା ଖାଇବା ବାହାର କରିବି ମୁଁ ଭାଇ ।
ମଘବା ବୋଇଲେ ସୁରା ବାହାରିଲା ସବୁ
ଭାସୁଛି ରକତ ନ୍‌ ନ ଦେଖୁ କି ବାବୁ ।
ତୁହି ଏଥେ ନିଶ୍ଚେଁ ପଡ଼ି ଭାସିବୁରେ ଆଜ
ମୋ ଛାମୁରେ ନ ବର୍ତ୍ତିବୁ ମନେତୋର ହେଜ ।
ଦୁର୍ଭାର ବଚନେ କୋପ କଲା ସୋମାସୁର
ମଘବାଙ୍କୁ ଦଶବାଣ କରିଲା ପ୍ରହାର ।
ପୁଣିହିଁ ପ୍ରହାର କଲା ଅର୍ବୁଦେକ ବାଣ
ସିନ୍ଧୁଘୋଷ ପ୍ରାୟ ତାର ଗର୍ଜେ ଧନୁର୍ବାଣ ।
ବରଷାଋତୁ ପରାୟ ବରଷଇ ଶର
ବାର ବାର ତା ଛେଦନ୍ତି ଦେବ ଚକ୍ରଧର ।
ବଜ୍ରବାଣ କୁବେରଙ୍କ ସଙ୍ଗେ ରଣ କରି
ହିରଣ୍ୟହସ୍ତ ବରୁଣ ହେଲେ ମରାମରି ।

ସୁବୀରା ଯୁଦ୍ଧ କରଇ ଆସି ଯମ ସଙ୍ଗେ
ନୀର ନଇର୍ରତ ସଙ୍ଗେ ମାତେ ରଣରଙ୍ଗେ ।
ମଭିନ୍ନ୍ୟ ରୁଦ୍ରଙ୍କ ସଙ୍ଗେ କରେ ରଣଘୋର
ଚନ୍ଦ୍ରଶିରା କାଳକେତୁ ଅଗ୍ନିଙ୍କ ସଙ୍ଗର ।
ମହାସୁର ମିହାସୁର ଏହି ବେନି ଭାଇ
ଚନ୍ଦ୍ର ସୂର୍ଯ୍ୟଙ୍କ ସହିତ ସମର କରଇ ।
ବଳି ନାମେକ ଦଇତ ଦିତି ଗର୍ଭୁଜାତ
ରଣରେ ଦିଶଇ ସେହୁ ଧୂମକେତୁ ବତ ।
ସବୁ ରାକ୍ଷସ ନକ୍ଷତ୍ର ପରାୟେକ ଜ୍ୟୋତି
ଚନ୍ଦ୍ରମା ପରାୟେ ତାଙ୍କ ବିରାଜଇ କାନ୍ତି ।
ଆର୍ଦ୍ରାବଳୀ ସମାନରେ କରେ ଅଛି ଧନୁ
ରତ୍ନେ ଦାଉ ଦାଉ ହୋଇ ବିରାଜଇ ତନୁ ।
ନବ ରତ୍ନେ ରଥ ତାର ହୋଇଛି ନିର୍ମିତ
ଜ୍ୟୋତି ପ୍ରକାଶଇ ସେହୁ ଲକ୍ଷେଯୁଣ ପଥ ।
ବାହାରଇ ରହୁବର କରି ଶଙ୍ଖଧ୍ୱନି
ନାରାୟଣଙ୍କୁ ବେଢ଼ିଣ ମାରନ୍ତି ସଇନି ।
ଗଦା ଭୂଷଣ୍ଡି ନାରାଚ ଯେହୁ ଜ୍ୱାଳାବଳି
ଝଲକଇ ସେ ନାରାଚ ମିଥୁନ ବିଜୁଳି ।
ଅସ୍ତ୍ର ବର୍ଷନ୍ତେ ଅନ୍ଧାର ହେଲା ଦଶଦିଶ
ସିଂହନାଦ କରି ଅସ୍ତ୍ର ପେଷନ୍ତି ରାକ୍ଷସ ।
ଝଲକାନ୍ତି ଲାଙ୍କିଆଳି ପର୍ଶୁଦାଉ ଦାଉ
ପେଷନ୍ତେ ଅସ୍ତ୍ରମାନଙ୍କୁ ଜଳେ ଦାଉ ଦାଉ ।
ଗରୁଡ଼ ଦେହେଁ କେତେକ ହୋଇଯାଏ ଚୂର୍ଣ୍ଣ
ଦିବ୍ୟ ଅସ୍ତରେ ଛେଦନ୍ତି କିଛି ଭଗବାନ ।
ହାକ ଡାକ ଶବ୍ଦ ପୁଣି ଅସ୍ତ୍ର ମହାତେଜୀ
ଏମାନଙ୍କ ସକାଶୁ କି ପୃଥ୍ୱୀ ଯିବ ଭାଜି ।
ରଥଟେକି ବଳି ବୋଲେ ଶୁଣ ହେ ଅଚ୍ୟୁତ
ଆଜି ତୁମ୍ଭ ପ୍ରାଣ ନିଶ୍ଚେ ଅଛି ମୋର ହସ୍ତ ।
କାଶ୍ୟପର ସୁତ ଆମ୍ଭେ ଦିତିଗର୍ଭୁ ଜାତ
ଆମ୍ଭଙ୍କୁ ତ ସୁରାପାନ ଦେଲୁ ଜଗନ୍ନାଥ ।
ପିତା କଶ୍ୟପ ଆମ୍ଭର ଛନ୍ତି ସଭାମଧ
ବିନାଦୋଷେ ରାହୁର ତୁ କଲୁ ଶିରଚ୍ଛେଦ ।
କଶ୍ୟପ ମୁଖକୁ ତୁହି ଉପ୍ରୋଧ ନ କରୁ
ଆମ୍ଭଙ୍କୁ ସର୍ବକାଳରେ ଅହଙ୍କାର ଧରୁ ।
ବ୍ରାହ୍ମଣକୁଳରେ ଜାତ ଧର୍ମଶାସ୍ତ୍ର ଜାଣୁ
ବେଦବିଦ୍ୟା ନିଗମର ଶାସ୍ତ୍ରକୁ ବଖାଣୁ ।
ମନ୍ତ୍ର ଯନ୍ତ୍ର ଆଦି ଜାଣୁ ଯେଉଁ ଅଗ୍ନିହୋତ୍ରେ
ଆମ୍ଭଠାରେ ଅହଙ୍କାର କିମ୍ପା ତୋର ଏତେ ।
ଦେବହସ୍ତେ ମରାଇଲୁ ଏ ଦୈତ୍ୟମାନଙ୍କୁ
ସୋଦରର ବଧ ପାପ ଲାଗିଲା ତୁମ୍ଭଙ୍କୁ ।
ଜଗତର ପ୍ରଭୁ ହୋଇ ତୋ ଅଧର୍ମ ବଡ଼
ଅହଙ୍କାରେ ଭ୍ରଷ୍ଟ କରୁ ଆମ୍ଭଙ୍କୁରେ ମୂଢ଼ ।
କାଶ୍ୟପର ସୁତ ଆମ୍ଭେ ଜାତିରେ ବ୍ରାହ୍ମଣ
ମଦ୍ୟପାନ ଦେଇ କଲୁ ଧର୍ମ ଅକାରଣ ।
କଶ୍ୟପ ପରାୟେ ମୁହିଁ ଘେନିଥାଇଁ ତୋତେ
ମୋତେ ମଦ୍ୟପାନ ଦେଲୁ ତୁହି ବା କେମନ୍ତେ
ପିତା ଛାଡ଼ି ଆଗେ ତୋତେ କରଇ ବନ୍ଦନ
ଅନ୍ୟ କଥାମାନ ଘେନି ନଥିଲି ମୁଁ ମନ ।
ଅଶ୍ୱ ହସ୍ତୀ ରଥ ନାରୀ ଆଦିକରି ଯେତେ
ଏହା ସବୁ ନେଲୁ କିଛି ବୋଇଲି କି ତୋତେ ।
ସେହି ଉପରୋଧ ମୋରେ ରଖିଲୁ କି ହରି
ଅକାରଣେ ସୋଦରଙ୍କୁ ପକାଇଲୁ ମାରି ।
ସୁରା ଯେବେ ଜାତ ହେଲା ସମସ୍ତେ ଭୁଞ୍ଜନ୍ତେ
ମନ୍ଦ ବୋଲି ଆମ୍ଭଙ୍କୁ ତୁ ଅର୍ପିଲୁ କେମନ୍ତେ ।
ସର୍ବେ ଭୁଞ୍ଜିଥିଲେ କାହିଁ ହୁଅନ୍ତା ବାଛିତ
ଆମ୍ଭଙ୍କୁ ତୁ ଏକା ଦେଲୁ ହୋଇଲୁ ପତିତ ।
ବିଶ୍ୱାସର କଥା ଆଉ ନ କହିଲୁ ମନ
ଭାଇ ଭାଇରେ କରିଲୁ ସିନା ମନ୍ଦମାନ ।
ଏହି ଅପମାନେ ତୋର ଛେଦିବଇଁ କନ୍ଧ
ସୁରାପାନ ଦିଆଇ ତୁ ଭିଆଇଲୁ ଦ୍ୱନ୍ଦ ।
ଶୁଣି ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ବଳୀ ବୀର
ବେଦବାକ୍ୟ ଅନୁକ୍ରମେ ଯେଉଁ କଥା ସାର ।
ଯେହୁ ଯେଡ଼େଭଳି ଲୋକ ତେଡ଼େ କାର୍ଯ୍ୟେ ଥିବ
ବଡ଼ କାର୍ଯ୍ୟକୁ ଗଲେ ସେ କାହୁଁ ବା ପାରିବ ।
ଚାରିବେଦ କହୁଅଛି ତୁମ୍ଭ ସୁରାପାନ
ଦେବତା ଅମୃତ ସିନା କରନ୍ତି ଭୋଜନ ।
ତା ଯେବେ ପାଇଲ ତେବେ ଥାନ୍ତୁ ତୁନୀ ହୋଇ
ବଡ଼ କଥାକୁ ଖୋଜିଲେ ତା ପାଇବ କାହିଁ ।
ଅମୃତ ଖାଇବାକୁ ଯେ ସର୍ବେ ଲୋଭ କଲ
ତୁମ୍ଭରି ଇଚ୍ଛାରେ ସିନା ତୁମ୍ଭେମାନେ ମଲ ।
ତୁମ୍ଭର ଖାଦ୍ୟକୁ ଖାଇ ତୁମ୍ଭେ ସୁଖେ ଥାନ୍ତ
ଦେବତାମାନଙ୍କ ସଙ୍ଗେ ଆନନ୍ଦେ ବୁଲନ୍ତ ।

ଏବେ ସିନା ତୁମ୍ଭ ଦୋଷେ ତୁମ୍ଭେଗଲ ନାଶ
ଏଥି ପାଇଁକି ଆମ୍ଭଙ୍କୁ କିମ୍ପା ହେବ ଦୋଷ ।
ତୁମ୍ଭେ ଆସି ଲଗାଇଲ ସିନା କଳିମାନ
ଉପ୍ରୋଧ ଛାଡ଼ି ମାଇଲ ଦେବତା ସଇନ୍ୟ ।
ସୃଷ୍ଟି ଆତଯାତ ଏବେ ହେଲାଣି ବହୁତ
ଦିତିଗର୍ଭୁ ତୁମ୍ଭେମାନେ ହୋଇଅଛ ଜାତ ।
ଏମନ୍ତେ ସମୁଦ୍ର ମନ୍ଥା ହେଲାଣି ଅପାର
ସବୁକାଳେ ତୁମ୍ଭେମାନେ ହୁଅ ନାରଖାର ।
ଗତାଗତ କର୍ମଦୋଷ ଜନ୍ମହିଁ ନ ଜାଣ
ବେଦପରା ଜାଣ କିମ୍ପା ହେଉଅଛ କାଣ ।
ତୁମ୍ଭ ଗୁଣମାନଙ୍କୁ ତ କହୁଅଛି ବେଦ
ସବୁକାଳେ ଦୈତ୍ୟଙ୍କର ହୁଏ ଶିରଚ୍ଛେଦ ।
ତୁମ୍ଭଙ୍କୁ ତ ତୁମ୍ଭ ଜନ୍ମ ଅଗୋଚର ବାବୁ
ଅନେକ ଜନ୍ମ ତୁମ୍ଭର ଜାଣଇଁ ମୁଁ ସବୁ ।
ସବୁକାଳରେ ତୁମ୍ଭର ପ୍ରାଣ ରହି ନାହିଁ
ଏବେ ସକଳେ ବଞ୍ଚିବ ତୁମ୍ଭେ ଅବା କାହିଁ ।
ଗତାଗତ ଦୋଷେ ଗଲ ତୁମ୍ଭେ ସିନା ନାଶ
ସମୁଦ୍ର ମନ୍ଥା ତୁମ୍ଭଙ୍କୁ ହେଲା କାଳପାଶ ।
ଗତାଗତ କାଳେ କଲା କର୍ମଗୁଣ ମାନ
ସବୁକାଳେ ତୁମ୍ଭ ଜନ୍ମ ଅଟଇ ଯେ ହୀନ ।
ଏଠାବରେ ସୁରାପାନ କଲ ସିନା ଗ୍ରାସେ
ଆଉ ଅବା କି ଖାଇବ ଜନ୍ମହୀନ ଦୋଷେ ।
ବଡ଼ଲୋକ ବୋଲି କେତେ ହେଉଅଛ ଟାଣି
କାଶ୍ୟପକୁଳେ ଜନ୍ମ କି ବଡ଼ ବୋଲୁ ପୁଣି ।
ଜାତିରେ ଅସୁର ତୁମ୍ଭେ ଅଟ ଦୁଷ୍ଟମତି
ତୁମ୍ଭଙ୍କୁ ମାରି ଉଶ୍ୱାସ କରିବଇଁ ପୃଥ୍ୱୀ ।
ଆରେ ବଳୀ ଆଜି ପ୍ରାଣ ନ ପାଇବୁ ତୁହି
ଶୁଣି ବଳୀଶିର ଝୁଣି ଉଠେ କୋପ ହୋଇ ।
ସହସ୍ରେ ବାଣ ପେଷିଲା ଅତି କୋପଭରେ
ନାରାୟଣ ଛେଦିଦେଲେ ତାହା ପ୍ରତି ଶରେ ।
ପୁନଃ ପୁନଃ ନାରାଚକୁ ପେଷେ କୋଟିକୋଟି
ଅଗ୍ନିବାଣ ପେଷି ଅଗ୍ନି କରଇ ଯେ ବୃଷ୍ଟି ।
ଜଳଧାରା ଅସ୍ତ୍ରେ ତାହା ନିବାରିଲେ ହରି
ତାହା ଦେଖି କୋପେ ବଳୀ ମାୟା ଘୋରକରି ।
କୁହୁକରେ ଦଶ ଦିଶ କଲା ଅନ୍ଧକାର
ଘଡ଼ଘଡ଼ି ବିଜୁଳି ଯେ ବରଷେ ପଥର ।

କ୍ଷଣକେ ଭୂମିରେ କ୍ଷଣେ ଗଗନେ ଲୁଚଇ
କ୍ଷଣକେ ନାରାୟଣଙ୍କୁ ଅସ୍ତ୍ର ପ୍ରହାରଇ ।
ଗଦା ମୁଦ୍‌ଗର ଭୂଷଣ୍ଡୀ ଅଗ୍ନି ଅସ୍ତ୍ରମାନ
ଉଲ୍‌କାପାତ ପରକାରେ କମ୍ପେ ତ୍ରିଭୁବନ ।
କ୍ଷଣକେ ପବନ କ୍ଷଣେ ବରଷଇ ପାଣି
କ୍ଷଣକେ ଦାବା ଅନଳ ନିଦାଘକୁ ଜାଣି ।
ଦେଖିଣ କୁପିତ ହେଲେ ପ୍ରଭୁ ପଦ୍ମନେତ୍ର
ପବନ ଅସ୍ତ୍ରେ ଉଡ଼ାଇ ଦେଲେ ଯେ ସମସ୍ତ ।
ଇନ୍ଦ୍ର ସୋମାସୁରଙ୍କର ରଣ ମହାଘୋର
ମୁଷଳ ପରମାଣରେ ପଡ଼େ ଦିବ୍ୟଶର ।
କୋପେ ଇନ୍ଦ୍ର ପ୍ରହାରିଲେ କରେ ବଜ୍ର ଧରି
ନିର୍ଘାତ ପ୍ରାୟେ ଶବଦ କମ୍ପେ ବସୁନ୍ଧରୀ ।
ସୋମାସୁର ହତହେଲା ଅଙ୍ଗେ ବଜ୍ରବାଜି
ସିଂହନାଦ କଲେ ଇନ୍ଦ୍ର ହୋଇ ମହାତେଜି ।
କୁବେରଙ୍କ ଶୂଳାଘାତେ ବଜ୍ରବାଣେ ମଲା
ବରୁଣ ଚକ୍ରେ ହିରଣ୍ୟ ହସ୍ତେ ନାଶ ଗଲା ।
ଅହୋବଳ ସଂଗ୍ରାମ ଯେ କଲେ ମହାଘୋର
କେହି ତ ପର ନୁହନ୍ତି ସବୁ ସହୋଦର ।
ଉପ୍ରୋଧ ଛାଡ଼ି ସେମାନେ ହେଲେ ଅନ୍ୟୋଅନି
ଅହଙ୍କାରରେ ବୈମାତ୍ରୀ ହିଂସା ଗୁଣ ଘେନି ।
ଅମୃତ ଖାଇ ଦେବତା ହୋଇଛନ୍ତି ବଳି
ଅସୁର ସୈନ୍ୟମାନଙ୍କୁ ପକାଇଲେ ଦଳି ।
ସୁବୀରା ହତ ହୋଇଲା ଶମନର ବାଣେ
ଏହି ରୂପେ ସର୍ବେ ହତ ହୋଇଗଲେ ରଣେ ।
ଇନ୍ଦ୍ର ଦେବତା ସମରେ ମାଇଲେ ଅପାର
ବଜ୍ର ଧରି ଦଇତକୁ କରିଣ ପ୍ରହାର ।
ସମସ୍ତେ ରକତ ପ୍ରାୟ ସୁରଙ୍ଗିତ ଦେହ
ଖେଚର ମୁଣ୍ଡେ ହସନ୍ତି ହୋଇ ଟହ ଟହ ।
ଅପୂର୍ବ ଦେଖିଣ ଲୋକେ ତାଙ୍କୁ ଛନ୍ତି ଚାହିଁ
ପୂର୍ବରେ ଯୁଦ୍ଧ ନଥିଲା ସେ ଦେଖିବେ କାହିଁ ।
ଚକିତ ହୋଇ ଅଛନ୍ତି ଏହି ଯୁଦ୍ଧ ଦେଖି
କବନ୍ଧମାନଙ୍କ ନୃତ୍ୟ ଚାହାଁନ୍ତି ନିରେଖି ।
ମୁଣ୍ଡ ନାହିଁ ଗଣ୍ଡି ନାଚେ ଅତି ଘନ ଘନ
ଦେବତା କରନ୍ତି ରଣ ହୋଇ ଏକମନ ।
ଯମ କୁବେର ବରୁଣ ପୁଣି ନଇର୍ଋତ
ଏହାଙ୍କର ବାଣାଘାତେ ପଡ଼ିଗଲେ ଦୈତ୍ୟ ।

ଦେବାସୁର ବେନିକୁଳ କାଶ୍ୟପଙ୍କ ସୁତ
ମଦିରା ରସେ ଦଇତେ ହୋଇଛନ୍ତି ମତ୍ତ ।
ଦୈତ୍ୟମାନଙ୍କ ପ୍ରବଳ ଦେଖି ନାରାୟଣ
ତକ୍ଷଣେ ସେ ପେଷିଦେଲେ ଚକ୍ର ସୁଦର୍ଶନ ।
କୋଟିଏ ଦୈତ୍ୟଙ୍କୁ ତହିଁ ପକାଇଲେ ହାଣି
ରକ୍ତ ବହିଗଲା ଯେହ୍ନେ ବରଷାର ପାଣି ।
ପୁଣି ସେହି ଚକ୍ର ଯାଇ ହସ୍ତରେ ଲାଗଇ
ପୁଣି ପ୍ରହାରନ୍ତେ ଦୈତ୍ୟ ସୈନ୍ୟ ବିନାଶଇ ।
ଘୋରଯୁଦ୍ଧ କରଇ ଯେ ବଳୀ ନୃପମଣି
ପେଷଇ ନାରାଚ ସବୁ ବୃଷ୍ଟିପାତ ଜାଣି ।
ଦଶଦିଗ ଅନ୍ଧକାର ଗୁଣର ଟଙ୍କାର
ଅସ୍ତ୍ର ଆତଯାତେ ନାଦ ଶୁଭେ ଭୟଙ୍କର ।
ସୁବର୍ଣ୍ଣ ରଥରେ ବସି ପେଷୁଅଛି ବାଣ
ପୁନଃ ପୁନଃ ଛେଦନ୍ତି ଯେ ତାକୁ ନାରାୟଣ ।
ସୁଦର୍ଶନ ଚକ୍ର ପ୍ରଭୁ ପେଷିଦେଲେ ରାଗେ
ଛିଡ଼ିଲା ଦଇତ ମୁଣ୍ଡ ପଡ଼େ ଭୂମି ଭାଗେ ।
ଦଇତ ସଇନ ଯହୁଁ ହୋଇଗଲେ ହତ
ବାକି ଯା ଥିଲେ ପଳାଇ ଲୁଚିଲେ ସମସ୍ତ ।
ଶଇଳଦେଶେ ପଶିଲେ ଭୟେ ସର୍ବେ ଯାଇ
ସମର ଭୂମିରେ ଦେବେ ଏକା ଛନ୍ତି ରହି ।
ଦଇତ ସଇନ ଯହୁଁ ହୋଇଗଲେ ହତ
ଦେଖିଣ ସନ୍ତୋଷ ହେଲେ ଦେବତା ସମସ୍ତ ।
ନାରାୟଣଙ୍କୁ ବହୁତ ସ୍ତୁତିବାଦ କଲେ
ଦେବେ ଦଇତାରି ବୋଲି ଏକନାମ ଦେଲେ ।
ସରଳ ରତ୍ନାଦି ହାରଘେନି ଦେବଗଣ
ବାସୁକିକୁ ବୋଇଲେ ତୁ ଯା ନିଜ ଭୁବନ ।
ଦେବଙ୍କ ବାକ୍ୟେ ସନ୍ତୋଷ ହୋଇ ଫଣୀବର
ସୈନ୍ୟଘେନି ପ୍ରବେଶିଲା ଯାଇ ନିଜପୁର ।
ତାହାର ଯେବଣ କାର୍ଯ୍ୟ ରହିଲା ତହିଁରେ
ନିଜାସନେ ବସି ପୃଥ୍ୱୀ ଧଇଲା ଶିରରେ ।
କୂର୍ମ ରୂପରେ ପୃଥିବୀ ଧରିଥିଲେ ହରି
ନିଜ କଳେବରେ ତାଙ୍କୁ ରଖିଲେ ସଂହାରି ।
ଏଥୁ ଅନନ୍ତରେ ପୁଣି ଶୁଣ ନରରାଣ
ପ୍ରବେଶ ହୋଇଲେ ଦେବେ ସ୍ୱର୍ଗରେ ଯାଇଣ ।
ସକଳ ରତ୍ନମାନଙ୍କୁ ଘେନି ସର୍ବ ସୁରେ
ବାସୁକିକୁ ବିଦାକଲେ ତାର ନିଜପୁରେ ।
ଏକଗୋଷ୍ଠୀ ହୋଇକରି ବସିଲେ ସମସ୍ତେ
ଦୈତ୍ୟ ମରିବା ବିଚାର କରନ୍ତି ଦୈବତେ ।
ବ୍ରହ୍ମାଙ୍କୁ ଚାହିଁ ବୋଲନ୍ତି ପ୍ରଭୁ ନାରାୟଣ
ଦୈତ୍ୟମାନେ ଆଗେ ଦ୍ୱନ୍ଦ୍ୱ କରିଲେ ଭିଆଣ ।
ବ୍ରହ୍ମା ବୋଇଲେ ଏକାର୍ଯ୍ୟେ ଅକାର୍ଯ୍ୟ ହୋଇଲା
ଅଦ୍‌ଭୂତେ ଏଡ଼େ ଦ୍ୱନ୍ଦ୍ୱ ଆସି ଉପୁଜିଲା ।
କାଶ୍ୟପମହାମୁନି ଯେ କଲେ ମନଦୁଃଖ
ସଭାକୁ ସେ ନ ଅଇଲେ ଶୁଖାଇଲେ ମୁଖ ।
ନ ପୁଣ ଦେବତାଙ୍କୁ ସେ ଶାପଦେଲେ ମୁନି
ଏମନ୍ତ ଜାଣି ବୋଲନ୍ତି ଦେବ ଚକ୍ରପାଣି ।
ଆମ୍ଭେ ଆଗେ ତାଙ୍କ ସଙ୍ଗେ କରିନାହୁଁ ଦ୍ୱନ୍ଦ୍ୱ
ସେହୁ କଳି ଭିଆଇଲେ ଦୈତ୍ୟଜାତି ମନ୍ଦ ।
ଆଗକରି ଅସ୍ତ୍ରଧରି ଆମ୍ଭଙ୍କୁ ମାଇଲେ
ସେ କାଶ୍ୟପ ମୁନି ତେବେ ଆଉ କି ବୁଝିଲେ ।
ସେହୁ ତ ସବୁ ଦେଖିଛି ସେଠାବରେ ରହି
ଯାର ଦୁଷ୍ଟପଣ ଯାହା ସେ କି ଦେଖିନାହିଁ ।
ଦେବତାଏ ତ ତାହାର ଅଟନ୍ତି କୁମର
ଦିଅ ଅବା ଶାପଦେବେ କ୍ରୋଧ ନାହିଁ ତାର ।
ତାହାର ଯେ ସବୁ ପୁତ୍ର ଅଟନ୍ତି ସମାନ
ଅସୁର ଦେବତା ଆଉ ଆମ୍ଭେମାନେ ପୁଣ ।
ତାହା ଶୁଣିଣ ମଉନ ହେଲେ ବେଦବର
ବଦନ୍ତି ବ୍ରହ୍ମା ପୁଣି ହିଁ ଶୁଣ ହେ କୁବେର ।
ରତ୍ନକୋଷ ତୋହମୂଳେ ଅଛି ଯେତେଯେତେ
ଦେବ ଭଣ୍ଡାରରେ ଥୁଅ ତାହାକୁ ତୁରିତେ ।
କୁବେର ସକଳ ରତ୍ନ ଘେନି ଚଳିଗଲା
ଦେବ ଭଣ୍ଡାରରେ ନେଇ ସେ ସବୁ ଥୋଇଲା ।
ଇନ୍ଦ୍ରଙ୍କୁ ଚାହିଁଣ ପୁଣି ବୋଲନ୍ତି ଯେ ବ୍ରହ୍ମା
ତୋହଠାରେ ଦେଇଅଛି ସେହି ଅଷ୍ଟବାମା ।
ଦେବତାଙ୍କ ନଟୀ ସେହୁ ଥାନ୍ତୁ ତୋର ତହିଁ
ତୁହି ଭୋଗ କରୁଥିବୁ ଆନ ନଟ ନାହିଁ ।
ତୁ ପୁଣି ତୋର ଇଚ୍ଛାରେ ଦେବୁଟି ଯାହାକୁ
ସେ ପୁଂସ ଭୋଗ କରିବ ତେବେଟି ଏହାକୁ ।
ତୋତେ ନ ବିଚାରି ସେହୁ ଗୁପତରେ ଯିବ
ଅଭିଶାପ ପାଇ ସେହୁ ନିଶ୍ଚେ ନାଶହେବ ।
ଦେବତାଙ୍କ ଗହଣରେ ଏ ଯୁବତୀ ଥିବେ
ଦେବଙ୍କ ସଭାମଧ୍ୟରେ ନୃତ୍ୟକାରୀ ହେବେ ।

ଶୁଣିଣ ସନ୍ତୋଷ ଚିତ୍ତ ହେବେ ଆଖଣ୍ଡଳ
ବୋଇଲେ ମୋ ମୂଳେ ଥାନ୍ତୁ ହୁଏ ସଦାକାଳ ।
ବ୍ରହ୍ମା ବୋଇଲେ ଅମୃତ ଯେତେ ଅଛି ପୁଣ
ଗୁପତ ସ୍ଥାନରେ ନେଇ ରଖ ସୁରରାଣ ।
କାଳେ ଯେଉଁ ପରକାରେ ନ ଜାଣିବେ କେହି
ହିରଣ୍ୟ ଗୁମ୍ଫାରେ ରଖ ଏ ସମସ୍ତ ନେଇ ।
ବ୍ରହ୍ମାଙ୍କର ଆଜ୍ଞା ପାଇ ଉଠି ସୁରପତି
ଅମୃତକୁ ବୁହାଇଣ ବେଗେ ଚଳିଯାନ୍ତି ।
ମେରୁ ଗୁମ୍ଫାର ଭିତରେ ତା ରଖିଲେ ନେଇ
ଚନ୍ଦ୍ର ସୂର୍ଯ୍ୟଙ୍କ କିରଣ ଯହିଁ ଯାଏ ନାହିଁ ।
ନିବିଡ଼ ଅନ୍ଧକାରରେ ଅଟଇ ବିବର
ଯୋଜନ ପରିଯନ୍ତରେ ରହେ ସୁଧାଧାର ।
ଅମୃତ ରଖି ବାସବ ଆସିଲେ ସତ୍ୱରେ
ବୋହିନେବା ବିଦ୍ୟାଧର ଅଛନ୍ତି ସଙ୍ଗରେ ।
ବିବରଦ୍ୱାରେ ଢାଙ୍କୁଣି ଦେଲେକ ଘୋଡ଼ାଇ
ଭୂମି ସମାନ ହୋଇଲା କିଛି ନ ଦିଶଇ ।
ଦାନବେ ନ ପାଇବେ ଯେ ଆଉ ତାର ଭେଦ
ସୁଧା ରହିଲା ସେଠାରେ ହୋଇ ଅପ୍ରମାଦ ।
ସେହିକ୍ଷଣି ଗନ୍ଧର୍ବୀଙ୍କୁ ଡାକି ସୁରପତି
ସୁଧା ଜଗିଥାଅ ବୋଲି ଦେଲେ ଅନୁମତି ।
ଇନ୍ଦ୍ର ଆଜ୍ଞାରେ ସକଳ ଗନ୍ଧର୍ବ ଜଗିଲେ
ଓଲଟ ପାଲଟ ହୋଇ କ୍ଷଣେ ନ ଛାଡ଼ିଲେ ।
ସେଠାବରୁ ଚଳିଗଲେ ଦେବ ପୁରୁହୂତ
ନନ୍ଦନବନେ ପୋତିଲେ ନେଇ ପାରିଜାତ ।
ମେଘକୁ ସେ ଆଜ୍ଞାଦେଲେ ରଖିବ ଘୋଡ଼ାଇ
ଝରଝର ବରଷିବ ଯେହ୍ନେ ନ ମରଇ ।
ବିଶ୍ୱକର୍ମା ବୃକ୍ଷମୂଳେ ବାନ୍ଧେ ରତ୍ନ ବେଦୀ
ରହିଲା ସେ ବୃକ୍ଷ ଗତାଗତର ପ୍ରସିଦ୍ଧି ।
ସେଠାରୁ ଚଳି ଆସନ୍ତି ବେଗେ ସୁରପତି
ସଭାରେ ଭେଟିଲେ ଆସି ବିଷ୍ଣୁ ପ୍ରଜାପତି ।
ଇନ୍ଦ୍ର କହିଲେ ଅମୃତ ରଖିବା ଚରିତ
ତାହା ଶୁଣିଣ ସନ୍ତୋଷ ହେଲେ ଚଉମାଥ ।
ଶ୍ରୀହରି ବୋଲନ୍ତି ତୁମ୍ଭେ ଶୁଣ ବେଦବର
ଏଥୁଁ ଏବେ ଚାଲଯିବା ମୋତେ ବିଭାକର
ତାହା ଶୁଣିଣ ଆନନ୍ଦହେଲେ ପ୍ରଜାପତି
ସର୍ବ ଦେବତାଏ ତହୁଁ ବୈକୁଣ୍ଠ ଚଳନ୍ତି ।

ଗରୁଡ଼ ପୃଷ୍ଠେ ଚଳିଲେ ପ୍ରଭୁ ନାରାୟଣ
ବ୍ରହ୍ମା ହଂସେ ରୁଦ୍ର ଗଲେ ବୃଷଭ ଶମନ ।
ଐରାବତ ଆରୋହିଣ ଗଲେ ମଘବାନ
ସ୍ୱବାହନେ ଚଳିଗଲେ ନୈଋତ ଶମନ ।
ବୈକୁଣ୍ଠ ଭୁବନେ ଯାଇ ପ୍ରବେଶ ହୋଇଲେ
ହୀରାମୟ ରତ୍ନଜ୍ୟୋତି ପୁରରେ ପଶିଲେ ।
ସେ ଗୃହରେ ଶତଦ୍ୱାର ଶୋଭିତ ଦିଶଇ
ପୋହଳାର ବନ୍ଧ ସିନା କବାଟେ ଅଟଇ ।
ନାଗବନ୍ଧମାନେ ତହିଁ ନୀଳାରେ ନିର୍ମାଣ
ଗୁଞ୍ଜା ମାଣିକ୍ୟ ତହିଁରେ ହୋଇଛି ରସାଣ ।
ସେହି ମଣିମୟ ଗୃହେ ପ୍ରବେଶ ହୁଅନ୍ତି
ଦେଖନ୍ତି ସେହି ପୁରକୁ ଚନ୍ଦ୍ର ସୂର୍ଯ୍ୟଜ୍ୟୋତି ।
ବିଷ୍ଣୁଗଣ ରହିଛନ୍ତି ଜଗି ସେଠାବରେ
ସେ ଗୃହାସନେ ବସିଲେ ଯାଇ ସର୍ବସୁରେ ।
ସୁବର୍ଣ୍ଣ ଗୃହରେ ହରି ପ୍ରବେଶ ହୋଇଲେ
ସରସ୍ୱତୀଙ୍କ ଆଗରେ ଦାସୀଏ କହିଲେ ।
ଭୋ ମାତଃ ଗୃହେ ପ୍ରବେଶ ହେଲେ ନାରାୟଣ
ଗୋଟିଏ ଯୁବତୀ ସଙ୍ଗେ ରହିଅଛି ଜାଣ ।
ବାର୍ତ୍ତା ପାଇ ସରସ୍ୱତୀ ପାଛୋଟି ଅଇଲେ
ନାରାୟଣଙ୍କୁ ଆସିଣ ଦର୍ଶନ କରିଲେ ।
ଦେବୀ ପୁଛିଲେ ପାଇଲ ଏହାଙ୍କୁ କେମନ୍ତ
ହରି ବୋଇଲେ ସମୁଦ୍ର ମନ୍ଥନରୁ ଜାତ ।
ଗରୁଡ଼ ପିଠିରେ ତାଙ୍କୁ ଆଣିଲୁ ବସାଇ
ଆମ୍ଭ ସିଂହଦ୍ୱାରୁ ତାଙ୍କୁ ଆଣିଲୁଁ ଚଲାଇ ।
ଆମ୍ଭର ସଭା ଗୃହରେ ଛନ୍ତି ଦେବଗଣ
ଯାନ ବାହନ ତାଙ୍କର ଅଛି ସଙ୍ଗତେଣ ।
ବିଭା କରିବାକୁ ତହିଁ ଛନ୍ତି ପ୍ରଜାପତି
ରୁଦ୍ର ଇନ୍ଦ୍ର ବୈଶ୍ୱାନର ସକଳେ ଅଛନ୍ତି ।
ତାହା ଶୁଣି ସରସ୍ୱତୀ ସନ୍ତୋଷ ହୋଇଲେ
ଶ୍ରୀୟାଦେବୀଙ୍କି ଆସନେ ନେଇ ବସାଇଲେ ।
ବିଭା ହେବାକୁ କହିଲେ ଯହୁଁ ନାରାୟଣ
ଶୁଣି ସରସ୍ୱତୀ କଲେ ଆନନ୍ଦିତ ମନ ।
ଦେବଗଣ ଏକତ୍ରରେ ସର୍ବେ ରହିଛନ୍ତି
ବିଶ୍ୱକର୍ମା ଛାମୁଣ୍ଡିଆ ବେଦୀ ନିର୍ମାଣନ୍ତି ।
ସବୁ ନିର୍ଭାକରି କଲେ ବିଭାର ବିଧାନ
ବର ବେଶରେ ବସିଲେ ପ୍ରଭୁ ଭଗବାନ ।

ବିଭା ବାକ୍ୟ ଉଚ୍ଚାରିଲେ ତହୁଁ କୁଶଧର
ପୂର୍ବ ବିଧି ଯେଉଁରୂପେ ଅଛି ବେଦସାର ।
ଶିରରେ ବିଶ୍ୱକରମା ମୁକୁଟ ବାନ୍ଧିଲେ
ଲକ୍ଷ୍ମୀଦେବୀଙ୍କୁ ଆଣିଣ ପାର୍ଶ୍ୱେ ବସାଇଲେ
ଲକ୍ଷ୍ମୀ ଶିରରେ ବାନ୍ଧିଲେ ମୁକୁଟକୁ ପୁଣ
ଗ୍ରନ୍ଥି ଗଇଁଠାଳ ହୋମ କଲେ ତତକ୍ଷଣ ।
ହୁଳହୁଳି ଦିଅନ୍ତି ଯେ ଅପସରାମାନେ
ତକ୍ଷଣେ ସାରିଲେ ବିଭା କର୍ମର ବିଧାନେ ।
ଦେବତାମାନେ ସେ ସ୍ଥାନେ ସମସ୍ତେ ଅଛନ୍ତି
ଲକ୍ଷ୍ମୀ ନାରାୟଣ ବନ୍ଦାପନା ସେ କରନ୍ତି ।
ଶଙ୍ଖ ଦୁନ୍ଦୁଭି ବାଜଇ କରି ମହାଘୋଷ
ଅପସରାଏ ନାଚନ୍ତି କରି ରଙ୍ଗରସ ।
ପରମା ଲକ୍ଷ୍ମୀନାମକୁ ବିଧାତା ବିହିଲେ
ତାହା ଶୁଣିଣ ଦେବତା ସନ୍ତୋଷ ହୋଇଲେ ।
ସକଳ କର୍ମାଦି ସାରି ଗଲେ ଦେବଗଣ
ସିଂହଦ୍ୱାରେ ଚଢ଼ିଲେ ଯେ ଯାହା ବାହନ ।
ଶ୍ରୀହରି ରହିଲେ ତହୁଁ ବଇକୁଣ୍ଠପୁରୀ
ବିନତା ସୁତ ରହିଲେ ସଙ୍ଗତେ ତାଙ୍କରି ।
ଅମୃତ ପାନ କରିଣ ମତି କଲେ ତୋଷ
ଲକ୍ଷ୍ମୀନାରାୟଣ କଲେ ଆନନ୍ଦ ବିଶେଷ ।
ଲକ୍ଷ୍ମୀ ସରସ୍ୱତୀ ପାଦେ ସର୍ବଦା ଖଟନ୍ତି
ଅନନ୍ତ ଶୟନେ କ୍ଷୀର ସମୁଦ୍ରେ ରହନ୍ତି ।
ଦିନ ରାତି ନାହିଁ ଯେଉଁ ଶ୍ରୀହରି ଭୁବନ
ସେହି ଗୃହେ ନିତ୍ୟ ମୁକ୍ତା ହୁଏ ବରଷଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ନୃପବର
ବ୍ରହ୍ମଲୋକକୁ ଗମନ କଲେ ବେଦବର ।
କପିଳାସର ପୁରକୁ ବିଜେ ସଦାନନ୍ଦ
ଅମରାବତୀରେ ଯାଇ ରହିଲେ ଦେବେନ୍ଦ୍ର ।
ଚନ୍ଦ୍ର ସୂର୍ଯ୍ୟ ବରୁଣାଦି ସମସ୍ତେ ହିଁ ଗଲେ
ଯେ ଯାହା ଭୁବନେ ଯାଇ ନିଶ୍ଚିନ୍ତେ ରହିଲେ
ଏହିରୂପେ ଦେବଗଣ ସ୍ୱର୍ଗେ ବିହରନ୍ତି
ସୁଧର୍ମା ସଭାରେ ବସି ସଭା କରୁଥାନ୍ତି ।
ତିନିପୁରର ବାରତା ପାନ୍ତି ତହିଁ ଥାଇ
ସଂସାରର ଭଲ ମନ୍ଦ ଯେ ଅବା ହୁଅଇ ।
ନାରାୟଣଙ୍କ ଚରିତ ଅଟେ ଦିବ୍ୟରସ
ଶୁଣିଲେ କଳୁଷମାନ ହୋଇଯାଏ ଧ୍ୱଂସ ।

ଶ୍ରୀ କୂର୍ମ ନାରାୟଣଙ୍କ ଶରଣ କମଳେ
କାମପାଳର ଶରଣ ଅଟେ ସଦାକାଳେ ।

.....❋.....

## ଦିତିଙ୍କ ଗର୍ଭରୁ ପୁନଃ ଅସୁରମାନଙ୍କ ଜନ୍ମ

ନୃପ ପଚାରନ୍ତି କୁହ ଆହେ ମୁନିବର
କଶ୍ୟପ ମୁନି କରିଲେ କେବଣ ବିଚାର ।
ଦେବ ସଭାକୁ ନ ଗଲେ ଦୁଃଖେ ମହାମୁନି
ବାର୍ତ୍ତା ପାଇ କିସ କଲା ଅସୁର ଜନନୀ ।
ଏହାକୁ ସଂକ୍ଷେପ କରି କହ ମୁନିବର
କହନ୍ତି ନାରଦ ମୁନି ଶୁଣ ଦଣ୍ଡଧର ।
କଶ୍ୟପ ମନର ଦୁଃଖେ ମିଳିଲେ ଗୃହରେ
ନିଜ ଆସ୍ଥାନେ ବସିଲେ ବିସ୍ମୟ ମନରେ ।
ଦିତି ଅଦିତି ଅଇଲେ ଶୁଣି ବେନି ନାରୀ
ପୁଚ୍ଛନ୍ତି ବିରସ ମୁଖ କିମ୍ପାଇଁ ତୁମ୍ଭରି ।
ଏତେ ପୁଚ୍ଛି ପ୍ରଣିପାତ ପୟରେ ହୋଇଲେ
ଶିରେ କରଦେଇ ଦୁହେଁ ପାଶେ ଉଭାହେଲେ ।
କଶ୍ୟପ ବୋଇଲେ ତୁମ୍ଭେ ଶୁଣି ନାହଁ କଥା
ଏବେ ଶୁଣ କହୁଅଛୁ ତହିଁର ବାରତା ।
ସିନ୍ଧୁ ମନ୍ଥିବାକୁ ଗଲେ ଦେବାସୁରଗଣ
ବ୍ରହ୍ମା ବିଷ୍ଣୁରୁଦ୍ର ଦକ୍ଷ ଆବର ବରୁଣ ।
ଇନ୍ଦ୍ର ବାୟୁ ହୁତାଶନ ଶଶୀ ଦିବାକର
ପାତାଳୁ ଆସେ ବାସୁକୀ ବୀର ମହୀଧର ।
ଆମ୍ଭେ ଯାଇଥିଲୁ ମଧ୍ୟ ଦେବତା ସଙ୍ଗର
ସିନ୍ଧୁ ମନ୍ଥିବାକୁ କଲେ ସେମାନେ ବିଚାର ।
ଦେବାସୁର ଆଣି ଶକ୍ୟ ନୁହନ୍ତେ ମନ୍ଦର
ତାକୁ ଓପାଡ଼ି ଆଣିଲେ ଦେବ ଚକ୍ରଧର ।
ସମୁଦ୍ର ମଧ୍ୟରେ ନେଇ ତାକୁ ପକାଇଲେ
ସେ ବୁଡ଼ିଯାନ୍ତେ ଶ୍ରୀହରି କୂର୍ମରୂପ ହେଲେ ।
ତିନିଭୁବନର ଲୋକ ଦେଖୁଛନ୍ତି ପୂରି
ପିଠିରେ ଟେକିଧଇଲେ ସେ ମନ୍ଦର ଗିରି ।
ଗିରି ଯେକାଳେ ଦିଶିଲା ଜଳର ମଧ୍ୟରେ
ବାସୁକୀକି ରଜ୍ଜୁକରି ବେଢ଼ାଇ ତହିଁରେ ।
ଦେବାସୁର ମନ୍ଥିରେ ଯେ ସେହି ମହାଜଳ
ଯହୁଁ ସୁଧା ରତ୍ନ ଜାତ ହୋଇଲା ସକଳ ।

ଲୋଭେ ମନ୍ଥନ୍ତେ ତହିଁରୁ ବିଷ ଜାତହେଲା
ରୁଦ୍ରଦେବ ସେ ବିଷକୁ ଭକ୍ଷଣ କରିଲା ।
ଭଲ ଭଲ ଦ୍ରବ୍ୟମାନ ଦେବତାଏ ନେଲେ
ଦିତିର ପୁତ୍ର ତହିଁକି ଗୋଳ ଯୋଗ କଲେ ।
ପୁଣି କୌଶଳରେ ଜାତ କଲେ ବେଦବର
ଅମୃତଖାଇ ବସିଲେ ତହୁଁ ଦେବାସୁର ।
ପରଶିବାକୁ ବାହାର ହେଲେ ନାରାୟଣ
ଦେବତାମାନଙ୍କୁ ସୁଧା ଦେଇଗଲେ ପୁଣ ।
ଅସୁରମାନଙ୍କୁ ନେଇ ସୁରା ପରଷିଲେ
ତେଣୁ ତୋର ପୁତ୍ରଙ୍କର ବଡ଼ ମନ୍ଦ କଲେ ।
ରାହୁ ଗୁପତରେ ବସି ଅମୃତ ଖାଇଲା
ଚକ୍ରେ ନାରାୟଣ ତାକୁ ଦୁଇଖଣ୍ଡ କଲା ।
ଅମୃତ ଖାଇଥିବାରୁ ନ ଗଲା ତା ଜୀବ
ଦୁଇଗୋଟି ଗ୍ରହକରି ରଖିଲେ ମାଧବ ।
ତେଣୁ କୃଷ୍ଣଙ୍କୁ ମାଇଲେ ଦୈତ୍ୟ ଅସ୍ତ୍ରଧରି
ଦେବେ ମାଇଲେ ଦୈତ୍ୟଙ୍କୁ ଏକ ଏକକରି ।
ଦେବତାଙ୍କ ବଳେ ତହୁଁ ନ ହୋଇଲେ ହତ
ଚକ୍ରେ ସବୁ ନାଶ କଲେ ତହୁଁ ପଦ୍ମନେତ୍ର ।
କହନ୍ତି କଶ୍ୟପ ମୁନି ଶୁଣ ଆଗୋ ଦିତି
ସବୁ ପୁତ୍ରଯାକ ତୋର ହେଲେ ବିନଶ୍ୟତି ।
ତା ଦେଖି ନ ଗଲୁ ଆମ୍ଭେ ଦେବତା ସଭାକୁ
ମନଦୁଃଖ କରି ଶୁଣ ଅଇଲୁଁ ଗୃହକୁ ।
ପତିମୁଖରୁ ଏସନ ବାର୍ତ୍ତା ଶୁଣି ବାଳୀ
କାନ୍ଦଇ ଅତି ଉଚ୍ଚରେ ଛାଡ଼ିଣ ବୋବାଳି ।
ହା ହା ପୁତ୍ରେ ବୋଲିକରି କରନ୍ତି ରୋଦନ
ଏକାବେଳେ ବାବୁ ସବୁ ହୋଇଲ ନିଧନ ।
ଆନ ସପତଣୀଙ୍କର ନେତ୍ରୁ ବହେ ବାରି
ପୁତ୍ରଙ୍କୁ ସୁମରି ସର୍ବେ ଶୋକେ ହେଲେ ଘାରି ।
ଦିତି ବୋଲନ୍ତି କଶ୍ୟପ ମୁନି ମୁଖ ଚାହିଁ
ତୋ ଭୁଜ ଧରି ଅପୁତ୍ରୀ ହେଲି ସିନା ମୁହିଁ ।
ଏହିରୂପେ ଦିତି କଲେ ଅନେକ ରୋଦନ
ତାକୁ ତିଆରନ୍ତି ବସି ତହୁଁ ତପୋଧନ ।
ତୋହର ପୁତ୍ରମାନେ ତ ଦୁଷ୍ଟପଣ କଲେ
ବୋଲ ନ କରି ସେମାନେ ଅକାରଣେ ମଲେ ।
ଦିତି ବୋଲେ ତୁମ୍ଭେ କିମ୍ପା ତିଆରିଲ ନାହିଁ
ମୁନି ବୋଇଲେ ସୋମନେ ଶୁଣିଲେ ତା କାହିଁ ।

ଦିତି ବୋଇଲେ ଧିକ ତ ଅଟେ ମୋର କର୍ମ
ଆଦିତିର ପୁତ୍ର ହେଲେ ଅମର ଅକ୍ଷୁର୍ଣ୍ଣ ।
ସେହି ତ ତୋର ଭାରିଯା ମୁହିଁ ତୋରନାରୀ
ଏହି ବିଡ଼ମ୍ବନା କିମ୍ପା କଲୁ ତପଚାରୀ ।
ତାହାର ପୁତ୍ରମାନେ ଯେ ହେଲେ ଅନର୍ଗଳା
ସୋଦର ଗୋଟିଏ ସୁଦ୍ଧା ନ ବଞ୍ଚିଲେ ବଳା ।
ପୁତ୍ରଙ୍କୁ ଦେଖି ଅଦିତି ହେବେ ତୋଷମନ
ପୁତ୍ର ବିହୁନେ ମୋହର ଶୁଖିଲା ଜୀବନ ।
ତୋତେ ଆଶ୍ରୟ କରିଣ ଜଣେ ସୁଖୀହେଲା
ଜଣେ ପୁତ୍ର କଷ୍ଟପାଇ ବ୍ୟାକୁଳ ହୋଇଲା ।
ମୋହର ପୁତ୍ରମାନଙ୍କୁ ଦେବେ କଲେ ନାଶ
ଶାପ ଦେଇଣ ନାଶିବି ତାହାଙ୍କୁ ଅବଶ୍ୟ ।
ତାହାଙ୍କର କୋପ ଦେଖି କଶ୍ୟପ ସତ୍ୱର
ନିଜାସନରୁ ଉଠିଲେ ହୋଇଣ କାତର ।
ଦିତି ଦେବୀଙ୍କର ହସ୍ତ ଧଇଲେ ସେ ଯାଇ
ବୋଇଲେ ସେ ବୃଥା ଶାପ ଦେବୁ କାହିଁପାଇଁ ।
ତୋର ପୁତ୍ରମାନେ କଲେ ଆଗ ଦୁଷ୍ଟପଣ
ଶାପ ଦେବାକୁ ଇଚ୍ଛୁକ କେବଣ କାରଣ ।
ସମସ୍ତଙ୍କୁ ତୁହି ଏକା କରିବୁ ନା ନାଶ
ବ୍ରହ୍ମଦ୍ରୋହ ପାପେ ତୋର ହେବ ବଡ଼ଦୋଷ ।
ତୋର ପୁତ୍ରଙ୍କୁ ନାଶିଲେ ସିନା ନାରାୟଣ
ଅଶେଷ ବ୍ରହ୍ମାଣ୍ଡର ଯେ ଅଟନ୍ତି କାରଣ ।
ତାହାଙ୍କୁ କୋପ କରିବା ତୋର ନ ଯୋଗାଇ
ଜଣେ ହୋଇଥିଲେ ସିନା ଥାଆନ୍ତି କି ଜୀଇ ।
ତ୍ରିଦଶ ଦେବତାଙ୍କର କରିବୁ ତୁ କିସ
ଜଣେ ହୋଇଥିଲେ ସିନା କରିଥାନ୍ତୁ ନାଶ ।
ଅଦିତିର ପୁତ୍ରମାନେ ତୋହର କୁମର
ଏ କଥା ବିଚାରି ଏବେ କୋପ ଶାନ୍ତ କର ।
ତୋର ଏବେ ଜାତହେବେ ପୁଣିପୁତ୍ର ବେନି
ତାଙ୍କୁ ଜଣନ୍ତା ନୋହିବେ କେହି ପୁର ତିନି ।
ବ୍ରହ୍ମା ବିଷ୍ଣୁ ରୁଦ୍ର କେହି ନ ପାରିବେ ତାଙ୍କୁ
ବଳବନ୍ତ କରିବା ଯେ ଏଥର ତାହାଙ୍କୁ ।
ନ କର ତୁ କ୍ରୋଧ ଏବେ ରହ ଶାନ୍ତଧରି
ପତି କହନ୍ତେ ଯେ ବୋଧ ହୋଇଲା ସୁନ୍ଦରୀ ।
ଏ ବଚନ ଶୁଣିକରି ମୂଚ୍ଛେ ନୃପବର
ଦିତି ଯେମ୍ନେ ଜାତକଲା ଏତେକ କୁମ୍ଭର ।

ଏ କଥା ବିସ୍ତାରି କୁହ ହେ ମୁନି ପ୍ରଧାନ
କହନ୍ତି ନାରଦମୁନି ଶୁଣ ହେ ରାଜନ ।
ଦିତି ଅଦିତିଙ୍କଠାରୁ ଦେବାସୁର ଜାତ
ଦଇବର ମାୟା ସେହୁ ଅଟେ ବେଦମତ ।
ଅଦିତି ଦେବତାଙ୍କର ଅଟନ୍ତି ଜନନୀ
ଗର୍ଭକେ ଅନେକ ପୁତ୍ର ଜନ୍ମାଏ କାମିନୀ ।
କାଶ୍ୟପ ଚିତ୍ତେ କଳ୍ପନା କରିଥାନ୍ତି ଯେତେ
କୁମାରୀ ଉଦରେ ପୁତ୍ର ବହିଥାନ୍ତି ତେତେ ।
କେଉଁରୂପେ ସୃଷ୍ଟି ହେବ ଜାତ ଦେବାସୁର
ଏମନ୍ତେ କରନ୍ତେ ହେଲେ ବହୁତ କୁମର ।
ସୁରଭିର କ୍ଷୀରପାନେ ବଢ଼ିଯାନ୍ତେ ସୁତ
ଯେଉଁରୂପେ ପଦ୍ମବନ ଚହଟଇ ନିତ୍ୟ ।
ଏହିରୂପେ ଦେବମାତା ହୋଇଲେ ଅଦିତି
ଯଜ୍ଞକୁଣ୍ଡୁ ପୁତ୍ର ଜାତକଲେ ମହାଯତି ।
ଦିତି ଅଦିତିଙ୍କୁ ଦେଲେ ସେ ତାଙ୍କୁ ପାଳିଲେ
ଅସୁର ଦେବତା ଏହି ରୂପେ ଜାତ ହେଲେ ।
ଶୁଣିଲ ନା ଦେବାସୁରମାନଙ୍କର ଜାତ
ତୁମ୍ଭେ ବା ବିଚାରୁଥିଲ ଅନ୍ୟ ଜନ୍ମବ୍ରତ ।
ସୃଷ୍ଟି ଭିଆଣ ଚରିତ ଅଲୋକିତ କର୍ମ
କଳ୍ପଣାରୁ ସୃଷ୍ଟି ସିନା ହୋଇଅଛି ଜନ୍ମ ।
ତେଣୁ କରି କଶ୍ୟପର ଏ ସୃଷ୍ଟି ବୋଲାଇ
ଶୁଣିଣ ସନ୍ତୋଷ ଚିତ୍ତ ହେଲେ ନରସାଇଁ
ପୁନର୍ବାର ରାହୁଠାରୁ ଅସୁର ବଢ଼ିଲେ
ବାଳକ ବାଳିକା ହୋଇ ତହୁଁ ଜାତ ହେଲେ ।
ରାଜା ପୁଚ୍ଛାକଲେ କୁହ ଆହେ ମୁନିବର
ଜୀବିତ ଥିବ ଦଇତେ କଲେ କି ବିଚାର ।
ଏହା ଶୁଣିବାକୁ ଇଚ୍ଛା ହୁଏ ବ୍ରହ୍ମଚାରୀ
କହନ୍ତି ନାରଦ ମୁନି ଶୁଣ ଦଣ୍ଡଧାରୀ ।
ଅସୁରର ସୈନ୍ୟ ଯହିଁ ପଡ଼ିଲେ ସମରେ
ଥୋକେ ପଳାଇ ପଶିଲେ ଯାଇ ନିଜପୁରେ ।
ସକଳେ କହିଲେ ଯାଇଁ ଏଠାର ବିଧାନ
ଯେଉଁରୂପେ ସର୍ବ ବୀର ହୋଇଲେ ନିଧନ ।
ଅସୁର ଅସୁରୀମାନେ ବହୁ ଶୋକ କଲେ
କଶ୍ୟପର ଗୋତ୍ରସବୁ ବିଧବା ହୋଇଲେ ।
ବଳୀର ପୁତ୍ର ସେଠାରେ ହେଲା ନୃପବର
ଅମର୍ଷ ବୋଲିଣ ନାମ ଅଟଇ ତାହାର ।

ରାଜା ପଚାରନ୍ତି କୁହ ଆହେ ତପୋଧନ
କାହୁଁ ଦଇତେ ପାଇଲେ ପୁଣି କନ୍ୟାମାନ ।
ନାରଦ ବୋଇଲେ ଯେବେ ଜଗତ ହୋଇଲା
ଏହିରୂପରେ ଅନେକ କାଳ ବହିଗଲା ।
ଦେବ ଦଇତେ ଏକତ୍ରେ ବସନ୍ତି ସ୍ୱର୍ଗରେ
ସର୍ବେ ସୋଦର କପଟ ନ ଥାଇ ହୃଦରେ ।
ପ୍ରସନ୍ନରେ ବ୍ରହ୍ମା ତାଙ୍କୁ ବହୁ କନ୍ୟା ଦେଲେ
ସେହି କନ୍ୟାକୁ ଦନୁଜମାନେ ବିଭାହେଲେ ।
କଶ୍ୟପଙ୍କ ପୁତ୍ର ସେହୁ ବଡ଼ କୁଳେ ଜାତ
ସମସ୍ତଙ୍କର ଆଚାର ଅଟେ ଏକମତ ।
ହିଂସା ଅହଙ୍କାରମାନ ନ ବହନ୍ତି କାୟେ
ସମସ୍ତେ ଯେ ଦିଶୁଥାନ୍ତି ଦେବତାଙ୍କ ପ୍ରାୟେ ।
ତେଣୁକରି କନ୍ୟା ତାଙ୍କୁ ଦେଲେ ଚଉମାଥ
ଅସୁର ଅସୁରୀ ଜାତ ତହୁଁ ଅପ୍ରମିତ ।
କାଳେ ପୁଣି ଆସି ହେଲା ଏମନ୍ତ ବେଭାର
ଦେବତା ଦଇତ୍ୟଙ୍କର ଦ୍ୱନ୍ଦ୍ୱ ମହାଘୋର ।
ସେହି କାଳରୁ ଅସୁର ସ୍ୱର୍ଗକୁ ନ ଯାନ୍ତି
ଦେବତା ନାମ ଧଇଲେ କମ୍ପିଣ ଉଠନ୍ତି ।
ସେହି କାଳରୁ ବିଷ୍ଣୁତ ହୋଇଲେ ବଇରୀ
ତମ୍ବା ପାତ୍ରରେ ରଖିଲେ ତାହା ଲେଖିକରି ।
ଯେତେ ଅସୁର ମହୀରେ ଜନମ ହୋଇବ
ନିଶ୍ଚେ ସେମାନେ ଆମ୍ଭରି ବଇରୀ ଜାଣିବ ।
ଯେହୁ ଏହାଙ୍କୁ ମାରିବ ରଣଜୟ କରି
ସେ ନିଶ୍ଚେ ସୁଝି ପାରିବ ପିତାଙ୍କ ବଇରୀ ।
ଆଦ୍ୟ ଅସୁରଙ୍କ ଥିଲା କେଉଁପରି ପ୍ରୀତି
ଏକା ଅସୁରଦେବଙ୍କୁ ଭଲ ନ ସହନ୍ତି ।
ନାନା ଜପ ତପମାନ କରନ୍ତି ଦଇତ
ଦେବତାଙ୍କ ସଙ୍ଗତରେ କରନ୍ତି ଅନର୍ଥ ।
ସେ କାଳୁ ଧରିଅଛନ୍ତି ଦୈତ୍ୟେ ଅହଙ୍କାର
କହିଲୁ ନୃପତି କୂର୍ମପୁରାଣର ସାର ।
ଯେମନ୍ତ କୂର୍ମାବତାର ହେଲେ ପଦ୍ମନେତ୍ର
ଏହାକୁ ଶୁଣିଲେ ନରେ ହୋଇବେ ପବିତ୍ର ।
ଯଦ୍ୟପି ବା ହୋଇଥିବ ଗୁରୁ ବିପ୍ର ଦ୍ରୋହୀ
ଏହା ପଢ଼ିଲେ ଶୁଣିଲେ ସେ ପାପ ନାଶଇ ।
ବେଦ ଅଧ୍ୟୟନ ଦାନ ଧ୍ୟାନେ ଧର୍ମ ଯେତେ
ଯାକୁ ପଢ଼ିଲେ ଶୁଣିଲେ ଫଳ ହୁଏ ତେତେ ।

ବଇକୁଣ୍ଠ ଭୁବନରେ ହେବ ତାର ବାସ
ନାରାୟଣ ଅବତାର ସୁଧା ଦିବ୍ୟରସ ।
ଶୁଣିଣ ସନ୍ତୋଷ ଚିତ୍ତ ହେଲେ ମହୀପାଳେ
ପ୍ରଣତି ହେଲେ ନାରଦମୁନି ପାଦତଳେ ।
ମସ୍ତକରେ କରଯୋଡ଼ି ବୋଲେ ନୃପବର
ବିଷ୍ଣୁ ପୁରାଣ ଶୁଣି ମୋ ଜନ୍ମହେଲା ସାର ।
ଲୟ କରିଲେ ନୃପତି କୃଷ୍ଣ ପାଦତଳ
କୃଷ୍ଣପାଦରେ ଶରଣ ଦ୍ୱିଜ କାମପାଳ
କୃଷ୍ଣ ଭଜି ନର ନାରୀ ଭବୁ ହୁଅ ପାରି
କୃଷ୍ଣ ନାମରେ ପାଳ ଏ ପାତାଳ ତିମିରି ।

.....❋.....

ଇତି ଶ୍ରୀ ନାରଦ ଇନ୍ଦ୍ରଦ୍ୟୁମ୍ନ ସମ୍ବାଦେ
କୂର୍ମପୁରାଣ ଦ୍ୱିତୀୟ ଖଣ୍ଡ ସମାପ୍ତ ।




# ତୃତୀୟ ଖଣ୍ଡ

## ଶ୍ଳୋକ

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।୧।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।୨।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ର କଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।୩।
ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳମୁଦ୍ ବିଭ୍ରତେ ।
ଦୈତ୍ୟାନ୍ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ ।
ମ୍ଳେଚ୍ଛାନ୍ ମୁଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ ।୪।

.....❋.....

## ମହାଲକ୍ଷ୍ମୀ ସ୍ତବ

ଜୟ ତୁ ଜୟ ତୁ ମାଗୋ ବରୁଣ ଦୁଲଣୀ
ଜୟ ତୁ ଜୟ ତୁ ମାଗୋ ବିଷ୍ଣୁର ଘରଣୀ ।
ଜୟ ତୁ ଜୟ ତୁ ମାଗୋ ଦେବୀ ପଦ୍ମାଳୟା
ଜୟ ତୁ ଜୟ ତୁ ମାଗୋ ଶ୍ରୀହରିର ପ୍ରିୟା ।
ଜୟ ତୁ ଜୟ ତୁ ମାଗୋ ତ୍ରିଭୁବନ ମାତା
ଜୟ ତୁ ଜୟ ତୁ ମାଗୋ ସାଗର ଦୁହିତା ।
ସମୁଦ୍ର ମନ୍ଥନୁ ଜାତ ହୋଇଲୁ ତୁ ମାତ
ମହାଲକ୍ଷ୍ମୀ ନାମ ତୋର ଜଗତେ ବିଖ୍ୟାତ ।
ସମୁଦ୍ରରୁ ଅମୃତ ତୁ ଆଗ ଉପୁଜାଇ
କଉସ୍ତୁଭ ମଣି ରତ୍ନ ଶ୍ରୀବିଷ୍ଣୁର ପାଇଁ ।
ଉଚ୍ଚୈଃଶ୍ରବା ନାମେ ଅଶ୍ୱରାଜ ଐରାବତ
ଉପୁଜାଇଲୁ ଇନ୍ଦ୍ର ନିମନ୍ତେ ଗୋ ମାତ ।
ତୋ କୃପାରୁ ବାସବ ଯେ ପାଇ ଇନ୍ଦ୍ରପଦ
ଅପସରା ଆଦି ଯେତେ ସ୍ୱର୍ଗର ସମ୍ପଦ ।
କମଳ ତୋର ନିବାସ କମଳା ତୋ ନାମ
ତୋ ଯୋଗୁ ସୁନ୍ଦର ସିନା ବଇକୁଣ୍ଠ ଧାମ ।
ତୋରହସ୍ତେ ଚାରିଖାନି ଜୀବଙ୍କର ପଡ଼ି
ତୁ ଯାହାକୁ ନ ଦେବୁ ସେ ଭୋକେ ଯିବ ପଡ଼ି ।
ତୋ ହସ୍ତକୁ ଚାହିଁଛନ୍ତି ଦେବ ଜଗନ୍ନାଥ
ସାନ ଭଉଣୀ ସୁଭଦ୍ରା ଭାଇ ହଳହସ୍ତ ।
ତୁ ପଡ଼ି କାଟ କଲେ ସେ ରହିବେ ଉପାସେ
ପାର୍ବତୀ ଦେବୀ ରୂପେ ତୁ ଅଛୁ କଇଳାସେ ।
ଗୃହେ ତୁହି ଗୃହଲକ୍ଷ୍ମୀ ବୋଲାଉ ଗୋ ମାତ
ସ୍ୱର୍ଗପୁରେ ସ୍ୱର୍ଗଲକ୍ଷ୍ମୀ ନାମ ତୋର ଖ୍ୟାତ ।
ବଇକୁଣ୍ଠ ବୋଲାଉ ତୁ ଗୋଲୋକ ଭୁବନେ
ମହାଲକ୍ଷ୍ମୀ ଲକ୍ଷ୍ମୀ ତୁଯେ ଗୋଲୋକ ଭୁବନେ ।
ନିଧିନାମରେ ତୁ ଆଉ କୁବେର ଗୃହରେ
ସମ୍ପଦ ନାମ ତୋହରି ଧନବନ୍ତ ଘରେ ।
ପଦ୍ମ ପୁଷ୍ପେ ପଦ୍ମା ନାମେ ରହିଥାଉ ତୁହି
ମୋହିନୀ ରୂପେ ତୁ ମାତ ଶ୍ରୀହରିଙ୍କି ମୋହି ।
ଜାତି ଅଜାତି ତୋହର ସମାନ ଗୋ ମାତ
କାହାରିଠାରେ ତୋହର ନାହିଁ ପକ୍ଷପାତ ।
ଯାହାଠାରେ ମାତ ତୋର ସୁଦୃଷ୍ଟି ରହଇ
ଯହିଁ ତହିଁ ସେହି ଜନ ଗଉରବ ପାଇ ।
ଧନବନ୍ତ ରୂପବନ୍ତ ବଳବନ୍ତ ସେହି
ଯେ ଯାହା କହଇ ତାର କଥା ଆନ ନୋହି ।
ଲକ୍ଷ୍ମୀବନ୍ତ ଶିରୀମନ୍ତ ଜଗତେ ସେ ଜନ
ରାଜାର ପାତ୍ରପଣକୁ ହୁଅଇ ଭାଜନ ।
ନୀଚ ଲୋକ ହୋଇଥିଲେ ଉଚ୍ଚପଦ ପାଇ
ଅଜାତିଆ ହେଲେ ଜାତିମନ୍ତ ସେ ବୋଲାଇ ।
ତୋହର ସୁଦୃଷ୍ଟି ନାହିଁ ଯାହାଠାରେ ମାତ
ଲକ୍ଷ୍ମୀଛଡ଼ା ବୋଲି ତାକୁ ନ ମିଳଇ ଭାତ ।
ଶିରୀ ତୁଟି ଯାଇ ତାର ଦିଶେ ଅସୁନ୍ଦର
ଯେତେ ଖାଇଲେ ତୃପତି ନୁହଇ ତାହାର ।
ଯେତେ ଅରଜଇ ତାକୁ କିଛି ନ ଅଣ୍ଟଇ
ପାଖରେ କେହି ତାହାକୁ ବସାଇ ନ ଦେଇ ।
ଏଣୁ ମୁଁ ତୋର ଚରଣେ ଲଗାଇଲି ଲୟ
ତୁ ଯେବେ ମାତ ମୋଠାରେ ହୋଇବୁ ସଦୟ ।
ଧର୍ମ ଅର୍ଥ କାମ ମୋକ୍ଷ ସବୁ ମୁଁ ପାଇବି
ନମୋ ନମୋ ମହାମାଈ ବିଷ୍ଣୁର ବଲ୍ଲଭୀ ।
ମୁହିଁ ଦୀନ ଯେ ଅଧମ ଅରକ୍ଷିତ ଜନ
ପୂଜିକି ପାରିବି ମାତ ତୋ ଚାରୁ ଚରଣ ।
କାହୁଁ ବା ଭକତି ଉଦେ ହୋଇବ ମୋ ହୃଦେ
ତୋହର ସ୍ତୁତି ମୁଖରେ ନ ପଶିବ ପଦେ ।
କେବଳ ମୁଁ ମାତା ମାତା ବୋଲେ ଦିନରାତି
ତୋର ଦୟା ହେଲେ ଧର୍ମେ ବଳିବ ମୋ ମତି ।
ଧର୍ମରେ ମତି ରହିଲେ ଶ୍ରୀବିଷ୍ଣୁ ଭଜିବି
ବିଷ୍ଣୁଙ୍କ ଭଜିଲେ ସିନା ଧର୍ମବନ୍ତ ହେବି ।
ଧର୍ମବନ୍ତ ହେଲେ ସିନା ଦାନ ଧ୍ୟାନ କରି
ଦାନ ଧ୍ୟାନ କଲେ ସିନା ପାଇବି ଶ୍ରୀହରି ।
ହରିଙ୍କି ପାଇଲେ ସିନା ଲଭିବି ମୁକତି
ଶ୍ରୀହରି ପୁରୁଷ ତୁହି ତାହାର ଶକତି ।
ତୋତେ ଛାଡ଼ିଲେ ଶକତି ହୀନ ହେବ ହରି
ଶକତି ହୀନ ହେଲେ କିଏ ସଂସାର କରି ।
ଏଣୁ ଜଗତ ଜନନୀ ବୋଲାଉ ଜଗତେ
କେ କହିପାରିବ ମାତା ତୋର ନାମକେତେ
ତହିଁର ମଧ୍ୟରେ ତୋର ଆଠଗୋଟି ନାମ
ଯେ ନିତ୍ୟ ପଢ଼ଇ ତାର ପୂର୍ଣ୍ଣ ମନସ୍କାମ ।
ଗୁରୁବାର ଦିନ ଯେଉଁ ନାରୀ ତା ପଢ଼ଇ
ସେହି ସୁଲକ୍ଷଣୀ ହୋଇ ଜନ୍ମେ ଜନ୍ମେ ଥାଇ ।

ପୁତ୍ର ନାତି ଘେନି ସୁଖେ କାଟୁଥାଏ କାଳ
ଗାଈ ବାଛୁରୀରେ ତାର ପୂରଇ ଗୁହାଳ ।
ଧନ ଅମାର ତାହାର ବଢ଼ଇ ବହୁତ
କ୍ଷଣେ ତୁ ନ ଛାଡୁ ତାର ଘରକୁ ଗୋ ମାତ ।
ସେ ନାମ କହୁଛି ଜନେ ଶୁଣ ମନଦେଇ
ମହାଲକ୍ଷ୍ମୀ ମହାଦେବୀ ରମା ମହାମାଈ ।
ଇନ୍ଦିରା ଲୋକମାତା ମା କ୍ଷୀରୋଦ ନନ୍ଦିନୀ
ଏହି ଅଷ୍ଟନାମ ତୋର ସମ୍ପଦ ଦାୟିନୀ ।
ଏହି ଆଠନାମ ମୁହିଁ କଲି ଗଳାମାଳୀ
ମୋଠାରେ ସୁଦୟା କର ସାଗର ଦୁଲାଳୀ ।
ଅଷ୍ଟାଦଶ ପୁରାଣରେ ସାର ଏ ପୁରାଣ
ଶ୍ରୀ ବିଷ୍ଣୁ ଯା କରିଛନ୍ତି ଶ୍ରୀମୁଖେ ବଖାଣ ।
ଯହିଁରେ ଶ୍ରୋତା ନାରଦ ଆଦି ମୁନିଜନେ
ତାହା ଗୀତ କରିବାକୁ ଭାଳଇ ମୁଁ ମନେ
ବୁଦ୍ଧି ମୋହର ଅଳପ ଜ୍ଞାନହିଁ ଅଳପ
ତୋର ପଦ୍ମପାଦେ ମାଗୋ କଳପ ପାଦପ ।
ତେଣୁ ଆଶ୍ରାକଲି ମୋତେ ଦିଅ ଦିବ୍ୟଜ୍ଞାନ
ସଦଜ୍ଞାନ ପାଇଲେ ମୁଁ ଧରିବି ଲେଖନ ।
ଲେଖନ ଧଇଲେ ତୋର ଆଜ୍ଞାପରମାଣେ
ପଦ ପଦକର ଭାବ ପଡୁଥିବ ମନେ ।
ଯାହା ଲେଖିବି ଲୋକରେ ହୋଇବ ଆଦର
ଏତିକି ମାଗୁଣି ମୋର ପୟରେ ତୋହର ।
ବିପ୍ରକୁଳେ ଜାତ ମୋର ନାମ ଗୋପୀନାଥ
ଦିନରାତି ଘୋଷୁଛନ୍ତି ଲକ୍ଷ୍ମୀ ଲକ୍ଷ୍ମୀନାଥ ।

.....❈.....

## ବେଦ ସ୍ତୁତି

ନମସ୍ତେ ନମସ୍ତେ ବ୍ରହ୍ମଜ୍ଞାନ ମୟ ଦୀପ
ଘୋର ଅନ୍ଧକାର କାହାଯୋଗୁଁ ହେଲା ଲୋପ ।
ନିରାକାର ବିଷ୍ଣୁମୁଖୁଁ ଜନମ ତୋହର
ତୋର ନାମ ବେଦ ତୁହି କ୍ଷର ଯେ ଅକ୍ଷର ।
ଘୋର ଜଳ ଦେଖି ବ୍ରହ୍ମା ବୁଦ୍ଧି ନ ପାଇଲା
ଶୂନ୍ୟରେ ଶୂନ୍ୟକୁ ରଖି ଲୟ ଲଗାଇଲା ।
ନିରାକାର ମୁଖରୁ ସେ ପାଇ ଏକାକ୍ଷର
ସେହି ଏକ ଅକ୍ଷରକୁ ଜପି ବେଦବର ।
ଜ୍ଞାନବଳେ ବୁଦ୍ଧିବଳେ ନାଦ ବିନ୍ଦୁ ଦେଇ
ଏକସ୍ୱରେ ଆଉ ଏକ ସ୍ୱରକୁ ମିଶାଇ ।
ନାଦ ବିନ୍ଦୁଦେଇ ତାକୁ ତିନିଭାଗ କଲା
ଋକ ଯଜୁ ସାମ ବୋଲି ନାମ ତାର ଦେଲା ।
ପାଞ୍ଚଶତ ବର୍ଣ୍ଣ ତହୁଁ କଲାକ ବାହାର
ମାତ୍ର ଯୋଗ କରିବାରୁ ହୋଇଲା ଅପାର ।
ତିନି ଗୋଟି ମୁଖରେ ଯେ ଘୋଷିଲା ତା ବସି
ଆରେକ ମୁଖ ତାହାର ଶୁଖିଲା ଯେ ଦିଶି ।
ସେ ତିନିବେଦରେ ଛନ୍ଦରଚି କରି ଯୋଗ
ତହିଁରୁ ବାହାର କଲା ଆଉ ଏକ ଭାଗ ।
ତାହାର ନାମ ଅଥର୍ବ ବେଦ ବୋଲି ଭଣି
ଚାରି ମୁଖରେ ଚାରି ବେଦକୁ ବଖାଣି ।
ଚାରି ଜାତି ଜୀବଜନ୍ତୁ ବସି ଭିଆଇଲା
ସେହି ଏକାକ୍ଷର ମହା ତରୁ ବୋଲାଇଲା ।
ସେହି ଯେ ଅନାଦି ବ୍ରହ୍ମ ଆଦି ତାର ନାହିଁ
କାହୁଁ ସେ ଅଇଲା ପୁଣି ରହିବ ସେ କାହିଁ ।
ଅରୂପ ହୋଇ ସେ ବ୍ରହ୍ମ ରୂପ ପ୍ରକାଶିଲା
ସଚରାଚରେ ବ୍ରହ୍ମାଣ୍ଡ ତେଣେ ଭିଆଇଲା ।
ଋକ୍ ଯଜୁ ସାମ ପୁଣି ଅଥର୍ବ ଏ ଚାରି
ଡାଳ ମେଲେନ୍ତ ତହିଁରୁ ଶାଖା ଯେ ବାହାରି ।
ବ୍ରହ୍ମାଣ୍ଡ ଯାକ ଘୋଟିଲା ଶାଖା ପତ୍ର ଦେଇ
ପାଣି ଦେଇ ବ୍ରହ୍ମା ତାକୁ ଯତନେ ବଢ଼ାଇ ।
ସ୍ଥାବର କି ଅସ୍ଥାବର ତାର ଡାଳପତ୍ର
ଚେର ତାହାର ବହୁତ ନୋହେ ଏକମାତ୍ର ।
କେତେଦୂର ଯାଇଛି ତା ନ ଜାଣନ୍ତି କେହି
ମୂଳ ନାହିଁ ମହାଶୂନ୍ୟ ପରେ ଅଛି ରହି ।
ଫୁଲ ତାହାର ବହୁତ ଫୁଟଇ ଝଡ଼ଇ .
ଶୂନ୍ୟରେ ଗୋଟିଏ ଫଳ ଯହିଁ ଯେ ଫଳଇ ।
ସେ ଫଳଗୋଟି ବିଧାତା ପାଇ ହେଲାବଡ଼
ଶୂନ୍ୟ ମଣ୍ଡଳରେ ତାର ଲାଗିଅଛି ନାଡ଼ ।
ନ ପାରଇ ନ ଖସଇ ନ ତୁଟଇ ସେହି
ଯେ ଦିନ ପାଚି ପଡ଼ଇ ମୂଳ ହିଁ ନ ରହି ।
ସେହି ବେଦରେ ସକଳ ଆତଯାତ ହୋଇ
ସେ ବେଦର ତତ୍ତ୍ୱ ବେଦବର ନ ଜାଣଇ ।
ଜାଣିଥିଲେ କାହିଁପାଇଁ ହେଉଥାନ୍ତା ଧନ୍ଦି
ବେଦରେ ଛନ୍ଦରେ କାହୁଁ ପଡ଼ନ୍ତା ସେ ବନ୍ଦି ।
ଗାୟତ୍ରୀର ସଙ୍ଗତରେ କ୍ରୀଡ଼ା କି କରନ୍ତା
ମୂଳ ନ ଧରି କିମ୍ପାଇଁ ଡାଳକୁ ଧରନ୍ତା ।

ଏଣୁ ସେ ବେଦକୁ ମୁହିଁ କରୁଅଛି ସ୍ତୁତି
ଜୟ ତୁ ଜୟ ତୁ ବେଦ ଅନନ୍ତ ମୂରତି ।
ରୂପ ରେଖ ନାହିଁ ତୋର ନାହିଁ ପୁଣି ଘର
କୋଟି କୋଟି ବ୍ରହ୍ମାଣ୍ଡ ତୋ ଉଦର ଭିତର ।
ତୋହର ମହିମା ଏକା ତୋତେ ସିନା ଜଣା
ତୋ ତତ୍ତ୍ୱ ନ ଜାଣି ଲୋକେ ହୋଉଥାନ୍ତି ବଣା ।
ଇତିହାସ ପୁରାଣ ଯେ ଶାସ୍ତ୍ର ବ୍ୟାକରଣ
ଯୋଗ ଧାରଣ ସାଧନା ଆଦି ଯେ ପ୍ରମାଣ ।
ତୋହର ପେଟଭିତରେ ଅଛି ସବୁ ରହି
ତୋ କୃପା ହେଲେ ପୁରାଣଗୋଟା ଲେଖିବଇଁ ।
ଯେବଣ କୂର୍ମ ପୂରାଣ ପୁରାଣର ସାର
ମୁନିଏ ଶ୍ରୋତା ଯହିଁରେ ବକ୍ତା ଚକ୍ରଧର ।
ତୃତୀୟ ଖଣ୍ଡ ଲେଖିବାପାଇଁ କରେ ମନ
ତୋ କୃପା ହେଲେ ମୋହର ଉଦେହେବ ବିଜ୍ଞାନ ।
ତୋ ପ୍ରସାଦେ ମହାଜ୍ଞାନୀ ହେଲା ବେଦବର
ଏଣୁ ଶରଣ ପଶିଲି ଚରଣେ ତୋହର ।
ଗୋପୀନାଥ ମୁଁ ଅଟଇ ବଇଦିକ ଦ୍ୱିଜ
ବେଦ ମୋର ଇଷ୍ଟବନ୍ଧୁ ଅନୁବ୍ରତେ ପୂଜ୍ୟ ।

.....❋.....

## ପରୀକ୍ଷୋପାଖ୍ୟାନ

କହନ୍ତି ମୁନିଙ୍କ ଆଗେ କୂର୍ମରୂପୀ ହରି
ଚନ୍ଦ୍ରବଂଶେ ପଣ୍ଡୁ ନାମେ ଥିଲେ ଦଣ୍ଡଧାରୀ ।
କୁନ୍ତୀ ମାଦ୍ରୀ ନାମେ ଦୁଇ ରାଣୀ ତାହାଙ୍କର
ଧୃତରାଷ୍ଟ୍ର ନାମେ ତାର ଜ୍ୟେଷ୍ଠ ସହୋଦର ।
ତାହାର ଭାରିଯା ନାମ ଅଟଇ ଗାନ୍ଧାରୀ
ବଡ଼ ଧାର୍ମିକ ଅଟଇ ପଣ୍ଡୁ ଦଣ୍ଡଧାରୀ ।
ଜନମରୁ ଅନ୍ଧ ସେହି ଧୃତରାଷ୍ଟ୍ର ରାଜା
ପଣ୍ଡୁ ନୃପତି ତାହାର କରେ ପାଦପୂଜା ।
ବଡ଼ ଭାଇକି ରାଜ୍ୟରେ ରାଜା କରି ଥାପି
ଧନ ଭଣ୍ଡାର ସହିତେ ସକଳ ସମର୍ପି ।
ଆପେ ଶତ୍ରୁ ନାଶି ରାଜ୍ୟ କରଇ ପାଳନ
ଶବଦ ଭେଦି କରଇ ବାଣକୁ ସନ୍ଧାନ ।
ହସ୍ତିନା ବାରୁଣାବନ୍ତ ଜୟନ୍ତା ନଗର
ଲଘୁପ୍ରସ୍ଥ ଯମପ୍ରସ୍ଥ ପଞ୍ଚ କଟକର ।
ନୃପତିପଣ ଭାଇକି ଦେଇଣ ପାଳଇ
ବଡ଼ଭାଇ ପାଦତଳେ ଭୃତ୍ୟପଣେ ଥାଇ ।
ବଡ଼ ଧାର୍ମିକ ଅଟଇ ଯେ ପଣ୍ଡୁରାଜନ
ଏକ ଦିନକର କଥା ଶୁଣ ମୁନିଜନ ।
ବନକୁ ଗଲା ଏକାଳେ ମୃଗୟା ନିମନ୍ତେ
ଘୋର ଅରଣ୍ୟେ ପଶିଲା ଧନୁଶର ହସ୍ତେ ।
ଅଗ୍ନିକ ନାମରେ ଥିଲେ ଏକ ମହାଋଷି
ମୃଗରୂପ ଧରି ଘୋର ବନସ୍ତରେ ପଶି ।
ପୁତ୍ର ନିମନ୍ତେ ମୃଗୁଣୀ ସଙ୍ଗେ କ୍ରୀଡ଼ାକରି
ମୃଗୁଣୀ ଶବଦ ବାରି ପାଣ୍ଡୁ ଦଣ୍ଡଧାରୀ ।
ଧନୁରେ ଯୋଚି ବିନ୍ଧିଲେ ନାରାଚେକ ଟାଣି
ଶବଦ ଭେଦି ସେ ବାଣ ଗଲା ତତକ୍ଷଣି ।
ଋଷି ପିଠି ସଳଖରେ ପଡ଼ିଗଲା ଗଳି
ମୃଗୁଣୀର ପେଟ ଫୁଟି ପିଠିରେ ନିକିଳି ।
ଚିତ୍କାର କରି ସେ ଋଷି କୋପେ ଦେଲେ ଶାପ
ଆମ୍ଭେ ଯେ ନିର୍ଦ୍ଦୋଷ ନାହିଁ ଆମ୍ଭ ଦେହେ ଶାପ ।
ବିନାଦୋଷେ ଆମ୍ଭଙ୍କୁ ଯେ ପ୍ରହାରିଲାବାଣ
କ୍ରୀଡ଼ା କଲାବେଳେ ପୁଣି ନେଲା ଆମ୍ଭ ପ୍ରାଣ ।
ଆମ୍ଭେ ଯେବେ ମୁନି ଆମ୍ଭ ବାକ୍ୟ ଆନନୋହୁ
କ୍ରୀଡ଼ାବେଳେ ବାଣ ପଡ଼ି ତାର ପ୍ରାଣ ଯାଉ ।
ଅକାଳ କାଣ୍ଡ ଯେ ପଡୁ ତାହାର ଉପରେ
ଶାପ ଦେଇ ମୁନିବର ଗଲେ ସ୍ୱର୍ଗପୁରେ ।
ବାଣମାରି ପାଣ୍ଡୁ ଗଲେ ଖରତର ହୋଇ
ଋଷି ଶାପ ଦେବା ଶୁଣି ମୁଣ୍ଡେ ହାତଦେଇ ।
ବିସ୍ମୟ ହୋଇ ଘରକୁ ଅଇଲେକ ଫେରି
ଅନ୍ଧନୃପତି ଛାମୁରେ କହିଲେ ବିସ୍ତାରି ।
ଦୁଃଖିତ ହେଲେ ଶୁଣିଣ ଅନ୍ଧ ନୃପବର
ପାଣ୍ଡୁ ବୋଇଲେ ପଶିବି ଯାଇଁ ବନଘୋର ।
ବ୍ରହ୍ମଚାରୀ ହୋଇ ଫଳମୂଳ ଖାଇ ତହିଁ
କାଳ କାଟିବି ରାଜ୍ୟରେ ପ୍ରୟୋଜନ ନାହିଁ ।
ଏମନ୍ତ ଶୁଣି ଆତଙ୍କ ହେଲେ ରାଜା ପ୍ରଜା
କୁନ୍ତୀ ମାଦ୍ରୀମାନେ ଦୁଇ ପାଣ୍ଡୁର ଭାରିଯା ।
ସ୍ୱାମୀ ସଙ୍ଗରେ ବନକୁ ହୋଇଲେ ବାହାର
ତାହାକୁ ଘେନି ଚଳିଲେ ପଣ୍ଡୁ ନୃପବର ।
ଶତଶୃଙ୍ଗ ଗିରିତଳେ କୁଡ଼ିଆଏ କରି
ଫଳମୂଳ ଖାଇ ଅତି ଦୁଃଖେ ଦିନ ସରି ।
ଏକଦିନେ କୁନ୍ତୀ ଦେବୀ ସ୍ୱାମୀକି କହିଲେ
ଆମ୍ଭ ଅନ୍ତେ ଏକ ନାହିଁ ଏ ଆମ୍ଭର କୁଳେ ।

କି ବୁଦ୍ଧି କରିବା ନାଥ କହ ତା ବିଚାରି
ଅନୁମତି ଦେଲେ ପୁତ୍ର ଜାତ କରି ପାରି ।
ଦୁର୍ବାସାର ଜପମାଳା ଅଛି ମୋର କରେ
ଯା ନାମ ଜପିବି ସେହି ଆସିବ ମୋ ପୁରେ ।
ଦେବ କି ଦାନବ ଯକ୍ଷ ଗନ୍ଧର୍ବ କିନ୍ନର
ରହି ନ ପାରି ଆସିବ ନିଶ୍ଚୟ ମୋ ପୁର ।
ଏମନ୍ତ ଶୁଣି ସେ ପାଣ୍ଡୁ ଆନନ୍ଦ ହୋଇଲେ
ଯେମନ୍ତେ ପାର ମୋ କୁଳ ରଖଗୋ ବୋଇଲେ
ସ୍ୱାମୀଠାରୁ ଅନୁମତି ପାଇ ଦେବୀ କୁନ୍ତୀ
ମାସ ଶେଷରେ ହୋଇଲେ ପୁଣି ରଜୋବତୀ ।
ଶୁଦ୍ଧସ୍ନାନ ଦିନ ଦେବୀ ଶଉଚ ହୋଇଣ
ଆସନେ ବସି ହସ୍ତରେ ମାଳକୁ ଘେନିଣ ।
ଧର୍ମ ଦେବତାଙ୍କୁ ମନ ମଧ୍ୟରେ ସୁମରି
ତତକ୍ଷଣେ ମିଳିଲେ ସେ ଆସି ତାଙ୍କ ପୁରୀ ।
ପ୍ରଥମେ ଜନ୍ମିଲେ ଧର୍ମ ପୁତ୍ର ଯୁଧିଷ୍ଠିର
ଦ୍ୱିତୀୟ ପୁତ୍ର ଯେ ଭୀମ ପବନ କୁମର ।
ତୃତୀୟ ପୁତ୍ର ଅର୍ଜ୍ଜୁନ ବାସବର ସୁତ
ମହାଦେବୀ ଯେ କୁନ୍ତୀଙ୍କି କହିଲେ ବହୁତ ।
ଦୟାକରି ମାଳାଗୋଟି ଦେଲେ ତାଙ୍କକରେ
ସୁମରଣା କଲେ ଦେବୀ ଅଶ୍ୱିନୀ କୁମାରେ ।
ନକୁଳ ଯେ ସହଦେବ ମାଦ୍ରୀଦେବୀ ସୁତ
ପଞ୍ଚପୁତ୍ର ପାଇ ପାଣ୍ଡୁ ଆନନ୍ଦ ବହୁତ ।
ମାଦ୍ରୀଦେବୀର ସୁନ୍ଦର ରୂପକୁ ଅନାଇ
କାମବାଣେ ପାଣ୍ଡୁ ରାଜା ଉନମତ୍ତ ହୋଇ ।
ବଳେ ମାଦ୍ରୀ ଦେବୀ ସଙ୍ଗେ କଲେ ସହବାସ
ଅକାଳ କାଣ୍ଡ ପଡ଼ିଲା ଦୁହେଁ ଗଲେ ନାଶ ।
ଧୃତରାଷ୍ଟ୍ର ରାଜା ଶୁଣି ଲୋକ ବରଗାଇ
କୁନ୍ତୀଙ୍କୁ ରଖିଲେ ରାଣୀ ହଂସପୁରେ ନେଇ ।
ପାଞ୍ଚପୁତ୍ର ଘେନି କୁନ୍ତୀ ହସ୍ତିନାରେ ଥିଲେ
ଗାନ୍ଧାରୀ ଗର୍ଭରୁ ଶତପୁତ୍ର ଉପୁଜିଲେ ।
ଦ୍ରୋଣନାମେ ଭରଦ୍ୱାଜ ମୁନିର କୁମର
ପରଶୁରାମଙ୍କ ଶିଷ୍ୟ ମହା ବଳୀୟାର ।
ଅଶ୍ୱତ୍ଥାମା ନାମେ ତାର ଏକଇ ନନ୍ଦନ
ଅଶ୍ୱତ୍ଥାମା ମାମୁଁ କୃପ ବୀରପଣେ ଟାଣ ।
କଉରବ ପାଣ୍ଡବଙ୍କ ବିଦ୍ୟାଗୁରୁ ଦ୍ରୋଣ
ଧୃତରାଷ୍ଟ୍ର ପୋଷିଲେ ଯେ ଦେଇ ତାଙ୍କୁ ଅନ୍ନ

କୃପ ଅଶ୍ୱତ୍ଥାମା ଦ୍ରୋଣ ଏକାଠି ରହିଲେ
କଉରବେ ପାଣ୍ଡବଙ୍କୁ ଦେଖି ନ ପାରିଲେ ।
କଉରବ ମଧ୍ୟେ ବଡ଼ଭାଇ ଦୁର୍ଯ୍ୟୋଧନ
ତାହାର ମଇତ୍ର ହେଲା ମହାବୀର କର୍ଣ୍ଣ ।
ଦୁର୍ଯ୍ୟୋଧନର ମାତୁଳ ଶକୁନି ଯେ ମନ୍ତ୍ରୀ
ବହୁତ କୁଟ କପଟ ଏମାନେ ଜାଣନ୍ତି ।
ପାଣ୍ଡବଙ୍କୁ ମାରିବାକୁ ଉପାୟ ସେ କଲେ
ଧର୍ମର ବଳେ ପାଣ୍ଡବ ତହିଁରୁ ବଞ୍ଚିଲେ ।
ବାର ବରଷ ବନରେ ରହିଲେ ସେ ଲୁଚି
ଦ୍ରୁପଦ ରାଜା ଯେ ଥିଲା ଲାଖ ଏକ ସଞ୍ଚି ।
ସେ ଲାଖ ବିନ୍ଧିବା ପାଇଁ ରାଜା ହେଲେ ରୁଣ୍ଡ
ବିନ୍ଧି ନ ପାରିଲେ କେହି ସେହି ଲାଖଖଣ୍ଡ ।
ବିପ୍ର ବେଶରେ ଅର୍ଜ୍ଜୁନ ସେ ଲାଖ ବିନ୍ଧିଲା
ପୃଥିବୀ ରାଜାଙ୍କ ସଙ୍ଗେ ବିବାଦୀ ହୋଇଲା ।
ଲକ୍ଷେ ରାଜାଙ୍କୁ ଜିଣିଲେ ପାଣ୍ଡବେ ସମରେ
ଦ୍ରୌପଦୀଙ୍କୁ ବିଭା ହେଲେ ଦ୍ରୁପଦ ରାଜ୍ୟରେ ।
ଏକା ଦ୍ରୌପଦୀର ହେଲେ ପାଞ୍ଚଭାଇପତି
ବାରତା ପାଇଣ ଧୃତରାଷ୍ଟ୍ର ନରପତି ।
ପାଣ୍ଡବଙ୍କୁ ଆଣି ପୁଣି ଅଧେ ରାଜ୍ୟ ଦେଲା
ଅଧେକ ରାଜ୍ୟରେ ରାଜ ଦୁର୍ଯ୍ୟୋଧନ ହେଲା ।
କପଟ ପାଶାରେ ଜିଣି ଧୃତରାଷ୍ଟ୍ର ସୁତ
ପାଣ୍ଡବଙ୍କ ରାଜ୍ୟ ଧନ ନେଲାକ ସମସ୍ତ ।
ବାରବରଷ ବନରେ ରହିଲେ ପାଣ୍ଡବେ
ଅଜ୍ଞାତ ହେଲେ ବରଷେ ନ ପାଇ କୌରବେ ।
ଆନନ୍ଦରେ ଥିଲେ ପୁଣି ବରଷକ ଅନ୍ତେ
ପାଣ୍ଡବେ ଆପଣା ରାଜ୍ୟ ତାହାଙ୍କୁ ମାଗନ୍ତେ ।
ନ ଦେଲା ସେ ଦୁର୍ଯ୍ୟୋଧନ କଲେ ତହୁଁ ରଣ
ସମସ୍ତେ ମଲେ ବଞ୍ଚିଲେ ଜାଣ ତେର ଜଣ ।
ପଞ୍ଚପାଣ୍ଡବ ଶ୍ରୀକୃଷ୍ଣ ସାତ୍ୟକି ଆବର
ଧୃତରାଷ୍ଟ୍ର ବିଦୁର ଯେ ଅଶ୍ୱଥାମା ବୀର ।
କୃପାଚାର୍ଯ୍ୟ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡି ଏ ତେର
ଅଶ୍ୱତ୍ଥାମା ସେନାପତି ହେଲା ସେ ରାତ୍ରର ।
ଦ୍ରୌପଦୀର ପାଞ୍ଚ ପୁତ୍ର ନିଦେ ଶୋଇଥିଲେ
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡି ଏ ଜଗୁଆଳ ହେଲେ ।
ଦୁଇ ସହସ୍ର ଆବର ଥିଲେ ଯେ ସଇନି
ନିଦେ ଶୋଇଥିଲେ ତିନି ପ୍ରହର ରଜନୀ ।

ଅଶ୍ୱତ୍ଥାମା ଘରେ ପଶି ଶିର କାଟିଗଲା
ପାଞ୍ଚପୁତ୍ର ଶିର ଦୁର୍ଯ୍ୟୋଧନ ଆଗେ ଦେଲା ।
ପୁତ୍ରଶୋକେ କୁରୁପତି ଜୀବନ ଛାଡ଼ିଲା
କୋପେ ପୁଣି ଅଶ୍ୱତ୍ଥାମା ବ୍ରହ୍ମଶର କଲା ।
ଉତ୍ତରା ଗର୍ଭରେ ଥିଲେ ଅଭିମନ୍ୟୁ ସୁତ
ବ୍ରହ୍ମଶର କଲା ସେହି ଗର୍ଭକୁ ନିପାତ ।
ବଂଶ ଲୋପ ହେବା ଦେଖି ସୁଭଦ୍ରା କାନ୍ଦିଲେ
ଭଗିନୀ ସେନେହେ କୃଷ୍ଣ ଗର୍ଭରେ ପଶିଲେ ।
ଶିଶୁଙ୍କୁ ଜୀବନ ଦେଇ ଅଇଲେ ବାହାରି
ଦଶମାସ ଦଶଦିନ ଗଲା ଯହୁଁ ପୂରି ।
ଉତ୍ତରାଗର୍ଭୁ ପୁତ୍ରେକ ହେଲା ଉତପତ୍ତି
ଆହେ ମୁନିଜନେ ସେହୁ ଅର୍ଜୁନର ନାତି ।
ତାହାର ମୁଖକୁ ଦେଖି ପାସୋରିଲେ ଦୁଃଖ
ପଞ୍ଚକଟକେ ତାହାକୁ କଲେ ଅଭିଷେକ ।
ପାଣ୍ଡବେ ଯେ ବାନପ୍ରସ୍ଥ ଆଶ୍ରମେ ରହିଲେ
ପରୀକ୍ଷିତ ରାଜା ହୋଇ ରାଜ୍ୟକୁ ପାଳିଲେ ।
କୁରୁକୁଳ ଚନ୍ଦ୍ରମା ଯେ ବଳବନ୍ତ ପଣେ
ପୃଥିବୀ ରାଜାଙ୍କୁ ବଳେ ଜିଣି ଜଣେ ଜଣେ ।
କର ନେଇ ରାଜ୍ୟେ ରାଜ୍ୟେତାଙ୍କୁ ରାଜାକରି
ଅସ୍ତ୍ରବିଦ୍ୟାରେ ତାହାକୁ ନୁହନ୍ତି କେ ସରି ।
ପିତା ଅଭିମନ୍ୟୁଠାରୁ ଅଧିକ ସେ ବୀର
ସୂର୍ଯ୍ୟତୁଲ୍ୟ ତେଜୋବନ୍ତ ପୃଥ୍ୱୀସମ ଧୀର ।
ଧାର୍ମିକପଣେ ଯୁଧିଷ୍ଠିଠାରୁ ସେ ଅଧିକ
ଧର୍ମ କର୍ମ ଯୋଗ ଯଜ୍ଞ କଲା ସେ ଅନେକ ।
ଭକତିପଣେ ବିଦୁର ନୋହେ ତାକୁ ସରି
ଭୀଷ୍ମଠାରୁ ପ୍ରତିଜ୍ଞା ଯେ ଅନେକ ତାହାରି ।
ନୀତିଶାସ୍ତ୍ରେ ସରି ତାକୁ ନୋହେ ଦୁର୍ଯ୍ୟୋଧନ
ଦାନୀ ପଣେ ହାରିଯିବ ତାକୁ ବୀରକର୍ଣ୍ଣ ।
ମଲ୍ଲବିଦ୍ୟାରେ ତାହାକୁ ଭୀମ ନୋହେ ସରି
ସୁକୁମାର୍ରରେ କୁମାର ନକୁଳର ପରି ।
ଅର୍ଜୁନଠାରୁ ଅଧିକ ବଇଷ୍ଣବ ସେହି
ମନ୍ତ୍ରୀପଣେ ସହଦେବ ତାକୁ ସରି ନୋହି ।
ଗଦା ଯୁଦ୍ଧେ ସରି ତାକୁ ନୋହେ ଶଲ୍ୟରାଜ
ଅଶ୍ୱତ୍ଥାମାଠାରୁ ତାର ଅଧିକ ପହିଜ ।
ବିକ୍ରମରେ ଗୁରୁଦ୍ରୋଣ ଯିବେ ତାକୁ ହାରି
ବୃକ୍ଷଙ୍କ ସମାନ ସେହି ପର ଉପକାରୀ ।
ସାଗର ତୁଲ୍ୟ ତାହାର ହୃଦୟ ଗଭୀର
ପ୍ରଜାଙ୍କ ଦୁଃଖରେ ସଦା ସର୍ବଦା କାତର ।
ଏମନ୍ତ ଗୁଣବନ୍ତ ସେ ରାଜା ପରୀକ୍ଷିତ
ମହାଭାରତ ଗ୍ରନ୍ଥକୁ କରି ଆଦ୍ୟପ୍ରାନ୍ତ ।
ବଇସମ୍ପାୟନ ମୁନି ମୁଖୁ ସବୁ ଶୁଣି
ମହାଜ୍ଞାନୀ ବୋଲାଇଲା ସେହି ନୃପମଣି ।
ଅଠର ଖଣ୍ଡ ପୁରାଣ ଇତିହାସ ଯେତେ
ଶୁଣିଣ ତହିଁରୁ ସାର ବାଛି ହୃଦଗତେ ।
ବିଚାରିଲା ଭାଗବତ ଗ୍ରନ୍ଥ ତହିଁ ସାର
ତାହାକୁ ଶୁଣିଲେ ଜୀବ ପାଇବ ଉଦ୍ଧାର ।
ଦିନେ ସେହି ନରପତି ସଭା କରି ବସି
ବ୍ୟାସ ବାଲମୀକ ଆଦି ଯେତେ ମହାଋଷି ।
ସମସ୍ତେ ଆସି ପ୍ରବେଶ ହେଲେ ସେ ସଭାରେ
କରଯୋଡ଼ି ନୃପମଣି ଜଣାଇ ଛାମୁରେ ।
ଯେତେ ଋଷି ମୁନି ଅଛ ଏ ସଭାରେ ବସି
ଶାଖା ସହିତରେ ଚାରି ବେଦକୁ ଅଭ୍ୟାସି ।
ତପସିଦ୍ଧ ହୋଇ ମହାଜ୍ଞାନୀ ବୋଲାଇଛ
ଇତିହାସ ପୁରାଣାଦି ମୁଖେ ବଖାଣୁଛ ।
ଉଚ୍ଚନୀଚ ବାଛିବାକୁ ମୁହିଁ ନୋହେ କ୍ଷମ
ବଡ଼ ସାନ ନୁହ ତୁମ୍ଭେ ସମସ୍ତେ ତ ସମ ।
କାହାକୁ ଆଗେ ପୂଜିବ ପାଦେ ଅର୍ଘ୍ୟଦେଇ
ବିଚାର କରି ସମସ୍ତେ ଦିଅ ମୋତେ କହି ।
ରାଜାର ମୁଖୁ ଏମନ୍ତ ଶୁଣି ମୁଚୁକୁନ୍ଦ
ଆମ୍ଭ ଭିତରେ ଅଟନ୍ତି ଯେଉଁମାନେ ବୃଦ୍ଧ ।
ସେ ଯାହାକୁ ବିଚାରିଣ କରିବେ ହୋ ରାଜା
ତୁମ୍ଭେ ତାହାକୁ କରିବ ସିନା ଆଗ ପୂଜା ।
ଏମନ୍ତ ଶୁଣି କହିଲେ ମୁଦ୍ଗଲ ଋଷି
କିଏ କିଏ ବୃଦ୍ଧ ତାହା ବାଛ ଏଥେ ବସି ।
କଉଣ୍ଡନ୍ୟ ବିପ୍ର ତହିଁ କହିଲା ଏମନ୍ତ
ବ୍ରହ୍ମାର ପୁତ୍ର ବଶିଷ୍ଠ ମୁନି ତପୋବନ୍ତ ।
ବଛା ହୋଇଛନ୍ତି ତୁମ୍ଭେ ଆଜି କି ବାଛିବ
ଏମନ୍ତ ଶୁଣି କହିଲେ ମୁନି ବାମଦେବ ।
ମରୀଚି ଅଙ୍ଗିରା ଆଦି ନୁହଁନ୍ତି କି ବଡ଼
ବ୍ରହ୍ମାର ମାନସ ପୁତ୍ର କଥାରେ ତା ହୁଡ଼ ।
ଏମନ୍ତ ଶୁଣି ବୋଇଲେ ଭରଦ୍ୱାଜ ମୁନି
ମାରକଣ୍ଡଠାରୁ ବଡ଼ କହ କିଏ ପୁଣି ।

କଳପୀମୁନି ଅଟନ୍ତି ବିଶେଷରେ ଜ୍ଞାନୀ
ଏମନ୍ତ ଶୁଣି ବୋଇଲେମୁନି ଜଇମିନୀ ।
ବ୍ୟାସ କାହିଁପାଇଁ ବଡ଼ ନୋହିବେ ବିଚାର
ବିଷ୍ଣୁର ଅଂଶେ ହୋଇଛି ତାର ଅବତାର ।
ଏମନ୍ତ ଶୁଣି ବୋଇଲେ ମୁନି ଯେ ଚ୍ୟବନ
ଜୀଇଁ ଅଛନ୍ତି ବଶିଷ୍ଠ ମୁନି ତପୋଧନ ।
ତାଙ୍କ ପୁତ୍ର ଶକ୍ତି ମୁନି ଅଛନ୍ତି ଯେ ଜୀଇ
ତାଙ୍କ ପୁତ୍ର ପରାଶର ମୁନି ବେଦାଧ୍ୟାୟୀ ।
ସେ ଥାଇ ବଡ଼ କରିବା ବ୍ୟାସଙ୍କୁ କେମନ୍ତେ
ବୋଇଲେକ ଗଉତମ ମୁନି ଏଥୁଅନ୍ତେ ।
ବାସୁଦେବର ନନ୍ଦନ ଦେବ ବାସୁଦେବ
ରାଜସୟ ଯାଗ କଲେ ଯେକାଳେ ପାଣ୍ଡବ ।
ଆଗେ କେମନ୍ତେ ପୂଜିଲେ ତାଙ୍କୁ ଯୁଧିଷ୍ଠିର
ଏକଥା ଗୋଟା କାହିଁକି ବିଚାର ନ କର ।
ପିତା ଥାଉଁ ପୁତ୍ର ଯେହ୍ନେ ବଡ଼ ବୋଲାଇଲା
ଏକଥାଗୋଟା ଜାଣ ହେ କେମନ୍ତ ହୋଇଲା ।
ସନକ ମୁନି ବୋଇଲେ ଆହୋ ନୃପବର ।
ଶୁକଦେବ ଅଟନ୍ତି ଯେ ମୁନି ମଧ୍ୟେ ସାର ।
ଯେ କାରଣୁ ଅଟନ୍ତି ଯେ ମୁନି ଭାଗବନ୍ତି
ମହାଯତି ବ୍ରହ୍ମଜ୍ଞାନୀ ଆବର ଅଟନ୍ତି ।
ଆଗ ତାଙ୍କୁ ପୂଜାକର ପାଦ୍ୟ ଅର୍ଘ୍ୟ ଦେଇ
ପଛେ ତୁ ଆମ୍ଭଙ୍କୁ ପୂଜାକର ନରସାଇଁ ।
ତହିଁରେ ଯେ ସନମତିକଲେ ମୁନିମାନେ
ପାଦ୍ୟଅର୍ଘ୍ୟ ଦେଲେ ରାଜା ଶୁକଙ୍କ ଚରଣେ ।
ଆବର ମୁନିମାନଙ୍କ ପାଦପୂଜା କରି
ପୁଣି ଶିରେ ବେନିକର ଦେବ ଦଣ୍ଡଧାରୀ ।
ବୋଇଲେ ବେଦପୁରାଣ ପଢ଼ିଲି ଶୁଣିଲି
ମନ ସନ୍ତୋଷ ନୋହିଲା ଭ୍ରମରେ ପଡ଼ିଲି ।
ଏକ ଏକ ଋଷିଙ୍କର ଏକ ଏକ ମତ
କାହାର ବାକ୍ୟକୁ ଆମ୍ଭେ କରିବା ଯେ ସତ ।
ଏରୂପେ ଭ୍ରମରେ ପଡ଼ି ଚିତ୍ତ ନୋହେ ଶାନ୍ତି
ଏଣୁ ସକଳ ମୁନିଙ୍କି ଆଣିଛି ନିମନ୍ତ୍ରି ।
ସମରେ ତ ଅଛ ଏଥେ କହିବା ବିଚାରି
କି କର୍ମ କଲେ ସନ୍ତୋଷ ହେବେ ଦେବହରି ।
ଏମନ୍ତ ଶୁଣି ବୋଇଲେ ମୁନି ଗଉତମ
ସତ ଆଚରିଲେ ତହୁଁ ଉପୁଜଇ ଧର୍ମ ।
ଧର୍ମ କଲାଲୋକଠାରେ ସନ୍ତୋଷ ଶ୍ରୀହରି
ଆମ୍ଭର ମତ ଏମନ୍ତ ଜାଣ ଦଣ୍ଡଧାରୀ ।
ମାରକଣ୍ଡ ମୁନି ଥିଲେ କହିଲେ ହେ ନୃପ
ଶରୀରରେ କଷ୍ଟ ସହି କଲେ ଘୋର ତପ ।
ଶ୍ରୀବିଷ୍ଣୁ ମନ୍ତ୍ର ଜପିଲେ ତୋଷ ହେବେହରି
ପାରିବୁ ଯେବେ ତୁ ତାହା କର ଦଣ୍ଡଧାରୀ
ବଶିଷ୍ଠ ବୋଇଲେ ବିଧିବିଧାନ ଯେମନ୍ତ
ବେଦରେ ଲେଖା ଅଛଇ ଯାଗ ଆଦି ବ୍ରତ ।
ତାହା ତୁ କଲେ ସନ୍ତୋଷ ହେବେ ଜଗନ୍ନାଥ
ବାଲମୀକ ବୋଇଲେ ହେ ଶୁଣ ନରନାଥ ।
ତପ ଜପ ସାଧନାହିଁ ଧର୍ମର ଯେ ମୂଳ
ତହିଁରେ ବଶ ହୁଅନ୍ତି ପ୍ରଭୁ ଆଦିମୂଳ ।
ସନକ ମୁନି କହିଲେ ସେବିଲେ ଅତିଥି
ପ୍ରତିଦିନ ନିତ୍ୟ ହୋମେ ଥିବଯାର ମତି ।
ଦୋହରା ଘରେ ଅଗ୍ନିକି ରଖିବ ଯତନେ
ପୂଜା ବୈଶ୍ୱଦେବ ଆଦି କରି ଶୁଦ୍ଧ ଅନ୍ନେ ।
ଦେବତା ପିତୃଙ୍କୁ ଦେଇ କରିବ ଭୋଜନ
ତାଠାରେ ସନ୍ତୋଷହେବେ ପ୍ରଭୁ ଭଗବାନ ।
ଅତ୍ରି ମୁନି ବୋଇଲେ ହୋ ଶୁଣ ତୁ ରାଜନ
ତୀର୍ଥବ୍ରତ କଲେ ତୋଷହେବେ ଜନାର୍ଦ୍ଦନ ।
ଯେ ତୀର୍ଥେ ଯେବଣ ବିଧି ବିଧାନ ଅଛଇ
ସେ ରୂପେ କଲେ ସମସ୍ତ ତାହାକୁ ମିଳଇ ।
ବସିଥିଲେ ଉଠିଲେ ଯେ ସନତକୁମାର
ବେଦ ପୁରାଣେ ଲେଖିଛି ଧର୍ମ ଯେ ଯାହାର ।
ବ୍ରାହ୍ମଣ ପଢ଼ିବ ବେଦଶାସ୍ତ୍ର ଭଲ କରି
ତହିଁ ଥିବା ତତ୍ତ୍ୱ କଥାମାନ ବୁଝିପାରି ।
ଆପେ ତା କରିବ ନିଜ ଧର୍ମରେ ରହିବ
କ୍ଷତ୍ରିୟର ଧର୍ମ ଯାହା ସେ ତାହା କରିବ ।
ଆପଣା ଧର୍ମ ଛୁଡ଼ିଲେ ଧର୍ମଛଡ଼ା ହୋଇ
ତାଠାରେ ସନ୍ତୋଷ କାହୁଁ ହେବେ ଲକ୍ଷ୍ମୀସାଇଁ ।
ଚ୍ୟବନ ମୁନି କହିଲେ ଶୁଣ ନରପତି
ଜୀବହିଂସା କଲେ ଜାଣ ହୁଏ ନର୍କଗତି ।
ମୃଗୟା କରି ଅନେକ ପଶୁ ହତ୍ୟା କଲ
ତେସନ ତୁମ୍ଭର ଜୀବ ହୁଏ କଲବଲ ।
କପିଳ ବୋଇଲେ ରାଜା ଛାଡ଼ି ସୁଖ ଭୋଗ
ସମାଧିରେ ରହି ସାଧି ପାର ଯେବେ ଯୋଗ ।

ତେଣେ ସନ୍ତୋଷ ହୋଇବେ ନିଶ୍ଚେ ଦେବହରି
ଜନକ ଋଷି କହିଲେ ଶୁଣ ଦଣ୍ଡଧାରୀ ।
ସତଧର୍ମେ ଦୟାଧର୍ମେ ତୋଷ ଚକ୍ରଧର
ଅକାରଣେ ଭ୍ରମୁଅଛି କିମ୍ବା ଚକ୍ରାକାର ।
ପରାଶର ବୋଇଲେ ଯେ ଶୁଣ ତୁ ପୁରାଣ
ପୁରାଣ ଶୁଣିଲେ ତହୁଁ ପାଇବୁ କାରଣ ।
କାରଣ ପାଇଲେ କାର୍ଯ୍ୟେ ବଳିବ ତୋ ଚିତ୍ତ
ଚିତ୍ତ ବଳିଲେ କର୍ମରେ ହୋଇବୁ ପ୍ରବୃତ୍ତ ।
କର୍ମେ ପ୍ରବର୍ତ୍ତିଲ ସିନା ଧର୍ମ ହେବ ତୋର
ଧର୍ମେ ପ୍ରାପତ ହୋଇବୁ ଦେବ ଚକ୍ରଧର ।
ବ୍ୟାସ ବୋଇଲେ ତୁ ରାଜା ନହୁଅ ଯେ ବଣା
ଅବାଟରେ ଗଲେ ନିଶ୍ଚେ ପଡ଼ିବୁ ତ ଠଣା ।
ଏଣୁ ମୁଁ କହୁଛି ବାବୁ ବାଟରେ ତୁ ଚାଲ
ଅବାଟରେ ଗଲେ ନିଶ୍ଚେ ହେବୁ କଲବଲ ।
ବାପ ଅଜା ଯାଇଥିବା ବାଟ ଅକଣ୍ଟକ
ସେ ବାଟରେ ଗଲେ ବାବୁ ନାହିଁ ରୋଗ ଶୋକ ।
ରୋଗଶୋକ ନୋହିଲେ ଏ ଦେହ ଅଜ୍ରାମର
ଦେହ ଅଜ୍ରାମର ହେଲେ ଧର୍ମ କରିପାର ।
ଧର୍ମ କଲେ ଅର୍ଥ କାମମୋକ୍ଷ ଯେ ମିଳଇ
ଅଙ୍ଗିରା ମୁନି ବୋଇଲେ ଶୁଣ ନରସାଇଁ ।
ଯାଗଯଜ୍ଞ ଦେବ ପୂଜା ଧର୍ମର ଏ ପଥ
ଏହାକଲେ ପାଇବୁ ତୁ ସିନା ଜଗନ୍ନାଥ ।
ବାମଦେବ ବୋଇଲେ ଏ ସଂସାର ଅସାର
ମିଛ ମାୟାରେ ପଡ଼ି ଏ ଜୀବ କହେ ସାର ।
କେହି କାହାର ନୁହଇ ଧର୍ମ ଏକା ସ୍ଥୂଳ
ଅହିଂସା ପରମଧର୍ମ ଜାଣ ମହୀପାଳ ।
ଦକ୍ଷ ମୁନି ବୋଇଲେ ତୁ ତୋଷ ପିତୃଗଣ
ପିତୃଙ୍କୁ ତୋଷିଲେ ବାବୁ ପାଇବୁ କାରଣ ।
କ୍ରତୁ ବୋଇଲେ ଦରିଦ୍ର ଦେଖି ଦିଅ ଦାନ
ଦାନ କଲେ ହେବ ତୋର ଦୁର୍ଗତି ମୋଚନ
ଏ ଜୀବ ଗଲେ ଅବଶ୍ୟ ଜନମ ଲଭଇ
ଯାହା ଯାହା ଦେଇଥାଇ ତାହା ସବୁ ପାଇ ।
ବସୁ ବୋଇଲେ ତୁ ଯୋଗୀ ହୁଅ ସବୁ ଛାଡ଼ି
ପବନ ସାଧି ତୁ ଶୂନ୍ୟମଣ୍ଡଳକୁ ମାଡ଼ି ।
ଅନାହତ ମଣ୍ଡଳକୁ ମହାଶୂନ୍ୟ ରଖ
ସେଠାରେ ଦେଖି ପାରିବୁ ଶ୍ୱେତପଦ୍ମ ମୁଖ ।

ନାରଦ ବୋଇଲେ ତୁ ହେ ହସ୍ତିନାର ରାୟ
ବେଦ ପୁରାଣ ଯେ ଇତିହାସ ସମୁଚ୍ଚୟ ।
କାବ୍ୟ ନାଟକ ଆବର ନବ ବ୍ୟାକରଣ
ତନ୍ତ୍ର ଯନ୍ତ୍ର ମନ୍ତ୍ର ଆଦି ଗୁଟିକା ଧାରଣ ।
ଆଗମ ନିଗମ ଶ୍ରୁତି ସ୍ମୃତି ଯେତେକ
ଦଣ୍ଡନୀତି ଆଦିଶାସ୍ତ୍ର ଅଛଇ ଅନେକ ।
ମୁନିମାନେ ଯାଇଛନ୍ତି ଯାହା ଯାହା ଲେଖି
କେବଳ ଆପଣା ଟେକ ଆପେ ଆପେ ରଖି ।
ଭ୍ରମରେ ପଡ଼ିପ୍ରାଣୀଙ୍କ ଭ୍ରମରେ ପକାଇ
ତୁହୋ ନରପତି ଭ୍ରମେପଡ଼ି କାହିଁପାଇଁ ।
ପଚାରୁଅଛୁ ପଡ଼ିବା ଅଧିକ ଭ୍ରମରେ
ଏ ମୁନିମାନେ କହିବେ ନାନାଦି ପ୍ରକାରେ ।
କାହା କଥା ଭାଙ୍ଗି ତୁହି କାହାକୁ କରିବୁ
କହିବୁ ଯେବେ ହୋ ଆମ୍ଭ ବୋଲତୁ ମାନିବୁ ।
ଯାଗ ଯଜ୍ଞ ଦାନ ବ୍ରତ ଆଦି ତୁହୋ କର
ପିତୃଗଣ ଅତିଥିଙ୍କି ତୋଷ ନିରନ୍ତର ।
ଦାନେ ଭୋଜନେ ବିପ୍ରଙ୍କୁ ତୋଷ ନୃପମଣି
ପୂଜାକର ବିପ୍ରଙ୍କୁ ତୁ ବିଷ୍ଣୁ ତୁଲ୍ୟ ମଣି ।
ଜ୍ଞାନୀ ଅଜ୍ଞାନୀ ମୂରୁଖ ପଣ୍ଡିତ ନ ବାଛ
ଶୁଣିଛି ତ ପୂର୍ବେ ଥିଲା ବିପ୍ର ଯେ ଶ୍ରୀବତ୍ସ ।
କୋପେ ଶ୍ରୀହରି ଛାମୁରେ ପାଦ ପ୍ରହାରିଲେ
ବିଷ୍ଣୁ ସେ ବିପ୍ରର ପାଦ ଚିହ୍ନକୁ ବହିଲେ ।
ବିପ୍ର ସନ୍ତୋଷରେ ହରି ସନ୍ତୋଷ ହୁଅନ୍ତି
ବିପ୍ର କୋପିଲେ ଶ୍ରୀହରି ତା ବଂଶ ବୁଡ଼ାନ୍ତି ।
ଶୁଣିଛୁ ତ ଯଦୁବଂଶ ବିପ୍ର କୋପେ ଧ୍ୱଂସ
ଜାଣିବ ଯେବେ କରଇ ବିପ୍ର କିଛି ଦୋଷ ।
ତହିଁର ଦଣ୍ଡ କେବଳ ଜାଣ ଅନାଦର
ଆବର ଯାହା କହୁଛି ଶୁଣ ଦଣ୍ଡଧର ।
ସତ ଶାନ୍ତି ଦୟା କ୍ଷମା ଧର୍ମକୁ ଆଚରି
ଭାଗବତ ଗ୍ରନ୍ଥକୁ ତୁ ଶୁଣ ହେତୁ କରି ।
ତାହାକୁ ଶୁଣିଲେ ତୋର ସଂଶୟ ତୁଟିବ
ଭବ ଭୟ ବନ୍ଧନର ବାଟହିଁ ଫିଟିବ ।
ଏକମୁଖେ ମୁନିମାନେ କହିଲେ ନୃପତି
ବ୍ରହ୍ମାର ପୁତ୍ର ଅଟନ୍ତି ଏ ନାରଦ ଯତି ।
ଏ ଯାହା କହିଲେ ସାର ଅଟଇ ଏ ଜାଣ
ଶୁଦ୍ଧ ହୋଇ ଭାଗବତ ଗ୍ରନ୍ଥକୁ ତୁ ଶୁଣ ।

ଆଦ୍ୟ ପ୍ରାନ୍ତ ଶୁଣି ତହୁଁ ବାଛି ସାର ସାର
ତାହା ତୁ ଗ୍ରହଣ କର ଆହୋ ନୃପବର ।
ଏମନ୍ତ ଶୁଣି ବୋଇଲେ ରାଜା ପରୀକ୍ଷିତ
କାହା ମୁଖରୁ ଶୁଣିବି ଗ୍ରନ୍ଥ ଭାଗବତ ।
ବିଚାରି ସକଳ ମୁନି କହିଦେବା ତୋତେ
ନାରଦ ବୋଇଲେ ତୁହୋ ଶୁଣ ନରପତେ ।
ବ୍ୟାସ ଋଷିର ଯେ ପୁତ୍ର ଏହି ଶୁକମୁନି
ଏହାହୁଁ କେହି ଅଧିକ ନାହିଁ ବ୍ରହ୍ମଜ୍ଞାନୀ ।
ଏହାଙ୍କ ମୁଖୁଁ ତୁ ଶୁଣ ଗ୍ରନ୍ଥ ଭାଗବତ
ଏମନ୍ତ ଶୁଣି ସନ୍ତୋଷ ହେଲେ ପରୀକ୍ଷିତ ।
ଗନ୍ଧ ପୁଷ୍ପ ପାଦ୍ୟ ଅର୍ଘ୍ୟ ଧନବସ୍ତ୍ର ଦେଇ
ଋଷିମାନଙ୍କର ପାଦ ପୂଜି ନରସାଇଁ ।
ମେଲାଣି ମାଗି ନୃପତି ରହିଲେ ନବରେ
କଲ୍ୟାଣ କରି ମୁନିଏ ଗଲେ ଯେଝାଘରେ ।
ଏଥୁ ଅନନ୍ତରେ କଥା ଶୁଣ ମୁନିଜନେ
ଆଶ୍ୱମେଧ ଯାଗ କରି ପୃଥିବୀ ରାଜନେ ।
ସନ୍ତୋଷ କରି ମଉଡ଼ ମଣି ହେଲେ ରାଜା
ପୃଥିବୀର ରାଜା କଲେ ତାର ପାଦପୂଜା ।
ପିତୃଯଜ୍ଞ କରିଣ ସେ ତୋଷି ପିତୃଗଣ
ଧନ ବସନେ ତୋଷିଣ ଦରିଦ୍ର ବ୍ରାହ୍ମଣ ।
ପ୍ରଜାଙ୍କ ମନ ରଞ୍ଜିଲା କୋମଳ ବଚନେ
ବାଳକଙ୍କ ମନ ରଞ୍ଜି ମିଷ୍ଟ ଅନ୍ନଦାନେ ।
ନାରୀଙ୍କର ମନ ରଞ୍ଜି ବସନ ଭୂଷଣେ
ବଳ କଉଶଳେ ସାଧ କରି ଶତ୍ରୁ ଗଣେ ।
ଗ୍ରାମ ଦେବତୀଙ୍କିତୋଷି ବଳି ଭୋଜ ଦେଇ
ସାଧୁ ସନ୍ଥଙ୍କୁ ତୋଷିଲା ଭକତି ଦେଖାଇ ।
ଘାସ ଗ୍ରାସଦେଇ ଗୋରୁ ଗୋପାଳ ତୋଷିଲା
ଘୃତମନ୍ତ୍ର ଆହୁତିରେ ଅଗ୍ନିଙ୍କି ପୂଜିଲା ।
ଯୋଗସାଧି ସିଦ୍ଧ ଅଙ୍ଗ କରି ସେ ନୃପତି
କଳି ପୁରୁଷକୁ ବନ୍ଦି କରି ଦିବାରାତି ।
ଦାନ ଧର୍ମ ଦୟା କ୍ଷମା ସତ୍ୟରେ ସେ ରହି
ଏକା କର୍ମଯୋଗ ଜିଣି ନ ପାରିଲା ସେହି ।
କର୍ମଠାରୁ ବଳବନ୍ତ ନାହିଁ ଆନ ଜଣେ
ଜନ୍ମ କର୍ମହିଁ ଭୁଞ୍ଜନ୍ତି ପ୍ରାଣୀ ଦିନେ ଦିନେ ।
ନିଜେ ବିଷ୍ଣୁ ତ୍ରେତା ଯୁଗେ ରାମ ଅବତାରେ
ରାଜ୍ୟ ସୁଖଭୋଗ ଛାଡ଼ି ବୁଲିଲେ ବନରେ ।
ସୁନା କୁରଙ୍ଗୀକି ଦେଖି କର୍ମଯୋଗେ ପଡ଼ି
ମରିବା ନିମନ୍ତେ ଗଲେ ଭାରିଯାକୁ ଛାଡ଼ି ।
କପଟେ ରାବଣ ସୀତା ରଥେ ଘେନିଗଲା
ଅଶୋକ ବନେ ବନ୍ଦିର ପରାୟେ ରଖିଲା ।
ସେ ପୁଣି ଆପଣା କଲା କର୍ମ କଲେ ଭୋଗ
ତାହାକୁ ଲୋକେ କହନ୍ତି ସିନା ବିହିଯୋଗ ।
ବିଧାତାର ଲେଖନକୁ କାହୁଁ ଆନ କରି
ଛପନକୋଟି ଯେ ଜୀବ ଜନ୍ତୁ ଖାନି ଚାରି ।
କେ ପୁଣି କର୍ମର ଫଳ ନ ଭୁଞ୍ଜି କି ଅଛି
ଶ୍ରୀବତ୍ସ ବିପ୍ରର ପାଦ କହିଲେ ଶ୍ରୀବତ୍ସି ।
ରଙ୍ଗା ଅବତାରେ ବିଷ୍ଣୁ ରଖିଲେ ବାଛୁରୀ
ଶବର ହସ୍ତରେ ପ୍ରାଣ ଦେଲେ ବଂଶ ମାରି ।
କର୍ମେ ଲେଖଇ ଯେବଣ ବିଧାତା ସେ ପୁଣି
କର୍ମ ଫଳକୁ ଭୁଞ୍ଜାଇ ଜାଣିଥା ହେ ମୁନି ।
ଚାରିଟା ମୁଖକୁ ବହି ଅପୂଜା ପାଇଲା
ଯୋଗ ସାଧିସାଧି ଶିବ ଯୋଗିନ୍ଦ୍ର ହୋଇଲା ।
କରମ ଭୁଞ୍ଜାଇ ଶମସାନେ କରି ଘର
କି କହିବି ତୁମ୍ଭ ଆଗେ ହେ ମୁନି ନିକର ।
ଦେବଦାନବ ଯକ୍ଷ ପିଶାଚ କିନ୍ନର
କର୍ମଫଳେ ନାଗରାଜା ଶିରେ ମହୀଭାର ।
ଏକ ଦିନକର କଥା ଶୁଣ ମନ ଦେଇ
କର୍ମବନ୍ତ ଜ୍ଞାନବନ୍ତ ବୁଦ୍ଧିବନ୍ତ ହୋଇ ।
ଏକାଳେ ବନକୁ ଗଲା ମୃଗୟା ନିମନ୍ତେ
ନ ନେଲା ସେ ଅଶ୍ୱଗଜ ପଦାତି ସଙ୍ଗତେ ।
ପାଦଗାମୀ ହୋଇ ସେହି ପାଣ୍ଡୁ ଅଣନାତି
ଧନୁଶର ଧରି ବନ ଭିତରେ ପଶନ୍ତି ।
ଖୋଜି ଖୋଜି ଅରଣ୍ୟରେ ବହୁତ ବେଳରେ
ଦେଖିଲେ କୁରଙ୍ଗୀ ଏକ ଲତାର ଭିତରେ ।
ଏକ ଦୃଷ୍ଟିରେ ନାରାଚ ବିନ୍ଧିଲେ ରାଜନ
ପବନହୁଁ ବେଗେ ଶୂନ୍ୟେ କଲା ସେ ଗମନ ।
ବାଣକୁ ଦେଖି କୁରଙ୍ଗୀ ଭୟେ ପଳାଇଲା
କ୍ରୋଧେ ମହାରାଜା ତାର ପଛରେ ଧାଇଁଲା ।
ଅଗମ୍ୟଗମ୍ୟ ବନସ୍ତେ ପଶିଲା ସେ ଯାଇଁ
ବହୁତ ଦୂର ତା ପଛେ ଗୋଡ଼ାଇ ଗୋଡ଼ାଇ ।
ଶ୍ରମେ ନୃପତିର ଅଙ୍ଗୁ ବହେ ଶ୍ରମଝାଳ
କୁରଙ୍ଗୀ ଧରି ନ ପାରି କୋପେ ମହୀପାଳ ।

ଦୀର୍ଘ ନିଃଶ୍ୱାସ ପକାଇ ଦେଖି କଣ୍ଠାବଣ
କୁରଙ୍ଗୀ କାହିଁ ଲୁଚିଲା ନ ପାଇ ରାଜନ ।
ଦୁଃଖିତ ହୋଇ ସେଠାରୁ ଆସନ୍ତେଣ ଫେରି
କ୍ଷୁଧା ତୃଷାରେ ଆତୁର ହୋଇ ଦଣ୍ଡଧାରୀ ।
ବାଟ ନ ପାଇ ଅରଣ୍ୟ ମଧ୍ୟରେ ଭ୍ରମନ୍ତି
କାମଧେନୁର ଶବଦ ଶୁଣି ନରପତି ।
ଶବଦ ବାରି ସେ ଦିଗସ୍ଥିର କରିଗଲେ
ବହୁତ ଦୂରେ ଗୋଟିଏ ମୁନିଙ୍କି ଦେଖିଲେ ।
ବୃକ୍ଷତଳେ ବସିଛନ୍ତି କଥା ନ କହନ୍ତି
ସମାଧିରେ ଯୋଗୀ ଲୟ କରି ବସିଛନ୍ତି ।
ବ୍ରାହ୍ମଣର ପାଦେ ପଡ଼ି ପରୀକ୍ଷିତ ରାୟେ
ଶିରେ କର ଦୁଇ ଦେଇ କହିଲେ ବିନୟେ ।
ଆହେ ମୁନିବର ମୁହିଁ ରାଜା ପରୀକ୍ଷିତ
ମୃଗୟା ନିମନ୍ତେ ଏକା ପଶିଲି ବନସ୍ତ ।
ବହୁତ ଦୂର ଗଲି ମୁଁ ମୃଗ ନ ପାଇଲି
ମହାଶ୍ରମ ପାଇ ବାଟୁ ଫେରିଣ ଅଇଲି ।
ଅଗମ୍ୟାଗମ୍ୟ ବନସ୍ତେ ନ ପାଇଲି ବାଟ
କ୍ଷୁଧା ତୃଷାରେ ଆକୁଳ ହେଉଛି ମୋ ପେଟ ।
ପୂର୍ବ ଭାଗ୍ୟବଳେ ଭେଟ ପାଇଲି ତୁମ୍ଭର
ଫଳମୂଳ ଜଳ କିଛି ଦେଇ ରକ୍ଷାକର ।
ଏମନ୍ତ ବିନୟ କରି ନୃପତି କହିଲେ
ମଉନ ବ୍ରତରେ ମୁନି ଲୟେ ବସିଥିଲେ ।
ଯୋଗବଳେ ଜାଣି ଶୁଣି ନୃପତି ବଚନ
କିଛି ନ କହିଣ ତୁନି ହେଲେ ତପୋଧନ ।
କଥା କହିଲେ ମୁନିଙ୍କ ବ୍ରତ ଭଙ୍ଗ ହେବ
ବ୍ରତଭଙ୍ଗ ହେଲେ ତପଫଳ ବୃଥା ଯିବ ।
ତପ ସିନା ତପୀଙ୍କର ଜୀବନହିଁ ଧନ
ବୁଝି ନ ପାରି କ୍ରୋଧରେ ହସ୍ତିନା ରାଜନ ।
ମନେ ବିଚାରିଲେ ଗର୍ବ କରି ଏକ ଦ୍ୱିଜ
ଆମ୍ଭେ ଯେ ଅଟୁଁ ପୃଥିବୀ ମଧ୍ୟେ ମହାରାଜ ।
ଆମ୍ଭଙ୍କୁ ଅବଜ୍ଞା କଲା କଥା ନ କହିଲା
ଅତିଥି ବୋଲି ଆମ୍ଭର ସେବାହିଁ ନ କଲା ।
ଏମନ୍ତ ଅଧର୍ମ ଦ୍ୱିଜ କାହୁଁ ଆସି ପୁଣି
ମୋ ରାଜ୍ୟେ ରହି କପଟେ ବୋଲାଇଛି ମୁନି ।
ବିପ୍ର ନୋହିଥିଲେ ଶିର କାଟନ୍ତି ଏହାର
ଏହାକୁ ଦଣ୍ଡ ଦେବାର ଉଚିତ ଆମ୍ଭର ।

ଏମନ୍ତ ଭାବି ନୃପତି ଆଖି ବୁଲାଇଲେ
ମୃତସର୍ପ ଏକ ପଡ଼ି ଅଛଇ ଦେଖିଲେ ।
ଧନୁର ହୁଳେ ତାହାକୁ ଆଣି ନରସାଇଁ
ମହାମୁନିର ଗଳାରେ ଦେଇଣ ଲମ୍ବାଇ ।
କ୍ଷୁଧା ତୃଷାରେ ଆତୁର ହୋଇ ତର ତର
ଦିଗକୁ ବାରିଣ ଯିବ ପଥ କରି ସ୍ଥିର ।
ବନସ୍ତ ଲଙ୍ଘି ଦେଶରେ ପ୍ରବେଶ ହୋଇଲେ
ପୁରରେ ପଶି ମଣୋହି ଆଦି ଶେଷ କଲେ ।
ଜୟ ତୁ ଜୟ ତୁ ଦେବ ବିଘ୍ନ ବିନାଶନ
ଜୟ ତୁ ଜୟ ତୁ ଦେବ ମୂଷିକ ବାହନ ।
ଜୟ ତୁ ଜୟ ତୁ ଦେବ ଅଯୋନି ସମ୍ଭୂତ
ଜୟ ତୁ ଜୟ ତୁ ଦେବ ପାର୍ବତୀର ସୁତ ।
ଜୟ ତୁ ଜୟ ତୁ ଦେବ ବାରଣବଦନ
ସକଳେ କରନ୍ତି ଆଗେ ତୋ ପାଦ ବନ୍ଦନ ।
ବଳବନ୍ତ ପଣେ ତୋତେ ନୋହେ କେହିସରି
ହର ନ ଥିଲେ ଗିରିଜା ତୋତେ ଜାତକରି ।
ସିଂହ ଦୁଆରେ ଜଗାଇ କହିଗଲେ ତୋତେ
ଦେବ ଦାନବ ମାନବ ଆଦି ଜୀବ ଯେତେ ।
କାହାକୁ ଛୁଡ଼ି ନ ଦେବୁ ଆରେ ବାପଧନ
ଏମନ୍ତେ ତୋତେ ତିଆରି ବହୁତ ରୂପେଣ ।
ଶୂଳ ଦେଇ ମହାମାୟୀ ଅନ୍ତପୁରେ ଗଲେ
ହଟକେଶ୍ୱର ତୀର୍ଥରେ ମହାଦେବ ଥିଲେ ।
ବହୁତ କାଳ ସମସ୍ୟା କରି ପାପ ନାଶି
ଫେରି ଆସନ୍ତେ ପୁରକୁ କଇଳାସବାସୀ ।
ଦ୍ୱାରେ ପଶନ୍ତେ ଭିତରେ ନ ଦେଲୁ ତୁ ଛାଡ଼ି
ହରଙ୍କ କରୁ ତ୍ରିଶୂଳ ନେଲୁ ତୁ ଉଛୁଡ଼ି ।
ସୁନ୍ଦର ରୂପ ନହୁଲି ବୟସ ତୋହର
କୋଟି କୋଟି କନ୍ଦର୍ପ ତୋ ପାଦର କିଙ୍କର ।
ଆମ୍ଭର ନାମ ଈଶ୍ୱର ବୋଲି ଧାତା ଦେଲେ
କୋପେ ଶିବ ରୁଦ୍ରଗଣ ହକାରି ବୋଇଲେ ।
ଆମ୍ଭେ କୋପ କଲେ ସୃଷ୍ଟି ହୁଅଇ ସଂହାର
ବାଳକ ଏକ ଜଗିଛି ଆମ୍ଭର ଦୁଆର ।
ସେ ଆମ୍ଭ ହସ୍ତରୁ ଶୂଳ ଛଡ଼ାଇଣ ନେଲା
କା ଆଗେ କହିବି ଏହା କହ ତୁମ୍ଭେ ଭଲା ।
ରୁଦ୍ରଗଣ ଶୁଣି କୋପେ ବୋଇଲେ ଭୋନାଥ
ତୋହର ଆଜ୍ଞାରେ ଜଳେ ଭାସଇ ପର୍ବତ ।

ତୁ ଯେବେ ବୋଲିବୁ ବାନ୍ଧି ଆଣିଦେବୁ ତାକୁ
ନୋହିଲେ ତା ଶିର କାଟି ଆଣିବୁ ଛାମୁକୁ ।
ଶିବ ବୋଇଲେରେ ବାବୁ ନ କରି ବିଚାର
ସେହି ଦୁଷ୍ଟ ଶିଶୁକୁରେ ବେଗେ ଯାଇମାର ।
ଏମନ୍ତ ଆଜ୍ଞା ପାଇଣ ଧାଇଁଲେ ତୂରିତେ
ରୁଦ୍ରଗଣ ଶୂଳ ଶକ୍ତି କାତି ଧରି ହସ୍ତେ ।
ପାଦଭରେ ବସୁମତୀ ହୁଏ ଦଲ ଦଲ
ଏଗାରକୋଟି ଯେ ଗଣାହେଲେ ଗଜପଲ ।
ସିଂହଛୁଆ ପ୍ରାୟ ତହୁଁ ହୋଇଲୁ ସେ ତୁହି
ମାଇଲୁ ତାଙ୍କୁ ପଳାଇ ଗଲେ ଭୟ ପାଇ ।
ଶିବଙ୍କ ଆଗେ ମିଳିଲେ ଦେଖି କୋପେ ହର
ଦେବତାଙ୍କୁ ସୁମରିଲେ ଜାଣି ପୁରନ୍ଦର ।
ତେତିଶକୋଟି ଦେବତା ସଙ୍ଗତରେ ଘେନି
ଦିଗପାଳ ସହିତରେ ବିଷ୍ଣୁ ପଦ୍ମଯୋନି ।
ଆସି ମିଳିଲେ ଶିବଙ୍କ ଛାମୁରେ ସକଳେ
ରୁଦ୍ର ନିଜେ ଶିଶୁ ସଙ୍ଗେ ବୁଝିବାକୁ ଗଲେ ।
ବହୁତ ସଇନ୍ୟ ଦେଖି ପାଇଲୁ ତୁ ଭୟ
ଜନନୀ ଆଗେ କହିଲୁ ରଖ ତୋର ଗୃହ ।
ସଇନ୍ୟ ମାଡ଼ି ଆସନ୍ତି ଯେହ୍ନେ ବଢ଼ିପାଣି
ଏହିକ୍ଷଣି ମୋତେ ମାତ ପକାଇବେ ହାଣି ।
ଏମନ୍ତ ଶୁଣି ତୋ ମୁଖୁଁ କୋପେ ଗିରିସୁତା
ବୋଇଲେ ତୁ ମୋର ବରେ ହୁଅ ଜଗଜ୍ଜିତା ।
ଏମନ୍ତ କହି ଅଙ୍ଗରୁ ଜାତକଲେ ଗଣ
ଭୟଙ୍କର ବିକଟାଳ ବଦନ ଦଶନ ।
କୋଟି କୋଟି ଦେବୀଗଣ ତୋର ସଙ୍ଗେ ଗଲେ
ତୋତେ ମଝିରେ ପୁରାଇ ନୃତ୍ୟ ଆରମ୍ଭିଲେ ।
ଦନ୍ତ କଟ କଟ ଆଖି ମଟ ମଟ କରି
କିଳିକିଳା ନାଦେ ନାଚିଯାନ୍ତି ତାଳିମାରି ।
କେହି କେହି ଲଙ୍ଗଳା ଯେ କେ ବାଳଝାମ୍ପରା
କାହାର ଶରୀର ଶୋହେ କୋଟି କୋଟି ଶିରା ।
କାହା ମୁଣ୍ଡେ ବିରାଜିଛି ଲକ୍ଷ ଲକ୍ଷ ଆଖି
କେହି ଖେମଟା ନାଚଇ ପୁରୁଷଙ୍କୁ ଦେଖି ।
କେହି ବକ୍ରଗତି କରି ଚାହେଁ ଲଇଁ ଲଇଁ
ମାତୃଗଣଙ୍କୁ ଦେଖିଣ ଦେବେ ଭୟ ପାଇ ।
ପଛ ଘୁଞ୍ଚା ଦେଇ ହର ଚରଣେ ଲୋଟିଲେ
ଦେଖି ଶିବ ଶିବାଗଣେ ପୃଥିବୀ ଘୋଟିଲେ ।

ବ୍ରହ୍ମା ତାର ସୃଷ୍ଟି ରଖି ନ ପାରିବ ଆଉ
ତାଙ୍କ ସଙ୍ଗେ ବାଦକରି ବଞ୍ଚିବା ହେ କାହୁଁ ।
ଏମନ୍ତ ଶୁଣିଣ ଶିବ ବିସ୍ମୟ ହୋଇଲେ
ନାରାୟଣ ବ୍ରହ୍ମା ମୁଖ ଚାହିଁଣ ବୋଇଲେ ।
କି ବିଚାରୁ ତୁ ହୋ ବ୍ରହ୍ମା ଯାଅ ବେଗ କରି
ସନ୍ତୋଷ କରାଇ ଆସ ଶଇଳ କୁମାରୀ ।
ନୋହିଲେ ଜାଣ ପୂରିଲା ଆଜି ନିର୍ଣ୍ଣେ କାଳ
ଏକାବେଳେ ସମସ୍ତେ ହୋ ଯିବା ଯମଆଳ ।
ଏମନ୍ତ ଶୁଣି ବିଧାତା ହର ପୁରେ ଗଲା
ଶଇଳସୁତା ଚରଣ କମଳ ବନ୍ଦିଲା ।
ବୋଇଲା ଗୋ ମାତ ତୋର ଗଣ ତୁ ସମ୍ଭାଳ
ନୋହିଲେ ନିର୍ଣ୍ଣେ ଭାଙ୍ଗିଲା ଆଜି ଶିବଆଳ ।
ତୁହି ମାତ ସିନା ଅଟୁ ଜଗତକାରିଣୀ
ସକଳ ଜୀବ ଜନ୍ତୁର ଅଟୁ ତୁ ଜନନୀ ।
ମାତା ସଙ୍ଗେ କଳି କରି ବଞ୍ଚଇ କି ଶିଶୁ
ଅବିଚାର କରି କିମ୍ପା ସଂସାର ବିନାଶୁ ।
ଗିରିଜା ବୋଇଲେ ତୁମ୍ଭେ କଲ ଅବିଚାର
ବହୁତ କାଳ ରହିଲେ ତପେ ଯାଇ ହର ।
ପୁର ରକ୍ଷା କରିବାକୁ ନ ରଖି ଗୋଟିଏ
ରହି ନପାରିଲୁ ଆମ୍ଭେ ଦୁଷ୍ଟଙ୍କର ଭୟେ ।
ତେଣୁ ମୁହିଁ ଜାତ କଲି ଏ ଦୁଇ କୁମର
ସେ ଶିଶୁ କାହୁଁ ଚିହ୍ନିବ ବିଚାର ତୁ କର ।
ହର ପଶନ୍ତେ ସେ ଶିଶୁ ନ ଛାଡ଼ିଲା ଦ୍ୱାର
କୋପେ ଶୂଳ ପ୍ରହାରନ୍ତେ ତାକୁ ଦେବହର ।
ବଳେ ସେ ଶୂଳକୁ ଶିଶୁ ନେଲାକ ଛଡ଼ାଇ
ଏଗାର କୋଟି ଗଣଙ୍କୁ ଦେଲେ ଯେ ପଠାଇ ।
ବହୁତ କୁମର ସଙ୍ଗେ କଲେ ଆସି ରଣ
ଭାଗ୍ୟେ ସେହୁ ପୁତ୍ର ଯେ ମାଇଲା ରଣଭଣ ।
ପୁଣି ଦେଖ ତିନିପୁର ଜୀବଜନ୍ତୁ ସାଧି
ଆସୁଅଛି ଶିଶୁ ସଙ୍ଗେ ହୋଇବ ବିବାଦି ।
ତୁମ୍ଭର ଏ ସୁବିଚାର ମୋର ଅବିଚାର
ଏମନ୍ତ ଶୁଣି ଚରଣେ ପଡ଼ି ବେଦବର ।
ବୋଇଲେ ଗୋମାତକୋପ ଶାନ୍ତକର ଏବେ
ସଦାକାଳେ ତୋର ପାଦ ସେବୁଁ ଆମ୍ଭେଦେବେ ।
ଏବେ ତୋର ଗଣଙ୍କୁ ତୁ ଗର୍ଭରେ ସଂହର
ଆମ୍ଭେ ଯାଇଁ ବୋଧକରି ଆଣୁଅଛୁଁ ହର ।

ବ୍ରହ୍ମା ବଚନେ ସନ୍ତୋଷ ହୋଇ ମହାମାଈ
ଆଁ ଆଁ କଲେ ଗଣ ଗର୍ଭେ ପଶିଲେ ଝସାଇ ।
କ୍ଷଣକେ ସବୁ ସମ୍ଭାଳି ଆପଣା ଗର୍ଭରେ
ଦେଖି ବ୍ରହ୍ମା ତହୁଁ ପୁଣି ଗଲେ ଖରତରେ ।
ହରଙ୍କୁ କହି ସମ୍ବୋଧି କଲେ ସମାଧାନ
ତୁମ୍ଭଙ୍କୁ ଯେ ଅଗ୍ରପୂଜ୍ୟ କରି ଦେବଗଣ ।
ଯେ ଯାହାର ପୁରେ ଗଲେ ଆହେ ଗଣନାଥ
ତବ ପାଦତଳେ ଦାସ ମୁହିଁ ଗୋପୀନାଥ ।

.....❀.....

## ପରୀକ୍ଷିତରାଜାଙ୍କ ପ୍ରତି ବ୍ରହ୍ମଶାପ

ଶୁଣୁଛନ୍ତି ମୁନିଗଣ କହନ୍ତି ଶ୍ରୀହରି
ତୃତୀୟ ଖଣ୍ଡର କଥାମାନ ଯେ ବିସ୍ତାରି ।
ଏକଇ ପୁତ୍ର ମୁନିର ଶୃଙ୍ଗୀ ନାମ ତାର
ଖେଳ ଖେଳୁଥାଇ ରହି ଶିଶୁଙ୍କ ସଙ୍ଗର ।
ଟୁଙ୍ଗା ବୟସ ତା ବୁଦ୍ଧି ଅଳପ ଅଟଇ
କୁଶନାମେ ବାଳକର ସଙ୍ଗରେ ଖେଳଇ ।
ଆନ ବ୍ରାହ୍ମଣର ପୁତ୍ର ଅଟଇ ସେ କୁଶ
ଖେଳରେ ହାରି ତା ମନେ ବଡ଼ ମହାରୋଷ ।
ଶୃଙ୍ଗୀ ସଙ୍ଗେ କଳି କରି ବୋଲଇରେ ମୂଢ଼
ଖେଳରେ ଜିଣି ତୁ କେତେ ଦେଖାଉ ପ୍ରଉଢ଼ ।
ଗରମ ଦେଖାଉ ପୁଣି ମାଡୁ ନାହିଁ ଲାଜ
ହସ୍ତିନାରେ ପରୀକ୍ଷିତ ନାମେ ମହାରାଜ ।
ମୃଗୟାକୁ ଆସିକରି କ୍ଷୁଧାତୁର ହୋଇ
ତୋ ବାପ ପାଖେ ଅତିଥି ହେଲା ନରସାଇଁ ।
ପାଣି ମାଗିଲା ରାଜାଙ୍କୁ ନ ଦେଲା ତୋ ବାପ
ଏମନ୍ତ ଦେଖି ରାଜାର ବଢ଼ିଲା ଯେ କୋପ ।
ଗାଳି ଦେଲାହିଁ ତାହାକୁ ତୋ ବାପ ନ ଶୁଣି
କଥା ନ କହିଲା ତହିଁ ହୋଇଲାକ ତୁନି ।
ମଉନ ବ୍ରତେ ରହି ତା ନ ଜାଣି ରାଜନ
ବିପ୍ର ବୋଲି ନ ଦଣ୍ଡିଲା ହୋଇ କୋପମନ ।
ଦେଖିଲା ପଡ଼ିଛି ତହିଁ ସର୍ପ ଏକ ମରି
ଧନୁର ହୁଳେ ତାହାକୁ ଆଣି ଦଣ୍ଡଧାରୀ ।
ତୋ ବାପ ଗଳେ ଲମ୍ବାଇ ଗଲା ନିଜପୁରେ
ଏମନ୍ତ ପୁଣି ସେ ଶୃଙ୍ଗୀ ଆସି ଖରତରେ ।
ଦେଖିଲା ପିତା ଗଳାରେ ଲମ୍ବିଅଛି ସାପ
ତୁରୁ ତାହା ଦେଖି ଶୃଙ୍ଗୀକରି ମହାକୋପ ।

ବୋଇଲା ତୁ ରାଜା ହୋଇ ଏଡ଼େ ଦୁରୁଜନ
ମଉନବ୍ରତେ ରହିଛି ଦେଖୁଁ ତପୋଧନ ।
ଧନ ଗର୍ବେ ଅନ୍ଧ ହୋଇ ଦେଲୁ ଯେତେଗାଳି
ମଲା ସାପ ଗଳେ ଦେଲୁ କିଛିହିଁ ନ ଭାଳି ।
ତୋର ପ୍ରତି ଶାପ ଏବେ ଘେନ ତୁ ରାଜନ
ଆଜିଠାରୁ ସାତଦିନେ ତେଜିବୁ ଜୀବନ ।
ବ୍ରହ୍ମବୀର୍ଯ୍ୟେ ଜାତ ଯେବେ ହୋଇଥିବି ମୁହିଁ
ମୋ କଥାକୁ ଆନକରି ନ ପାରିବ ବିହି ।
ଏମନ୍ତ କହି ପକାଇଦେଲା ପାଣି ଚଳା
କୋପଯୋଗୁଁ ଦ୍ୱିଜପୁତ୍ର ତେଜେ ଅନର୍ଗଳା ।
ପିତାର ପାଶେ ପ୍ରବେଶି ଯଷ୍ଟି ଖଣ୍ଡେ ଆଣି
ମୃତ ଶବକୁ କାଢ଼ିଲା ସେ କୁମର ମଣି ।
କୋପରେ ସର୍ବାଙ୍ଗ ଯାକ ଥରଇ ତାହାର
ଜଳନ୍ତା ଅନଳ ଜାଣି ହୋଇ ସେ କୁମର ।
ନୟନକୁ ରଙ୍ଗବର୍ଣ୍ଣ କରିଣ କହିଲା
ନୃପତି ପଣ କେମନ୍ତେ ବିହି ତୋତେ ଦେଲା ।
ଏଡ଼େ ପାପୀକୁ କିପରି ବହିଛି ଧରଣୀ
ସହି ରହିଛି କେମନ୍ତେ ଲକ୍ଷ୍ମୀ ଠାକୁରାଣୀ ।
ଆରେ ପାପୀ ଯେଉଁ ସାପ ଦେଲୁ ମୁନିଗଳେ
ସେହି ସର୍ପଯୋଗୁଁ ପ୍ରାଣ ଯାଉ ଯମଆଳେ ।
ସାତଦିନ ମଧ୍ୟେ ତୋତେ ତକ୍ଷକ ଦଂଶିବ
ଗରୁଡ଼ ସେହି ବିଷକୁ ହରି ନ ପାରିବ ।
ଗଦ ପଦ ନ କାଟିବ ନ ଝଡ଼ିବ ବିଷ
ଅମୃତହିଁ ଆଣି ଯେବେ ଦିଅନ୍ତି ତ୍ରିଦଶ ।
ତହିଁରେ ସେ ବିଷ କେଭେ ନ ଯିବ ଉତୁରି
କାଳ ମୁଖରୁ କଦାପି ନ ଯିବୁ ଉବୁରି ।
ହରିହର ବ୍ରହ୍ମା ଆସି ନ ପାରିବେ ରଖି
ପୁତ୍ରର ବଚନ ଶୁଣି ମୁନି ହୋଇ ଦୁଃଖୀ ।
ଯୋଗ ଭାଙ୍ଗିଗଲା ମୁନି ବ୍ରତ ତେଜିକରି
କି କଲୁକି କଲୁ ପୁତ୍ର କିଛି ନ ବିଚାରି ।
ପୃଥିବୀ ରାଜା ଉପରେ ଯେ ମଉଡ଼ମଣି
ସତ୍ୟବନ୍ତ ଦୟାବନ୍ତ ଯେବଣ ପରାଣୀ ।
ତାହାରେ ତୁ ଶାପ ଦେଇ କି ଯଶ ପାଇଲୁ
ପୃଥିବୀ ଲୋକଙ୍କୁ ପୁତ୍ର ପାପେ ବୁଡ଼ାଇଲୁ ।
ରାଜାର ବିହୁନେ ହେବ ରାଜ୍ୟ ଅରାଜକ
ଧର୍ମଛାଡ଼ି ଅଧର୍ମରେ ଯିବେ ରାଜ୍ୟଯାକ ।

ମୋର କର୍ମଫଳ ମୁହିଁ ଭୁଞ୍ଜିବିନା ବାବୁ
ପୂର୍ବଜନ୍ମେ କରିଥାଇ ପ୍ରାଣୀ ଯାହା ସବୁ ।
ଏ ଜନ୍ମେ ସେ ତାର ଫଳ ଭୁଞ୍ଜଇ ଅବଶ୍ୟ
ବାଳୁତ କାଳେ ମୁଁ ହୋଇ କଉତୁକ ବଶ ।
ଭିକ ମାଗୁଥିଲା ଏକ ବିପ୍ର ଘରେ ଘରେ
ପ୍ରବେଶ ହୋଇଲା ଆସି ଆମ୍ଭ ଦାଣ୍ଡଦ୍ୱାରେ ।
ଅତି ବୁଢ଼ା ବାଳଯାକ ପାଚିଲାଣି ତାର
ମୁଣିକି ରଖି ପିଣ୍ଡାରେ ବସେ ଦ୍ୱିଜବର ।
ଯଷ୍ଟି ଖଣ୍ଡିକ ପାଖରେ ରଖିଦେଇ ବୁଢ଼ା
ଲୁଖୁରା ଯୋଗୁଁ ଦିଶଇ ଯେହ୍ନେ ଲକ୍ଷ୍ମୀଛଡ଼ା ।
ତୁନିହୋଇ ଯାଇ ତାର ବାଡ଼ିଖଣ୍ଡି ଆଣି
ତହିଁରେ ମଲା ସାପକୁ ଗୁଡ଼ାଇଲି ପୁଣି ।
ବିପ୍ର ପିଠି ଆଡୁ ଗଲି ଥିରି ଥିରି ହୋଇ
ତା ଗଳାରେ ମହାସର୍ପ ଗୋଟି ଦେଲିଥୋଇ ।
ବାଡ଼ି ରଖି ପଳାଇଲି ହସି କର କର
ତାହା ଦେଖି ମଟ ମଟ ଚାହେଁ ଦ୍ୱିଜବର ।
ଏହା ଦେଖି ଗ୍ରାମଲୋକେ ଦେଲେ ମୋତେ ଗାଳି
ଚାଲିଲା ଶଗଡ଼େ ହାତମାରି କରୁ କଳି ।
ପିତା ମାତା ଶୁଣି ମତେ ପିଟିଲେକ ଛାଟେ
କିଛିନ କହି ସେ ବୃଦ୍ଧବିପ୍ର ତହୁଁ ଉଠେ ।
ସେ କର୍ମ ଫଳ କି ପୁତ୍ର ନ ଭୁଞ୍ଜନ୍ତି ମୁହିଁ
ନୃପତିର ଏଥିରେ ତ କିଛି ଦୋଷ ନାହିଁ ।
ମୋହର ମଉନ ବ୍ରତ ଜାଣନ୍ତା ସେ କାହୁଁ
ଅତିଥି ମୋ ଦ୍ୱାରେ ତାକୁ ନ ସେବିଲି ଯହୁଁ ।
କ୍ଷୁଧା ତୃଷାରେ ଆତୁର ହୋଇ ନରପତି
ଯାହା ସେ କରିଚି ତାହା ଉଚିତ ଯେ ଶାସ୍ତି ।
ରାଜଦଣ୍ଡ ବୋଲି ତୁହି ମନେକରୁ ଯାହା
ଦଣ୍ଡ ନୋହେ ଧର୍ମ ରଖି ଗଲା ନରନାହା ।
ଧର୍ମର ତତ୍ତ୍ୱ ନବୁଝି କ୍ରୋଧେ ହେଲେ ବାଇ
ଯେଉଁ ଶାପ ଦେଲୁ ତାହା ମେଣ୍ଟିଣ ନ ଯାଇ ।
ବିନାଦୋଷେ ନୃପତିକି ଦେଲୁ ମୋରଶାପ
ବଡ଼ ପ୍ରତାପୀ ଅଟଇ ହସ୍ତିନାର ନୃପ ।
ତାହାଯୋଗୁଁ ଯାଗଯଜ୍ଞ କରୁଥିଲୁଁ ଆମ୍ଭେ
ଯେ ଯଜ୍ଞ ଘୃତ ଆହୁତି ଭାଗ ପାଇ ଦେବେ ।
ସନ୍ତୋଷେ ବୃଷ୍ଟି କରନ୍ତି ବେଳ କାଳ ଜାଣି
ବୃଷ୍ଟି ଯୋଗୁଁ ଶସ୍ୟ ଜାତ କରଇ ଧରଣୀ ।
ଶସ୍ୟ ଖାଇ ବଳବନ୍ତ ହୁଅନ୍ତି ପ୍ରାଣୀଏ
ତେଣୁ ସିନା ଉପୁଜନ୍ତି ପୃଥ୍ୱୀରେ ପ୍ରଜାଏ ।
ବାଳୁତ ବୁଦ୍ଧିରେ ତୁହି କଲୁରେ କି କର୍ମ
ରାଜାକୁ ତୁ ଶାପଦେଇ ନାଶ କଲୁ ଧର୍ମ ।
ଶାପର ତ ପ୍ରତିକାର ଜଣାନାହିଁ ତୋତେ
ପୁତ୍ରକୁ ଭର୍ତ୍ସନା କରି ମୁନି ଏହିମତେ ।
ବହୁତ ସନ୍ତାପ କରି ବିସ୍ମୟ ହୋଇଲା
ଗୌରମୁଖ ନାମେ ତାର ଶିଷ୍ୟ ଏକ ଥିଲା ।
ତାହାକୁ ଡାକି ବୋଇଲା ଆରେ ଗୌରମୁଖ
ଶୃଙ୍ଗୀ ମୋର ନାଶଗଲା ଦେଖ ରାଜ୍ୟଯାକ ।
ପରମ ଧାର୍ମିକ ରାଜା ହସ୍ତିନା ନୃପତି
ତାକୁ ଶାପ ଦେଲା କ୍ରୋଧେ ଏହି ପାପମତି ।
ଯାଅ ବାବୁ ଏହିକ୍ଷଣି ବିଳମ୍ୱ ନ କର
କହିବୁ ସବୁ ବୁଝାଇ ନୃପତି ଛାମୁର ।
ହେଉ କହି ସେ ଗଉରମୁଖ ବେଗେ ଗଲା
ପାଦୁକା ମନ୍ତ୍ରକୁ ମନେ ମନେ ସୁମରିଲା ।
ନିମିଷକେ ହସ୍ତିନାରେ ହୋଇଲା ପ୍ରବେଶ
ବ୍ରାହ୍ମଣକୁ ଦେଖି ପୂଜାକରଇ ନରେଶ ।
ପଚାରିଲା କାହୁଁ ତୁମ୍ଭେ ଅଇଲ ଗୋସାଇଁ
କି ନିମନ୍ତେ ଆସିଅଛ କହ ତା ଫିଟାଇ ।
ଗଉରମୁଖ କହିଲା ଶୁଣ ମହାରାୟେ
କହିବାକୁ ଲାଗୁଅଛି ମୋତେ ମହାଭୟେ ।
ମୃଗୟା ଯାଇ ବନରେ ତୃଷାତୁର ହୋଇ
ଯେବଣ ମୁନି ଆଶ୍ରମେ ପ୍ରବେଶିଲି ଯାଇ ।
ମଉନବ୍ରତେ ସେ ଥିଲେ ନ କହିଲେ କଥା
କୋପେ ମୃତସର୍ପ ଗଳେ ଦେଲେ ମହାରଥା ।
ମୋ ନାମ ଗଉରମୁଖ ମୁଁ ତାଙ୍କର ଶିଷ୍ୟ
ନ ଜାଣି ତାହାର ପୁତ୍ର ମନେକରି ରୋଷ ।
ବାଳୁତ ବୁଦ୍ଧ ରେ ତୋତେ ଦେଲା ଘୋରଶାପ
ପଛେ ମୁନିବର ଜାଣୁକରି ଅନୁତାପ ।
ପୁତ୍ରକୁ ଭର୍ତ୍ସନା କରି ବହୁତ ପ୍ରକାରେ
ଶାପର ସେ ପ୍ରତିକାର କହେ ମୁନିବରେ ।
କଠୋର ଶାପ ସେ କେଭେ ନ ଗଲା ମେଣ୍ଟିଣ
ମୋତେ ଡାକି ପଠାଇଲେ କହିବା କାରଣ ।
ନିମିଷକେ ଅଇଲି ମୁଁ ଏତେଦୁର ପଥ
ପାଦୁକା ମନ୍ତ୍ରର ବଳେ ଜାଣ ନରନାଥ ।

ଯେବଣ କଠୋର ଶାପ ଦେଲା ସେ ଅଜ୍ଞାନ
କହୁଅଛି ଶୁଣ ରାୟେ ହୋଇ ସାବଧାନ ।
ଆଜିଠାରୁ ସାତଦିନେ ଯିବ ଯମ ଆଳ
ତକ୍ଷକ ଦଂଶିବ ଆସି ଜାଣ ମହୀପାଳ ।
ଉପାୟ ଥିଲେ ରାଜନ ନ କର ତୁ ହେଳା
ହେଳା କଲେଟି ନିଶ୍ଚୟ ବୁଡ଼ିବ ତୋ ଭେଳା ।
ଯାଉଅଛି କହି ବିପ୍ର ମେଲାଣି ମାଗିଣ
ପାଦୁକା ମନ୍ତ୍ରକୁ ମନେକରି ସୁମରଣ ।
ମୁନିର ପାଶେ ପ୍ରବେଶି କହିଲା ବୁଝାଇ
ବିପ୍ରର ମୁଖୁଁ ଏମନ୍ତ ଶୁଣି ନରସାଇଁ ।
ବିସ୍ମୟ ହୋଇ କଲା ସେ ବହୁତ ବିଳାପ
ବୋଇଲା ମୁଁ ନ ଜାଣିମା ପଣେ କଲି କୋପ ।
ମୁନିଗଳେ ମୃତ ସର୍ପନେଇ ଲମ୍ବାଇଲି
ଯେମନ୍ତ କଲି ତହିଁର ଫଳ ମୁଁ ପାଇଲି ।
ଧନ୍ୟ ଧନ୍ୟ ଦ୍ୱିଜପୁତ୍ର ଦେଲୁ ଯେଉଁ ଶାପ
ଉଚିତ ପ୍ରାୟଶ୍ଚିତ ସେ ମୋର କଲା ପାପ ।
କ୍ରୋଧ ଅନ୍ଧ ହୋଇ କିଛି ବିଚାର ନ କଲି
ମୃତ ସର୍ପ ଗଳେ ଦେଇ ବିପ୍ରକୁ ଦଣ୍ଡିଲି ।
ଏମନ୍ତ କହି ସେ ରାଜା ମନ୍ତ୍ରୀଙ୍କୁ ହକାରି
ବୋଇଲା ସବୁ ତାହାଙ୍କ ଆଗେ ଦଣ୍ଡଧାରୀ ।
ସାତଦିନ ମଧ୍ୟେ ମୋତେ ଦଂଶିବ ତକ୍ଷକ
ପୁତ୍ର ମୋ ଜନମେ ଜୟ ହୋଇଣ ରକ୍ଷକ ।
ପ୍ରଜାଙ୍କୁ ପାଳିବ ରାଜ୍ୟ କରିବ ଶାସନ
ଆଜହୁଁ ହେଲା ସେ ଜାଣ ହସ୍ତିନା ରାଜନ ।
ଏମନ୍ତ ଶୁଣି ସକଳେ ବିକଳ ହୋଇଲେ
କି ବିଚାରେ ନୃପତିକି ରଖିବା ବୋଇଲେ ।
ଏମନ୍ତେ ଭାଳି ସମସ୍ତେ ମନ୍ତ୍ରୀଗଣ ମିଳି
ବିଚାରିଲେ ପାଇବା କି ରାଜା ଏଡ଼େ ଭଳି ।
ଦେଶେ ଦେଶେ ପଠାଇବା ଖୋଜିବେ ରାଉଳ
ବୁଲିବେ ସଂଗ୍ରହ କରି ମନ୍ତ୍ର ଗଦ ମୂଳ ।
ଏମନ୍ତ ଭାଳି ବହୁତ ଦୂତ ପଠାଇଲେ
ଦେଶ ବିଦେଶରେ ପଶି ରାଉଳ ଆଣିଲେ ।
ଗାରେଡ଼ି ମନ୍ତ୍ର ଆବର ନାଗାନ୍ତକ ପଦ
ପରଶୁ କେଦାର ଆଦି ନାନାବିଧ ଗଦ ।
ଗୁଣି ବିଦ୍ୟାରେ ନିପୁଣ ଏକ ଦ୍ୱିଜବର
କାଉଁରୀ ଦେଶରେ ରହି ବହୁତ ବାସର ।

ତହୁଁ ଗୁଣିବିଦ୍ୟା ଶିଖି ତହୁଁ ପୁଣି ଗଲା
କାମାକ୍ଷା ଦେଶରେ ବହୁ ଦିବସ ରହିଲା ।
ତହୁଁ ଗୁଣି ବିଦ୍ୟାମାନ ଶିଖି ବିପ୍ରମଣି
ନାଗମାନଙ୍କର ସେବା କଲା ବେଳ ଜାଣି ।
ନାଗାନ୍ତକ ଗଦପଦ ଶିଖିଲାକ ତହିଁ
ବନରେ ମେଳଚ୍ଛ ଲୋକ ସଙ୍ଗତରେ ରହି ।
ବଣୁଆ ବାଣୁଆ ଯେତେ ଖୋଜି ଖୋଜି ଗଲା
ଗଦ ପଦ ମଉଷଧିମାନ ସେ ଜାଣିଲା ।
ବାଟେ ଶୁଣିଲା ହସ୍ତିନା ଦେଶ ମହାରାୟ
ସପତ ଦିବସ ମଧ୍ୟେ ଯିବ ଯମଳାୟ ।
ତକ୍ଷକ ଆସି ଦଂଶିବ ନ ଝଡ଼ିବ ବିଷ
ରକ୍ଷା କରି ନ ପାରିବେ ବ୍ରହ୍ମା ବିଷ୍ଣୁଈଶ ।
ଏମନ୍ତ ଶୁଣି ମନରେ ବିଚାରଇ ଦ୍ୱିଜ
ବଞ୍ଚାଇ ପାରିଲେ ମୋତେ ସେ ହସ୍ତିନା ରାଜ ।
ରାଜ୍ୟବାଡ଼ି ଦେଇ ମୋତେ ସୁଖରେ ରଖିବେ
ଏମନ୍ତ ସୁଯୋଗ ଗୋଟା ଛାଡ଼ିବା କି କେବେ ।
ବାରବରଷ ସମୟେ ମଲେ ପିତା ମାତା
ଘରବାଡ଼ି ନ ଥିବାରୁ ହେଲି ମୁଁ ଅଚିନ୍ତା ।
ଆଜକୁ ମୋତେ ହୋଇଲା ବରଷ ତିରିଶ
ବିଦ୍ୟା ପଢୁ ପଢୁ ଆସି ବୟସ ମୋ ଶେଷ ।
ଘରଦ୍ୱାର କରି କାହିଁ ରହିବି ଏଥର
ଏମନ୍ତ ଭାଳି ହସ୍ତିନା ଯାଏ ଦ୍ୱିଜବର ।
ତକ୍ଷକ ସର୍ପ ଆସଇ ବିପ୍ରରୂପ ଧରି
ବାଟରେ ଭେଟି ସେ ଦ୍ୱିଜବରକୁ ପଚାରି ।
କାହିଁ ତୁମ୍ଭ ଘର ଯିବ କାହିଁକି ଗୋସାଇଁ
ବିପ୍ର କହଇ ମୋହର ଘରଦ୍ୱାର ନାହିଁ ।
ବାରବରଷ ଦିନରୁ ରହିଲି ବିଦେଶେ
ପିତାମାତା ମୋର ଯହିଁ ଗଲେ ଯମବାସେ ।
ଗୁଣି ବିଦ୍ୟା ଶିଖିଲି ମୁଁ ଦେଶଦେଶ ବୁଲି
କାଉଁରୀ ଯେ କାମଚଣ୍ଡୀ କାମାକ୍ଷାକୁ ଗଲି ।
ତହିଁ ଶିଖିଲି ବହୁତ ବରଷ ମୁଁ ରହି
ଭାଳିଲି ବୟସ ମୋର ଯାଉଅଛି ବହି ।
ଆଜକୁ ହେଲାଣି ମୋତେ ତିରିଶ ବରଷ
କି ଘର କରିବି ଚାଲିଗଲେ ମୋ ବୟସ ।
ଏମନ୍ତ ଭାଳିବା ବେଳେ ଦେଖାଭେଟ ତାରେ
ରାଉଳ ଖୋଜନ୍ତି ବୁଲି ଦେଶ ଦେଶାନ୍ତରେ ।

ତାଙ୍କ ମୁଖରେ ଶୁଣିଲି ହସ୍ତିନାର ରାୟ
ବ୍ରହ୍ମଶାପରେ ସପତ ଦିନେ ଯିବେ କ୍ଷୟ ।
ତକ୍ଷକ ଆସି ଦଂଶିବ ନ ଝଡ଼ିବ ବିଷ
ରଖି ନ ପାରିବେ ହର ବ୍ରହ୍ମା ଜଗଦୀଶ ।
ଏମନ୍ତ ଶୁଣି ମନରେ ବିଚାର ମୁଁ କଲି
ସୁଯୋଗ ଆସି ପଡ଼ିଲାଯିବା ଏଥୁଚାଲି ।
ରାଜାକୁ ବଞ୍ଚାଇ ରାଜ୍ୟ ବାଡ଼ି ଘେନିଯିବା
ବିଭା ହୋଇ ସୁଖେଘର କରିଣ ରହିବା ।
ତୁମ୍ଭେ କିଏ ପଚାରୁଛ କାହିଁ ତୁମ୍ଭଘର
ସ୍ୱରୂପ କହ ମୋ ଆଗେ କପଟ ନ କର ।
ଏମନ୍ତ ଶୁଣି ତକ୍ଷକ ବୋଲଇ ଗୋସାଇଁ
ତକ୍ଷକ ବିଷରୁ ବଳି ବିଷ ଆଉ ନାହିଁ ।
ଗଦପଦ ବଳେ ସେହୁ ବିଷ ନ ଝଡ଼ଇ
ଯାହାକୁ ଦଂଶିବ ସେହି ତକ୍ଷଣେ ମରଇ ।
ନ ଜାଣି ବିପ୍ର କିମ୍ପାଇଁ ଯିବ ଏତେ ଦୂର
ଅପମାନ ପାଇବ ଯା ଏଥୁ ବେଗେ ଫେର ।
ବିପ୍ର ନୋହୁ ଆମ୍ଭେ ଜାଣ ଅଟୁଁ ଯେ ତକ୍ଷକ
ଆମ୍ଭ ବିଷଜ୍ୱାଳା ସହି ନ ପାରନ୍ତି ଲୋକ ।
ହରି ହର ବ୍ରହ୍ମା ଆଦି ଦିଗପାଳ ଯେତେ
ମରି ଶୋଇବେ ଆମ୍ଭର ବିଷଦନ୍ତ ଘାତେ ।
ଯାଉଅଛି ହସ୍ତିନାକୁ ଦଂଶିବୁ ରାଜାକୁ
ବାତୁଳ ପ୍ରାୟେ ମଣୁଛି ବିପ୍ର ତୋ କଥାକୁ ।
ହସିଣ ବିପ୍ର ବୋଇଲା ମୁଁ ନୁହଇ ବାଇ
ବିଦ୍ୟାର ବଳେ ନିଶ୍ଚୟ ବଞ୍ଚାଇବି ଯାଇଁ ।
ତୁମ୍ଭ ବିଷକୁ ନିର୍ବିଷ କରିବି ଅବଶ୍ୟ
ତୁମ୍ଭେ ଏଥୁ ଫେରିଯାଅ ହୋଇଣ ନିରାଶ ।
ନିଶ୍ଚେ ବିଫଳ ହୋଇବ ତୁମ୍ଭ ଦନ୍ତାଘାତ
ତକ୍ଷକ ବୋଲଇ ବିପ୍ର କଥା ଯେବେ ସତ ।
ଏ ମହତ ତରୁବର ଦେଖୁଛତ ଆଗେ
ଏ ବୃକ୍ଷ ଦଂଶୁଛୁ ଆମ୍ଭେ ଯାଇଁ ମହାରାଗେ ।
ଆମ୍ଭର ବିଷଜ୍ୱାଳାରେ ଏହି ତରୁବର
ଗଛ ପତ୍ର ଜଳିଯିବ ଏକ୍ଷଣି ଏହାର ।
ତୁ ଏହାକୁ ବଞ୍ଚାଇ କି ପାରିବୁ ହୋ ଦ୍ୱିଜ
ହସିଣ ବ୍ରିପ ବୋଇଲା ନ କର ପହିଜ ।
ଏକ୍ଷଣି ବଞ୍ଚାଇ ଦେବି ଦେଖିବ ସାକ୍ଷାତେ
ଏମନ୍ତ ଶୁଣି ତକ୍ଷକ ଗଲା କୋପଚିତ୍ତେ ।

ଚୋଟ ମାଇଲା ବୃକ୍ଷରେ ଗର୍ଜିଫଣା ଟେକି
ଗରଳ ଛାଡ଼େ ନାହାକ ଚେର ତାର ଦେଖି
ବିଷର ଜ୍ୱାଳାରେ ଦୀର୍ଘ ପ୍ରତି ଶଏହାତେ
ଗଛ ପତ୍ର ଘାସ କୁଟା ଜଳିଲେ ସମସ୍ତେ ।
ତେଡ଼େ ବଡ଼ ବୃକ୍ଷଗୋଟା ଝାଉଁଳି ପଡ଼ିଲା
ଗର୍ଜନ କରି ତକ୍ଷକ ବିପ୍ରକୁ କହିଲା ।
ବୃକ୍ଷ ବଞ୍ଚାଇ ପାରିବୁ ଯେବେ ଦ୍ୱିଜବର
ଜାଣିବା ସିନା ବିଦ୍ୟାର ଗୁଣ ଯେ ତୋହର ।
ବିପ୍ର ବୋଇଲାଦେଖିବା ତୋ ସାକ୍ଷାତେ ମୁହିଁ
ବଞ୍ଚାଇବି ପୂର୍ବପରି ଥିବ ପତ୍ର ତହିଁ ।
ଏମନ୍ତ କହି ସେ ବିପ୍ର ମୁଣି ଫିଟାଇଲା
ଗଦ ମଉଷଧି ନେଇ ଗଛମୂଳେ ଦେଲା ।
ମନ୍ତ୍ର ପଢ଼ି ବୃକ୍ଷେ ଏକ ଚାପଡ଼ ମାଇଲା
ବ୍ରହ୍ମ ରନ୍ଧ୍ର ଛାଡ଼ି ବିଷ ପଳାଅ ବୋଇଲା ।
ପଳାଇ ନ ଗଲେ ତୋତେ କରିବି ନିର୍ବିଷ
ଧୂଳି ମୁଠାଏ ଧଇଲା ବହି ମନେ ରୋଷ ।
ତାକୁ ମନ୍ତ୍ର କରି ଫୁଙ୍କି ଉଡ଼ାଇଣ ଦେଲା
ବାଟ ନ ପାଇ ସେ ବିଷ ଶୂନ୍ୟେ ଉଡ଼ିଗଲା ।
ନିର୍ବିଷ ହୁଅନ୍ତେ ଗଛ ପତ୍ର କଅଁଳିଲା
ଏମନ୍ତ ଦେଖି ତକ୍ଷକ ତାଟକା ହୋଇଲା ।
ବୋଇଲା ଦ୍ୱିଜ ଦେଖିଲି ତୋର ଗୁଣିପଣ
ଜାଣିଲି ନିଶ୍ଚେ ବଞ୍ଚାଇ ପାରିବୁ ରାଜନ ।
ଏବେ ମୋର ବୋଲ କର ଆହେ ଦ୍ୱିଜବର
ବ୍ରାହ୍ମଣର ଶାପ ଜାଣ ଅଟେ ଗୁରୁତର ।
ମୋହର ବିଷ ଝାଡ଼ିଲୁ ସିନା ମନ୍ତ୍ରବଳେ
ନ ଝଡ଼ିବ ବ୍ରହ୍ମଶାପ ବିଷ କେତେବେଳେ ।
ସନ୍ତୋଷ ହୋଇ ମୁଁ ତୋତେ ଦେଇ ଅଛିଧନ
ସେ ଧନେ ତୁହି ସୁଖରେ କାଟିବୁ ଜୀବନ ।
ଏମନ୍ତ ଶୁଣି ସେ ବିପ୍ର ମନରେ ଭାଳଇ
ବ୍ରହ୍ମଶାପ ବିଷ କୋଷ ଅତୁଟ ଅଟଇ ।
ରାଜା ନ ବର୍ତ୍ତିବେ ରାଜ୍ୟବାଡ଼ି କିଏ ଦେବ
ପରିଶ୍ରମ ଯାକ ମୋର ଅକାରଣେ ଯିବ ।
ଏ ଯାଚୁଛି ଧନରତ୍ନ କିମ୍ପାଇଁ ଛାଡ଼ିବା
ଘରଦ୍ୱାର କରି ଆମ୍ଭେ ସୁଖରେ ରହିବା ।
ଏମନ୍ତ ଭାବି ସେ ବିପ୍ର ତକ୍ଷକକୁ କହି
କହ ହେ ତୁମ୍ଭର ଧନରତ୍ନ ଅଛି କାହିଁ ।

ଥିଲ ପାଇଲେତ ଆମ୍ଭେ ଏଥୁ ଫେରିଯିବା
ନୋହିଲେ ଯାଇଁ ରାଜାକୁ ନିଶ୍ଚେ ବଞ୍ଚାଇବା ।
ଏମନ୍ତ ଶୁଣି ତକ୍ଷକ ଦେଲା ଆଣି ଧନ
ଧନ ଦେଖିଣ ଆନନ୍ଦ ହେଲା ବିପ୍ରମନ ।
ଧନ ପାଇଣ ଲେଉଟି ଗଲା ବିପ୍ର ଯହୁଁ
ଆନନ୍ଦ ହୋଇ ତକ୍ଷକ ଆସଇ ସେ ତହୁଁ ।
ଏଥୁ ଅନନ୍ତରେ ସେ ଯେ ପରୀକ୍ଷିତ ରାୟେ
ବିଚାର କରଇ ବସି ଆପଣା ହୃଦୟେ ।
ଶୁଣିଅଛି ବ୍ରହ୍ମଶାପେ ଯଦୁବଂଶ କ୍ଷୟ
ରଖି ନ ପାରିଲେ ନିଜେ ଦେବକୀ ତନୟ ।
ଆମ୍ଭର ଯେ ଅଜା ଗୁରୁ ପାଣ୍ଡୁ ନରପତି
ବ୍ରାହ୍ମଣର ଶାପ ମେଣ୍ଟି ନ ପାରିଲେ ବର୍ତ୍ତି ।
ଗଉତମ ଶାପେ ଇନ୍ଦ୍ର ସହସ୍ର ଲୋଚନ
ମୋର କେମନ୍ତେ ଏ ଶାପ ହୋଇବ ଖଣ୍ଡନ ।
ଏଡ଼େ ଏଡ଼େ ଲୋକ ଖଣ୍ଡି ନ ପାରିଲେ ଯାହା
ମୁଁ କାହୁଁ ଖଣ୍ଡିପାରିବି ନର ହୋଇ ତାହା ।
ଗଦ ପଦ ମନ୍ତ୍ର କିସ କରିବ ତାହାର
ସାତଦିନ ମଧ୍ୟେ ମୃତ୍ୟୁ ନିଶ୍ଚୟ ମୋହର ।
ଏମନ୍ତ ଭାଳି ନୃପତି ମନ୍ତ୍ରୀଙ୍କି ହକାରି
ବୋଇଲେକ ମଞ୍ଚା ଏକ ବାନ୍ଧ ଯତ୍ନକରି ।
ଦେବତା ସାତତାଳ ଯେ ଉଚ୍ଚ ସେ ହୋଇବ
ଆଠ ଦିଗରେ ଆଠୁଟା ସ୍ତମ୍ଭ ଯେ ପୋତିବ ।
ଖୁମ୍ବଯାକ ଉଭାଯେତେ ପୋତା ହେବ ତେତେ
ସହସ୍ରେ ଲୋକ ବସିବେ ମଞ୍ଚାରେ ଯେମନ୍ତେ ।
ନାନା ବର୍ଣ୍ଣର ପିତୁଳାମାନ ତହିଁ ହେବ
ଫୁଲକାମ ମାନରେ ସେ ଝଟକୁଣ ଥିବ ।
ଲାଗିବ ତହିଁରେ ପୁଣି ମୋତି ଆଦି ଝରା
ହୀରା ନୀଳା ବଇଡୁର୍ଯ୍ୟ ମଣି କେରା କେରା ।
ପାବଛମାନ ସ୍ଫଟିକ ପଥରେ କରିବ
ମଞ୍ଚା ଉପରେ ରତନ ବେଦୀ ନିର୍ମାଣିବ ।
ତହିଁ ଉପରେ ବସି ମୁଁ ଦେଉଥିବି ଦାନ
ଅନ୍ନ ବସନ ଭୂଷଣ ନାନାଦି ବାସନ ।
ଭୂମି ଗୋରୁ ଛାଗ ମେଷ ମଇଁଷ ତୁରଗ
ସୁନା ରୂପା ରତ୍ନ ମଣି ମାଣିକ୍ୟ ମାରାଗ ।
କଂସା ଥାଳି ଗିନା ଲୋଟା ଆଦି ଯେ ବାସନ
ତମ୍ବା ଲୁହା ପିତଳରେ ହୋଇ ଥାନ ଥାନ ।
ସଜା ହୋଇ ରହିଥିବ ପାଖରେ ମୋହର
ଫୁଲ ଚନ୍ଦନ ତୁଳସୀ ଅକ୍ଷତ ଯେ ନୀର ।
ତମ୍ବା ପାତ୍ରୀ କୁଶୀ ଶଙ୍ଖ କୁଶ କୁଶବଟୁ
ବିପ୍ର ଦେଖିଲେ ତାହାଙ୍କୁ ନ କହିବ କଟୁ ।
ଆସୁଥିବେ ବିପ୍ରେ ଯାଉଥିବେ ଯେଝାମତେ
ହରିର ନାମ କୀର୍ତ୍ତନ ହେବ ଅନୁବ୍ରତେ ।
ଚାରିପାଖରେ ବସିବେ ବିପ୍ରେ ମୋତେ ଘେରି
ପୁରାଣ ମୁଁ ଶୁଣୁଥିବି ଶ୍ରବଣକୁ ଡେରି ।
ରାଜାର ମୁଖୁଁ ଏମନ୍ତ ଶୁଣି ମନ୍ତ୍ରୀଗଣ
ବଢ଼େଇମାନଙ୍କୁ ଡାକି ଆଣି ତତକ୍ଷଣ ।
ପଥୁରିଆଏ ପଥର କାମ ଆସି କଲେ
କମାରମାନେ କମାର କାମରେ ଲାଗିଲେ ।
ସୁନାରୀମାନେ ଗଢ଼ିଲେ ସୁନାରୂପା କାମ
ତହିଁରେ ରତ୍ନ ବସାଇ କଲେ ସରୁକାମ ।
କେ କଲା ରୂପା କଳସ ସୁନାରେ କେ କଲା
ଏମନ୍ତେ ପହରକରେ ସବୁ ନିର୍ମା ହେଲା ।
ପରୀକ୍ଷିତ ମହାରାଜା ବସିଲେ ମଞ୍ଚାରେ
ଋଷି ମୁନିଙ୍କି ହକାରି ଆଣିଲେକ ଚାରେ ।
ମୁଣ୍ଡଳୀ ହୋଇ ବସିଲେ ଋଷିଏ ସେଠାରେ
ମଧ୍ୟ ବେଦୀର ଉପରେ ବସି ନୃପବରେ ।
ଆସନ ଯେ ପାଦାସନ ଗନ୍ଧ ପୁଷ୍ପ ଦେଇ
ମୁନିମାନଙ୍କ ଚରଣ ବନ୍ଦୀ ନରସାଇଁ ।
ବୋଇଲେ ମୁଁ ମନ୍ଦକର୍ମ କଲି କ୍ରୋଧବଶେ
ମୃତସର୍ପ ଲମ୍ବାଇଲି ବିପ୍ର ଗଳାଦେଶେ ।
ବିନା ଦୋଷେ ତୃଷାତୁରେ ବିପ୍ରକୁ ଦଣ୍ଡିଲି
ତାର ପ୍ରତିଫଳ ସଙ୍ଗେ ସଙ୍ଗେ ମୁଁ ପାଇଲି ।
ବିପ୍ରପୁତ୍ର ଶାପ ଦେଲା ତକ୍ଷକ ଦଂଶିବ
ସାତଦିନ ମଧ୍ୟରେ ମୋର ଜୀବନ ଯିବ ।
ଯେମନ୍ତେ ଏ ଜୀବ ମୋର ପାଇବ ଉଦ୍ଧାର
ତହିଁକି ଯେ ପ୍ରତିକାର ଅଛି ତାହା କର ।
ଋଷି ବୋଇଲେକ ତୁମ୍ଭେ ଶୁଣ ଭାଗବତ
ପୁରାଣଶୁଣିଲେ ରାଜା ପାଇବୁ ମୁକତ ।
ସପତା ବସାଇ କର ହରି ସଂକୀର୍ତ୍ତନ
ଶୁକମୁନି ଯେ ଅଟନ୍ତି ବ୍ୟାସର ନନ୍ଦନ ।
ବକତା ହୁଅନ୍ତି ସେହି ଶ୍ରୋତା ହୁଅ ତୁହି
ଭାଗବତ ପୁରାଣ ତୁ ଶୁଣ ମନ ଦେଇ ।

ଏମନ୍ତ ବେଳେ ପ୍ରବେଶ ହେଲେ ଶୁକମୁନି
ଚରଣ ଧରି ପଡ଼ିଲା ଉଠି ନୃପମଣି ।
ଗନ୍ଧ ପୁଷ୍ପ ଦେଇ ମୁନି ପାଦରେ ପୂଜିଲା
ଆସନ ଦେଇ ବିନୟୀ ହୋଇଣ କହିଲା ।
ଭୋ ମୁନି ଉଦ୍ଧାର କର ମୁଁ ତୋହର ଦାସ
ମୋତେ ଯେଉଁ ଅଭିଶାପ ଦେଲା ମୁନିଶିଷ୍ୟ ।
ଅଶୁଭ ନୋହି ମୋହର ହୋଇଲା ସେ ଶୁଭ
ତୁମ୍ଭଙ୍କୁ ପାଇଲି ଆଜି ଏ ମୋର ସୁଲଭ ।
ତୁମ୍ଭ ମୁଖରୁ ଶୁଣିବି ଗ୍ରନ୍ଥ ଭାଗବତ
ବୁଝାଇ କହିବ ମୋତେ ପ୍ରତିଶ୍ଳୋକ ଅର୍ଥ ।
ଭାଗବତ ତତ୍ତ୍ୱକଥା କହିବ ବିସ୍ତାରି
ଯେମନ୍ତେ ଭବ ବନ୍ଧନୁ ଯିବି ମୁହିଁ ତରି ।
ତୁମ୍ଭେ ଯେ ହେବ ବକତା ମୁହିଁ ହେବି ଶ୍ରୋତା
ମୁନିମାନେ ପଢୁଥିବେ ଭାଗବତ ଗୀତା ।
ବାରସ୍କନ୍ଧ ଭାଗବତ ବାଣ୍ଟିକରି ନେବେ
ସାତଦିନେ ସାତରାତ୍ରେ ସମାପ୍ତ କରିବେ ।
ବନ୍ଦନା କରି ପଢ଼ିଲେ ଅନୁବ୍ରତେ ତାହା
ପୁରାଣ ଉପପୁରାଣ ଅଛି ଯାହା ଯାହା ।
ରାମାୟଣ ଇତିହାସ ଯେ ମହାଭାରତ
ମୁନିମାନେ ପଢୁଥିବେ ଏ ସମସ୍ତ ଗ୍ରନ୍ଥ ।
ଅଧାଶେଷେ ଦେଉଥିବି ମୁଁ ବିପ୍ରଙ୍କୁ ଦାନ
ଅନବରତରେ ରନ୍ଧା ହେଉଥିବ ଅନ୍ନ ।
ଯେ ମାଗିବ ସେ ଖାଇବ ନ ଥିବ ବାରଣ
ନାରଦ ଯେ କରୁଥିବେ ହରି ସଂକୀର୍ତ୍ତନ ।
ଏମନ୍ତ ରାଜାର ମୁଖୁଁ ଶୁଣି ଶୁକମୁନି
ବୋଇଲେ ହେ ବ୍ୟାସାସନ ବେଗେ ଦିଅଆଣି ।
ଏମନ୍ତ ଶୁଣି ନୃପତିଦେଲେ ବ୍ୟାସାସନ
ବାରସ୍କନ୍ଧ ଯାକ ତହିଁ କରିଣ ସ୍ଥାପନ ।
ଆବର ସେଠାରେ ଥିଲେ ଯେତେ ଋଷି ମୁନି
ଖଣ୍ଡେ ଖଣ୍ଡେ ବ୍ୟାସାସନ ଦେଲେ ତାଙ୍କୁ ଆଣି ।
ସମସ୍ତେ ହଁରେ ରଖି ଖଣ୍ଡେ ଖଣ୍ଡେ ପୋଥି
ପୋଥି ପୂଜା କଲେ ବସି ଆପେ ନରପତି ।
ଶୁଣିଲେ ସେ ଭାଗବତ ସଙ୍କଳପ କରି
ସାତ ଦିବସେ ଶୁଣିଲେ ବସି ଦଣ୍ଡଧାରୀ ।
ଆଦ୍ୟ ପ୍ରାନ୍ତ କରି ଶୁଣିସାରି ନୃପବର
ଭାଗବତ ବଢ଼ାଇଲେ ଶେଷ ଦିବସର ।
ଦାନ ଧ୍ୟାନକରି ବିପ୍ରମାନଙ୍କୁ ଭୁଞ୍ଜାଇ
ଦକ୍ଷିଣା ଦେଇଣ ବାକ୍ୟେ କହି ଚାଟୁଆଇ ।
ପୁଣି ଶୁକମୁନିଙ୍କର ଚରଣେ ପଡ଼ିଲେ
ବଇଶମ୍ପାୟନ ଋଷି ଭାରତ ପଢ଼ିଲେ ।
ଆଦ୍ୟ ପ୍ରାନ୍ତକରି ସବୁ ଶୁଣିଲି ମୁଁ ବସି
ଶେଷେ ଯାହା ପଚାରିଲି ନ କହି ସେ ଋଷି ।
ସେ ସନେହଯାକ ମୋର ମନେ ଅଛି ରହି
ତାହା ସଂକ୍ଷେପି କହିବା ମୋତେ କୃପାବହି ।
ରାଜାର ମୁଖୁ ଏମନ୍ତ ଶୁଣି ଶୁକମୁନି
ବୋଇଲେ ପଚାର କିନା ତୁ ହୋ ନୃପମଣି ।
ଏମନ୍ତ ଶୁଣି ବୋଇଲେ ରାଜା ପରୀକ୍ଷିତ
ଅଠର ପର୍ବ ଭାରତ ବ୍ୟାସଙ୍କ ରଚିତ ।
ତାଙ୍କ ଶିଷ୍ୟ ମହାମୁନି ବଇଶମ୍ପାୟନ
କହିଲେ ଯେ ଯୁଧିଷ୍ଠିର ଆଦି ପାଞ୍ଚଜଣ ।
ଗୋବିନ୍ଦଙ୍କ ସଖା ସେହି ଗୋବିନ୍ଦଙ୍କ ପ୍ରାଣ
ସାରଥି ହୋଇ ବାହିଲେ ତାହାଙ୍କର ଯାନ ।
ସେ ଗୋବିନ୍ଦ ପୁଣି ହେଲେ ପାଣ୍ଡବେ ବିବାଦୀ
ଦ୍ରୁପଦ ରାଜାର ଝିଅ ନାମ ଦ୍ରଉପଦୀ ।
ପାଣ୍ଡବ ଯେ ପାଞ୍ଚଭାଇ ହେଲେ ତାର ପତି
ଆବର ବୋଇଲେ ବିଷ୍ଣୁ ନିର୍ଗୁଣ ଅଟନ୍ତି ।
ମାନବ ରୂପରେ ହେଲେ ଦେବକୀ ନନ୍ଦନ
ପୁଣି ଯେ ହୋଇଲେ ପାପ କ୍ଷୟକାରୀ ରାମ ।
ବ୍ରହ୍ମ ହତ୍ୟା ପାପ ପାଇଁ କଲେ ତୀର୍ଥବ୍ରତ
ଆବର ବୋଇଲେ ପୁଣି ଦ୍ରୌପଦୀର ପୁତ୍ର ।
ଶୋଇଥିଲେ ରାତ୍ରେ ହେଲେ ପଶୁପ୍ରାୟ ହଣା
ଏସବୁ ସଂଶୟେ ପଡ଼ି ହୋଉଛି ମୁଁ ବଣା ।
ଆହେ ମୁନିବର ମୋତେ ଅନୁଗ୍ରହ କରି
କହିଲେ ମୁଁ ସିନା ଭବ ଭୟୁ ଯିବି ତରି ।
ଏମନ୍ତ ଶୁଣି ବୋଇଲେ ଶୁକ ମୁନିବର
ଯାହା ଯାହା ପଚାରିଲ ମୋତେ ନୃପବର ।
କହୁଅଛି ମନଦେଇ ଶୁଣ ସାବଧାନେ
ଜଇମିନି ନାମେ ମୁନି ପୂର୍ବେ ଏକଦିନେ ।
ମାରକଣ୍ଡ ମୁନିଙ୍କର ଆଶ୍ରମକୁ ଗଲେ
ପ୍ରଣାମ କରି ମୁନିଙ୍କ ଚରଣ ବନ୍ଦିଲେ ।
ବୋଇଲେ ଭୋ ମୁନି ମୁହିଁ ଶୁଣିଲି ଭାରତ
ତହିଁରେ ସଂଶୟମାନ ହେଲା ମୋର ଜାତ ।

ତୁମ୍ଭେ ଯେ କଳପୀମୁନି ଅଟ ମହାଜ୍ଞାନୀ
ଅନେକ କଳପ କଥା ଜାଣ ତୁମ୍ଭେ ପୁଣି ।
ତେଣୁ ଅଇଲି ତୁମ୍ଭଙ୍କୁ ପଚାରିବା ପାଇଁ
ଅନୁଗ୍ରହ କରି ମୋତେ କହିବା ଗୋସାଇଁ ।
ଏମନ୍ତ ଶୁଣି ବୋଇଲେ ମୁନି ମାରକଣ୍ଡ
ବେଳ ଉଛୁର ହେତୁ ମୁଁ ହୁଏ ଭଣ୍ଡଭଣ୍ଡ ।
ବିସ୍ତାର କରି କହିବା ପାଇଁ ନାହିଁ ବେଳ
ବିନ୍ଧ୍ୟଗିରିରେ ଅଛନ୍ତି ଯେଉଁ ପକ୍ଷୀକୁଳ ।
ତାଙ୍କ ପାଖକୁ ଗଲେ ସେ କହିବେ ବୁଝାଇ
ମହାଜ୍ଞାନୀ ଅଟନ୍ତି ସେ ପକ୍ଷୀ ଚାରିଭାଇ ।
ମାରକଣ୍ଡ ମୁନି ମୁଖୁଁ ଶୁଣିଣ ଏମନ୍ତ
ବୋଇଲେ ସେ ଜଇମିନି ମୁନି ତପୋବନ୍ତ ।
କାହାର ସେ ପୁତ୍ର କହ କି ନାମ ତାଙ୍କର
ଏଡ଼େ ମହାଜ୍ଞାନୀ ହେଲେ କହ କି ପ୍ରକାର ।
ଏକଥା ଗୋଟାକୁ ମୁହିଁ ବିଚିତ୍ର ମଣଇ
କହେ ଦ୍ୱିଜ ଗୋପୀନାଥ ବିଷ୍ଣୁପାଦ ଧ୍ୟାଇ ।

.....❀.....

## ବପୁ ଅପସରା ପ୍ରତି ଦୁର୍ବାଶାର ଶାପ

କହିଲେ କଳପୀ ମୁନି ଶୁଣ ଜଇମିନୀ
ଦ୍ରୋଣର କୁମର ସେହି ଚାରି ମହାଜ୍ଞାନୀ ।
ତାହାଙ୍କ ନାମ କହୁଛୁ ମନଦେଇ ଶୁଣ
ପ୍ରଥମ ପୁତ୍ରର ନାମ ପିଙ୍ଗାକ୍ଷ ଯେ ଜାଣ ।
ବିବୋଧ ସୁପୁତ୍ର ଆଉ ସୁମୁଖ ଏ ତିନି
ତାଙ୍କ ବସା ବିନ୍ଧ୍ୟଗିରି କନ୍ଦରେ ହେ ମୁନି ।
ଏମନ୍ତ ଶୁଣି ବୋଇଲେ ପୁଣି ଜଇମିନୀ
ଆହୁରି ସଂଶୟ ଜାତହେଲା ଏହାଶୁଣି ।
ପକ୍ଷୀ କି ମନୁଷ୍ୟ ପରି କଥା କି କହନ୍ତି
ଦ୍ରୋଣ କି ଜାତି ତାହାର କାହୁଁ ଉତପତ୍ତି ।
ଏ କଥା ଗୋଟାତ ମୋତେ ଲାଗେ ଆଚମ୍ବିତ
ବୋଇଲେ ହେ ମାରକଣ୍ଡ ମୁନି ତପୋବନ୍ତ ।
ଅତି ପୁରାତନ କଥା ଶୁଣ ମୁନିବର
ନନ୍ଦନ କାନନେ ଦିନେ ଦେବ ପୁରନ୍ଦର ।
ସୁଖେ ବସିଛନ୍ତି ରତ୍ନବେଦୀର ଉପରେ
ବେଢ଼ିଛନ୍ତି ଅପସରା ତା ଚାରିପାଖରେ ।
ତାଙ୍କ ମୁଖକୁ ଅନାଇ ରହିଛି ବାସବ
ଶୁଣୁଛନ୍ତି ଶୁକ ସାରୀ ଆଦିଙ୍କର ରାବ ।
ଏ ସମୟେ ମହାମୁନି ନାରଦ ମିଳିଲେ
ମୁନିଙ୍କି ଦେଖି ବାସବ ଆସନୁ ଉଠିଲେ ।
ଗଉରବ କରି ନେଇ ପାଖେ ବସାଇଲେ
ନାରଦ ମୁନି ମୁଖକୁ ଚାହିଁଣ ବୋଇଲେ ।
ଦେଖ ମୁନିବର ରମ୍ଭା ବପୁ ମିଶ୍ରକେଶୀ
ତିଳୋତ୍ତମା ଘୃତାଚୀ ଯେ ମେନକା ଉର୍ବଶୀ ।
ଏହାଙ୍କ ମଧ୍ୟେ ଯାହାକୁ କହିବି ହେ ମୁନି
ତୁମ୍ଭ ମନକୁ ତୋଷିବ ନିତ୍ୟେ ସେ କାମିନୀ ।
ଏମନ୍ତ ଶୁଣି ବୋଇଲେ ମୁନି ତପୋଧନ
ଏହାଙ୍କ ମଧ୍ୟେ କରିବି କାହାକୁ ମୁଁ ସାନ ।
ସୁନ୍ଦର ପଣେ ଏମାନେ ଏକୁ ଏକ ବଳି
ନୃତ୍ୟ ଗୀତରେ ପାରନ୍ତି ମୁନିମନ ଟାଳି ।
ଆହେ ଦେବ ଇନ୍ଦ୍ର ଏଣୁ କହୁଅଛି ମୁହିଁ
ଏହାଙ୍କ ମଧ୍ୟେ ବିଚାର କରି ପୁଣ ଏହି ।
ନୃତ୍ୟ କରନ୍ତୁ ଦେଖିବା ସିନା ଆମ୍ଭେ ବସି
ଏମନ୍ତ ଶୁଣି ବୋଇଲେ ରମ୍ଭା ମିଶ୍ରକେଶୀ ।
ଆହେ ଦେବରାଜ ଏହା ହେବ କେଉଁପରି
ଆପଣା ଟାଣପଣ କି ଆପେ ହୁଡ଼ିପାରି ।
ତୁମ୍ଭେ ଯାହାକୁ କହିବ ସେ ସିନା ନାଚିବ
ଏମନ୍ତ ଶୁଣି ବୋଇଲେ ଦେବ ଯେ ବାସବ ।
ଆମ୍ଭେ ଏଥେ ବଡ଼ ସାନ କରିବା କାହାକୁ
ସମସ୍ତେ ତୋଷୁଅଛନ୍ତି ଆମ୍ଭର ମନକୁ ।
ଏକକୁ ଭଲ ପାଇଲେ ଆରେକ ରୁଷିବ
ନାରଦ ବିନା ଏହା କେ ସମାଧା କରିବ ।
ଏଣୁ କହୁଛି ଏହାଙ୍କୁ ପଚାରଯା ତୁମ୍ଭେ
ଶାସ୍ତ୍ର ଅନୁସାରେ ସେହି ଯାହାକୁ ବାଛିବେ ।
ଏମନ୍ତ ବାସବ ମୁଖୁ ଶୁଣି ଅପସରୀ
ଏକମୁଖେ ବୋଇଲେ ହେ କହ ତପଚାରୀ ।
ସବୁ ନୃତ୍ୟଶାସ୍ତ୍ର ଅଛି ତୁମ୍ଭଙ୍କୁ ତ ଜଣା
ଜାଣି ଶୁଣି କାହିଁପାଇଁ ହେଉଅଛ ବଣା ।
ଆମ୍ଭମାନଙ୍କ ମଧରେ କେ ବଡ଼ ସୁନ୍ଦରୀ
ଗାଇପାରେ ନାଚିପାରେ କିଏ ଭଲକରି ।
ଏମନ୍ତ ଶୁଣି ବୋଇଲେ ନାରଦ ଯେ ମୁନି
ଦୁର୍ବାସା ତପ ଭାଙ୍ଗିବ ଯେବଣ କାମିନୀ ।

ତାହାକୁ ସିନା ବୋଲିବା ବଡ଼ବୋଲି ଆମ୍ଭେ
ହିମାଳୟେ ବସିଛନ୍ତି ମୁନି ବଡ଼ ଦମ୍ଭେ ।
ନାରଦ ମୁଖୁଁ ଏମନ୍ତ ଶୁଣି ଅପସରୀ
ବୋଇଲେ ଅଗ୍ନି ସମାନ ଯେଉଁ ତପଚାରୀ ।
ତାଙ୍କ ତପ ଭାଙ୍ଗିବାକୁ ନୋହୁ ଅମ୍ଭେ କ୍ଷମ
ଯମର ଉପରେ ସେହି ମୁନି କାଳଯମ ।
ଜାଣୁ ଜାଣୁ ବ୍ୟାଘ୍ରମୁଖେ ଭରିକି ଅଙ୍ଗୁଳି
ବିଷଧର କାଳସର୍ପ ଲାଙ୍ଗୁଳକି ଚାଳି ।
ବୋଇଲା ଯେ ଗର୍ବକରି ବପୁ ଅପସରୀ
ମହାଯୋଗୀ ବୋଲନ୍ତି ଯେ ଦେବ ତ୍ରିପୁରାରି ।
ବେଦବର ବୋଲନ୍ତି ଯେ ଯତୀନ୍ଦ୍ର ପୁରୁଷ
ଅନାଦି ବ୍ରହ୍ମା ଅଟନ୍ତି ଯେଉଁ ପୀତବାସ ।
ସେ ମୋର ସୁନ୍ଦର ମୁଖ ଦେଖି ହେବେ ଭୋଳ
ମୋ ରୂପରେ ବଶ ଏହି ଦେବ ଆଖଣ୍ଡଳ ।
କୋକିଳଠାରୁ ଅଧିକ ଅଟଇ ମୋ ଗଳା
ଦେହର ସୁଗନ୍ଧେ ଭ୍ରମୁଛନ୍ତି ଭୃଙ୍ଗମାଳା ।
ଦୁର୍ବାସା ମୁନିର ତପ ଭାଙ୍ଗିବି ମୋ ପଣ
ଏହିକ୍ଷଣି ଯିବି ଆଜ୍ଞାଦେଲେ ସୁରରାଣ ।
ହିମାଳୟ ମୁନି ତପ ଭାଙ୍ଗିଣ ଆସିବି
ବିଳମ୍ବ ନୋହେ ମାସକ ମଧ୍ୟରେ ଫେରିବି ।
ଏମନ୍ତ ଶୁଣି ବୋଇଲେ ଦେବ ପୁରନ୍ଦର
ଯାଅରେ ବପୁ ଯେମନ୍ତେ ମାନସ ତୋହର ।
ଇନ୍ଦ୍ର ଆଜ୍ଞାପାଇ ବେଗେ ଗଲାଅପସରୀ
ହିମାଳୟ ଯହିଁ ତପ କଲେ ତପଚାରୀ ।
ବ୍ୟାଘ୍ର ଭଲ୍ଲୁକଙ୍କର ଭୟ ନାହିଁ ସେହି ବନେ
ଦୁଷ୍ଟ ଜନ୍ତୁଏ ରହିବେ କାହୁଁ ତପସ୍ଥାନେ ।
ଯେବେ ବା ରହିବେ ମୁନି ତପର ପ୍ରଭାବେ
ଦୁଷ୍ଟପଣେ ଛାଡ଼ି ସାଧୁପଣିଆ ବହିବେ ।
କୋଶକ ବାଟେ ରହିଲା ବପୁ ଅପସରୀ
ସୁସ୍ୱରେ ଗୀତ ଗାଇଲାତାର ନାମ ଧରି ।
ଅଣ୍ଡିର କୋକିଳଠାରୁ ସୁସ୍ୱର ତା ସ୍ୱର
ଶୁଣି ଯୋଗ ଭାଙ୍ଗିଗଲା ଦୁର୍ବାସା ମୁନିର ।
କାମ ବାଣରେ ଅଧୀର ହୋଇ ମହାମୁନି
ଦିଗ ବାରି ବାରି ଗଲେ ଗୀତ ଶୁଣି ଶୁଣି ।
ତାହାର ସୁନ୍ଦର ରୂପ ଦେଖି ମୁନିବର
ଯୋଗ ଲୟ ଲଗାଇଲେ କରି ମନସ୍ଥିର ।
ଜାଣିପାରି କୋପେ ଅଗ୍ନିପ୍ରାୟ ଜଳି ଉଠି
ବୋଇଲେକ ଗର୍ବକରି ଆସିଛୁ ପାପିଷ୍ଠୀ ।
ଏ କଠୋର ଘୋରତପ ଭାଙ୍ଗିବାକୁ ମୋର
ଏବେ ମୋର ଶାପ ଘେନ ଆଗୋ ରାମାବର ।
ଷୋଳବରଷ ପକ୍ଷିଣୀ ହୋଇ ତୁ ରହିବୁ
ଚାରିଗୋଟି ପୁତ୍ର ତୋର ଗର୍ଭରେ ବହିବୁ ।
ତାହାଙ୍କୁ ଜନମ କରି ଯିବୁ ତୋର ପୁରେ
ବଡ଼ ସୁଜ୍ଞାନୀ ହୋଇବେ ତୋ ଚାରି କୁମରେ ।
ଏମନ୍ତେ ତାହାକୁ ଶାପ ଦେଇ ମୁନିବର
ସେ ସ୍ଥାନ ଛାଡ଼ି ଚଳିଲେ ମନ୍ଦାକିନୀ ତୀର ।
ଶୁଣିଣ ସେ ଅପସରା ଗର୍ବ ହେଲା ଚୂନା
ଗୋପୀନାଥ କଲେ କରି ହରି ସୁମରଣା ।

.....❋.....

## ବିଦ୍ୟୁଦ୍ରୂପ ରାକ୍ଷସ ବଧ

କହନ୍ତି ଯେ ମାରକଣ୍ଡ ଶୁଣ ଜଇମିନୀ
ପକ୍ଷୀରାଜ ଗରୁଡ଼ ଯେ ଅଟେ ମହାଜ୍ଞାନୀ ।
ବିନତାର ସୁତ ସେହି ବିଷ୍ଣୁର ବାହନ
ସମ୍ପାତି ନାମେ ଯେ ପକ୍ଷୀ ତାହାର ନନ୍ଦନ ।
ସମ୍ପାତିର ପୁତ୍ର ନାମ ସୁପାର୍ଶ୍ୱ ଅଟଇ
ସେ ସୁପାର୍ଶ୍ୱ କୁନ୍ତି ନାମେ ପୁତ୍ର ଉପୁଜାଇ ।
ପ୍ରଲୋଲୁପ ନାମେ ପକ୍ଷୀ କୁନ୍ତିର ନନ୍ଦନ
ସେହି ପ୍ରଲୋଲୁପ ଅଟେ ପକ୍ଷୀଙ୍କ ରାଜନ ।
କଙ୍କ କନ୍ଦର ଏ ଦୁଇ ପୁତ୍ର ହେଲେ ତାର
ଏକଦିନେ ଉଡ଼ିଉଡ଼ି କଙ୍କ ପକ୍ଷୀବର ।
କଇଳାସ ପରବତ ଶିଖରେ ବସିଲି
ବିଦ୍ୟୁଦ୍ରୂପ ନାମେ ଏକ ରାକ୍ଷସ ଦେଖିଲି ।
ସୁବେଶ ହୋଇ ଭାରିଯା ସଙ୍ଗତରେ ଘେନି
ମଦ ନିଶାରେ ଯେ ଭୋଳ ହୋଇଛନ୍ତି ବେନି ।
ସୁନ୍ଦର ଶିଳା ଉପରେ କରୁଛନ୍ତି କେଳି
କଙ୍କ ପକ୍ଷୀଙ୍କି ଦେଖିଣ କ୍ରୋଧେ ମହାବଳୀ ।
ବୋଇଲାରେ ପକ୍ଷୀ ତୋର ତିଳେ ନାହିଁ ଜ୍ଞାନ
ଭାରିଯାକୁ ଘେନି ମୁହିଁ କରେ ମଦ୍ୟପାନ ।
ତୁ ମୂଢ଼ ତାହା ଦେଖିଣ ବସିଲୁ କେମନ୍ତେ
ଅଜ୍ଞାନୀ ବିନା ଜ୍ଞାନୀ କି ରହନ୍ତା ଏକାନ୍ତେ ।
ଏମନ୍ତ ବେଳେ କି କେହି କା ନିକଟେ ଯାଇ
କଙ୍କ ବୋଇଲା ନିର୍ଲଜ ତୋପରିକେ ନାହିଁ ।

ଏହି ହିମାଳୟ ଗିରି ଏକା ନୋହେ ତୋର
ଛପନ କୋଟି ଜୀବଙ୍କ ଅଟେ କ୍ରୀଡ଼ାଘର ।
ଜାଣି ଶୁଣି ତୁ ଏକାନ୍ତ ହେଲୁ ଅଲାଜୁକ
ରୋଷେ ମୋତେ ଗାଳିଦେଉ ଏଡ଼େ ଅବିବେକ ।
ଏ ପର୍ବତେ ଯେଉଁପରି ତୋର ଅଧିକାର
ସେହିପରି ଅଧିକାର ଅଛଇ ମୋହର ।
ତୋହ ମୋହ ଭିନ୍ନ ପ୍ରାଣୀ ଅଛନ୍ତିଟି ଯେତେ
ତାହାଙ୍କର ଅଧିକାର ଅଛି ଏହିମତେ ।
ମୋର ବୋଲି ବୃଥା ଗର୍ବ କର କାହିଁପାଇଁ
କାଙ୍କ ଏମନ୍ତେ କହନ୍ତେ ରାକ୍ଷସ ଉଠଇ ।
ଖଡ଼ଗ ଘେନି କାଟିଲା ପକ୍ଷୀବର ଶିର
ସେ କଙ୍କର ବଡ଼ଭାଇ ଅଟଇ କନ୍ଦର ।
ଭାଇ ତାର ମରିବାର ବାରତା ପାଇଲା
ଶୋକଭରେ ମୂର୍ଚ୍ଛାଯାଇ ଭୂମିରେ ପଡ଼ିଲା ।
କିଛିକ୍ଷଣ ପରେ ପୁଣି ପାଇଲା ଚେତନା
ବାହୁନିଲା ଭାଇ ଗୁଣ କରି ସୁମରଣା ।
କାନ୍ଦୁ କାନ୍ଦୁ ପକ୍ଷୀବର ଉଠି କ୍ରୋଧଭରେ
ବୋଇଲା ମୁଁ ଜାତହୋଇ ଗରୁଡ଼ ବଂଶରେ ।
ମୋ ଭାଇକି ନିଶାଚର ନିର୍ଦ୍ଦୋଷେ ମାଇଲା
ପ୍ରାଣ ମୋର ଥାଉଁ ଥାଉଁ ଏହା ଯେ ସହିଲା ।
ମୋ ପିତାମହ ଗରୁଡ଼ ଜିଣି ଦେବଗଣ
ଇନ୍ଦ୍ର ଭଣ୍ଡାରୁ ଅମୃତ କଲାକ ହରଣ ।
ମୋର ପୂର୍ବ ବଂଶେ ପକ୍ଷୀ ଜଟାୟୁଷ ଥିଲା
ରାବଣ ପରା ବୀରକୁ ହରବର କଲା ।
କର୍ମର ଅବକୁ ଗଲା ତାର ହସ୍ତେ ପ୍ରାଣ
ତ୍ରେତାଯୁଗେ ରାମକାର୍ଯ୍ୟ କରି ପକ୍ଷୀଗଣ ।
ବଇକୁଣ୍ଠ ପୁରରେ ସେ ନିଶ୍ଚିନ୍ତ ରହିଲା
ସେହିବଂଶେ ସମ୍ପାତି ଯେ ପଦୀ ଜନ୍ମହେଲା ।
ସେହି ତ୍ରେତାଯୁଗେ ହନୁ ଆଦି ସାତବୀର
ସୀତା ଖୋଜି ଯାଉଥିଲେ ଶ୍ରୀରାମଙ୍କ ଚାର ।
ତାହାଙ୍କୁ ପୃଷ୍ଠେ ବସାଇ ଲଙ୍କା ଦେଖାଇଲା
କାଳେ କାଳେ ଏ ମହୀରେ କୀରତି ଥୋଇଲା ।
ମୁହିଁ ପାମର ଅବଳା ପରାୟେ ରୋଦ୍ନଇ
ଧିକ ନିର୍ଲଜ୍ଜ ଜୀବନେ ପ୍ରୟୋଜନ ନାହିଁ ।
ମାରିବି ସେ ରାକ୍ଷସକୁ ରଖିବି କୀରତି
ଏମନ୍ତ କହି ଧଇଲା ଭୀଷଣ ମୂରତି ।

କ୍ଷଣକେ ଆକାଶମାର୍ଗେ ଗଲା କଇଳାସେ
ଭାଇର ଯେ ପ୍ରେତ କ୍ରିୟାମାନ ସାରି ରୋଷେ ।
ରାକ୍ଷସ ବିଦ୍ୟୁଦ୍ରୁପକୁ କହିଲାରେ ଆସ
ଯେଉଁ ପକ୍ଷୀକି ନିର୍ଦ୍ଦୋଷେ କଲୁ ତୁ ବିନାଶ ।
ତାର ବଡ଼ଭାଇ ମୋର ନାମ ଯେ କନ୍ଦର
ବେଗେ ଉଠି ମୋର ସଙ୍ଗେ କର ତୁ ସମର ।
ଗରୁଡ଼ର ବଂଶେ ଜାତ ହୋଇଅଛି ମୁହିଁ
ଏହିକ୍ଷଣି ଯମପୁରେ ଦେବଇଁ ପଠାଇ ।
ଏମନ୍ତ ଶୁଣି ଉଚ୍ଚରେ ହସିଲା ଅସୁର
ବୋଇଲାରେ ପକ୍ଷୀ କିମ୍ପା କରୁ ଅହଙ୍କାର ।
କାଳସର୍ପର ମୁଖରେ ଭରିଣ ଅଙ୍ଗୁଳି
ବିଷ ଜ୍ୱାଳାରେ ନ ମରି ଯାଇ କି ଉବୁରି ।
କିବା ତୋର ଭାଇ ତୋତେ ଡାକୁଛିରେ ମୂଢ଼
ତୋ ପାଇଁକି ଯମରାଜ ପାତିଛିରେ ଦାଢ଼ ।
ରାକ୍ଷସ ମୁଖୁଁ ଏମନ୍ତ ଶୁଣି ପକ୍ଷୀବର
କ୍ରୋଧେ ନିଃଶ୍ୱାସ ପକାଇ ବୋଲେରେ ପାମର ।
ଯାହା ତୁ କହିଲୁ କାଳସର୍ପ ଅଟୁ ତୁହି
ଗରୁଡ଼ର ବଂଶେ ଜନ୍ମ ହୋଇଅଛି ମୁହିଁ ।
ମୋହର ହସ୍ତରେ ମୃତ୍ୟୁ ଅଛଇ ତୋହର
ଏ କଟୁକଥା ନ ସହି ପାରି ନିଶାଚର ।
ସୁବର୍ଣ୍ଣ ପଲଙ୍କ ତେଜି ଉଠିଲାକ ରୋଷେ
ତା ଭାରିଜା ମଦନିକା ଥିଲା ଉରୁଦେଶେ ।
ବୋଇଲା ଭୋନାଥ କ୍ରୋଧ ତେଜି ହୁଅ ଶାନ୍ତ
କ୍ରୋଧେ ଯେ କରଇ ନାଥ ଆପଣା ଅହିତ ।
ଅକାରଣେ ପକ୍ଷୀ ସଙ୍ଗେ ବିବାଦ ନ କର
ବୁଝାଇ କହିବା ଫେରିଯାଉ ପକ୍ଷୀବର ।
ଗରୁଡ଼ର ବଂଶ ପକ୍ଷୀ ମହାବଳବନ୍ତ
ତୁମ୍ଭର ବିହୁନେ ନାଥ ହୋଇବି ଅନାଥ ।
ମୁହିଁ ଅବଳା ମୋହର ବଳ କିଛି ନାହିଁ
ସୁଲକ୍ଷଣୀ ସୁଲୋଚନା ଅଟଇ ସୁମୁହୀଁ ।
ଭାରିଯାର ଏ ବଚନ ଶୁଣି ନିଶାଚର
ହସି ଟହ ଟହ ହୋଇ ଦିଅଇ ଉତ୍ତର ।
ତୁମ୍ଭେ ନାରୀଜାତି ତୁମ୍ଭ ବୁଦ୍ଧି ଅବା କେତେ
ପକ୍ଷୀ ଗୋଟା ଆସି ଯୁଦ୍ଧ ମାଗୁଅଛି ମୋତେ ।
ଛିଡ଼ା ହୋଇ ନ ପାରଇ ଯା ଆଗେ ବାସବ
ସେ ବୀର ଗୋଟାକ ନୀଚ ବଚନ ସହିବ ।

ଅହିରାଜ ପରି ପକ୍ଷୀ ଗର୍ଜ ନ କରଇ
ଆସ ଆସ ବୋଲି ଉଚ୍ଚେ ଡାକ ସେ ଛାଡ଼ଇ ।
ମୋ ଭାଇକି ମାରିଅଛୁଁ ଯିବୁ ତୁରେ କାହିଁ
ଲୁଚିଲେ ନିଶ୍ଚେ ମାରିବି ଖୋଜି ଯହିଁ ତହିଁ ।
ମଦଖିଆ ଛଡ଼ାଇବି ଆଜି ମୁଁ ତୋହର
ବିଶ୍ୱାସଘାତକ ପାପୀ ତୁରେ ନିଶାଚର ।
ସ୍ତିରୀହତ୍ୟା ଶିଶୁହତ୍ୟା କରିଥିବା ଲୋକେ
ମଲେ ସେ ପଡ଼ନ୍ତି ଯାଇଁ ଯେବଣ ନରକେ ।
ତୋତେ ଆଜି ସେ ନରକ ଦେଖାଇବି ମୁହିଁ
ରଖି ନ ପାରିବେ ତୋତେ ତିନିପୁରେ କେହି ।
ସହି ନ ପାରି ରାକ୍ଷସ ଏ କଟୂ ବଚନ
ଭାରିଯାକୁ ପେଲିଦେଇ ଉଠିଲା ବହନ ।
ଖଡ଼ଗ ଧରି ଧାଇଁଲା ଗରଜନ କରି
କ୍ରୋଧେ ରାକ୍ଷସ ଦିଶଇ ପରବତ ପରି ।
ଘଡ଼ଘଡ଼ି ପ୍ରାୟେ ରଡ଼ି ଛାଡ଼େ ଘନ ଘନ
ପାଦଭରେ ଗିରିବର ହୁଏ କମ୍ପମାନ ।
ଆରେ ଆରେ ପକ୍ଷୀ ତୋର ଏତେ ଅହଙ୍କାର
ଶଶା ହୋଇ ସିଂହ ସଙ୍ଗେ ଲୋଡୁରେ ସମର ।
ଭାଇକି ତୋର ମାରିଛି ଏହି ଖଡ଼ଗରେ
ଏହିକ୍ଷଣି ଭେଟ ହେବୁ ଭାଇର ସଙ୍ଗରେ ।
ଏତେ କହି ନିଶାଚର ଗରଜନ କରି
ଅଞ୍ଜନପୁତ୍ର ସଦୃଶ ଖଡ଼ଗକୁ ଧରି ।
ବୁଲାଇ ମାଇଲା ରୋଷେ ଖଗେନ୍ଦ୍ର ଉପରେ
ଦେଖି ବୁଦ୍ଧିମନ୍ତ ପକ୍ଷୀ ଉଡ଼ିଲା ଶୂନ୍ୟରେ ।
ବିଜୁଳି ପରାଏ ବେଗେ ଛଟକେ ଅଇଲା
ଖଡ଼ଗ ଗୋଟାକୁ ତାର ଥଣ୍ଟରେ ଧଇଲା ।
ଗରୁଡ଼ ଯେହ୍ନେ ସର୍ପକୁ ଥଣ୍ଟରେ ନିଅଇ
ତେସନ ଖଡ଼ଗ ନେଲା ହସ୍ତରୁ ଛଡ଼ାଇ ।
ବଳବନ୍ତ ପଣେ ଭାଙ୍ଗିଗଲା ତିନିଖଣ୍ଡ
ତେବେ ଖୁମ୍ପି ପକାଇଲା ରାକ୍ଷସର ମୁଣ୍ଡ ।
ପିନ୍ଧିଲା ଲୁଗାକୁ ଚିରି ପକାଇଲା ନଖେ
ଉଲଗ୍ନ ହୋଇ ରାକ୍ଷସ ଏଣେତେଣେ ଦେଖେ ।
ପକ୍ଷୀ ଧରିବାକୁ ବୀର ବଢ଼ାଇଲା କର
ଧରା ନ ଦିଅଇ ପକ୍ଷୀ ଅତ୍ୟନ୍ତ ଚତୁର ।
ଉଡ଼ିଆସି ତାର ଛାତି ପକାଇ ବିଦାରି
ପାଦ ପ୍ରହାରି ତାହାର ପେଟ ଦେଲା ଚିରି ।
ଥଣ୍ଟରେ ଅନ୍ତବୁଜୁଳା କାଢ଼ିଲା ତାହାର
ଗର୍ଜ୍ଜନ କରି ରାକ୍ଷସ ପଡ଼ିଲା ଭୂମିର ।
ପ୍ରାଣ ଛାଡ଼ିଗଲା ତାର ମଲା ସେ ରାକ୍ଷସ
ଧନ୍ୟ ଧନ୍ୟ ପକ୍ଷୀ ବୋଲି ବୋଇଲେ ତ୍ରିଦଶ ।
ଅପସରା ପୁଷ୍ପବୃଷ୍ଟି କଲେ ପକ୍ଷୀ ଶିରେ
ଗୋପୀନାଥ ମନ ଥାଇ ଅଚ୍ୟୁତ ପୟରେ ।

.....❀.....

## ପିଙ୍ଗାକ୍ଷ ଆଦି ଚାରିପକ୍ଷୀଙ୍କ ଜନ୍ମ ବୃତ୍ତାନ୍ତ

ମାରକଣ୍ଡ କହନ୍ତି ଯେ ଜୈମିନୀ ଶୁଣନ୍ତି
ରାକ୍ଷସ ମାରନ୍ତେ ପକ୍ଷୀ ଭଜିଲାକ ଶାନ୍ତି ।
ଦେଖି ମଦନିକା ବୋଲେ ଆହେ ପକ୍ଷୀବର
ମେନା ଅପସରା ଗର୍ଭୁଜନମ ମୋହର ।
ଏହି ଦୁଷ୍ଟ ନିଶାଚର ରଖିଥିଲା ମୋତେ
ଏବେ ମୁହିଁ ପକ୍ଷୀବର ଭଜିଲଇଁ ତୋତେ ।
ଏମନ୍ତ ଶୁଣି କନ୍ଧର ସାନନ୍ଦ ହୋଇଲା
ମଦନିକା ସୁନ୍ଦରୀକି ଉଠି ମେଳକଲା ।
ପକ୍ଷିଣୀ ରୂପ ଧଇଲା ତକ୍ଷଣେ ସୁନ୍ଦରୀ
ଦୁହେଁ ସୁଖେ କ୍ରୀଡ଼ା କଲେ ଦିବସ ସର୍ବରୀ ।
ତାହାର ଗର୍ଭରୁ ଏକ କନ୍ୟା ଉପୁଜିଲା
ତାରାକ୍ଷୀ ନାମ ତାହାର ପିତା ତାକୁ ଦେଲା ।
କହୁଛୁଁ ତ ପୁଣି ଅଛ ବପୁ ଅପସରୀ
ଦୁର୍ବାସା ମୁନିର ଶାପେ ଆସି ଅବତରି ।
ତାରାକ୍ଷୀ ପକ୍ଷିଣୀ ନାମେ ହୋଇଲା ସେ ଜାତ
ଏଥୁ ଅନନ୍ତରେ ଶୁଣ ଆନ ଯେ ଚରିତ ।
ମନ୍ଦପାଳ ନାମରେ ଯେ ଏକ ପକ୍ଷୀ ଥିଲା
ତାହାର ଭାରିଯା ଚାରିପୁତ୍ର ଜାତ କଲା ।
ଦ୍ରୋଣ ଜରିତାରି ଆଦି ତାହାଙ୍କର ନାମ
ସେ ଚାରି ଭାଇଙ୍କ ମଧ୍ୟେ ଅଟଇ ଯେ ସାନ ।
ବେଦବେଦାଙ୍ଗାଦି ପାଠ ପଢ଼ିଥିବା ଜାଣି
ପକ୍ଷୀମଧ୍ୟେ ଧର୍ମବନ୍ତ ଅଟଇ ସେ ପ୍ରାଣୀ ।
କନ୍ଧର ପକ୍ଷୀ ତାହାର ରୂପ ଗୁଣ ଦେଖି
ଆପଣାର ଦୁହିତା ଯେ ଅଟଇ ତାରାକ୍ଷୀ ।
ମନ୍ଦପାଳ କୁମରକୁ ତାକୁ ବିଭା ଦେଲା
କିଛିଦିନେ ସେ ତାରାକ୍ଷୀ ଗର୍ଭବାସ ହେଲା ।

ତିନିମାସ ଏକପକ୍ଷ ଏହିରୂପେ ଗଲା
ଏ ସମୟେ ଅଦଭୁତ ଘଟଣା ଘଟିଲା ।
ମହାଭାରତ ଯୁଦ୍ଧ ଯେ ହେଲା କୁରୁକ୍ଷେତ୍ରେ
ସେ ତାରାକ୍ଷୀ ପକ୍ଷୀ ଶୂନ୍ୟେ ଦେଖୁଥିଲା ନେତ୍ରେ ।
ଭଗଦତ୍ତ ସଙ୍ଗେ ଗଦାଯୁଦ୍ଧ ଅର୍ଜ୍ଜୁନର
ପୁଣି ଦୁହେଁ ଯୁଦ୍ଧ କଲେ ଧରି ଧନୁଶର ।
ଦୁହିଁଙ୍କ ନାରାଚ ଯାଇଁ ଆକଶେ ଘୋଟିଲେ
ଶୂନ୍ୟରେ ଶଲଭ ଧାଡ଼ି ପରାୟେ ଦିଶିଲେ ।
ଗାଣ୍ଡୀବ ଧନୁ କୁ ଧରି ଅଛଇ ଅର୍ଜ୍ଜୁନ
ଭଲ ଅସ୍ତ୍ର ଯୋଚିଲାକ ହୋଇ କୋପମନ ।
ସେ ଅସ୍ତ୍ର ସର୍ପ ପରାୟ ଶ୍ୟାମଳ ଦିଶଇ
ଆକାଶ ମାର୍ଗକୁ ବେଗେ ଅସ୍ତ୍ର ଚାଲିଯାଇ ।
ତାରାକ୍ଷୀ ପେଟର ଚମ କାଟି ପକାଇଲା
ଚାରିଗୋଟି ଅଣ୍ଡା ତହୁଁ ଖସିଣ ପଡ଼ିଲା ।
ଚନ୍ଦ୍ରମା ତୁଲ୍ୟ ଧବଳ କୋମଳ ଅଟଇ
ତୁଳାମେଞ୍ଚା ପରାୟ ସେ ଭୂମିରେ ପଡ଼ଇ ।
ଆୟୁଷ ଥିବାରୁ ପଡ଼ି ନ ଗଲା ସେ ଫାଟି
ଦେଖ ବିଷ୍ଣୁ ଚିତ୍ରକୂଟ ମାୟା ପରିପାଟୀ ।
ଅଇରାବତ ବଂଶିକ ଯେ ସୁପ୍ରତୀକ ଗଜ
ତା ପିଠିରେ ବସି ଯୁଝେ ଭଗଦତ୍ତ ଗଜ ।
ଗିରିତୁଲ୍ୟ ଘଣ୍ଟା ଗଜ ଗଳାରେ ଲମ୍ବଇ
ଅର୍ଜ୍ଜୁନର ଶର ବାଜି ସେ ଛିଡ଼ି ପଡ଼ଇ ।
ଅଣ୍ଡା ପଡ଼ିଲା ସମୟେ ସେ ଘଣ୍ଟା ଛିଡ଼ିଲା
ମାଣେ ପରିମାଣେ ଭୂମି ମାଡ଼ିଣ ବସିଲା ।
ଘଣ୍ଟି ତଳେ ମଡ଼ା ମାଂସ ରହିଲା ବହୁତ
ଅଣ୍ଡାକୁ ଘଣ୍ଟଘୋଡ଼ାଇ ରଖିଲେ ଅଚ୍ୟୁତ ।
ଅଠର ଦିନେ ଭାରତ ଯୁଦ୍ଧ ଶେଷ ହେଲା
ମଡ଼ା ମାଂସରେ ସେ ଘଣ୍ଟ ଗୋଟି ବୁଡ଼ିଗଲା
ଭଗଦତ୍ତ ବୀର ମଲା ଅର୍ଜ୍ଜୁନର ଶରେ
ସୁପ୍ରତୀକ ଗଜରାଜ ମଲା ତା ସଙ୍ଗରେ ।
ସେ ଦୁହେଁ ପଡ଼ିଲେ ସେହି ଘଣ୍ଟର ଉପରେ
ଶୁଣ ତୁ ହୋ ମୁନିବର ଏଥୁ ଅନନ୍ତରେ ।
ଯାହାକୁ ରଖିବେ ହରିକେ ପାରିବ ମାରି
ଏତେ ମଡ଼ା ଦଳାରେ ସେ ପକ୍ଷୀ ଅଣ୍ଡାଚାରି ।
ଡିମ୍ବ ଫୁଟି ଛୁଆ ହୋଇ ଶବଦ କରନ୍ତି
ଗଙ୍ଗାପୁତ୍ର ଭୀଷ୍ମ ଶରଶଯ୍ୟାରେ ଅଛନ୍ତି ।
ଯୁଦ୍ଧ ଶେଷେ ଧର୍ମପୁତ୍ର ରାଜା ଯୁଧିଷ୍ଠିର
ଜ୍ଞାତିବଧ ପାପରେ ସେ ହୋଇଣ କାତର ।
ଅଜା ଗୁରୁ ଭୀଷ୍ମଦେବ ନିକଟକୁ ଗଲେ
ପ୍ରଣାମ କରି ଅନେକ ବିନୟେ କହିଲେ ।
ଆହେ ଗଙ୍ଗା ପୁତ୍ର ତୁମ୍ଭେ ଅଟ ମହାଜ୍ଞାନୀ
ବହୁତ କାଳରୁ ବୃଦ୍ଧ ଧର୍ମବନ୍ତ ପ୍ରାଣୀ ।
ଧର୍ମ ପୁରାଣ ବହୁତ ଜାଣ ଭଲକରି
ମୋତେ ଜ୍ଞାତିବଧ ପାପଗୋଟା ଅଛି ଘାରି ।
ତବମୁଖୁ ଶୁଣିଲେ ମୁଁ ପାଇବି ନିସ୍ତାର
ପୁରାଣ ଧର୍ମଗୀତା ଯେ ଅଛି ସାର ସାର ।
ସଂକ୍ଷପ କହିଲେ ମୁହିଁ ପାପୁଁ ଯିବି ତରି
ଭୀଷ୍ମ ପୁରାଣ କହିଲେ ଅନୁଗ୍ରହ କରି ।
ଚାରିଗୋଟି ଡିମ୍ବ କରି ପୁରାଣ ଶ୍ରବଣ
ଉଦେ ହୋଇଲା ତାଙ୍କରି ପୂର୍ବଜନ୍ମ ଜ୍ଞାନ ।
କହି ନ ପାରି କେବଳ ଚେଁ ଚେଁ ହେଉଛନ୍ତି
ଦେଖି ମୁନି ବିଷ୍ଣୁ କେହ୍ନେ ଜୀବଙ୍କୁ ପାଳନ୍ତି ।
ଶମୀକ ନାମେ ବ୍ରାହ୍ମଣ ଶିଷ୍ୟ ସଙ୍ଗେ ଘେନି
ଗଙ୍ଗା ଗୟା ଆଦି ତୀର୍ଥଯାକ ଭ୍ରମି ଭ୍ରମି ।
କୁରୁକ୍ଷେତ୍ରକୁ ଦେଖିଲେ ଶମଶାନ ପରି
ଯହିଁ ପଡ଼ିଛନ୍ତି ସେହି ପକ୍ଷୀ ଡିମ୍ବ ଚାରି ।
ସେହି ବାଟ ଦେଇ ଯାଉ ଯାଉ ମୁନିବର
ଚେଁ ଚେଁ ଶବ୍ଦ ଶୁଭେ ପୁଣି ଘଣ୍ଟାର ଭିତର ।
ଆଚମ୍ବିତ ହୋଇ ମୁନି ବସିଲାକ ତହିଁ
ମଡ଼ାର ପରେମଡ଼ା ତିଳେ ବାଟ ନାହିଁ ।
କାନ ପାରି ସେ ଶବଦ ବାରି ମୁନିବର
ଶିଷ୍ୟକୁ ଚାହିଁ ବୋଇଲେ ଏକି ଚମତ୍କାର ।
ମଡ଼ା ପଡ଼ିଛି ଦେଖୁଛ ପର୍ବତ ସମାନ
ଦୀର୍ଘ ପ୍ରତିକରେ ସ୍ଥାପିଲେ ହେବ ତ ଯୋଜନ ।
କେବଣ ଜୀବ କେମନ୍ତେ ରହି ଏକା ତଳେ
ମରି ନ ଯାଇ ଶବଦ କରେ କୁତୁହଳେ ।
ଶିଷ୍ୟ ବୋଇଲେ ଭୋ ଗୁରୁ ବଡ଼ ଆଚମ୍ବିତ
ମଡ଼ା କାଢ଼ି ଦେଖିବା କି କେବଣ ଚରିତ୍ର ।
ଶମୀକ ବୋଇଲେ ବାବୁ ପାର ଯେବେ କାଢ଼
ମୋତେ ତ ଡର ମାଡ଼ଇ ଦେଖି ମହାକୁଢ଼ ।
ମୁନି ଆଜ୍ଞା ପାଇ ମଡ଼ା କାଢ଼ି ପକାଇଲେ
ଗଜବରକୁ ବହୁତ କଷ୍ଟେ ଓଟାରିଲେ ।

ଘଣ୍ଟାକୁ ଟେକିଲେ ସାର ପାଞ୍ଚଜଣ ମିଳି
ଶମୀକ ମୁନି ଛୁଆଙ୍କୁ ଆଣିଲେକ ତୋଳି ।
ଆଶ୍ଚର୍ଯ୍ୟ ହୋଇ ବୋଇଲେ ଶିଷ୍ୟକୁ ଅନାଇ
ଶୁକ୍ରଆଚାର୍ଯ୍ୟଙ୍କ ନୀତି ଶୁଣ ମନଦେଇ ।
ଅଟନ୍ତି ଯେ ଅସୁରଙ୍କ ମନ୍ତ୍ରୀ କାଳେ କାଳେ
ଦେବ ଦାନବଙ୍କୁ ଯୁଦ୍ଧ ହେବ ଯେତେବେଳେ ।
ଇନ୍ଦ୍ର ନାରାଚେ ଆକୁଳ ହୋଇଲେ ଅସୁରେ
ସହି ନପାରି ଦଇତେ ପଳାଇଲେ ଡରେ ।
ଏମନ୍ତ ଦେଖିବୋଇଲେ ଶୁକମୁନି ତାଙ୍କୁ
ଯୁଦ୍ଧ ଛାଡ଼ି ପଳାଉଛ କାହିଁକି ଘରକୁ ।
ବୀରପଣ ଛାଡ଼ି କିମ୍ପା ହେଉଛ କାତର
ପଳାଇଗଲେ କି ତୁମ୍ଭେ ହୋଇବ ଅମର ।
ଜନମ ମରଣ ସୃଷ୍ଟି ବିଧାତା ଭିଆଣ
ଆନ କେହି ନ ଜାଣଇ ଜନମ ମରଣ ।
କେ କେତେବେଳେ ମରିବ ନ ପାରିବ କହି
ଯୁଦ୍ଧ କରୁ କରୁ ପ୍ରାଣ ପାଇ ଅବା କେହି ।
ପଳାଇ ଯାଇବା କେହି ଜୀବନ ରଖଇ
କେହି ଆପଣାର ଗୃହେ ଥାଇ ମରିଯାଇ ।
କେହିବା ପଳାଇ ଯାଉଯାଉ ଦିଏ ପ୍ରାଣ
ଖାଉ ଖାଉ ପିଉ ପିଉ କାହାର ମରଣ ।
କେହି ସୁଖଭୋଗ କରୁ କରୁ ଯାଏ ମରି
ବିଳସୀ ହୋଇ ଜୀବନ ଯାଏ ବା କାହାରି ।
କେହି କାମେ ମତ୍ତ ହୋଇ ହରାଏ ଜୀବନ
ନୀରୋଗ ହୋଇ କେ ଯାଏ ଯମର ସଦନ ।
ଶସ୍ତ୍ରର ଆଘାତ ପାଇ କେହି ବା ବଞ୍ଚଇ
ପୁଣି ସେହି ପ୍ରେତରାଜ ପୁରକୁ ଗମଇ ।
କେହି ତପ କରୁ କରୁ ହରାଏ ଜୀବନ
କେହି ଯୋଗ ସାଧି ସାଧି ବଞ୍ଚେ ବହୁଦିନ ।
ପୁଣିହିଁ ଯମର କରେ ପ୍ରାଣକୁ ଦିଅଇ
ପୂର୍ବେ ଶମ୍ବର ଅସୁରେ ଯୁଦ୍ଧେ ଶଚୀସାଇଁ ।
ବଜ୍ର ମାଇଲେ ତାହାର ନ ଗଲା ଜୀବନ
ଅସୁର ହୃଦରେବାଜି ବଙ୍କା ହେଲା ମୂନ ।
ସେହି ବଜ୍ରର ଆଘାତେ ମରନ୍ତି ଅସୁରେ
କାଳ ନ ପୂରିଲେ କେହି କଦାପି ନ ମରେ ।
କ୍ଷଣେ ଆୟୁ ଥିଲେ ଯମ ନ ପାରିବ ନେଇ
ଆୟୁ ଶେଷ ହେଲେ କ୍ଷଣେ ନ ରଖିବେ କେହି ।

ଏଣୁ ମରଣକୁ ତୁମ୍ଭେ କଦାପି ନ ଡର
ମହୀତଳେ ଯଶ ରଖ ଫେରି ଯୁଦ୍ଧକର ।
ଶୁକ୍ରମନ୍ତ୍ରୀଙ୍କର ନୀତି କଥାମାନ ଶୁଣି
ଭୟ ତେଜି ସେ ଅସୁରେ କଲେ ଯୁଦ୍ଧ ପୁଣି ।
ଶୁକ୍ରର ସେ କଥା ସତ ଏବେ ଦେଖାହେଲା
ଏହି ଚାରି ଛୁଆଙ୍କର ଜୀବନ ରହିଲା ।
ଏଡ଼େବଡ଼ ଯୁଦ୍ଧେ ମଡ଼ା ଦଳାରେ ନ ମଲେ
ଆୟୁଷ ଥିବାରୁ ଯମ ନେଇ ନ ପାରିଲେ ।
ଏଥେ ଚାରି ଡିମ୍ବ କାହୁଁ ପଡ଼ିଲା କେମନ୍ତେ
ଘଣ୍ଟ ଘୋଡ଼ାଇଲା କିଏ କାହୁଁ କେଉଁମତେ ।
ମଡ଼ାରେ ଏ ଘଣ୍ଟଗୋଟା କେହୁ ଆଚ୍ଛାଦିଲା
ବିଚିତ୍ରକର୍ମା ଦଇବ ଏହା ସିନା କଲା ।
ଜଣା ଯାଉଅଛି ଏହି ଚାରିଗୋଟି ପ୍ରାଣୀ
ସାମାନ୍ୟ ପକ୍ଷୀ ପରାୟ ଏହାଙ୍କୁ ନ ମଣି ।
ଭାଗ୍ୟବନ୍ତ ପ୍ରାଣୀ ଏହି ଜାଣ ଶିଷ୍ୟଗଣ
ଏହାଙ୍କୁ ନେଇ ରଖିବା ଯତନ କରିଣ ।
ବିରାଡ଼ି ମୂଷା କୁକୁର ନ ଥିବେଟି ଯହିଁ
ତେମନ୍ତ ସ୍ଥାନେ ଏହାଙ୍କୁ ରଖ ବେଗେନେଇ ।
କେବଳ କାରଣ ମାତ୍ର ହେବ ତୁମ୍ଭେ ସିନା
ମରେ କି ବଞ୍ଚେ କି ଜୀବ କର୍ମଫଳ ବିନା ।
ସାକ୍ଷାତରେ ସାକ୍ଷୀ ଏଥେ ଏ ପକ୍ଷୀ ଅଟନ୍ତି
ଜାଣି ଶୁଣି ଲୋକେ ପୁଣି ଯତନ କରନ୍ତି ।
ନିନ୍ଦା ଅପବାଦ ହେବ ନ କଲେ ଯତନ
ମହାଋଷି ଶମୀକର ଶୁଣି ଏ ବଚନ ।
ଶିଷ୍ୟଗଣ ଆନନ୍ଦରେ ପକ୍ଷୀଛୁଆ ନେଲେ
ଶମୀକ ମୁନି ଆଶ୍ରମେ ନେଇଣ ଥୋଇଲେ ।
ଫଳ ମୂଳ କୁଶ ଫୁଲ ଘେନି ମହାମୁନି
ପୂଜା କଲେ ବ୍ରହ୍ମା ବିଷ୍ଣୁ ଶିବ ଚନ୍ଦ୍ର ଅଗ୍ନି ।
କୁବେର ବରୁଣ ଯମ ବାୟୁ ବୃହସ୍ପତି
ବିଶ୍ୱଦେବଗଣ ବେଦବିଧିରେ ପୂଜନ୍ତି ।
ଜୟ ତୁ ଜୟ ତୁ ହରି ମହିମା ସାଗର
ତୋର ଚକ୍ରକୂଟ ମାୟା ଅନନ୍ତଅପାର ।
ତୁ ଯାହାକୁ ରଖିବୁ କେ ପାରିବ ତା ମାରି
ତୁ ମାଇଲେ ତିନିପୁରେ ନାହିଁ ରକ୍ଷାକାରୀ ।
ତାରାକ୍ଷୀ ଡିମ୍ବକୁ ଘଣ୍ଟ ଘୋଡ଼ାଇ ରଖିଲୁ
ପିତା ମାତା ବିହୁନେ ସେ ଡିମ୍ବକୁ ଥାପିଲୁ ।

ତୁହି ସିନା ଅଣାଇଲୁ ଶମୀକକୁ ତହିଁ
ତୋର ତୁଲ୍ୟ ଦୟାବନ୍ତ ଏ ସଂସାରେ ନାହିଁ ।
ଏଣୁ ମୁହିଁ ତୋର ପାଦେ ପଶିଲି ଶରଣ
ରଜନୀ ଦିବସ ଭଜି ଅଭୟ ଚରଣ ।

.....❀.....

## ପକ୍ଷୀ ଉପାଖ୍ୟାନ

ମାରକଣ୍ଡ କହିଲେ ଗୋ ଶୁଣ ମୁନିବର
ଶମୀକ ମୁନି ତାହାଙ୍କୁଦିଅନ୍ତି ଆହାର ।
ଯଥାକାଳେ ପାଣି ଦେଇ ପୋଷନ୍ତି ତାହାଙ୍କୁ
ଖଣ୍ଡି ଉଡ଼ା ଦେଇ ପକ୍ଷୀ ଯାନ୍ତି ଗଗନକୁ ।
ମୁନିବର ଦେଖି ତାହା ଆନନ୍ଦ ହୁଅନ୍ତି
ପକ୍ଷୀଏ ମଧ ବହୁତ ଆନନ୍ଦେ ବଢ଼ନ୍ତି ।
କଉତୁକେ ଶିଷ୍ୟମାନେ ଦେଖୁଥାନ୍ତି ତହିଁ
ନଦୀ ସମୁଦ୍ର ଲଙ୍ଘନ୍ତି ଉଡ଼ି ଉଡ଼ି ସେହି ।
ଚକ୍ର ଆକାରେ ଭ୍ରମନ୍ତି ଗଗନମାର୍ଗରେ
ପୃଥିବୀ ଦେଖନ୍ତି ପକ୍ଷୀ ରହି ଆନନ୍ଦରେ ।
ପୁଣି ଆସି ଆଶ୍ରମରେ ମିଳନ୍ତି ସ୍ୱସ୍ଥାନେ
ଏହିରୂପେ ବଢ଼ନ୍ତି ସେ ଛୁଆ ଦିନୁ ଦିନେ ।
ପୂର୍ବ କର୍ମଫଳେ ସେହି ହେଲେ ମହାଜ୍ଞାନୀ
ଦିନେ ଶିଷ୍ୟଗଣ ଘେନି ବସିଛନ୍ତି ମୁନି ।
ପକ୍ଷୀଏ ଯାଇ ତାହାଙ୍କ ପାଦରେ ପଡ଼ିଲେ
କଉତୁକ ପାଇ ମୂନି ଧରି ଆଉଁଷିଲେ ।
ପକ୍ଷୀଏ ବୋଇଲେ ତୁମ୍ଭେଆମ୍ଭ ପିତା ମାତା
ତୁମ୍ଭେ ପ୍ରାଣ ରକ୍ଷାକାରୀ ତୁମ୍ଭେ ଜ୍ଞାନଦାତା ।
ଘର ଅନ୍ନ ପାଣିଦେଇ ବଞ୍ଚାଇ ପୋଷିଲ
ଆମ୍ଭଠାରେ ପୁତ୍ରସମ ସ୍ନେହ କରିଥିଲ ।
ମାତା ଶୂନ୍ୟେ ଡିମ୍ବ ଦେଇ ସଙ୍ଗେ ସଙ୍ଗେ ମଲା
ପିତା ଆମ୍ଭଙ୍କୁ ଛାଡ଼ିଣ କେଣେ ଚାଲିଗଲା ।
ଭୂମିରେ ପଡ଼ି ଶୁଖିଲା କୃମିପରି ଥିଲୁ
ତୁହି ତହିଁରୁ ଉଦ୍ଧାରି ଆମ୍ଭଙ୍କୁ ଆଣିଲୁ ।
ଆମ୍ଭ ଚିନ୍ତାରେ ତୋହର ଦିନରାତି ନାହିଁ
ଏ ଛୁଆ କେମନ୍ତେ ଯିବେ ଖଣ୍ଡି ଉଡ଼ା ଦେଇ ।
ଏ ବୃକ୍ଷୁଁ ଯାଇ ସେ ବୃକ୍ଷ ଡାଳରେ ବସିବେ
ପକ୍ଷୀ ଧୂଳିରେ ମୋହର ତନୁ ଆଚ୍ଛାଦିବେ ।
ଏମନ୍ତେ ସ୍ନେହରେ ମୁନି ପାଳିଲୁ ଆମ୍ଭଙ୍କୁ
ଛାର ପକ୍ଷୀଜାତି ଆମ୍ଭେ କି ଦେବୁ ତୁମ୍ଭଙ୍କୁ ।

ଆପେ ଆପେ ଏବେ ଆମ୍ଭେ ପୋଷିହେବୁ ମୁନି
କି କରିବୁ ଆଜ୍ଞାଦିଅ ଆହେ ବ୍ରହ୍ମଜ୍ଞାନୀ ।
ଶୃଙ୍ଗୀନାମେ କୁମର ତୁ ଡକାଇଣ ଆଣି
ଶମୀକ ମୁନି ଶୁଣିଣ ପକ୍ଷୀଙ୍କର ବାଣୀ ।
ଶିଷ୍ୟମାନଙ୍କୁ ଆନନ୍ଦେ ପାଶରେ ବସାଇ
ମନ ପୁଲକାଇ ରୋମ ଟାଙ୍କୁରି ଉଠଇ ।
ଧୀରେ ଧୀରେ କୋମଳରେ କହିଲେ ଏମନ୍ତ
ମାନବ ପ୍ରାୟ ବଚନ କହିଲେ କେମନ୍ତ ।
କାହାର ଶାପେ କେମନ୍ତେ ହେଲେ ପକ୍ଷୀଜାତି
ବିସ୍ତାରି କହ ଆମ୍ଭଙ୍କୁ ନ କରିଣ ରୀତି ।
ଏମନ୍ତ ଶୁଣି ପକ୍ଷୀଏ କହିଲେ ସଧୀରେ
ବିପୁଳସ୍ୱାନ ନାମରେ ଥିଲେ ମୁନିବରେ ।
ସୁକୃଷ ତୁମ୍ବୁରୁ ନାମେ ତାହାର କୁମର
ସେହି ଯେ ସୁକୃଷ ମୁନି ଆମ୍ଭର ପିଅର ।
ବିନୟୀ ଆଚାରବନ୍ତ ଆମ୍ଭେ ଚାରିଭାଇ
ପିତାରଚରଣେ ଭକ୍ତି ଆମ୍ଭର ଯେ ଥାଇ ।
ପିତା ଯେ ଆମ୍ଭର ତପ କରିବାକୁ ଗଲେ
ସମାଧିରେ ବସି ଘୋର ତପ ଆଚରିଲେ ।
ବନରୁ ସମିଧ ଫୁଲ ନିତି ଦେଉ ଆଣି
ଅତି ବୃଦ୍ଧ ପକ୍ଷୀରୂପେ ଧରି ବଜ୍ର ପାଣି ।
ସେଠାରେ ଆସି ମିଳିନ୍ତେ ଛିଡ଼ିଗଲା ଡେଣା
ଦୀର୍ଘ ପ୍ରତିରେ ଯୋଜନଠାରୁ ନୋହେ ଊଣା ।
ଅଳପ ତମ୍ୱାବରନ ତାଙ୍କ ଚକ୍ଷୁ ଦୁଇ
ପଡ଼ିଲେ ସେଠାରେ ଆସି ସୁକୁସୁମ ହୋଇ ।
ଏମନ୍ତ ବେଶରେ ଇନ୍ଦ୍ର ସେଠାରେ ପ୍ରବେଶ
ପରକ୍ଷିବା ପାଇଁ ଆମ୍ଭମାନଙ୍କ ମାନସ ।
ଆମ୍ଭେ ଯେ ଶଉଚବନ୍ତ କେଡ଼େ ଯେ ସତିଆ
ପରର କଷ୍ଟ ଦେଖିଲେ ଥାଇ କେତେ ଦୟା ।
କେମନ୍ତେ ଆଚାରୀ ଆମ୍ଭେ କେଡ଼େ ଉଦାସୀନ
ପିତାଙ୍କର ତପସ୍ୟାରେ ଥାଇ କେଡ଼େ ମନ ।
ଏ ସକଳ ପରଷିବା ପାଇଁ ସେ ଆସିଲେ
ସେହି ପକ୍ଷୀରୂପୀ ଇନ୍ଦ୍ର ପିତାଙ୍କୁ କହିଲେ ।
ଆହେ ମୁନିବର ମୁହିଁ କ୍ଷୁଧାରେ ଆତୁର
ଭୋଜନ ଦେଇଣ ମୋର ପ୍ରାଣ ରକ୍ଷାକର ।
ବିନ୍ଧ୍ୟ ପର୍ବତ କନ୍ଦରେ ବସା କରିଥିଲି
ପ୍ରଚଣ୍ଡ ପବନ ଘାତେ ଆକାଶେ ଉଡ଼ିଲି ।

ଡେଣା ଦୁଇ ଛିଡ଼ିଗଲା ପଡ଼ିଲି ଭୂମିରେ
ସାତଦିନ ଯାଏ ମୂର୍ଚ୍ଛା ଗଲି ମୁଁ ସେଠାରେ ।
ଆଠ ଦିନରେ ଚେତନା ପାଇଲି ଆବର
କ୍ଷୁଧାରେ ଅନଳ ମୋର ଜଳଇ ଜଠର ।
ଏଣୁ ମୁଁ ଆସି ଶରଣ ପଶୁଛି ହେ ମୁନି
ଭୋଜନ ନ ଦେଲେ ଜୀବ ଯିବ ଏହିକ୍ଷଣି ।
ତୁମ୍ଭର ନିର୍ମଳ ମନ ଜାଣି ମୁନିବର
ଖାଇବାକୁ ମାଗୁଅଛି ନ କରିବ ପର ।
ଭୋକରେ ମୋହର ମନ ହୋଏ ଛନ୍ନ ଛନ୍ନ
କଣ୍ଠ ଶୁଖିଯାଏ କହି ନ ପାରେ ବଚନ ।
ପକ୍ଷୀର ମୁଖୁଁ ଏମନ୍ତ ଶୁଣିଣ ପିଅର
ବୋଇଲେ ହେ ପକ୍ଷୀବର ନ ହୁଅ କାତର ।
ଭୋଜନ ଦେଇ ତୁମ୍ଭଙ୍କୁ କରିବି ସନ୍ତୋଷ
ଯେଉଁ ପଦାର୍ଥେ ବଳିବ ତୋହର ମାନସ ।
ତାହା କହିଲେ ମୁଁ ଆଣିଦେବି ଏହିକ୍ଷଣି
କହିଲେ ସେ ପକ୍ଷୀରୂପୀ ଇନ୍ଦ୍ର ଏହାଶୁଣି
ମନୁଷ୍ୟର ମାଂସ ଆଣିଦିଅ ମୁନିବର
ତହିଁରେ କୀହିଁକି ମନ ବହଳୁଛି ମୋହର ।
ଏମନ୍ତ ଶୁଣି ପିଅର କହିଲେ ତାହାଙ୍କୁ
ଏ ବୃଦ୍ଧ ବୟସେ କିମ୍ପା ଲୋଡୁଛ ମାଂସକୁ ।
ବାଳୁତ ଯୁବା ବୟସ ଗଲାଣି ତୁମ୍ଭର
ମନୁଷ୍ୟ ମାଂସ କେମନ୍ତେ କରିବ ଆହାର ।
ସତ୍ୟ କରିଅଛି ତାହା ନ ଦେବି କେମନ୍ତେ
ଯାହା ତୁ ମାଗିଲୁ ପକ୍ଷୀଦେବି ନିଶ୍ଚେ ତୋତେ ।
ନ ଦେଲେ ତ ଧର୍ମ ନଷ୍ଟ ହୋଇବ ମୋହର
ଏମନ୍ତ କହି ପକ୍ଷୀକି ଆମ୍ଭର ପିଅର ।
ଆମ୍ଭ ଚାରି ଭାଇଙ୍କି ଯେ ପାଶକୁ ଡାକିଲେ
ଏମନ୍ତ ନିଷ୍ଠୁର ବାକ୍ୟ ଆମ୍ଭଙ୍କୁ କହିଲେ ।
ମୋହର ଭକତ ଅଟ ତୁମ୍ଭେ ଚାରି ଭାଇ
ତୁମ୍ଭେ ଚାରିହେଁ ଅଛବ ପୁତ୍ର ଉପୁଜାଇ ।
ପିତାକୁ ଯେବେ ପରମଗୁରୁ ବୋଲି ଜାଣ
ମୋହର ବଚନ ପାଳି ଶୁଝି ଚାରିଜଣ ।
ପିତାର ମୁଖୁଁ ଏମନ୍ତ ଶୁଣି ଚାରିଭାଇ ।
ବୋଇଲୁ ବିନୟ କରି ଶିରେ କର ଦେଇ ।
ଯାହା କହିବ ତା ଆମ୍ଭେ ନିଶ୍ଚୟ କରିବୁ
ତୁମ୍ଭର ଆଜ୍ଞାକୁ ତାତ ଲଙ୍ଘି ନ ପାରିବୁ ।
ଏମନ୍ତ ଶୁଣି ସନ୍ତୋଷେ ବୋଇଲେ ପିଅର
ଏହି ପକ୍ଷୀ ହୋଇଅଛି କ୍ଷୁଧାରେ ଆତୁର ।
ଖାଇବା ପାଇଁ ମୋ ପାଦେ ପଶିଲା ଶରଣ
ମନୁଷ୍ୟ ମାଂସେ ଏହାର ରହିବ ପରାଣ ।
ରୁଧିର ପିଇଲେ ତୃଷା ହରିବ ଏହାର
ଏଣୁ ତୁମ୍ଭ ମାଂସ ଦିଅ ଖାଉ ପକ୍ଷୀବର ।
ଏମନ୍ତ ଶୁଣି ଆମ୍ଭର ସର୍ବାଙ୍ଗ କମ୍ପିଲା
ଆମ୍ଭ ଚାରିଙ୍କ ମନରେ ଭୟ ଉପୁଜିଲା ।
ଆହାରେ ଦଇବ ଆଣି କି ଦୁଃଖ ବିହିଲୁ
ଏମନ୍ତ ବିଳାପ କରି ପିତାଙ୍କୁ କହିଲୁ ।
ଏ ନିଷ୍ଠୁର କଥା ଆମ୍ଭେ ନ ପାରିବୁ କରି
ପରପାଇଁ ନିଜ ଦେହ ଦେଇ ତ ନପାରି ।
ଆପଣ ତ ବୁଦ୍ଧିମନ୍ତ ହୋଇ ଏହା କହ
ସମାନ ଅଟଇ ପିତା ପୁତ୍ରଙ୍କର ଦେହ ।
ପିତୃରଣ ଦେବରଣ ମନୁଷ୍ୟର ରଣ
ପୁତ୍ର ଏମାନ ଶୁଝାଇ ଏହାହିଁ ପ୍ରମାଣ ।
ରଣ ନିମନ୍ତେ କେ ନାହିଁ ଦେହ ଦେଇନାହିଁ
ଦେଇଥିଲେ ସିନା ଧର୍ମ କରିପାରେ ସେହି ।
ମଲେ ଦେହ ସଙ୍ଗେ ସଙ୍ଗେ ଧର୍ମ ଯାଇ ତାର
ଧାର୍ମିକ ପ୍ରାଣୀ ଦେହକୁ ରଖେ ନିରନ୍ତର ।
ଏଣୁ ଆମ୍ଭେମାନେ ଦେହ ନ ପାରିବୁ ଦେଇ
ଏ ନିଷ୍ଠୁର କଥା ତାତ କେ କରି ପାରଇ ।
ଶୁଣିଣ ପିତା କ୍ରୋଧରେ ଜଳିଣ ଉଠିଲେ
କୋପ ଦୃଷ୍ଟିରେ ସେ ଆମ୍ଭ ଚାରିଙ୍କୁ ଚାହିଁଲେ ।
ବୋଇଲେ ମୋର ବଚନ ଲଙ୍ଘିଲରେ ତୁମ୍ଭେ
ଏଣୁ ମୋର କଥା ଆନ ନୋହିବରେ କେଭେ ।
ପକ୍ଷୀଯୋନିରେ ଜନମ ହୁଅ ତୁମ୍ଭେ ଯାଇ
ଏମନ୍ତ ଶାପ ଆମ୍ଭଙ୍କୁ ପିତା କ୍ରୋଧେ ଦେଇ ।
ଆପଣାର ପ୍ରେତକ୍ରିୟାମାନ ସାରି ତହିଁ
ଶୁଦ୍ଧ ପୂତ ଅଙ୍ଗ ହୋଇ ତାହାଙ୍କୁ ଦେଖଇ ।
ବୋଇଲେରେ ପକ୍ଷୀକର ମୋ ଦେହ ଭକ୍ଷଣ
ସତ୍ୟ ନ ପାଳଇ ଜାଣ ଯେବଣ ବ୍ରାହ୍ମଣ ।
ତାର ସବୁ ଧର୍ମ ନଷ୍ଟ ନିଶ୍ଚୟ ହୁଅଇ
ସତ୍ୟବନ୍ତ ପ୍ରାଣୀ ଦାନପୁଣ୍ୟ ଫଳପାଇ ।
ଏଣୁ ମୁଁ ଦେଉଛି ଦେହ କର ତୁ ଆହାର
ଏମନ୍ତ ଶୁଣି ବୋଇଲା ସେହି ପକ୍ଷୀବର ।

କାଇଥିବା ପ୍ରାଣୀ ମାଂସ ନ ଭକ୍ଷିବି ମୁହିଁ
ଯାଗମାର୍ଗେ ତ୍ୟାଗକରି ତୁମ୍ଭେ ତୁମ୍ଭ ଦେହୀ ।
ଏମନ୍ତ ଶୁଣି ପିଅର ଯୋଗ ଲୟ ଦେଲେ
ଇନ୍ଦ୍ରକାଣି ଆପଣାର ମୂରତି ଧଇଲେ ।
ବୋଇଲେ ହେ ଦ୍ୱିଜବର ଜାଣିଲି ତୋ ମନ
ମହାଜ୍ଞାନୀ ପୁରୁଷ ତୁ ତପ ତୋର ଧନ୍ୟ ।
ମୁହିଁ ପରକ୍ଷିବା ପାଇଁ କରିଅଛି ଏହା
ଜାଣିଲି ତୁ ମୁନିବର ଅଟୁ ପୁଣ୍ୟ ଦେହା ।
ତୋର ସତ୍ୟ ପାଳିବାର ରଖି ହେଲି ତୋଷ
ତୋର ମନବାଞ୍ଛା ପୂର୍ଣ୍ଣ କରିବୁଁ ଅବଶ୍ୟ ।
ଆମ୍ଭ ବୋଲେ ନିଶ୍ଚେ ତୋର ତପ ସିଦ୍ଧହେବ
ତୋର ଧର୍ମ କର୍ମେ ବାଧା ବିଘ୍ନ ନ ରହିବ ।
ଏମନ୍ତ କହି ବାସବ ଗଲେ ନିଜପୁରେ
ଆମ୍ଭେ ଚାରି ପଡ଼ିଲୁ ଯେ ପିତାର ପୟରେ ।
ବୋଇଲୁ ଯେ ତାତ ଆମ୍ଭେ ମରଣକୁ ଡରି
ତୋର କଥା ନ ମାନିଲୁଁ ଦେହ ବଳ ଧରି ।
ସେ ଦୋଷ ଆମ୍ଭର କ୍ଷମା କର ହେ ପିଅର
ଏ ଦେହ କିଛି ନୁହଇ ଜାଣିଲୁ ଏଥର ।
ପୁଜ ରକ୍ତହାଡ଼ ମାଂସେ ପୂରିଛି ଏ ଦେହ
ଷଡ଼ ରିପୁ ବଶେ ରହି ପ୍ରାଣୀଯେହ୍ନେ ମୋହ ।
ତେସନ ମୋହରେ ପଡ଼ି ବଡ଼ କଲୁ ଦେହ
ଏ ଦେହ ଗୋଟି ବିସ୍ତାରି ପୁର ଗ୍ରାମ ଗୃହ ।
ଏ ପୁରଗୋଟାର ବୁଦ୍ଧି ପାଚେରି ଅଟଇ
ହାଡ଼ଯାକ କାଠଖୁଣ୍ଟ ପ୍ରାୟ ରହିଥାଇ ।
ଏ ଗୃହର ଧର୍ମ ସିନା କାନ୍ଥ ମୂଳଦୁଆ
ଇଳ ପିଳା ନାଡ଼ୀରେ ଏ ଗୃହ ଖୁଣ୍ଟଦିଆ ।
ରୁଧିର ମାଂସ ଏଥିରେ ମାଟି ଯେ ଗୋବର
ଏ ଗୃହର ବାହାରକୁ ଅଛି ନବଦ୍ୱାର ।
ଚେତନା ପୁରୁଷ ରାଜା ହୋଇଛି ଏ ପୁରେ
ମନ ବୁଦ୍ଧି ଦେଇ ମନ୍ତ୍ରୀ ଘେନି ସଙ୍ଗତରେ ।
ସେହି ମନ୍ତ୍ରୀ ଦୁହିଙ୍କର ଦେଖାଦେଖି ନାହିଁ
ବୁଦ୍ଧିକି ମାରିବା ପାଇଁ ମନ ବିଚାରଇ ।
ମନକୁ ମାରିବାପାଇଁ ବୁଦ୍ଧିର ବିଚାର
ଏଣୁ କାହୁଁ ମେଳ ହେବ ସେହି ଦୁହିଙ୍କର ।
ଚଇତନ ନୃପତିର ରିପୁ ଚାରିଜଣ
ସବୁବେଳେ ପାଞ୍ଚୁଥାନ୍ତି ରାଜାର ମରଣ ।

ତାହାଙ୍କର ମନ ଏବେ ଶୁଣ ମନ ଦେଇ
କାମ କ୍ରୋଧ ଲୋଭମୋହ ଏହି ଚାରିଭାଇ ।
ନବଦ୍ୱାର ରୁଦ୍ଧ ଥାଇ ଚୈତନ୍ୟ ନୃପତି
ଏଣୁ ପଶି ନ ପାରନ୍ତି ଶତ୍ରୁ ତାର କତି ।
ନିର୍ଭୟରେ ରହିଥାଇ ରାଜା ତାର ପୁରେ
ଡରେ ପଶି ନ ପାରନ୍ତି ରିପୁଗଣ ଥରେ ।
ଦ୍ୱାର ମୁହଁମେଲା ହୋଇଯାଏ ଯେ କାଳରେ
ରାଗି ଯାଇ ଚକ୍ଷୁ ଦ୍ୱାର ମାଡ଼ିବସେ ଖରେ ।
ସେ ଦ୍ୱାର ମାଡ଼ି ବସନ୍ତେ ବଳ ହୁଏ ବେଶି
ବଳ ବେଶି ହେବାରୁ ଯେ ବିକ୍ରମ ପ୍ରକାଶି ।
ଆବର ପାଞ୍ଚ ଦ୍ୱାରକୁ ରହଇ ଆବୋରି
ଆନ ରିପୁମାନେ ତାର ପଥ ଅନୁସରି ।
ତାର ପଛେ ପଛେ ଯାନ୍ତି ଦ୍ୱାରେଦ୍ୱାରେ ପଶି
ଯାହାଯକ୍ଷ ପାଇବାରୁ ରାଗେ ହୋଇ ଖୁସି ।
ବଳବନ୍ତ ପଣେ ପଣେ ଯାଇ ଇନ୍ଦ୍ରିଦ୍ୱାରେ
ମେଳହୋଇ ଚାରିଭାଇ ରହି ସେଠାବରେ ।
ମନ ଇନ୍ଦ୍ରିମାନ ରଖି ଆପଣାର ବଶେ
ସବୁ ଦ୍ୱାରମାନଙ୍କର ପଶି ମହାରୋଷେ ।
ପାଚେରୀ ଭାଙ୍ଗି ଦିଅନ୍ତି କରି ଖଣ୍ଡ ଖଣ୍ଡ
ବୁଦ୍ଧିଡରେ ଯିବାପାଇଁ ହୁଏ ଲଣ୍ଡ ଭଣ୍ଡ ।
ମନ୍ତ୍ରୀ ପଳାଇବା ଦେଖି ପୁରଜନ ଡରେ
ପଳାଇ ପଶନ୍ତି ଯାଇ ଗହନ ବନରେ ।
ଛିଦ୍ରପାଇ ଶତ୍ରୁମାନେ ରାଜାକୁ ମାରନ୍ତି
ରାଜାର ବିହୁନେ ଜାଣ ଲୋପ ପାଇ ସ୍ମୃତି ।
ସ୍ମୃତି ଲୋପ ପାଇବାରୁ ବୁଦ୍ଧିହୁଏ ଭ୍ରଂଶ
ବୁଦ୍ଧି ଭ୍ରଂଶ ହେଲେ ଜୀବ ଯାଇ ସିନା ନାଶ ।
ଏହିରୂପେ ବୁଦ୍ଧି ଭ୍ରଂଶ ହୋଇ ଚାରିଭାଇ
ରିପୁ ଚାରି ଭାଇଙ୍କର ଆୟତ୍ତରେ ରହି ।
ଜୀବନର ଲାଳସାରେ ପଡ଼ି ଗଲୁ ନାଶ
କ୍ଷମା କରନ୍ତୁ ଭୋ ତାତ ଏବେ ଆମ୍ଭ ଦୋଷ ।
ପ୍ରସନ୍ନ ହୋଇଣ କହ ଶାପ ପ୍ରତିକାର
ପୁତ୍ରଙ୍କ ପ୍ରତି ସନ୍ତୋଷ ହୋଇ ମୁନିବର ।
କହିଲେ ମୋହର ବୋଲ ନ ହୋଇବ ଆନ
କେହି ଜାଣି ନ ପାରଇ ଦଇବ ଘଟଣ ।
ଦେଖ ବାବୁ ବଳେ ଆଣି ଘଟାଇଲା ଏହା
ଯାହା ଘଟିବାର ଘଟେ ଆନ ନୋହେ ତାହା ।

ପକ୍ଷୀ ଜନ୍ମ ପାଇ ତୁମ୍ଭେ ହେବ ମହାଜ୍ଞାନୀ
ତୁମ୍ଭଙ୍କୁ ଭେଟିବେ ଆସି ମୁନି ଜଇମିନୀ ।
ମହାଭାରତ ସଂଶୟମାନ ପଚାରିବେ
ମାରକଣ୍ଡ ମହାମୁନି ତାଙ୍କୁ କହି ଦେବେ ।
ତାଙ୍କ ମନରୁ ସଂଶୟମାନ ଦୂର କରି
ଶାପୁଁ ମୁକତ ହୋଇବ ତୁମ୍ଭେ ଭାଇ ଚାରି
ଏମନ୍ତ ପିତାଙ୍କଠାରୁ ପାଇଅଛୁ ଶାପ
ଏହିକ୍ଷଣି ଆହେ ମୁନି ତୁମ୍ଭେ ଆମ୍ଭ ବାପ ।
ମାରକଣ୍ଡ କହନ୍ତି ଯେ ଶୁଣନ୍ତି ଜୈମିନୀ
ଶମୀକ ମୁନି ପକ୍ଷୀଙ୍କ ମୁଖୁ ଏହା ଶୁଣି ।
ଶିଷ୍ୟଙ୍କ ମୁଖକୁ ଚାହିଁ କହିଲେ ଏମନ୍ତ
ଯାହା ମୁହିଁ କହୁଥିଲି ଏବେ ଶୁଣିଲ ତ ।
ପକ୍ଷୀ ନୁହନ୍ତି ଏ ଚାରି ଜାଣିଲ ତ ଏବେ
ପକ୍ଷୀଙ୍କି ଚାହିଁସନ୍ତୋଷ ହେଇଲ ଯେ ତୁମ୍ଭେ
ଯହିଁ ଇଚ୍ଛା ତହିଁ ଯାଇଁ ରହ ଚାରିଭାଇ
ତହୁଁ ବେଗେ ଉଡ଼ିଗଲେ ମୁନି ଆଜ୍ଞାପାଇ ।
ବିନ୍ଧ୍ୟଗିରିକି ଦେଖିଲେ ଅତି ଶୁଭ୍ର ସ୍ଥାନ
ତରୁ ଗୁଳ୍ମ ଲତାଦିରେ ହୋଇଚି ଆଚ୍ଛନ୍ନ ।
ସେଠାରେ ରହିଲେ ସେହି ଧର୍ମବନ୍ତ ପକ୍ଷୀ
ତପ ସାଧନ୍ତି ସମାଧି ଯୋଗେ ଘନ ରଖି ।
ଦ୍ରୋଣ ପକ୍ଷୀର ସେ ଚାରିପୁତ୍ର ମହାଜ୍ଞାନୀ
କହେ ଦ୍ୱିଜ ଗୋପୀନାଥ କର ହରିଧ୍ୱନୀ ।

.....❋.....

## ଦୁର୍ବାସାର ଉର୍ବଶୀ ପ୍ରତି ଶାପ ଓ ଦଣ୍ଡିରାଜା ସହିତ ଉର୍ବଶୀର ମିଳନ

ମାରକଣ୍ଡ ମୁନି ମୁଖୁଁ ଶୁଣି ଜଇମିନି
ବାଟେ ଯାଉଁ ଯାଉଁ ଦୁରୁ ଶୁଣି ବେଦଧ୍ୱନି ।
ଆଚମ୍ବିତ ହୋଇ ଗିରି ଶିଖରେ ଉଠିଲେ
ସେହି ବିନ୍ଧ୍ୟପର୍ବତରେ ପକ୍ଷୀଙ୍କି ଭେଟିଲେ ।
ବେଦ ପଢୁଛନ୍ତି ତହିଁ ବସି ଚାରିଭାଇ
ଚାରିମୁଖେ ପଢ଼ନ୍ତିକି ସାବିତ୍ରୀର ସାଇଁ ।
ଦେଖି ମୁନି ଜଇମିନି ଚରଣ ବନ୍ଦିଲେ
ଉଭା ହୋଇ ପୁଣି ତାଙ୍କୁ ଏମନ୍ତ ବୋଇଲେ ।
ବ୍ୟାସ ଶିଷ୍ୟ ମୁହିଁ ମୋର ନାମ ଜଇମିନି
ମୋତେ ଯେ ପଠାଇ ଦେଲେ ମାରକଣ୍ଡ ମୁନି ।
ମୋ ମନ ସଂଶୟମାନଙ୍କର ତୁମ୍ଭେ ଦୂର
ଏମନ୍ତ ଶୁଣି ସନ୍ତୋଷ ଚାରି ସହୋଦର ।
ଗଉରବ କରି ତାଙ୍କୁ ବସାଇ ଆସନେ
କି କି ସଂଶୟ ଉପୁଜି ଅଛି ତୁମ୍ଭ ମନେ ।
ଜଇମିନି ପଚାରିଲେ ଏହି କଥାମାନ
ପକ୍ଷୀ ଯେମନ୍ତେ କହିଲେ କହୁଛ ତା ଶୁଣ ।
ଶୁକ କହନ୍ତି ଶୁଣନ୍ତି ରାଜା ପରୀକ୍ଷିତ
ହରି ରସରେ ପୂରିତ ଭାରତ ଚରିତ ।
ଯୋଗସିଦ୍ଧ ତପସିଦ୍ଧ ମୁନି ଯେ ଦୁର୍ବାସା
କରୁଥିଲେ ସରସ୍ୱତୀ କୂଳରେ ତପସ୍ୟା ।
ଇନ୍ଦ୍ରିୟ ନିରୋଧିମୂଳ କମଳକୁ ଥାପି
ସାକ୍ଷାତେ ସେ ମୁନିବର ଅଟେ ରୁଦ୍ରରୂପୀ ।
ପଞ୍ଚଅଗ୍ନି ଥାପିଅଛି ହୁତୁହୁତୁ ଜଳେ
ମନପବନ ରଖିଛି ସହସ୍ର କମଳେ ।
ପବନ ଆହାର କରି କରେ ଘୋର ତପ
ସହସ୍ରେ ବରଷେ ବହିଗଲା ଏହିରୂପ ।
ଇନ୍ଦ୍ରିୟମାନେ ତଥାପି ହୋଇ ମୁନି ତପେ
ବିନୟ କରି କହିଲେ ମୁନିଙ୍କ ଏ ରୂପେ ।
ଆମ୍ଭେ ମୁନି ତୁମ୍ଭ ହୃଦ ଜାଣିଲୁ କଠିଣ
ଆମ୍ଭଙ୍କୁ ଦୁଃଖ ଦେଉଛ କିପାଁ ଅକାରଣ ।
ତପସିଦ୍ଧ ଯୋଗସିଦ୍ଧା ହୋଇ ମହାମୁନି
ଅକାରଣେ ଏଡ଼େ କଷ୍ଟ ଦେଉ ହୋଇ ଜ୍ଞାନୀ ।
ଏ କଠୋର କଷ୍ଟ ସହି ନ ପାରିବୁ ଆଉ
ଦେଖ ଚାରିପାଖେ ଅଗ୍ନି ଜଳେ ଦାଉ ଦାଉ
ସହିଲୁଣି ଶୀତ ଖରା ବରଷାହିଁ କେତେ
ଏତେମତେ ନ ବସାଇ ଦୟାତୋର ଚିତ୍ତେ ।
ମାଂସର ବିହୁନେ ଚମ ଧକଡ଼ା ହେଲାଣି
ଆମ୍ଭାକୁ ତୁହି ନ ଦେବା ଯୋଗୁଁ ଅନ୍ନପାଣି ।
ରୁଧିର ବିହୁନେ ସରୁ ହେଲାଣି ତା ତନୁ
ତୁହି ମୁନିବର ଅଟୁ ସାକ୍ଷାତେ କୃଶାନୁ ।
ଇନ୍ଦ୍ରିୟଙ୍କ ବାଣୀଶୁଣି ମୁନି ଯେ ଦୁର୍ବାସା
ବିଚାରି ସୁଦୟା କରି ତେଜିଲେ ତପସ୍ୟା ।
ନୟନ ଦୁଇ ମେଲିଣ ଚଉଦିଗ ଚାହିଁ
ଦେଖିଲେ ଫୁଲ ଫଳରେ ତରୁ ଶୋଭାପାଇ
ମଲ୍ଲୀ ମାଳତୀ ମାଧବୀ ବକୁଳ ଅଶୋକ
ଜାଈ ଯୁଈ ନାଗେଶ୍ୱର ଚମ୍ପା କୁରୁବକ ।

ଫୁଲର ଆମୋଦ ମନ ପ୍ରଫୁଲ୍ଲ କରଇ
ମଳୟ ପବନ ବହେ ମନ୍ଦ ମନ୍ଦ ହୋଇ ।
ଗୁଣ୍ଣୁଗୁଣ୍ଣୁ ଧ୍ୱନି କରି ଉଡ଼ନ୍ତି ଭ୍ରମରେ
ପିକ କୁହୁ କୁହୁ ଧ୍ୱନି ଶୁଭେ ନିରନ୍ତରେ ।
ଦେଖିଣ ମୁନିର ହେଲା ମନ ଆନନ୍ଦିତ
ଆସନ ଛାଡ଼ି ଉଠିଲେ ସେଠାରୁ ତୁରିତ ।
ଇନ୍ଦ୍ରିୟମାନଙ୍କୁ ମୁନି ସନ୍ତୋଷ କରାଇ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଭ୍ରମି ଭ୍ରମି ଯାଇ ।
କାହିଁ ସନ୍ତୋଷ ନୋହିଲା ଯହୁଁ ମୁନି ମନ
ବେଗେ ତହୁଁ ଚଳିଗଲେ ଅମର ଭୂବନ ।
ଇନ୍ଦ୍ରର ମନ୍ଦିରେ ଯାଇଁ ହୋଇଲେ ପ୍ରବେଶ
ଦୁର୍ବାସା ଆସିବା ବାର୍ତ୍ତା ପାଇ ସୁରଈଶ ।
ବେଗେ ଆସି ମୁନିଙ୍କର ଚରଣ ବନ୍ଦିଲେ
ପାଦ୍ୟ ଅର୍ଘ୍ୟ ଗନ୍ଧ ପୁଷ୍ପ ଦେଇଣ ପୂଜିଲେ ।
ଇନ୍ଦ୍ରର ଭକତି ଦେଖିତୋଷ ମୁନିବର
ବସିଲେ ସଭା ମଧ୍ୟରେ ପାଇଣ ଆଦର ।
ବସିବାର ବାଘଛାଲ ଖଣ୍ଡି ଶୋଭା ଅତି
ଯୋଗାସନେ ବସି ରୁଦ୍ର ପରାୟେ ଦିଶନ୍ତି ।
ଚାରିଆଡ଼େ ବେଢ଼ି ବସିଅଛନ୍ତି ଅମରେ
ବୋଇଲେ ଇନ୍ଦ୍ରଙ୍କ ମୁଖଚାହିଁ ମୁନିବରେ ।
କଉତୁକ ଦେଖିବାର ବଡ଼ ଇଚ୍ଛା ମୋର
ମୁନି ମୁଖରୁ ଏମନ୍ତ ଶୁଣି ପୁରନ୍ଦର ।
ବୋଇଲେ ଅଛନ୍ତି ଯେତେ ସ୍ୱର୍ଗ ଅପସରୀ
ତାଙ୍କ ମଧ୍ୟେ ରମ୍ଭା ରମା ଉର୍ବଶୀ ସୁନ୍ଦରୀ ।
ଉର୍ବଶୀର ନୃତ୍ୟ ସବୁଠାରୁ ତ ସୁନ୍ଦର
ଗୀତ ବାଦ୍ୟ ତାନମାନ ପକାଇ ପୟର ।
ନୃତ୍ୟେ ଯେ ତୋଷ କରିବି ତୁମ୍ଭ ମନ ମୁନି
ଆଜ୍ଞା ଦେଲେ ଡକାଇବି ତାହାକୁ ଏକ୍ଷଣି ।
ଦୁର୍ବାସା ବୋଇଲେ ଆଣ ଦେଖିବା ତା ନୃତ୍ୟ
ଆନନ୍ଦ ମନେ ବାସବ ପଠାଇଲେ ଦୂତ ।
ଇନ୍ଦ୍ରର ଆଜ୍ଞା ଉର୍ବଶୀ ଆଗରେ କହିଲା
ବେଶ ହୋଇଣ ଉର୍ବଶୀ ସଭାକୁ ଅଇଲା ।
ଦେଖିଲା ବସିଅଛନ୍ତି ମଧ୍ୟେ ମୁନିବର
ତପସ୍ୟାରେ ଶୁଖିଯାଇଅଛି କଳେବର ।
ଶିରପରେ ଜଟାଭାର ଦିଶେ ଶୋଭାବନ
ଗଳାରେ ରୁଦ୍ରାକ୍ଷମାଳା ଭସ୍ମ ବିଲେପନ ।
ଦେହର ତେଜ ବିକାଶେ ଅନଳ ପରାୟେ
କଟୀରେ ଯେ କଉପୀନ ଗୋଟି ଶୋଭାପାଏ ।
ଉର୍ବଶୀକି ଚାହିଁ ଇନ୍ଦ୍ର ବୋଇଲେ ଏମନ୍ତ
ଅପସରୀଙ୍କ ମଧ୍ୟରେ ସୁନ୍ଦର ତୋ ନୃତ୍ୟ ।
ସୁନ୍ଦର ପଣରେ ତୁହି ସ୍ୱର୍ଗକୁ ଭୂଷଣ
ଦେଖ ଏ ସଭା ମଧ୍ୟରେ ବିଜେ ତପୋଧନ ।
ନୃତ୍ୟରେ ଏହାଙ୍କ ମନ କର ତୁ ସନ୍ତୋଷ
ଇନ୍ଦ୍ର ଯହୁଁ ଦେଲେ ତାକୁ ଏମନ୍ତ ଆଦେଶ ।
ଯଉବନ ମନେ ମନେ ଏମନ୍ତ ଭାଳିଲା
ଇନ୍ଦ୍ର ସିନା ଜାଣେ କାମରସ ଖୋଳକଳା ।
ଅସ୍ଥି ଚର୍ମ ପାତ୍ର ଅଛି ଏ ମୁନିର ଦେହେ
ଏ କି ଭାଜନ ମୋ ନୃତ୍ୟ ଦେଖିବାକୁ କହେ ।
ସଙ୍ଗୀତ ସାହିତ୍ୟ ରସ ନ ଜାଣିବା ଜନ
କାମିନୀ ମଣନ୍ତି ତାକୁ ପଶୁର ସମାନ ।
ଉପହାସ କରିବ ଏ ନୃତ୍ୟ ଦେଖି ମୋର
ଏମନ୍ତ କଥା ଉର୍ବଶୀ ବିଚାରୁ ମନର ।
ଯୋଗବଳେ ମୁନିବର ଜାଣିପାରି ତାହା
ଅନଳରେ ବିପ୍ରମାନେ କଲେ ସ୍ୱାହା ସ୍ୱାହା ।
ସେ ଯେସନେ ଜଳିଉଠି ଘୋଟଇ ଗଗନ
ମୁନିର କ୍ରୋଧ ଅନଳ ଜଳିଲା ତେସନ ।
ବୋଇଲେ ଲୋ ଉର୍ବଶୀ ତୁ ଘେନମୋର ଶାପ
ଯଉବନ ଗର୍ବେ ବୁଦ୍ଧି ହୋଇଛି ତୋ ଲୋପ ।
ତେଣୁ ତୁ ଆମ୍ଭଙ୍କୁ କରୁ ପଶୁର ସମାନ
ଘୋଟକୀ ହୋଇ ତୁ ଚଳ ମର୍ତ୍ତ୍ୟକୁ ବହନ ।
ଏମନ୍ତ ଶୁଣି ଉର୍ବଶୀ ସର୍ବାଙ୍ଗ ଥରିଲା
ମୁନିର ପାଦେ ପଡ଼ିଣ ବିନୟୀ ହୋଇଲା ।
ବୋଇଲା ଭୋ ମୁନି ମୋର ଦୋଷ କ୍ଷମାକର
ମୁହିଁ ଅବଳା ମୋ ବୁଦ୍ଧି କେତେକ ମାତର ।
ନ ଜାଣିମା ପଣେ ସିନା ପାଞ୍ଚିଲି ମୁଁ ଏହା
ମୋଠାରେ ପ୍ରସନ୍ନ ହୁଅ ତୁମ୍ଭେ ପୁଣ୍ୟଦେହା ।
ଏମନ୍ତ କହି କାତରେ କାନ୍ଦଇ ତରୁଣୀ
ବାରେ ମୋତେ ରକ୍ଷାକର ତୁମ୍ଭେ ତପିମଣି ।
କାତର ଦେଖି ହୃଦରେ ବସିଲା ସୁଦୟା
ବୋଇଲେ ଅର୍ଜିଛୁ ଯାହା ଭୁଞ୍ଜ କିନା ତାହା ।
ଦିବସେ ଘୋଟକୀ ହୋଇ ରହିଥିବୁ ବନେ
ଆପଣା ରୂପ ଧରିବୁ ତୁ ଗୋ ରାତ୍ରମାନେ ।

ଅଷ୍ଟଶକତି ଏକାଠି ହେବ ଯେତେବେଳେ
ଶାପୁଁ ମୁକତ ହୋଇବୁ ତୁ ଗୋ ସେହିକାଳେ
ଶାପ ଦେଇଣ ଦୁର୍ବାସା ଗଲେ ତହୁଁ ଚଳି
ଉର୍ବଶୀ ଘୋଟକୀ ହୋଇ ଆକାଶରୁ ଢଳି ।
ଦେଖୁଁ ଦେଖୁଁ ଭୂମିରେ ସେ ପଡ଼ିଲାକ ଆସି
ଅରଣ୍ୟ ମଧ୍ୟେ ରହିଲା ପଶୁ ସଙ୍ଗେ ମିଶି ।
ଦିବସେ ଘୋଟକୀ ହୋଇ ଚରି ବୁଲୁଥାଇ
ସୂର୍ଯ୍ୟ ଅସ୍ତରେ ଆପଣା ରୂପକୁ ଧରଇ ।
ଏଥୁ ଅନନ୍ତରେ ତୁହୋ ଶୁଣ ମହାରାୟ
ଏ କୂର୍ମ ପୁରାଣ କଥା ଅଟେ ପୁଣ୍ୟମୟ ।
ତୃତୀୟ ଖଣ୍ଡେ ଏ ମହାଭାରତ ଚରିତ
ଯେ ଶୁଣିବ ଶୁଣାଇବ ହୋଇବ ମୁକତ ।
ଅବନ୍ତୀ ନଗରେ ଥିଲା ଏକ ଦଣ୍ଡଧର
ହଇହୟ ବଂଶୀୟ ସେ ନୃପତି ଶେଖର ।
ତାର ନାମ ଦଣ୍ଡି ରାଜା ବଡ଼ ଧର୍ମବନ୍ତ
ଯାଗ ଯଜ୍ଞ ଆଦି ସେହି କରିଛି ବହୁତ ।
ପୁତ୍ର ସମାନ କରି ସେ ପ୍ରଜାଙ୍କୁ ପାଳଇ
ବହୁତ ନୃପତି ତାର ପାଦରେ ଖଟାଇ ।
ପ୍ରତିଜ୍ଞାବନ୍ତ କ୍ଷତ୍ରୀ ସେ ତେଜୋବନ୍ତ ଅତି
ଅଳପ ବୟସ ବଡ଼ ସୁନ୍ଦର ମୂରତି ।
ଏକଦିନେ ମୃଗୟାକୁ ବାହାରିଲା ରାଜା
ଅଶ୍ୱ ପିଠିରେ ବସିଣ ଉଡ଼ାଇଲା ଧ୍ୱଜା ।
ରାଉତ ମାହୁନ୍ତ ଆଦି ପଦାତି ପାଇକେ
ବିଶୋଇ କରଣ ମନ୍ତ୍ରୀ ଆଦି ସଙ୍ଗ ଲୋକେ ।
ରାଜାଙ୍କୁ ଗହଣେ ଘେନି ବନସ୍ତେ ପଶିଲେ
ମୃଗ ଶୂକର ଆଦି ସେ ଏକ ନ ଦେଖିଲେ ।
ତରକା ପାଇ ଗହନ ବନେ ହେଲେ ଗୋପ୍ୟ
ନ ପାଇ ନୃପତି ଏକ ପଶୁର ସ୍ୱରୂପ ।
ଘୋର ବନସ୍ତରେ ପଶିଗଲେ ବହୁଦୂର
ଦେଖିଲେ ଘୋଟକୀ ଜଳ କରୁଛି ଆହାର ।
ରାଜା ବୋଇଲେ ଏହାକୁ ଘେର ଆଚ୍ଛାକରି
ମୃଗୟା ଆସି କେମନ୍ତେ ଯିବା ଗୃହେ ଫେରି ।
ନିବନ୍ଧ କରି ଜଗିବ ନ ଛାଡ଼ିବ ବାଟ
ଯେ ଛାଡ଼ିବ ତାର ଜାଣ ହେବ ମୁଣ୍ଡକାଟ ।
ଏମନ୍ତ କଠୋର ବାଣୀ ରାଜା ମୁଖୁଁ ଶୁଣି
ଚାରିପାଖେ ଘେରି ଗଲେ ହୋଇ ଅସ୍ତ୍ରପାଣି ।
ଦେହ ଲଗାଲଗି ହୋଇ ଜଗିଲେ ନିର୍ବନ୍ଧେ
ଘୋଟକୀ ବନ୍ଦୀ ପଡ଼ିଲା ନୃପତିର ଫାନ୍ଦେ ।
ପାଣି ପିଇ ଧୀରେ ଧୀରେ ଆସଇ ଘୋଟକୀ
ଦେଖିଲେ ଛାମୁରେ ବିଜେ ନୃପତି ଧାନୁକୀ ।
ଏକେତ ଯୁବା ଦ୍ୱିତୀୟେ ବୀରବେଶ ତାର
ସୁନ୍ଦର ପଣରେ ହାରି ଯିବେ ପଞ୍ଚଶର ।
ଦେଖିଣ ମନେ ବିଚାର କରଇ ଘୋଟକୀ
କାମ କି କାର୍ତ୍ତିକ ଅବା ପୁରନ୍ଦର ଏକି ।
ଦେଖିଲା ଚାରିପାଖରେ ଅସ୍ତ୍ର ଶସ୍ତ୍ର ଧରି
ମାରିବା ପାଇଁ ମୋତେ ତ ଅଛନ୍ତି ଏ ଘେରି ।
କି ବୁଦ୍ଧି କରିବି ମୋତେ ବୁଦ୍ଧି ଦିଶୁନାହିଁ
ମୋ ଉପରେ ସମସ୍ତଙ୍କ ଦୃଷ୍ଟି ଅଛି ରହି ।
ତ୍ରାହି କର ଦୀନବନ୍ଧୁ ପଶିଲି ଶରଣ
ଜାଣିଲି ଆଜି ଏହାଙ୍କ ହସ୍ତେ ମୋ ମରଣ ।
ଅନ୍ତର୍ଯ୍ୟାମୀ ନାଥ ଜାଣ ଅନ୍ତର ବେଦନା
ମୁଁ ଅଜ୍ଞାନୀ ପଶୁଜାତି କି ଜାଣେ ଭାବନା ।
କେବଳ ପଶିଲି ତବ ଚରଣେ ଶରଣ
ଶୁଣିଛି ତୋ ପାଦ କରେ ଅଭୟ ପ୍ରଦାନ ।
ଦୀନ ଦୁଃଖୀ ଦୁଃଖ ନାଥ ନ ପାରୁ ତୁ ସହି
ଏଣୁ ଡାକୁଅଛି ମୋତେ କର ଏଥୁ ତ୍ରାହି ।
ଭାବଗ୍ରାହୀ ନାଥ ଜାଣି ଘୋଟକୀର ମନ
ବୋଇଲେ ରଖିଲୁ ଆଜି ତୋହର ଜୀବନ ।
ଏମନ୍ତ ଶ୍ରୀବିଷ୍ଣୁ ଆଜ୍ଞା ଦେଲେ ଯେତେବେଳେ
ବୁଦ୍ଧିଏ ପାଞ୍ଚି ଘୋଟକୀ ମନେ ମନେ ଭାଳେ ।
ଦୃଷ୍ଟି ରହିଛି ତାହାର ନୃପତି ଉପରେ
ନୃପତି ସର୍ବାଙ୍ଗ ଯାକ ଥରେ କାମଶରେ ।
ନୃପତିର ଘୋଟକୀର ଚାରିଚକ୍ଷୁ ଦେଖି
ଅସ୍ତ୍ର ନ ମାରି ସମସ୍ତେ ଚାହାଁନ୍ତି ନିରେଖି ।
ଏମନ୍ତ ବେଳେ ଘୋଟକୀ ରାଜାପାଖ ଦେଇ
ଟାପୁ ଉଠାଇ ପଳାଇ ଗଲା ଡେଇଁ ଡେଇଁ ।
ଯାହାକୁ ରଖିବେ ପୁଣି ପ୍ରଭୁ ଭଗବାନ
କଉଶଳେ ତାକୁ ମାରି ପାରେ କି ରାଜନ ।
କାମାନ୍ଧ ହୋଇ ନୃପତି ନ ପାରିଲା ଦେଖି
ଗଲା ବୋଲି ଡାକିଲେ ତ ଉଚ୍ଚେଲୋକେ ହାକି ।
ଜ୍ଞାନ ପଶିଲା ନୃପତି ହୃଦରେ ଡାକନ୍ତେ
ପଳାଉଅଛି ଘୋଟକୀ ପଛକୁ ଚାହାଁନ୍ତେ ।

ଗୋଡ଼ାଇଲେ ନରପତି ପାଦ ଗତି କରି
କେତେକ ଦୂରେ ଯାଇଣ ତାର ପଛଧରି ।
ଏମନ୍ତେ ବହୁତ ଦୂର ବନସ୍ତେ ସେ ଗଲେ
ସଇନିମାନେ ତାହାଙ୍କଭେଟ ନ ପାଇଲେ ।
ପଥଶ୍ରାନ୍ତ ହୋଇ କଣ୍ଟା ଗୋଡ଼ ବାଟେ ଫୁଟି
ରହିଲେ ଯାଇ ନ ପାରି ଅଙ୍ଗେ ଝାଳ କଣ୍ଟି ।
ରାଜାଙ୍କୁ ଉଦ୍ଦେଶ୍ୟ କରି ନ ଆସିଲେ ଘର
ଏଥୁ ଅନନ୍ତରେ ତୁହୋ ଶୁଣ ନୃପବର ।
ଅନେକ ଦୂରେଘୋଟକୀ ନୃପତିର ଭେଟ
ଏକାଳେ ଦିବସ ଶେଷ ରଜନୀ ପ୍ରକଟ ।
ଦୁର୍ବାସା ଶାପେ ଉର୍ବଶୀ ହୋଇଥିଲା ଘୋଡ଼ୀ
ନିଜ ରୂପକୁ ପାଇଲା ସେ ରୂପକୁ ଛାଡ଼ି ।
ବିନ୍ଧିବା ନିମନ୍ତେ ରାଜା ଯୋଚିଅଛି ଶର
ଦେଖିଲା ତାହାର ଦିବ୍ୟ ନାରୀ ଅବତାର ।
ଆଚମ୍ବିତ ହୋଇ ଶର ନ ପାରିଲା ବିନ୍ଧି
କାମିନୀ କଟାକ୍ଷ ବାଣେ ପଡ଼ିଲାକ ବନ୍ଦି ।
ବିଚାରଇ ଦେବୀ କିଏ ରାକ୍ଷସୀ ନାଗୁଣୀ
ସ୍ୱର୍ଗ ଅପସରୀ ଅବା କିନ୍ନର ଯକ୍ଷିଣୀ ।
ମାନବୀ ନୁହଇ କେଭେ ଏହି ରୂପବତୀ
ଏ ବଡ଼ ବିଚିତ୍ର ହେଲା ଘୋଟକୀ ଯୁବତୀ ।
ଏମନ୍ତ ବିଚାରୁ ଚିତ୍ତେ ଉପୁଜିଲା ଭୟ
ନ ପୁଛିଲେ ନ ଫିଟିବ ଏଥିର ସଂଶୟ ।
ମଧୁର କୋମଳ ସ୍ୱରେ କହେ ଧୀରେ ଧୀରେ
ଘୋଟକୀ ଯୁବତୀ ହେଲୁ କହ କି ପ୍ରକାରେ ।
ପିଶାଚୀ ରାକ୍ଷସୀ ତୁ ଗୋ ଦେବୀ କି ମାନୁଷୀ
କପଟ ଛାଡ଼ି ସ୍ୱରୂପ କହ ଶୁଭ୍ରକେଶୀ ।
ତୋ ପରା ସୁନ୍ଦରୀ ମୁହିଁ ଆଜି ଯାଏ କାହିଁ
ଦେଖି ନାହିଁ ରୂପ ରତ୍ନକାନ୍ତି ଅଟ ତୁହି ।
ତୋ ରୂପକୁ ରମ୍ଭା ଉମା ନୋହିବେତ ସରି
ବଡ଼ ସୁନ୍ଦରୀ ବୋଲାଇ ବରୁଣ କୁମାରୀ ।
ସୁନ୍ଦରୀ ପଣେ ନୋହିବ ତୋତେ ପଟାନ୍ତର
ତିନିପୁର ମୋହିପାରେ କଟାକ୍ଷରେ ତୋର ।
ଯେ ତୋ କର ଧରିଥିବ ସେ ପୁରୁଷ ଧନ୍ୟ
ସ୍ୱର୍ଗ ସମ୍ପଦ କରିବ ନିଶ୍ଚେ ତୁଚ୍ଛ ଜ୍ଞାନ ।
ଏମନ୍ତ ବାଣୀ ରାଜାର ମୁଖୁଁ ଶୁଣି ବାଳୀ
ମୁରୁକିହସା ଦେଇଣ କହେ ଚକ୍ଷୁଚାଳି ।

ଆନ କେହି ନୁହେଁ ମୁହିଁ ସ୍ୱର୍ଗ ଅପସରୀ
ମୋ ନାମ ଉର୍ବଶୀ ତୁହୋ ଜାଣ ଦଣ୍ଡଧାରୀ ।
ଦୁର୍ବାସା ମୁନିର ଶାପେ ଆହେ ନୃପବର
ଦିବସେ ଘୋଟକୀ ରାତ୍ରେ ଏରୂପ ମୋହର ।
ଏମନ୍ତ ଶୁଣି ନୃପତି ସୁସ୍ଥିର ହୋଇଲା
ଦରିଦ୍ର ଜନ କି ସାର ରତନ ପାଇଲା ।
ପାଖକୁ ଯାଇଁ ବୋଇଲା ତୁ ଗୋ ରୂପବତୀ
ଚନ୍ଦ୍ରକାନ୍ତିରୁ ଉଗୁଳି ଦିଶେ ତୋର କାନ୍ତି ।
ଅବନ୍ତୀନଗର ରାଜା ଅଟଇ ମୁଁ ଜାଣ
ପୃଥିବୀ ରାଜା ଜାଣନ୍ତି ମୋର ବଡ଼ପଣ ।
ମୋର କେଡ଼େ ବୀରପଣ ଜାଣେ ସୁରସାଇଁ
ଭଣ୍ଡାରମାନ ମୋହର ରତ୍ନେ ପୂରିଛଇଁ ।
ସବୁ ରାଣୀଙ୍କ ଉପରେ ହେବୁ ପାଟରାଣୀ
ସ୍ୱର୍ଗ ସମ୍ପଦୁ ଅଧିକ ସମ୍ପଦ ମୋ ପୁଣି ।
ଯାହା ତୁଗୋ ମାଗିବୁ ତ ଆଣି ଦେବି ତୋତେ
ଚଉଦ ବ୍ରହ୍ମାଣ୍ଡେ କେବା ନ ଜାଣନ୍ତି ମୋତେ ।
ଭଜଗୋ ସୁନ୍ଦରୀ କିଛି ମନେ ନ ବିଚାରି
ମୁନିର ଶାପ ତୋ ପକ୍ଷେ ହେଲା ହିତକାରୀ ।
ସ୍ୱର୍ଗ ଭୋଗରୁ ଅଧିକ ଭୋଗରେ ରହିବୁ
ରାତିଯାକ ନୃତଗୀତେ ମୋ ମନ ମୋହିବୁ ।
ଦିବସରେ ଅଶ୍ୱଶାଳେ ରହିବୁ ତୁ ଯାଇ
ଏମନ୍ତେ ଗୃହ ନିର୍ମାଣ କରିବି ତୋ ପାଇଁ ।
ନ ଦେଖି ଥିବ ଗୋ ତୁମ୍ଭେ ସ୍ୱର୍ଗପୁରେ ତାହା
ଏମନ୍ତ ଚାଟୁ ବଚନ କହେ ନରନାହା ।
ଉର୍ବଶୀ ବୋଇଲା ଶୁଣ ତୁ ଦଣ୍ଡୀ ରାଜନ
ଜାଣିଲି ମୋଠାରେ ତୋର ବଳିଲାଣି ମନ ।
ଯିବି ତୋର ସଙ୍ଗେ ଏହା ନ ଜାଣିବେ କେହି
ଜଣା ପଡ଼ିଲେଟି ମନ୍ଦ ହେବ ନରସାଇଁ ।
ନୃପତି ବୋଇଲା ସତ୍ୟ କରୁଛି ଗୋ ପ୍ରିୟେ
ଗୁପତେ ରଖିବି କାହୁଁ ଜାଣିବ ଗୋ କିଏ ।
ଉର୍ବଶୀ ବୋଇଲା ସତ୍ୟ କର ହେ ରାଜନ
ଜାଣଇ ପୁରୁଷ ଜାତି ଅବିଶ୍ୱାସୀ ଜନ ।
ଭ୍ରମର ପକ୍ଷୀ ହୋଇଣ ଦେଖ ତା ପ୍ରକୃତି
ପଦ୍ମଛାଡ଼ି କଇଁଫୁଲେ ରାତେ କରେ ପ୍ରୀତି ।

ତେସନ ତୁମ୍ଭେ ତୁମ୍ଭର ଛାଡ଼ି ମହାଦେଈ
ମୋହର ସୁନ୍ଦର ରୂପେ ମୋହ ନରସାଇଁ ।
ମୋଠାରୁ ସୁନ୍ଦର ଯେବେ ପାଇବ ହେ ପୁଣ
ମୋତେ ଛାଡ଼ି ତା ପାଶକୁ ଯିବ ନୃପରାଣ ।
କି ଅବା ମୋ ପାଇଁ ଯେବେ ପଡ଼ିବ ପ୍ରମାଦ
ସତ୍ୟ କର ନ ଛାଡ଼ିବ ଆହେ ନରଇନ୍ଦ୍ର ।
କାମାନ୍ଧ ହୋଇ ନୃପତି ବୋଇଲେକ ପୁଣି
ସତ୍ୟ କରୁଅଛି ଏବେ ଶୁଣ ଗୋ ତରୁଣୀ ।
ତୋ ପାଇଁ ଜୀବନ ଧନମାନ ପଛେ ଯିବ
ନ ଛାଡ଼ିବି ଯେତେଦିନ ପିଣ୍ଡେ ପ୍ରାଣ ଥିବ ।
ଏମନ୍ତ ଶୁଣି ସୁନ୍ଦରୀ ହୋଇଲା ସନ୍ତୋଷ
ବୋଇଲା ଆଜୁ ତୋ ଦାସୀ ହେଲି ନରଈଶ ।
ମୁହିଁ ପିଣ୍ଡ ସିନା ତୁହି ମୋହର ଜୀବନ
ମୁଁ ଜୀବ ହେଲେ ପରମ ଅଟୁ ତୁ ରାଜନ ।
ଏହା କହି ସେ ଚତୁରୀ ସ୍ୱର୍ଗ ଅପସରୀ
ରାଜା ଗଳେ ଫୁଲମାଳ ଦେଲା ଯତ୍ନକରି ।
ହାସ୍ୟ ପରିହାସ ରସେ ପୁହାଇଲା ରାତି
ରସିକ ପୁଷ୍ପ ପାଇଲେ ବେଶ୍ୟାର ସଙ୍ଗତି ।
ସ୍ୱର୍ଗ ସୁଖହୁଁ ଅଧିକ ସୁଖକୁ ମଣଇ
ଆନନ୍ଦ ହେଲା ନୃପତି ଉର୍ବଶୀକି ପାଇ ।
ରାତି ପାହିଗଲା ଉଦେ ହେଲେ ଦିନକର
ଦୁର୍ବାସା ମୁନିର ବାକ୍ୟ ପାଷାଣର ଗାର ।
ତକ୍ଷଣେ ଘୋଟକୀ ହେଲା ଉର୍ବଶୀ ସୁନ୍ଦରୀ
ତାହାର ପୃଷ୍ଠେ ଆରୋହି ଗଲା ଦଣ୍ଡଧାରୀ ।
ବାଟରେ ଥାଟକୁ ଭେଟି ସଙ୍ଗତରେ ଘେନି
ପ୍ରବେଶ ହୋଇଲା ଯାଇ ନିଜ ରାଜଧାନୀ ।
ଘୋଟକୀ ପାଇଁ ଅପୂର୍ବ ପୁର ନିର୍ମାଣିଲା
ଦିନ ଯାକ ଘୋଡ଼ାଶାଳେ ନେଇ ରଖାଇଲା ।
ରାତ୍ର ହେଲେ ସେ ପୁରକୁ ଅଣାଏ ରାଜନ
ଜାଣିବେ କାହୁଁ ଏକଥା ଗୋଟା ପୁରଜନ ।
ଯେ ଅବା ଜାଣନ୍ତି କାହା ଆଗେ ନ କହନ୍ତି
ରାଜାଙ୍କ ଡରେ ନୀରବ ହୋଇଣ ରହନ୍ତି ।
ଏମନ୍ତେ ଗଲା ଏରୂପ ବହି କେତେଦିନ
ଏ ଦ୍ୱିଜ ଗୋପୀନାଥକୁ ରଖ ଜନାର୍ଦ୍ଦନ ।

.....※.....

## ନାରଦଙ୍କର ଦ୍ୱାରକା ଗମନ ଓ ଶ୍ରୀକୃଷ୍ଣଙ୍କ ସହିତ ଭେଟ

କହନ୍ତି ଯେ ଶୁକମୁନି ଶୁଣ ତୁ ହେ ରାୟ
ମହାମୁନି ନାରଦ ଯେ ବ୍ରହ୍ମାର ତନୟ ।
କଳିଦ୍ୱନ୍ଦ୍ୱ ନ ଦେଖିଲେ ନ ରୁଚଇ ଭାତ
ତେଣୁ କଳି ଖୋଜୁ ଥାଇ ମୁନିବର ନିତ୍ୟ ।
କରେ ବୀଣାଧରି ମୁଖେ ହରିନାମ ଗାଇ
ଦ୍ୱାରକାପୁରେ ପ୍ରବେଶ ହେଲେ ମୁନି ସାଇଁ ।
ଚଉଦବ୍ରହ୍ମାଣ୍ଡ କଥା ସେ ମୁନିକି ଜଣା
ସବୁବେଳେ ବାଉଥାନ୍ତି କରେ ଧରି ବୀଣା ।
ଯୋଗସିଦ୍ଧା ପୁରୁଷ ସେ ବଇଷ୍ଣବମଣି
ଯୋଗବଳେ ପ୍ରାଣୀଭଲମନ୍ଦ ପାରେ ଜାଣି ।
ରୁକ୍ମଣୀପୁରେଅଛନ୍ତି ଦେବ ଦାମୋଦର
ଯୋଗବଳେ ଜାଣିପାରି ଗଲେ ମୁନିବର ।
ହାସ୍ୟ ପରିହାସ ବେଳେ ପହଞ୍ଚିଲେ ଯାଇଁ
ମୁନିଙ୍କୁ ଦେଖି ଭୀଷ୍ମକ ନନ୍ଦିନୀ ଉଠଇ ।
ଶ୍ରୀକୃଷ୍ଣ ଉଠି ପ୍ରଣମି ମୁନିର ପୟରେ
ପାଦ୍ୟ ଅର୍ଘ୍ୟ ଦେଇ ପୂଜାକଲେ ଆନନ୍ଦରେ ।
ଆସନଦେଇ ମୁନିଙ୍କି ଗଉରବ କଲେ
କୁଶଳ ବାରତାମାନ ମୁନିଙ୍କି ପୁଚ୍ଛିଲେ ।
ମୁନି ବୋଇଲେ କି ପୁଚ୍ଛକୁଶଳ ମୋହରି
ସର୍ବଦା ଯାହାର ହୃଦେ ଥାଇ ନରହରି ।
ଚଉଦଭୁବନେ କାହିଁ ତାର ଅମଙ୍ଗଳ
ଏମନ୍ତ ଶୁଣି ହସିଲେ ବସୁଦେବ ବାଳ ।
କି ନିମନ୍ତେ ଆସିଅଛ କହ ମୁନିବର
ନାରଦ ବୋଇଲେ ଶୁଣ ତୁହୋ ଯଦୁବୀର ।
ତୋହପରା ପ୍ରଭୁ ଥାଉ ଥାଉ ମୋର ଦୁଃଖ
ଅଇଲି ଦୁଃଖ ହରିବି ଦେଖି ପଦ୍ମମୁଖ ।
ଶ୍ରୀହରିବୋଇଲେ ଦୁଃଖ କହୁକିନା ମୁନି
ନାରଦ ବୋଇଲେ ଦୁଃଖ ଶୁଣ ଚକ୍ରପାଣି ।
ଅନ୍ନ ନ ମିଳିବା ଯୋଗୁଁ କୃଶ ମୋ ଶରୀର
ପ୍ରତିଦିନ ପତ୍ରପାଣି ପବନ ଆହାର ।
ତେଣୁ ସିନା ବଳ କ୍ଷୀଣ ତନୁ କ୍ଷୀଣ ଦେଖ
ଦେଖୁଛୁତ ଦେବେ ଅସ୍ଥିଚର୍ମ ପଦ୍ମମୁଖ ।

ବସ୍ତ୍ର ନାହିଁ ପିନ୍ଧୁଅଛି ଚିରା କଉପୁନୀ
ତଇଳ ନାହିଁ ପାଉଁଶ ବୋଳି ହୋଇ ପୁଣି ।
ନିଖୁରା ଯୋଗୁଁ ଶିରରେ ବହି ଜଟାଭାର
ଧନବିନେ ନାପିତ କି କରିବ କ୍ଷଉର ।
ତେଣୁ ଦାଢ଼ୀ ବଢ଼ି ଯାଇ ପଡ଼ିଛି ନାଭିରେ
ନଖଦେଖ ବଢ଼ିଯାଇ ଦିଶେ କି ପ୍ରକାରେ ।
ବିଧିଶାପେ ଏକଠାବେ ରହି ନ ପାରଇ
ଚଉଦ ଭୁବନ ଦିନରାତି ବୁଲୁଥାଇ ।
କ୍ଷଣେହେଁ କାହିଁ ମୋ ମନ ନ ହୁଅଇ ସ୍ଥିର
ଖୋଜୁଥାଇ ଯୁଦ୍ଧ ହେବ କାହାର କାହାର ।
ମାଡ଼ଗୋଳ କଳିଦ୍ୱନ୍ଦ୍ୱ ଦେଖିଲେ ନୃପତି
ଏଥୁ ଅଧିକ ଦୁଃଖ କି ଅଛଇ ଶ୍ରୀପତି ।
ଅନ୍ତର୍ଯ୍ୟାମୀ ନାଥ ତୁହି ତୋତେ କି ଅଜଣା
ତୁମ୍ଭର ନାମ ଗାଉଛି ଧରି ତେଣୁ ବୀଣା ।
ଏମନ୍ତ ଶୁଣି ହସିଲେ ପ୍ରଭୁ ଦଇତାରି
ବୋଇଲେ ଯେବେ ତୁ ଦୁଃଖ ପାଉ ତପଚାରୀ ।
ଭୋଗ ପଦାର୍ଥେ କି ଇଚ୍ଛା ଅଛଇ ତୋହର
କହିଲେ ସବୁ ଯୋଗାଇଦେବା ମୁନିବର ।
ଶ୍ରୀମୁଖୁ ବଚନ ଶୁଣି ବୋଇଲେ ନାରଦ
ତୁମ୍ଭେ ତ ଅନାଦି ଆଦି ପୁରୁଷ ମୁକୁନ୍ଦ ।
ତୁମ୍ଭ ନାମ ଧରି ଲୋକେ ଭବବାରିତରି
ତୁମ୍ଭ ନାମ ଧରି ଚନ୍ଦ୍ର ସ୍ୱର୍ଗ ଭୋଗ କରି ।
ତୁମ୍ଭ ନାମ ଧରି ହନୁ ସିନ୍ଧୁ ଗଲା ଡେଇଁ
ମୋହର କି ଦୋଷ ଚିରାଲୁଗା ନ ମିଳଇ ।
ଅର୍ନ୍ତଯ୍ୟାମୀ ନାଥ ହରି ଜାଣି ମୁନିମନ
ବିଭା କରାଇବା ଥୟ ହୁଅ ତପୋଧନ ।
ନାରଦ ମୁନି ଆନନ୍ଦ ହେଲେ ଏହା ଶୁଣି
ବୋଇଲେ ବ୍ରହ୍ମାଣ୍ଡ ନାଥ ତୁମ୍ଭେ ଚକ୍ରପାଣି ।
କୋଟି କୋଟି ବ୍ରହ୍ମାଣ୍ଡ ତୋ ଉଦରେ ଅଛଇ
ଯେବେ ମନକଲୁ ମୋତେ ବିଭାହେବା ପାଇଁ
ମୋହର ଏରୂପ ଦେଖି କେ ଦେବ ଦୁହିତା
ଝିଅ ମନକୁ ନ ଯିବ ଦେବ ଯେବେ ପିତା ।
କଥାଏ କହିବି ପ୍ରଭୁ ସତ୍ୟକଲେ ଦେବ
ଦେବୁଁ ଦେବୁଁ ବୋଲି ସତ୍ୟ କଲେ ବାସୁଦେବ ।
ନାରଦ ବୋଇଲେ ଯେବେ ସତ୍ୟ କଲ ହରି
ତୁମ୍ଭ ପୁରେ ଅଛନ୍ତି ତ ଷୋଳସସ୍ର ନାରୀ ।
ସ୍ୱର୍ଗ ଅପସରି ସରି ନୋହିବେ ତାହାଙ୍କୁ
ନ ଗଣନ୍ତି ଯେ ସୁନ୍ଦରୀପଣରେ କାହାକୁ ।
ତୁମ୍ଭଙ୍କୁ କଟାକ୍ଷପାଶେ କରିଛନ୍ତି ବନ୍ଦୀ
ମହାଶୂନ୍ୟ ପୁରୁଷକୁ ପାରନ୍ତି ଯେ ବାନ୍ଧି ।
ତହିଁରୁ ଗୋଟିଏ ମୋତେ ଦିଅ ଚକ୍ରଧର
ଆଜ ରଜନୀ ବଞ୍ଚିବା ସୁଖେ କରି ଘର ।
ମନେ ମନେ ହରି ହରି ବୋଇଲେ ଭୋ ମୁନି
ସତ୍ୟ ଲଙ୍ଘିଲେ ମୋହର ହେବ ଧର୍ମହାନି ।
ତୁମ୍ଭେ ମହାଜ୍ଞାନୀ ପୁଣି ବ୍ରହ୍ମାର କୁମର
ଭାରିଯା ଏକ ଦେଲଇ ସୁଖେ ଭୋଗ କର ।
ଆଜି ରାତିକ ନିମନ୍ତେ ମାଗିଅଛ ମୋତେ
ମୋ ଘରଣୀ ଛାଡ଼ିଯିବ ଆଜିର ପ୍ରଭାତେ ।
ଏକ ଏକ ନାରୀଙ୍କର ଏକ ଏକ ପୁର
ଯାହାପୁରେ ନ ଦେଖିବ ମୋତେ ମୁନିବର ।
ତାହାର ପୁରେ ଭୋ ମୁନି ବଞ୍ଚିବ ରଜନୀ
ଏହା ଶୁଣି ମନମଧ୍ୟେ ଭାଳଇ ସେ ମୁନି ।
ମାୟାଧର ପଡ଼ିଲେକ ମାୟାର ମୋହର
କି ଉପାୟ ଆଉ ବୁଦ୍ଧି ହୁଡ଼ିବା ଲୋକର ।
ସତ୍ୟକରିଅଛି ତାହା ଲଙ୍ଘିବି କେମନ୍ତେ
ଏବେତ ଭାରିଯା ଏକ ଦେଲା ନିଶ୍ଚେ ମୋତେ ।
ଚକ୍ରକୂଟ ମାୟା ତାର ଥାଇଁକି କରିବ
ମୋ ଫାନ୍ଦେପଡ଼ି ନିର୍ବୁଦ୍ଧି ହେଲା ବାସୁଦେବ ।
ଅନ୍ତର୍ଯ୍ୟାମୀ ନାଥ ହରି ଜାଣି ମୁନିମନ
ଅଳପ ହସି ବୋଇଲେ ଯାଅ ତପୋଧନ ।
ସୂର୍ଯ୍ୟ ଅସ୍ତ ହେଲେ ପୁଣି ଆସିବ ମୋ ପୁର
ଆନନ୍ଦ ହୋଇ ସେଠାରୁ ଗଲେ ମୁନିବର ।
ଜଗତ ଠାକୁର ହରି ଶ୍ରୀରଙ୍ଗା ଚରଣ
ଭଜିଦ୍ୱିଜ ଗୋପୀନାଥ ପଶିଲା ଶରଣ ।

.....❋.....

## ନାରଦଙ୍କ ଗର୍ବ ଚୂର୍ଣ୍ଣ

କହୁଛନ୍ତି ଶୁଣମୁନି ଶୁଣୁଛନ୍ତି ରାୟେ
ରବି ଅସ୍ତଗଲେ ଚନ୍ଦ୍ର ଗଗନେ ଉଦୟେ ।
ଦିଗ ବିଦିଗ ସୁନ୍ଦର ନିରିମଳ ଦିଶେ
ତାରା ପନ୍ତି ପନ୍ତି ହୋଇ ବିରାଜନ୍ତି ପାଶେ ।
ଫୁଟିଲା ଫୁଲ ପରାୟ ପାଉଛନ୍ତି ଶୋଭା
ବେଳୁ ବେଳ ବିକାଶଇ ଚନ୍ଦ୍ରମାର ପ୍ରଭା ।

ମୁନିବର ଦ୍ୱାରକାରେ ହୋଇଲେ ପ୍ରବେଶ
ବିଷ୍ଣୁ ମାୟାରେ ତାହାର ବୁଦ୍ଧି ହେଲା ଭ୍ରଂଶ ।
ବୁଦ୍ଧି ଭ୍ରଂଶ ହେବାରୁ ଯେ ଚେତାଗଲା ହଜି
ଚେତା ହଜିବାରୁ କାମରାଜା ଗଲଗାଜି ।
ଲୋଭ ମୋହ ଆଦିସୈନ୍ୟ ସଙ୍ଗତରେ ଘେନି
ଦ୍ୱାରେ ଦ୍ୱାରେ ପଶିଗଲେ ମନକୁ ନ ମାନି ।
କାମଲୋଭେ ବିଚଳିତ ହେଲା ମୁନିମନ
ଦେଖି ଦେଖି ଗଲେ ରାଣୀହଂସ ଉପବନ ।
ଗୁଆ ନଡ଼ିଆ ପୁନାଙ୍ଗ ଗଛ ଧାଡ଼ି ଧାଡ଼ି
ସାତପୁର କରି କାନ୍ଥିମାନ ଅଛି ବେଢ଼ି ।
ହାତ ପାହାନ୍ତିରେ ଅଛି ସେ ଗୁଆ ନଡ଼ିଆ
ପୁନାଙ୍ଗ ବୃକ୍ଷର ମୂଳେ ମୁନି ହେଲେ ଠିଆ ।
ଚନ୍ଦ୍ର କିରଣେ ହୋଇଛି ସେ ଚିତ୍ର ବିଚିତ୍ର
ଦେଖି ମୁନିବର ଚିତ୍ତ ହେଲା ଆନନ୍ଦିତ ।
ତହୁଁ ଯାଇଁ ଆମ୍ବତୋଟା ଭିତରେ ପଶିଲେ
ପାଚିଲା ଆମ୍ବ ଝଡ଼ଇ ପବନର ବଳେ ।
ଡାଳେ ବସି କୁହୁ କୁହୁ ରାବନ୍ତି କୋକିଳେ
ଉଡ଼ି ଉଡ଼ି ବାଦୁଡ଼ିଏ ବସୁଛନ୍ତି ଡାଳେ ।
ପାଚିଲା ଆମ୍ବ ତାହାଙ୍କ ନଖ ବାଜି ଝଡ଼ି
ଗୋଟି ଗୋଟି ସାଉଁଟିଲେ ମୁନି ଲୋଭେପଡ଼ି ।
ଚୁଚୁମିଣ ସୁଆଦିଆ ଆମ୍ବିଲା ବାରନ୍ତି
ଭଲ ଆମ୍ବ ଏଥେ ଅଛି ବୋଲି ପ୍ରଶଂସନ୍ତି ।
ତହୁଁ ପଣସ ତୋଟାରେ ହେଲେ ପରବେଶ
ମହ ମହ ବାସଇ ଯେ ପାଚିଲା ପଣସ ।
ବୃକ୍ଷେ ଓଧ ବିରାଡ଼ିଏ ଗରଜନ୍ତି ଚଢ଼ି
ଭୟେ ପାଖକୁ ନ ଯାଇ ଗଲେ ଆଗବଢ଼ି ।
କଦଳୀବନରେ ଯାଇଁ ପ୍ରବେଶ ହୋଇଲେ
ଚନ୍ଦ୍ର କିରଣର ଶୋଭା ସେଠାରେ ଦେଖିଲେ ।
ପାଚିଲା କଦଳୀ କାନ୍ଧୀ ଉପରେ ପଡ଼ିଛି
ଦ୍ୱିଗୁଣେ ଚନ୍ଦ୍ର କିରଣ ଶୋଭା ପାଉଅଛି ।
କଦଳୀ ଖାଉ ଅଛନ୍ତି ଆନନ୍ଦେ ଇନ୍ଦୁରେ
ସେ ଶୋଭାଦେଖି ନାରଦଗଲେ ଧୀରେ ଧୀରେ
ପୋଖରୀମାନଙ୍କ ଶୋଭା ଅତି ଚମତ୍କାର
ଘାଟଛମାନ ତହିଁରେ ମୁଗୁନିପଥର ।
ଶଙ୍ଖମଲମଲ ଶିଳ ମଣ୍ଡେ ଦୀପଦଣ୍ଡି
ଘୋଡ଼ଘଷା ପଥରହିଁ ଅଛି ଖଣ୍ଡି ଖଣ୍ଡି ।
ବଉଳମାଳା ପଥରେ ପୋଖରୀର ବାଡ଼
ନୋହେ ଅତି ସାନ କିବା ନୋହେ ଅତିବଡ଼
ଦୀର୍ଘପ୍ରତିରେ ସମାନ କୋଣହିଁ ସମାନ
ତା ଚାରି ପାଖରେ ଅଛି ଫୁଲର ଉଦ୍ୟାନ ।
ରାଜମଲ୍ଲୀ ବଣମଲ୍ଲୀ ତରାଟ ମନ୍ଦାର
କନକଚମ୍ପା କାମିନୀ ଚମ୍ପା ଯେ କନିଅର ।
କାଠଚମ୍ପା ଚିନିଚମ୍ପା ମଲ୍ଲୀ କୁରୁବଲ୍ଲୀ
କେତକୀ ସୁନାରୀ କିଆ ବକୁଳ ନିଆଳୀ ।
ଗଙ୍ଗଶିଉଳୀ ଦୟଣା ଟଗର ସେବତୀ
ଯାଇ ଜୁଇ ଶ୍ୱେତ ଜବା ରଙ୍ଗଣୀ ମାଳତୀ ।
ମାଧବୀ ବଧୂଲୀ କଇଁଫୁଲ କରବୀର
ପାରିଯାତକ କୁସୁମ ଆଦି ପୁଷ୍ପ ସାର ।
ଫୁଟିଥିବାରୁ ସୁଗନ୍ଧେ ଆମୋଦଇ ମନ
ଧୀରେ ଧୀରେ ବହେ ମନ୍ଦ ମଳୟ ପବନ ।
ଶୁକ ପିକ ଆଦି ପକ୍ଷୀ ରାବୁଛନ୍ତି ବସି
ଜଳ ଅତି ନିରିମଳ ହେତୁ ମୁଖଦିଶି ।
ନୀଳ ଲୋହିତ ଉତ୍ପଳେ ବଦନ୍ତି ଭ୍ରମରେ
ରାଜହଂସେ ପହଁରନ୍ତି କଉତୁକ ଭରେ ।
କାମ ବିକାରେ ଋଷିର ମନ ଛନ ଛନ
ଏମନ୍ତେ ଷୋଳ ସହସ୍ର ଅଛି ଉପବନ ।
ଷୋଳସହସ୍ର ପୋଖରୀ ଅଛଇ ତହିଁରେ
ଷୋଳସହସ୍ର ଯେ ପୁର ଅଛି ତା ଭିତରେ ।
ବିଶ୍ୱକର୍ମା ଯତନେ ତା କରିଛି ଭିଆଣ
ନାନା ଚିତ୍ର ବିଚିତ୍ରରେ ହୋଇଛି ମଣ୍ଡନ ।
ଉପମା ଦେବାକୁ ନାହିଁ ଚଉଦ ଭୁବନେ
ଜଳଜଳ ଦିଶୁଅଛି ଚନ୍ଦ୍ରର କିରଣେ ।
ହୀରା ନୀଳା ସୁନା ରୂପା ମାଣିକ୍ୟ ପୋହଳା
କାନ୍ଥରେ ନାନା ବର୍ଣ୍ଣର ଅଛନ୍ତି ପିତୁଳା ।
ଧବଳମୟ ସେ ପୁର ଅତି ମନୋହର
ବିଷ୍ଣୁ ପୁରକୁ ଆନ କି ଅଛି ପଟ୍ଟାନ୍ତର ।
ବିଷ୍ଣୁ ମନ ହରୁଛନ୍ତି ଯେ ପୁର ସୁନ୍ଦରୀ
ତାହାଙ୍କୁ କି ପଟ୍ଟାନ୍ତର ଅଛି ଆନ ନାରୀ ।
ପୁରେ ପୁରେ ଗୀତବାଦ୍ୟ ନାନାଦି ଉତ୍ସବ
ଦେଖି ଉପୁଜିଲା ମୁନି ହୃଦେ ହାବ ଭାବ ।
କାମଭୋଳେ ମୁନି ମନ ହୋଇଅଛି ଛନ୍ନ
ଧୀରେ ଧୀରେ କଲେ ପୁର ମଧ୍ୟକୁ ଗମନ ।

ଦେଖିଲେ ରତ୍ନପଲଙ୍କେ ବିଜେ ଦେବହରି
ବାମାଏ କୋଳେ ଅଛଇ ଅପୂର୍ବ ସୁନ୍ଦରୀ ।
ରତ୍ନଦୀପମାନ ଜଳୁଅଛି ଚଉପାଶେ
କୋଟି କନ୍ଦର୍ପକୁ ଜିଣି କୃଷ୍ଣରୂପ ଦିଶେ ।
ଦୂରୁ ଦେଖି ମୁନି ବେଗେ ଅଇଲେକ ଫେରି
ବିଚାରିଲେ ଏ ପୁରେ ତ ଅଛଇ ଶ୍ରୀହରି ।
ତହୁଁ ଆନ ମନ୍ଦିରକୁ ଗଲେ ତରବରେ
ଦେଖିଲେ କୃଷ୍ଣ ଅଛନ୍ତି ପଲଙ୍କ ଉପରେ ।
ନୀଳ ନୀରଦ ନିନ୍ଦିତ ତନୁ ବିରାଜଇ
ବିଜୁଳି ପରାୟେ ବାଳା କୋଳେ ଝଟକଇ ।
ଦୂରରୁ ଦେଖିଣ ମୁନି ଲାଜରେ ବାହୁଡ଼ି
ସବୁରି ପୁରେ ଅଛଇ ରତ୍ନର ଦିହୁଡ଼ି ।
କାମଶରେ ଅସମ୍ଭାଳ ହୋଇ ମୁନିବର
ତରତର ହୋଇ ଯାନ୍ତି ପୁରର ଭିତର ।
ଯେ ପୁରେ ପଶନ୍ତି ମୁନିସେ ପୁରେ ଶ୍ରୀହରି
ଏମନ୍ତେ ଷୋଳସହସ୍ର ପୁରେ ତପଚାରୀ ।
ଦେଖିଲେ ରମଣିରତ୍ନ କୋଳେ ଧରି ବିଜେ
କେଉଁବାଳା ଗୀତ ଗାଇ ହରି ମନ ରଞ୍ଜେ ।
କେହି ବୀଣା ବଜାଇଣ ହରୁଅଛି ମନ
କେହି ନୃତ୍ୟ ରସେ କିଣିଅଛି କୃଷ୍ଣଧନ ।
କେହି ହାସ୍ୟ ପରିହାସେ କରୁଛି ସନ୍ତୋଷ
କେ ବାନ୍ଧି ଅଛି ପାତିଣ କଟାକ୍ଷର ପାଶ ।
ପଶାଖେଳେ ମାତିଅଛିକେବଣ ରମଣୀ
କଥା ପ୍ରସଙ୍ଗେ ରଖିଛି କେ ହରିଙ୍କି କିଣି ।
ଏମନ୍ତ ଦେଖି ମୁନିର ଉଡ଼ିଲା ସାହସ
ଭାଳିଲେ ଆଜି ଠକିଲା ମୋତେ ପୀତବାସ ।
ମୋତେ ଦେଖି ଆଗହୋଇ ପଶେ ଆନପୁରେ
ଏ ବୁଦ୍ଧି କଲେକି ହରି ମୋତେ ଭଣ୍ଡିପାରେ ।
ଏମନ୍ତ ଭାଳିଣ ମୁନି ପୁନରପି ଗଲେ
ଷୋଳସହସ୍ର ପୁରରେ ପଶିଣ ଦେଖିଲେ ।
ଏକଇ ରୂପ କୃଷ୍ଣର ନାହିଁ କିଛି ଭିନ୍ନ
ରମଣୀମାନଙ୍କ ରୂପ ବର୍ଣ୍ଣ ଆନ ଆନ ।
ଜଣା ଯାଉଛି ଭଣ୍ଡୁଛି ନିଶ୍ଚେ ମୋତେ ହରି
ଅନ୍ତର୍ଯ୍ୟାମୀ ନାଥ ମୁନି ମନ ଜାଣି ପାରି ।
ଭିନ୍ନ ଭିନ୍ନ ରୂପେ ବିଜେ କଲେ ପୁରେପୁରେ
ନାରଦମୁନି ଏମନ୍ତ ଭାଳିଣ ମନରେ ।
ହରିଙ୍କି ଦେଖା ନ ଦେଇ ଗୁପତରେ ରହି
ପୁରେ ପୁରେ ଦେଖନ୍ତି ଯେ ପ୍ରଭୁ ଭାବଗ୍ରାହୀ
କାହିଁ ରାମ ରୂପ କାହିଁ ବାମନ ମୂରତି
ନରସିଂହ ରୂପେ କେଉଁ ପୁରେ ବିରାଜନ୍ତି ।
କାହିଁ ବିଶ୍ୱରୂପ ଧରି ରହିଛନ୍ତି ହରି
କାହିଁ ପର୍ଶୁରାମ ରୂପ ଧରି ବିଜେ କରି ।
କାହିଁ ମୋହନ ମୂରତି ମଦନ ଗୋପାଳ
କାହିଁ ବଂଶୀ ଧରିଛନ୍ତି ଯଶୋଦା ଦୁଲାଳ ।
କାହିଁ ଗୋଲୋକ ମୂରତି ଅପୂର୍ବ ସୁନ୍ଦର
କାହାର ଚତୁରଭୁଜ ଦ୍ୱିଭୁଜ କାହାର ।
ଏମନ୍ତ ଷୋଳସହସ୍ର ରୂପେ ବନମାଳୀ
ବିଜେ ଶଙ୍ଖ ଚକ୍ର ଗଦା ପଦ୍ମଭୁଜେ ତୋଳି ।
ବକ୍ଷସ୍ଥଳେ କଉସ୍ତୁଭ ମଣି ବିରାଜଇ
ଏମନ୍ତ ଦେଖି ମୁନିର ବୁଦ୍ଧି ହଜିଯାଇ ।
କୁଜ୍ଞାନ ଯାଇ ସୁଜ୍ଞାନ ହୃଦରେ ପଶିଲା
ମୃଗଛାଲ ପାତି ମୁନି ଯୋଗରେ ବସିଲା ।
ଜାଣିଲା ମୁଁ ଅପରାଧୀ ହେଲି ସ୍ୱାମୀଠାରେ
ବିଷ୍ଣୁର ଦୋରେହା ହୋଇ କାହିଁ ରହିପାରେ ।
ବ୍ରହ୍ମା ଶିବଙ୍କୁ ଯାହାର ମାୟା ଅଗୋଚର
ଯେବଣ ପ୍ରଭୁ ଜଗତ ଜନର ଠାକୁର ।
ତାହାର ଭାରିଯା ଅଟେ ମୋର ଠାକୁରାଣୀ
ମୁହିଁ ମୂଢ଼ ମତ୍ତହୋଇ ମାଗିଲି ନ ଜାଣି ।
କପଟେ ମୁହିଁ ବିଷ୍ଣୁଙ୍କୁ ଜିଣିଲି ବୋଇଲି
ଏହା ମହାପାପ ଅତି ନିଶ୍ଚେ ନାଶ ଗଲି ।
ଜନ୍ମ ଜନ୍ମାନ୍ତର ପୁଣ୍ୟ ମାନ ଗଲା ନାଶ
ଜାଣିଲଇଁ ତିନିପୁରେ ନାହିଁ ମୋର ବାସ ।
କି ବୁଦ୍ଧି କରିବି ମୋତେ ବୁଦ୍ଧି ଦିଶୁ ନାହିଁ
କେମନ୍ତେ ପ୍ରସନ୍ନ ହେବେ ପ୍ରଭୁ ଭାବଗ୍ରାହୀ ।
ଏମନ୍ତ ସନ୍ତାପ ଯହୁଁ କଲା ମୁନିବର
ଜାଣି ମାୟାଧର କଲେ ମାୟାକୁ ଅନ୍ତର ।
ମାୟା ତୁଟିଯାନ୍ତେ ଭୟେ କୁବୁଦ୍ଧି ହଟିଲା
କୁବୁଦ୍ଧି ହଟନ୍ତେ ହୃଦେ ଜ୍ଞାନ ପ୍ରକଟିଲା ।
ଜ୍ଞାନ ପ୍ରକଟନ୍ତେ ରିପୁମାନେ ଗଲେ ହଟି
ରିପୁ ହଟନ୍ତେ ଚୈତନ୍ୟ ସିଂହାସନେ ଉଠି ।
ସିଂହାସନକୁ ଉଠିଣ ବସିଲାକ ମାଡ଼ି
ଆସନ ମାଡ଼ିବସନ୍ତେ ମନ ଧରି ବାନ୍ଧି ।

ପ୍ରକୃତି ଗଣଙ୍କୁ ମାରି ବଶରେ ରଖିଲେ
ବୁଦ୍ଧିର ବଳେ ଚୈତନ୍ୟ ନୃପତି ହୋଇଲେ ।
ନବଦ୍ୱାର କବାଟକୁ କିଳିଲା ଯତନେ
ନିଶ୍ଚିନ୍ତ ହୋଇ ବସିଲା ଆପଣା ଆସନେ ।
ଚୈତନ୍ୟ ପାଇ ନାରଦ ଯୋଗାସନେ ବସି
ଅଭୟ ଚରଣେ ଲୟ ଲଗାଇ ଭରସି ।
କରଯୋଡ଼ି ଶିରେ ରଖି ମୁଖେ ତ୍ରାହି ତ୍ରାହି
ମୁଁ ପାମର ମହାପାପୀ ଜ୍ଞାନ ମୋର ନାହିଁ ।
ଯେ ଚାହିଁବ ମୋର ମୁଖ ପଡ଼ିବ ନରକେ
ଏ ମୁଖ ମୁଁ ଦେଖାଇବି ଯାଇ କାହାପାଖେ ।
ଧିକ ଧିକ ଏ ନିର୍ଲ୍ଲଜ ପ୍ରାଣେ ନାହିଁ ଆଶା
କେବଳ ଅଭୟ ପାଦ ମୋହର ଭରସା ।
ଭାବଗ୍ରାହୀ ନାଥ ଯେବେ ହୋଇବେ ପ୍ରସନ୍ନ
ନ ହୋଇଲେ ନିଶ୍ଚେ ଯିବି ଶମନ ଭୁବନ ।
ଏମନ୍ତ ଭାବନା କରୁ ରାତି ଗଲା ପାହି
ନାରଦଙ୍କ ମନ ଜାଣି ପ୍ରଭୁ ଭାବଗ୍ରାହୀ ।
ଆସି ପ୍ରବେଶ ହୋଇଲେ ନାରଦଙ୍କ ପାଖେ
ବେନି ଚକ୍ଷୁ ବୁଜି ନାମ ଭଜୁଛନ୍ତି ମୁଖେ ।
ଏମନ୍ତ ବେଳେ ପ୍ରବେଶ ହେଲେ ଚକ୍ରଧର
ବୋଇଲେ କି କାମଭୋଗେ ରହି ମୁନିବର ।
ଅନିଦ୍ରା ହେବାରୁ ଏଥେ ଢୋଳାଉଛ ବସି
ରାତି ପାହିଲାଣି ନିତ୍ୟକର୍ମ କର ଋଷି ।
ଶିବଆଳେ ଶଙ୍ଖଧ୍ୱନି ନ ଶୁଭେ କି ତୋତେ
କାକ ଡାହୁକ ଉଠିଣ ରାବନ୍ତି ପ୍ରଭାତେ ।
ପୂର୍ବଦିଗ ରବିଙ୍କର କି ସୁନ୍ଦର ରୂପ
ନିଦ ଭାଙ୍ଗି ଦେଇ ମୁନି କର ଜପ ତପ ।
ଶ୍ରୀମୁଖ ବଚନ ମୁନି କର୍ଣ୍ଣେ ସମ୍ଭାଇଲା
ଚକ୍ଷୁ ମେଲିଣ ଅପୂର୍ବ ରୂପକୁ ଦେଖିଲା ।
ଅଳପ ହସି ବୋଇଲେ କୋମଳେ ଶ୍ରୀହରି
ଭାରିଯା ମୋର ହରିଲାନିକି କୂଟକରି ।
ମୋ ମାୟାଠାରୁ ତୋହର ମାୟା ଗଲାବଳି
ଏବେ ନିଦ୍ରା ତେଜି ବେଗେ ଉଠ ତପଶାଳୀ ।
ମହାମୁନିର ହୃଦରେ ବଜ୍ର କି ପଡ଼ିଲା
ଅଭୟ ଚରଣ ଦୁଇ ଧରି ନ ଛାଡ଼ିଲା ।
ବୋଇଲା ମୋର ଅନ୍ତରେ ଥାଉ ପରାହରି
ଯହିଁକି ପଠାଉ ମୁଁ ତାହା ସିନା କରି ।
ଧର୍ମ ଅଧର୍ମ ମୁଁ କିଛି ନ ଜାଣଇ ଜାଣ
ଏଥିରେ ତୁ ଦୋଷୀ ସିନା ହେବୁ ନାରାୟଣ
ମୁହିଁ ଅଜ୍ଞାନୀ ମୂରୁଖ ନ ଜାଣିବାପଣେ
ଦୋରେହା ହୋଇଛି ଏହି ଅଭୟ ଚରଣେ ।
ଭୃତ୍ୟ ଅପରାଧ ସିନା ସ୍ୱାମୀ କ୍ଷମାକରେ
ପୁତ୍ରର ଯେ ଅପରାଧ ପିତା ତା ନ ଧରେ ।
ଭାରିଯା ଦୋଷକୁ ଯେବେ ନ ସହିବ ପତି
ପ୍ରଜାର ଦୋଷକୁ କ୍ଷମା ନ କଲେ ନୃପତି ।
ପ୍ରାଣୀ ତଡ଼ବଡ଼ି ଯେବେ ନ ସହିବ ମହୀ
ସର୍ବଜ୍ଞ ପୁରୁଷ ତୋତେ କି କହିବି ମୁହିଁ ।
ମହାପାପୀ ହେଲି କେହି ନ ଚାହିଁବେ ମୁଖ
ତୁମ୍ଭେ ନ ତାରିଲେ ମୁହିଁ ହୋଇବି ନିରେଖ ।
ରଖ ରଖ ପଦ୍ମ ମୁଖ ଗଲି ମୁହିଁ ଭାସି
ଏହିପରି ବୁଲୁଥିବି ହୋଇ ମହା ଦୋଷୀ ।
ମୋହର ପାପକୁ ତୁମ୍ଭେ ପ୍ରାୟଶ୍ଚିତ୍ତ ସିନା
ଅନ୍ଧାର ନାଶ ଯାଇ କି ସୂର୍ଯ୍ୟ ତେଜ ବିନା ।
ତୁମ ବିନା ପାପ ମୋର କେ ନାଶି ପାରିବ
ରଖ ରଖ ଏ ବାରକ ମୋତେ ବାସୁଦେବ ।
ପାପ ବାନ୍ଧି ରଖିଅଛି ବୁଦ୍ଧିକି ମୋହର
ମନ୍ତ୍ରୀ ବିହୁନେ ନିର୍ବଳାଚେତା ନୃପବର ।
ରାଜା ମନ୍ତ୍ରୀଙ୍କର ବଳେ ମନ ସିନା ବଳି
ରଖ ରଖ ପାପ ମୂଳ ଛେଦି ବନମାଳୀ ।
ସ୍ତୁତି ସ୍ତବ ସବୁ ମୋର ପାଶୋର ଗଲାଣି
ଜନ୍ମ ଜନ୍ମାନ୍ତର ପୁଣ୍ୟ ଲୋପ ପାଇଲାଣି ।
କେବଳ ମାତ୍ର ଭରସା ଏ ରଙ୍ଗା ଚରଣେ
ନେତ୍ରରୁ ଲୋତକ ବିନ୍ଦୁ ପଡ଼େ ଅନୁକ୍ଷଣେ ।
ମୁନିର ବିକଳ ସହି ନ ପାରି ଶ୍ରୀହରି
ଶ୍ରୀକରେ ତୋଳି ବୋଇଲେ ଉଠ ତପଚାରୀ ।
ତୁ ପରମ ବଇଷ୍ଣବ ଭକତ ମୋହର
ତୋହର ମୋହର ଭିନ୍ନ ନାହିଁ ମୁନିବର ।
ତୋର ଆତ୍ମା ମୋରଆତ୍ମା ଏକାଯେ ଅଟଇ
ମୋର ତେଜରେ ସର୍ବଦା ତେଜୋବନ୍ତ ତୁହି ।
ତୋତେ କି ପାପ ସ୍ପରଶ କରିପାରେ ମୁନି
ଶୋଚନା କରୁ କିପାଇଁ ହୋଇ ମହାଜ୍ଞାନୀ ।
ଆସ ଆସ ମୋର ସଙ୍ଗେ ଆସନେ ବସିବା
କି ନିମନ୍ତେ ଆସିଅଛ ତାହା ପଚାରିବା ।

ଶ୍ରୀମୁଖୁ ବଚନ ଶୁଣି ଆନନ୍ଦ ନାରଦ
ଆଗହେଲେ ପଛଧରି ଚାଲନ୍ତି ଗୋବିନ୍ଦ ।
ମୁନିଙ୍କୁ ଆସନ ଦେଇ ଆପଣେ ବସିଲେ
କି ନିମନ୍ତେ ଆଗମନ କହ ତା ବୋଇଲେ ।
ନାରଦ ବୋଇଲେ ଶୁଣ ଜଗତ ଠାକୁର
ଅବନ୍ତୀ ନଗରେ ଅଛି ଏକ ନୃପବର ।
ତାର ନାମ ଦଣ୍ଡିରାଜା ସେ ବଡ଼ ଧାର୍ମିକ
ଦାନଶୂର ମାନଶୂର ବଡ଼ ବିଚାରକ ।
ବଳବନ୍ତ ବୀର ସେହି ନ ମାନେ କାହାକୁ
ଅନେକ ରାଜା ଭୟରେ ଖଟନ୍ତି ତାହାକୁ ।
ମୃଗୟା ଯାଇ ରାଜନ ବନସ୍ତେ ପଶିଲା
ଲକ୍ଷଣବନ୍ତ ଘୋଡ଼ୀ ସେ ବନରୁ ପାଇଲା ।
ଉଚ୍ଚୈଃଶ୍ରବା ଅଶ୍ୱ ତାକୁ ନୋହିବ ଯେ ସରି
କ୍ଷଣକେ ଭ୍ରମି ପାରଇ ସେହି ତିନିପୁରୀ ।
ପବନଠାରୁ ଗମନ ଅଧିକ ତାହାର
ସେ ଘୋଡ଼ୀ ହେଲେ ଦ୍ୱାରକା ଦିଶିବ ସୁନ୍ଦର ।
ଚଉଦ ବ୍ରହ୍ମାଣ୍ଡ ମୁହିଁ ବୁଲଇ ହେ ହରି
ଦେଖିନାହିଁ ଘୋଡ଼ା ସେହି ମାଈ ଘୋଡ଼ାପରି
ଗୁଣ ଯେମନ୍ତ ଲକ୍ଷଣ ତେମନ୍ତ ହିଁ ତାର
ପାରିଲେ ସେ ଘୋଡ଼ା ଗୋଟି ଆଣ ତୁମ୍ଭ ପୁର ।
ବଡ଼ ପ୍ରତାପୀ ଅଟଇ ଦଣ୍ଡି ନୃପମଣି
ଯୁଦ୍ଧ କଲେ ହାରିଯିବ ତାକୁ ବଜ୍ରପାଣି ।
ବିଚାରି କରିବା କାର୍ଯ୍ୟମନକୁ ଯେ ଆସେ
ନ ବୋଲିବ ଯେ କଳିହା ମୁନି ବୋଲି ଶେଷେ ।
କଳିହା ସ୍ୱଭାବ ମୋର ଜାଣିଛ ତ ହରି
କଳିଦ୍ୱନ୍ଦ୍ୱ ହେଲେ ଆମ୍ଭେ ଆନନ୍ଦେ ବିହରି ।
ଶ୍ରୀହରି ବୋଇଲେ ସେହି ଅବନ୍ତୀ ରାଜନ
ଆମ୍ଭଙ୍କୁ ତ ଭଲରୂପେ ଜାଣେ ତପୋଧନ ।
ଆମ୍ଭେ ମାଗିଲେ ଆମ୍ଭଙ୍କୁ ନ କହିବ ନାହିଁ
ଯାଇ ପାରିବ କି ତୁମ୍ଭେ ହେ ମୁନି ଗୋସାଇଁ ।
ଅବନ୍ତୀ ନଗରଯାଏ ଗଲେ ଶ୍ରମ କରି
କହିଲେ ଘୋଡ଼ା ନ ଦେବ ଯେବେ ଦଣ୍ଡଧାରୀ ।
ବୋଲିବ ସେ ମାରି ତୋତେ ବଳେ ନେବ ଘୋଡ଼ୀ
ଯେ ତୋର ସାହା ହେବ ତା ଶିର ଯିବଛିଡ଼ି ।
ନାରଦ ବୋଇଲେ ଯେବେ କହିଲଣି ମୋତେ
ପଥଶ୍ରମ କରିବଇଁ ତୋହରି ନିମନ୍ତେ ।
ଦଣ୍ଡି ରାଏ ଦେଲା ପରି ମୋତେ ଲାଗୁନାହିଁ
ତୋହର ବଚନ ଭାଙ୍ଗି ପାରୁ ନାହିଁ ମୁହିଁ ।
ତୁମ୍ଭ ପାଦପଦ୍ମ ତଳେ ଗୋପୀନାଥ ଦାସ
ଶରଣ ପଶୁଛି ତାକୁ ରଖ ପୀତବାସ ।

.....✿.....

## ଅବନ୍ତୀପୁରେ ନାରଦ ଓ ଦଣ୍ଡିରାଜାର କଥୋପକଥନ

କହନ୍ତି ଯେ ଶୁକମୁନି ଶୁଣ ତୁହୋ ରାୟ
ଏ କୂର୍ମପୁରାଣେ ଏହିରସ ସୁଧାମୟ ।
ଯେ ଶୁଣାଇ ଶୁଣଇ ଯେ ସଂସାରୁ ତରଇ
ବିଷ୍ଣୁ ମୁଖୁଁ ଶୁଣି ଉଠି ଯେ ମୁନି ଗୋସାଇଁ ।
ଅବନ୍ତୀ ପୁରେ ମିଳିଲେ ମନଦଣ୍ଡ ଚଢ଼ି
ମୁଖେ ହରି ହରି କରେ ବୀଣା ଆଶାବାଡ଼ି ।
ଦେଖିଣ ଅବନ୍ତୀ ରାଜା ଆସନୁ ଉଠିଲା
ପାଦ୍ୟ ଅର୍ଘ୍ୟଦେଇ ମୁନି ଚରଣ ପୂଜିଲା ।
ବସିବାକୁ ଆଣିଦେଲା କୃଷ୍ଣାଜିନ ଛାଲ
ଗଉରବ କରି ରାଜା ପୁଛିଲା କୁଶଳ ।
କେଉଁଠାରେ ଥିଲ ମୁନି କି ବାରତା କହ
ତୁମ୍ଭର ସଦା ସର୍ବଦା ପ୍ରିୟହିଁ କଳହ ।
କଳି ନ ଲଗାଇଲେ ତ ମନେ ନାହିଁ ଶାନ୍ତି
କି ନିମନ୍ତେ ମୋ ପୁରକୁ କହ ଆସିଛନ୍ତି ।
ଆଜି ମୋ ପୁରେ ପାତକ ରାଶି ନ ରହିବ
ବ୍ରହ୍ମାର ପୁତ୍ର ନାରଦ ପରମ ବୈଷ୍ଣବ ।
ତାହାର ଚରଣ ଯେଣୁ ପଡ଼ିଲା ମୋ ପୁରେ
ଅନ୍ଧାର କି ରହିପାରେ ରବି କିରଣରେ ।
ଏମନ୍ତ ନୃପତି ମୁଖୁଁ ଶୁଣି ମୁନିବର
ବୋଇଲେ ତ ଆମ୍ଭେ ଥିଲୁଁ ଦ୍ୱାରିକାନଗର ।
ଗୋବିନ୍ଦ ମୁଖୁଁ ଶୁଣିଣ ଆଗ ହୋଇ ଆସି
ତୋତେ କହିବା ନିମନ୍ତେ ତୋ ପୁରେ ପ୍ରବେଶି ।
ତୁ ଆମ୍ଭ ଭକତ ଯେଣୁ ତୋତେ ଶ୍ରଦ୍ଧାପାଇ
ତୋ ଆଗେ ସେ କଥାଯାକ କହିବା ବୁଝାଇ ।
ତୋହର ଶରଧା ହେଲେ କହି ନାନା ତାହା
ମୁନିର ମୁଖୁ ଏମନ୍ତ ଶୁଣି ନରନାହା ।
ବୋଇଲେ କି କଥା ଗୋଟା କହିକିନା ମୁନି
ନାରଦ ବୋଇଲେ ତୁହୋ ଶୁଣ ନୃପମଣି ।

ବାଟରେ ଯେ ଆସୁଥିଲା ଗୋବିନ୍ଦର ଦୂତ
ଦେଖିଲି ରାଗ ତାଙ୍କର ତୋଠାରେ ବହୁତ ।
ନୃପତି ବୋଇଲା କିମ୍ପା ଗୋବିନ୍ଦର ରାଗ
ତହିଁର କାରଣ ମୋତେ କହୁକିନା ଆଗ ।
ନାରଦ ବୋଇଲେ ଶୁଣ ଅବନ୍ତୀ ରାଜନ
ମୃଗୟା ନିମନ୍ତେ ଯାଇଁ ଗହନ କାନନ ।
ଘୋଟକୀ ଏକ ପାଇଛୁ ଅତି ସୁଲକ୍ଷଣୀ
ତାହାକୁ ଆଣି ରଖିଛୁ ଘରେ ନୃପମଣି ।
ଚାରଙ୍କ ମୁଖୁଁ ବାରତା ପାଇ ନାରାୟଣ
ଏଣୁ ତାହାଙ୍କର କ୍ରୋଧ ତୋଠାରେ ରାଜନ
ଘୋଟକୀ ନ ଦେଲେ ଯୁଦ୍ଧ କରିବ ଗୋବିନ୍ଦ
ନୃପତି ବୋଇଲା ଶୁଣ ହେ ମୁନି ନାରଦ ।
ମୋ ଘରେ ଘୋଟକୀ ନାହିଁକାହୁଁ ଦେବିତାକୁ
ଏ କର୍ମଦୋଷ ମୋହର କହିବି କାହାକୁ ।
ଜାଣିଲି ବିଧାତା ବାମ ହୋଇଣ ମୋ ପ୍ରତି
ଅକାରଣେ କୃଷ୍ଣ ତୁଲେ ଘଟୁଛି ଅପ୍ରୀତି ।
ଏ ରାଜ୍ୟବାଡ଼ି ପଛକେ ଗୋବିନ୍ଦଙ୍କୁ ଦେଇ
ବନସ୍ତେ ଯାଇ ରହିବି ଘେନି ମହାଦେଇ ।
ବିନା ଦୋଷେ କୃଷ୍ଣ ସଙ୍ଗେ କିମ୍ପାହେବ କଳି
ତ୍ରିଭୁବନ ଠାକୁର ସେ ବଳେ ମହାବଳୀ ।
ମୁହିଁ କି ଭାଜନ ଯୁଦ୍ଧ କରିବି ତା ତୁଲେ
ବନବାସ ଯୋଗ ଆସି ହେଲା ଏତେକାଳେ ।
ରାଜା ଭୟ କରିବାର ଦେଖି ମୁନିବର
ବୋଇଲେ ତୁ ଯା ବୋଇଲୁ ଦଣ୍ଡୀ ଦଣ୍ଡଧର ।
ଗୋବିନ୍ଦ ସଙ୍ଗତେ ତୁ ତ ନ କରିବୁ ଦ୍ୱନ୍ଦ୍ୱ
ବିନାଦୋଷେ କଳି ଯେବେ କରିବ ଗୋବିନ୍ଦ ।
ତା ପାଇଁ ତୁ ଘରଦ୍ୱାର ପଳାଇବୁ ଛାଡ଼ି
କାହିଁ ରହି ନ ପାରିବୁ ନ ଦେଲେ ତୁ ଘୋଡ଼ୀ ।
ଯହିଁ ରହିବୁ ସେଠାରେ ଖୋଜି ସେ ମାରିବ
ଘୋଡ଼ା ରଖିକାହୁଁ ଯେବେ କିପାଇଁ ଡରିବ ।
ବ୍ୟାଘ୍ରକୁ ଡରିଲେ ଯେହ୍ନେ ବଳେ ଧରିଖାଇ
ନ ଡରିଲେ ଛାଡ଼ିକରି ଯାଏ ଭୟପାଇ ।
ତେସନ ତୁମ୍ଭେ କ୍ଷତ୍ରିୟ କୁଳେ ହୋଇ ଜାତ
ବଳ ପରାକ୍ରମ ଥାଉଁ ଥାଉଁ ହୁଅ ଭୀତ ।
ହାରିବା ଜିଣିବା ସିନା କ୍ଷତ୍ରିଙ୍କର ଧର୍ମ
ଡରି ପଳାଇଲେ ନିଶ୍ଚେ ହୋଇବ ଅଧର୍ମ ।
ଯୁଝିବାକୁ ଯେବେ ବଳ ପରାକ୍ରମ ନାହିଁ
ଶରଣ ପଶ ତୁ କୃଷ୍ଣ ପାଦତଳେ ଯାଇ ।
ଶରଣ ପଶିଲେ କୃଷ୍ଣ ନ ଛାଡ଼ିବେ ତୋତେ
ନାହିଁ କଲେ କେଭେ ସେହି ନଯିବ ପରତେ ।
ଘୋଟକୀ ଯେବେ ଗୁପତ କରିଅଛ ରଖି
କୃଷ୍ଣଙ୍କୁ ଦେଇ ଶରଣ ପଶି ହୁଅ ସୁଖୀ ।
ନାରଦ ମୁଖୁଁ ଏସନ ଶୁଣି ନରପତି
ବୋଇଲା ଡରିବି କିମ୍ପା ହୋଇ କୋପମୂର୍ତ୍ତି ।
ଜିଣିଲେ ଯଶ ରଖିଣ ଯିବି ମହୀତଳେ
ମଲେ ବୈକୁଣ୍ଠ ପୁରକୁ ଯିବି ପୁଣ୍ୟବଳେ ।
ଆସୁ ପଛେ କୃଷ୍ଣଦୂତ ନାହିଁ ମୋ ଶୋଚନା
ବାରକ୍ଷଉଣୀ ମୋହର ଅଙ୍ଗବଳ ସେନା ।
ମୁଁ ଧନୁ ଧଇଲେ ଭୟକରେ ସୁନାଶିର
ଡରେ ରାଜାମାନେ ଆଣି ଦେଉଛନ୍ତି କର ।
ତ୍ରଇଲୋକ୍ୟ ଠାକୁର ସେ ଜାଣେ ଭଲକରି
ଦୁଷ୍ଟ ନିବାରଣ ଅର୍ଥେ ଅଛି ଅବତରି ।
ମୁଁ ଯାଇ ତାହାଙ୍କ ସଙ୍ଗେ ନ କରଇ ଦ୍ୱନ୍ଦ୍ୱ
ଘୋଟକୀ ରଖିଛୁ ବୋଲି ମିଛେ ମିଛେ ଫାନ୍ଦ ।
ମୋ ସଙ୍ଗେ ସମର ଯେବେ କରିବ ଶ୍ରୀପତି
ଯୁଝିବି ତା ସଙ୍ଗେ ନିଶ୍ଚେ ନାହିଁ ମୋର ଭୀତି ।
ଏମନ୍ତ ଶୁଣି ନାରଦ ଆନନ୍ଦ ହୋଇଲେ
ଧନ୍ୟ ଧନ୍ୟ ରାଜା ତୁହି ବୋଲି ପ୍ରଶଂସିଲେ ।
ମୁଖେ ହରି ହରି ବୋଲି କରେ ବୀଣାଧରି
ଯାଉଛି ବୋଲି ମେଲାଣି ମାଗି ତପଚାରୀ ।
ମନଦଣ୍ଡ ଚଢ଼ ଶୂନ୍ୟମାର୍ଗେ ଗଲେ ଚଳି
ଗୋପୀନାଥର ଶରଣ ରଖ ବନମାଳୀ ।

....❋....

## ଅନାଧୃଷ୍ଟର ଅବନ୍ତୀପୁରେ ଗମନ ଓ ଶ୍ରୀମୁଖେ ପାଠ ଏବଂ ଦଣ୍ଡୀରାଜାର ପ୍ରତିଜ୍ଞା

ଏଥୁ ଅନନ୍ତରେ ଶୁଣ ପାଣ୍ଡୁ ଅଣନାତି
ନାରଦ ମୁଖୁଁ ଏମନ୍ତ ଶୁଣି ଯଦୁପତି ।
ଲେଖନ ପତର ଧରି ଲେଖିଲେ ଶ୍ରୀମୁଖ
ସ୍ୱସ୍ତି ଶ୍ରୀ ଆଗ ଲେଖିଣ ଶ୍ୱେତପଦ୍ମ ଅକ୍ଷ ।
ଲେଖିଲେ ଯେ ଆମ୍ଭେ ଅଟୁ ତ୍ରଇଲୋକ୍ୟପତି
ଆମ୍ଭର ମହିମା ଶିବ ବ୍ରହ୍ମା ନ ଜାଣନ୍ତି ।

ଦୁଷ୍ଟ ସଂହାରି ସନ୍ଥକୁ ପାଳିବା ନିମନ୍ତେ
ଶଙ୍ଖ ଚକ୍ର ଗଦା ପଦ୍ମ ଧରିଥାଉ ହସ୍ତେ ।
ମତ୍ସ୍ୟ କଚ୍ଛପ ବରାହ ରୂପ ଆଦି ଧରି
ଏ ମହୀମଣ୍ଡଳେ ବାରେ ବାରେ ଅବତରି ।
ଶ୍ରୀରାମ ରୂପେ ମାଇଲୁ ରାଜା ଦଶଶିର
ପରଶୁରାମ ରୂପରେ କାଟି କ୍ଷତ୍ରିଶିର ।
ଏବେ ରଙ୍ଗା ଅବତାରେ ମାରି କେଶୀକଂସ
ଦ୍ୱାରକାପୁରେ ରହିଛୁ ଘେନି ଯଦୁବଂଶ ।
ଦେଶାନ୍ତରେ ଯେ ବାରତା ଦେଲେ ମତେ ଆଣି
ବନସ୍ତ ଭିତରେ ଥିଲା ଘୋଡ଼ୀ ସୁଲକ୍ଷଣୀ ।
ତୁ ତାହା ଆଣି ତୋ ପୁରେ ରଖିଛୁ ଗୁପତେ
ଆମ୍ଭଙ୍କୁ ନ ଦେଇ ତାହା ରଖିଲୁ କେମନ୍ତେ ।
ପାଇଲା ପଦାର୍ଥ ଲୋକେ ଘରେ ନ ରଖନ୍ତି
ଠାକୁରଙ୍କୁ ନେଇ ତାହା ସମର୍ପି ଦିଅନ୍ତି ।
ଅଧର୍ମକୁ ଡର ତୋର ନାହିଁ ଦଣ୍ଡୀରାୟ
ବ୍ରହ୍ମାଣ୍ଡ ଠାକୁର ଆମ୍ଭେ ପୁଣି ଦେବରାୟ ।
ନ ଦେଇ ରଖିଲୁ ତୋର ନ ଜାଣିବା ପଣେ
ତେଣୁ ତୋ ଦୋଷ ନ ଧରି ଆମ୍ଭେ ବଡ଼ପଣେ ।
ଶ୍ରୀମୁଖ ଲେଖି ଦେଇଛୁ ଅନାଧୃଷ୍ଟ ହସ୍ତେ
ଘୋଟକୀ ଘେନି ଆସିବୁ ଏହାର ସଙ୍ଗତେ ।
ନ ଦେଲେ ତୋହର ବଂଶ କରିବି ନିପାତ
ତୋତେ ଯେବେ ସାହା ହେବ ଆସି ଶଚୀନାଥ ।
ଯମ କି ବରୁଣ କିବା ଅନଳ ଅନିଳ
କୁବେର ଆଦି ଆବର ଯେତେ ଦିଗପାଳ ।
ରଖି ନ ପାରିବେ ମୋର ଚକ୍ରେ ଯିବ ନାଶ
ଡରେପଳାଇବୁ ଯେବେ ଛାଡ଼ି ତୋରଦେଶ ।
ଚଉଦଭୁବନେ ଲୁଚି ନ ପାରିବୁ ତୁହି
ସୁଦର୍ଶନ ଚକ୍ର ଆଗୁଁ ବର୍ତ୍ତିବ କି କେହି ।
ଏମନ୍ତେ ଶ୍ରୀମୁଖ ଲେଖି ଆପେ ମୁଦ ଦେଇ
ଅନାଧୃଷ୍ଟକୁ ପାଶକୁ ଆଣିଲେ ଡକାଇ ।
ତାହାର ହସ୍ତେ ଶ୍ରୀମୁଖ ଦେଇ ତାକୁ କହି
ମୁଦ ଫିଟାଇ ପଢ଼ିବୁ ଆପେ ତୁହି ତହିଁ ।
ଦଣ୍ଡୀ ରାଜାକୁ ବୁଝାଇ କହିବୁ ଆବର
ଘୋଟକୀ ଘେନି ଆସିବ ତୋର ସଙ୍ଗତର ।
ଶ୍ରୀମୁଖ ଘେନିଣ ତହୁଁ ଅନାଧୃଷ୍ଟ ଗଲା
ଅବନ୍ତୀ ନଗରେ ଯାଇଁ ପ୍ରବେଶ ହୋଇଲା ।
ଚାର ଯାଇଁ ଜଣାଇଲା ରାଜାର ଛାମୁରେ
ଦ୍ୱାରକାରୁ ଦୂତ ଆସି ରହିଅଛି ଦ୍ୱାରେ ।
ତାହାର ନାମ ଅଟଇ ଅନାଧୃଷ୍ଟ ବୀର
ଚାର ମୁଖରୁ ଏମନ୍ତ ଶୁଣି ନୃପବର ।
କିଛିକ୍ଷଣ ତୁନି ହୋଇ ମନେ ମନେ ଭାଳି
ବୋଇଲାରେ ଚାର ତୁହି ବେଗେ ଯାଅ ଚାଲି ।
ଗଉରବ କରି ତାକୁ ମୋ ପାଶକୁ ଆଣ
ରାଜାଙ୍କ ମୁଖୁଁ ଏମନ୍ତ ଶୁଣି ଚାରଗଣ ।
ଗଉରବ କରି ବେଗେ ଆଣିଲେ ତାହାକୁ
ଦୂରୁ ଦେଖି ଦଣ୍ଡୀରାଜା ଡାକିଲେ ପାଶକୁ ।
ଆସନଦେଇ ବସାଇ ପୁଛିଲେ କୁଶଳ
ଅନାଧୃଷ୍ଟ ବୋଇଲା ହେ ଦଣ୍ଡୀ ମହୀପାଳ ।
କୃଷ୍ଣଙ୍କ ଶ୍ରୀମୁଖ ଗୋଟି ଶୁଣ ମନଦେଇ
ଆଜ୍ଞା କଲେ ପଢ଼ିବି ମୁଁ ତାର ମୁଦ ଫେଇ ।
ରାଜା ବୋଇଲା ହୋ ପଢ଼ ଅନାଧୃଷ୍ଟ ବୀର
ପଢ଼ନ୍ତେ ସେ ସବୁଯାକ ଶୁଣି ନୃପବର ।
ବୋଇଲା ହେ ଅନାଧୃଷ୍ଟ କି କହିବି ତୋତେ
କେବଣ ଦୁରାତ୍ମା ସହି ନ ପାରିଣ ମୋତେ ।
ଗୋବିନ୍ଦ ଛାମୁରେ ଏହି ମିଛ କଥା କହି
ସେ ମିଥ୍ୟା କଥାରେ ପ୍ରତେ କରି ଭାବଗ୍ରାହୀ ।
ତୁମ୍ଭଙ୍କୁ ପଠାଇଛନ୍ତି ଶ୍ରୀମୁଖ ଦେଇଣ
ମୁଁ କି ନ ଜାଣଇ ସେହି ଦେବ ନାରାୟଣ ।
ତାଙ୍କୁ ନ ଦେଇ ଘୋଟକୀ ଲୁଚାଇ ରଖନ୍ତି
ଅନାଥର ନାଥ ସେହି କମଳାର ପତି ।
ତାହାଙ୍କ ପ୍ରୀତି ନିମନ୍ତେ କରୁ ଯାଗ ଯଜ୍ଞ
ମୋହର ଭାଗ୍ୟରେ କାହିଁ ଏମନ୍ତ ସୁଯୋଗ ।
ଗୋବିନ୍ଦଙ୍କ ଅଶ୍ୱ ଯେବେ ପାଇଥାନ୍ତି ବନେ
ଶରଣ ପଶନ୍ତି ଦେଇ କମଳ ଚରଣେ ।
ନ ବୁଝି ନ ଶୁଝି ହରି କରିଛନ୍ତି ରୋଷ
ଜାଣିଲି ହେ ଅନାଧୃଷ୍ଟ ଏ ମୋ କର୍ମ ଦୋଷ ।
ଯାଅ ଯାଅ ଅନାଧୃଷ୍ଟ ବିଳମ୍ବ ନ କର
କହିବ ତାଙ୍କୁ ମୋହର କୋଟି ନମସ୍କାର ।
ବୁଝାଇ କହି କରିବ ତାଙ୍କ କୋପ ଶାନ୍ତି
ତାହାଙ୍କ ଘୋଟକୀ ପାଇ ମୁହିଁ କି ରଖନ୍ତି ।
ଜାଣୁଜାଣୁ ବିଷପାନ କରନ୍ତି କେମନ୍ତେ
ଆପଣାର ଶିର କି ମୁଁ କାଟନ୍ତି ସ୍ୱହସ୍ତେ ।

ରାଜାର ମୁଖୁଁ ଏମନ୍ତ ଅନାଧୃଷ୍ଟ ଶୁଣି
ବାହୁଡ଼ି ଦ୍ୱାରକା ପୁରେ ଭେଟି ଚକ୍ରପାଣି ।
ରାଜାର କଥା ସକଳ କହିଲା ବୁଝାଇ
କୋପ ଭରରେ କହିଲେ ପୁଣି ଯଦୁସାଇଁ ।
ଆହେ ଅନାଧୃଷ୍ଟ ତୁହି ପୁଣି ଯାଅ ଥରେ
ମୃଗୟା ନିମନ୍ତେ ଯାଇଁ ପଶି ବନସ୍ତରେ ।
ଘୋଡ଼ୀ ଏକ ପାଇ ଆଣି ଘରେରଖି ନାହିଁ
ମୋହର ହଜିଲା ଘୋଡ଼ି ହୁଅନ୍ତା କିପାଇଁ ।
ନାରଦଙ୍କୁ ମିଛୁଆ ତୁ କରୁଅଛୁ ପୁଣି
ବ୍ରହ୍ମାଙ୍କ ନନ୍ଦନ ଯେହୁ ତପୀ ଚୂଡ଼ାମଣି ।
ତାହାଙ୍କ କଥା କି ମିଛ ହେବ କିରେ ମୂଢ଼
ପ୍ରାଣେ ଆଶାଥିଲେ ସେହି ଘୋଡ଼ୀ ଆଶା ଛାଡ଼ ।
ସେହି ସୁଲକ୍ଷଣୀ ଘୋଡ଼ୀ ନ ଦେବୁ ତୁ ଯେବେ
ବେଗେ ସଜ ହୋଇ ଯୁଦ୍ଧକର ଆସି ତେବେ ।
ଶ୍ରୀମୁଖରୁ ଆଜ୍ଞା ପାଇ ଅନାଧୃଷ୍ଟ ଗଲା
ଦଣ୍ଡୀ ରାଜାର ଛାମୁରେ ବୁଝାଇ କହିଲା ।
କୋପେ ନୃପତି କହିଲା ନୁହଇ ମୁଁ ଦୁଷ୍ଟ
ତାଙ୍କ ବୃତ୍ତିବାଡ଼ି ଆଣି ନାହିଁ ଅନାଧୃଷ୍ଟ ।
ମୁଁ ଯେବେ ପାଇଲି ଘୋଡ଼ୀ ରାଜ୍ୟର ମୋହର
ତାଠାରେ ବଡ଼ ଶରଧା ବଳିଛି ଆବର ।
ଦେବି ନାହିଁ ଯାଉ ପଛେ ତାହାପାଇଁ ପ୍ରାଣ
ନିଅନ୍ତୁ ପଛେ ମୋ ରାଜ୍ୟ ଧନ୍ୟ ନାରାୟଣ ।
ଜାଣିଲି କଳିର ମଞ୍ଜି ମୁନି ଯେ ନାରଦ
ଅଦୋଷେ ଯେବେ ଶ୍ରୀକୃଷ୍ଣ କରିବେ ବିବାଦ ।
କ୍ଷତ୍ରି ବୃତ୍ତି କରି ପଛେ ଦେବଇଁ ପରାଣ
ଘୋଟକୀ ନ ଦେବି କେବେ ଏ ସତ୍ୟ ପ୍ରମାଣ ।
ଯାଅ ଅନାଧୃଷ୍ଟ କହ ଶ୍ରୀହରି ଛାମୁରେ
ସ୍ୱାମୀ ଯେବେ ଭାର୍ଯ୍ୟାଠାରେ ଅନୀତି ଆଚରେ ।
ରାଜା ଯେବେ ପ୍ରଜାଠାରେ ଅନ୍ୟାୟ କରଇ
ପୁତ୍ରର ଆର୍ଦ୍ଦୋଳି କେବେ ପିତା ନ ସହଇ ।
ବିନା ଦୋଷେ ପ୍ରଭୁ ଯେବେ ଭୃତ୍ୟକୁ ଦଣ୍ଡିବ
ଏ ଅଧର୍ମେ ପୃଥ୍ୱୀ ନିଶ୍ଚେ ପାତାଳକୁ ଯିବ ।
ବଳବନ୍ତ ପଣେ ଯେବେ ନେବ ସେ ଛଡ଼ାଇ
କି କରିବି କପାଳକୁ ଆଦରିବି ମୁହିଁ ।
ରାଜାର ନିଷ୍ଠୁର ବାଣୀ ଶୁଣି ଅନାଧୃଷ୍ଟ
ବୋଇଲା ଜାଣିଲି ତୋର ମରଣ ନିକଟ ।
ଫେରି ଯାଉଅଛି ଏବେ ନାହିଁ ମୋର ଦୋଷ
ସମ୍ଭାଳ ଏବେ ହୋ ରାଜା ଏ ତୋହର ଦେଶ ।
ଏହା କହି ଅନାଧୃଷ୍ଟ ବାହୁଡ଼ି ଅଇଲା
ଶ୍ରୀହରି ଛାମୁରେ ସବୁ ବୁଝାଇ କହିଲା ।
ଦ୍ୱିଜ ଗୋପୀନାଥ ବୋଲେ ବୋଲ ହରିହରି
ହରିନାମ ଆଶ୍ରେ କଲେ ଭବୁ ଯିବ ତରି ।

....✤.....

## ରାଜାପ୍ରତି ରାଣୀର ହିତ ଉପଦେଶ

ଶୁକ କହେ ପରୀକ୍ଷିତ ଶୁଣ ଦେଇ ମନ
ଅନାଧୃଷ୍ଟ ଗଲା ତହୁଁ ଦ୍ୱାରକା ଭୁବନ ।
ଦୁଃଖିତ ମନେ ପଶିଲା ଅନ୍ତପୁରେ ରାୟେ
ମହାଦେଈ ପ୍ରଭାବତୀ ପଲଙ୍କେ ବିଜୟେ ।
ନୃପତିର ଆଗମନ ଜାଣି ମହାସତୀ
ପଲଙ୍କ ତେଜିଣ ଉଭା ହୋଇଲା ତଡ଼ତି ।
ସୁବାସ ନୀରେ ଚରଣ ପଖାଳି ପିଇଲା
ତାମ୍ବୁଳ ବଟିକା ଦେଇ ଚାମର ଢାଳିଲା ।
ସୁସ୍ଥ ହୋଇ ପଲଙ୍କରେ ବସିଲା ରାଜନ
ଅତି ଦୀର୍ଘରେ ନିଃଶ୍ୱାସ ଛାଡ଼େ ଘନ ଘନ ।
କରଯୋଡ଼ି ବିନୟରେ ପଚାରଇ ରାଣୀ ।
ଆହେ ନାଥ ମୁଖରୁ ତ ନ ସ୍ଫୁରଇ ବାଣୀ ।
ଶୁଖିଲା ଦିଶୁଛି କିମ୍ପା ବଦନ ମଣ୍ଡଳ
କପାଳରେ କଣ୍ଟିଅଛି ବିନ୍ଦୁ ବିନ୍ଦୁ ଝାଳ ।
ଘନ ଘନ ବହୁଅଛି ନିଃଶ୍ୱାସ ପବନ
ମନ ଚଞ୍ଚଳ କିପାଇଁ ହୁଏ ଛନ୍ନ ଛନ୍ନ ।
ଏଥିର କାରଣ ସ୍ୱାମୀ କହୁକିନା ମୋତେ
ଦେଖିଲା ବେଳୁତ ଭୟ ଜାତ ମୋରଚିତ୍ତେ ।
ମହାଦେଈଙ୍କ ବଚନେ କହଇ ନୃପତି
ବିଧି ମୋତେ ବାମ ହେଲା କି କହିବି ସତୀ
ବ୍ରହ୍ମାଣ୍ଡ ଠାକୁର ହରି କରନ୍ତି ଅନୀତି
ଦୁଇଥର ଅଇଲାଣି ଦୂତ ମୋର କତି ।
ମୃଗୟାକୁ ଯାଇଥିଲି ଯେ ଦିନ ସଙ୍ଗାତ
ଜୀବଜନ୍ତୁ ନ ପାଇ ମୁଁ ହୋଇଲି ଚିନ୍ତିତ ।
ଘୋର ବନସ୍ତେ ଦେଖିଲି ଘୋଟକୀ ଗୋଟିଏ
ପୋଖରୀ ଜଳଘାଟରେ ରହି ପାଣି ପିଏ ।
ନିବନ୍ଧ କରି ଘେରାଇ ଦେଲି ମୁଁ ସଇନି
ଅଟଇ ସେ ଗୁଣବତୀ ଅତି ସୁଲକ୍ଷଣୀ ।

ଆମ୍ଭ ସମସ୍ତଙ୍କୁଏଡ଼ିଗଲା ସେ ଛଟକେ
ପଛଧରି ଗୋଡ଼ାଇ ମୁଁ ଗଲି ବାଟ ଥୋକେ ।
ବଡ଼ କଷ୍ଟ ପାଇ ସେହି ଘୋଡ଼ୀକି ଧଇଲି
ତାହାର ପିଠିରେ ବସି ପୁରକୁ ଅଇଲି ।
କ୍ଷଣକେ ଚାରିଦିନର ବାଟ ସେ ଅଇଲା
ଗୁଣ ଦେଖିଣ ମୋହର ଲୋଭ ଯେ ବଳିଲା ।
ଯତନ କରି ଥୋଇଛି ପୁରମଧ୍ୟେ ମୁହିଁ
ଆଜିଯାଏ ନ ଜାଣନ୍ତି ପୁର ମଧ୍ୟେ କେହି ।
ଯୋଗବଳେ ମହାମୁନି ନାରଦ ତା ଜାଣି
ଦ୍ୱାରକାରେ ଶ୍ରୀହରିଙ୍କ ଆଗରେ ବଖାଣି ।
ଘୋଡ଼ୀକିନେବାକୁ ଦୂତ ପଠାନ୍ତି ଗୋବିନ୍ଦ
ଘୋଡ଼ୀ ନ ଦେଲେ ମୋ ସଙ୍ଗେ କରିବେ ସେ ଦ୍ୱନ୍ଦ୍ୱ
ନ ଦେବି ବୋଲି ପ୍ରତିଜ୍ଞା କଲି ଦୂତ ଆଗେ
ଥାଟ ଘେନିଣ ଆସିବେ ନିଶ୍ଚେ କୃଷ୍ଣ ରାଗେ ।
କି ବୁଦ୍ଧି କରିବି ମୋତେ ବୁଦ୍ଧି ଦିଶୁନାହିଁ
ତେଣୁ ଭୟେ ଛନ୍ନ ଛନ୍ନ ହେଉଅଛି ମୁହିଁ ।
ଏମନ୍ତ ଶୁଣି ବିନୟେ କହେ ମହାଦେଈ
ଶ୍ରୀହରି ସଙ୍ଗେ ବିବାଦୀ ହୋଇବା କିମ୍ପାଇଁ ।
ପରମପୁରୁଷ ସେହି ଶଙ୍ଖ ଚକ୍ରଧାରୀ
କୋଟି କୋଟି ବ୍ରହ୍ମାଣ୍ଡ ଯା ରୋମ ମୂଳେ ପୂରି ।
ଦୁଷ୍ଟ ନିବାରିବା ପାଇଁ ଜନମ ତାହାର
ବିବାଦୀ କଲେ ଅଧର୍ମ ହୋଇବ ଆମ୍ଭର ।
ଛାର ଘୋଡ଼ୀପାଇଁ କିମ୍ପା ସମ୍ପଦ ସାରିବା
ଘୋଟକୀ ଦେଇ ଗୋବିନ୍ଦେ ଶରଣ ପଶିବା ।
ବିଷ୍ଣୁଙ୍କୁ ସନ୍ତୋଷ କଲେ ପାଇବା ସୁଗତି
ବୁଦ୍ଧିମନ୍ତ ଏ ସୁଯୋଗ ପାଇ କି ଛାଡ଼ନ୍ତି ।
ବିଷ୍ଣୁର ପ୍ରୀତି ନିମନ୍ତେ ସିନା ନାନା ଧର୍ମ
ଯାଗଯଜ୍ଞ ଦେବ ପୂଜା ଆଦି ପୁଣ୍ୟ କର୍ମ ।
ବିଷ୍ଣୁ ଯେବେ ତୋଷହେବେ ଘୋଡ଼ୀଟା ଏ ପାଇଁ
ଏଥିରୁ ଆନନ୍ଦ କଥା ଆଉ କି ଅଛଇ ।
ରାଣୀର ମୁଖୁଁ ଏମନ୍ତ ଶୁଣିଣ ରାଜନ
ବୋଇଲା ଯାହା କହିଲୁ ସତ ସେ ବଚନ ।
କ୍ଷତ୍ରିର ପ୍ରତିଜ୍ଞା ଲୁହାଠାରୁ ଗରୁ ଟାଣ
ପ୍ରତିଜ୍ଞା ହୀନ କ୍ଷତ୍ରୀର ଜୀବ ଅକାରଣ ।
ଯେବଣ କ୍ଷତ୍ରୀ ପ୍ରତିଜ୍ଞା କରି ତା ଲଙ୍ଘଇ
ଇହଲୋକେ ଲୋକମୁଖେ ଅପଯଶ ପାଇ ।
ମଲେ ନରକରେ ପଡ଼ି ପଚେ ତା ଶରୀର
କ୍ଷତ୍ରିର ଧର୍ମ ଏମନ୍ତ କରିବ ସମର ।
ପାରୁ ବା ନ ପାରୁ ବୀରଟାଣ ନ ଛାଡ଼ିବ
ପ୍ରାଣ ପଣେ ଆପଣାର ପ୍ରତିଜ୍ଞା ରଖିବ ।
ନ ଦେବି ବୋଲି ପ୍ରତିଜ୍ଞା କରି ଦୂତ ଆଗେ
ଲଙ୍ଘିଲେ ଏକଥା ଗୋଟା ଥିବ ଯୁଗେ ଯୁଗେ ।
ପୂର୍ବେ ଯେ ରାବଣ ନାମେ ଲଙ୍କା ଅଧିକାରୀ
ଦଣ୍ଡକାରଣ୍ୟରୁ ନେଲା ସୀତା ଚୋରିକରି ।
ଦୂତହସ୍ତେ ରାମସୀତା ମାଗି ପଠାଇଲେ
ଅଙ୍ଗଦ ଯେତେ ପ୍ରକାରେ ବୁଝାଇ କହିଲେ ।
ନ ଦେବି ବୋଲି ପ୍ରତିଜ୍ଞା କଲାକ ରାବଣ
ତାର ସାନ ଭାଇ ନାମ ଅଟେ ବିଭୀଷଣ ।
ସେ ଯେତେ ପ୍ରକାରେତାକୁ ବୁଝାଇ କହିଲା
ରାବଣ ମାତା ନିକଷା ଆସି ବୁଝାଇଲା ।
ରାଣୀ ମନ୍ଦୋଦରୀ ତାର ବୁଝାଇଲା ଯେତେ
ସୀତା ଫେରାଇ ନ ଦେଲା ସେହି କଦାଚିତେ ।
ପ୍ରତିଜ୍ଞା ରଖି ସମୂଳେ କଲା ପୁଣି ନାଶ
ଧର୍ମ ଥିବାରୁ ମିଳିଲା ବଇକୁଣ୍ଠ ବାସ ।
ପୂର୍ବେ ଏକ ଦୈତ୍ୟଥିଲା ନାମ ତାର ବଳୀ
ବାମନ ରୂପେ ଶ୍ରୀହରି ତାର ଯଜ୍ଞେ ମିଳି ।
ପ୍ରତିଜ୍ଞା କଲା ଦେବଇ ନିଶ୍ଚେ ତୋତେ ଦାନ
ତାହାର ମନ୍ତ୍ରୀ ଯେ ଶୁକ୍ର ଭୃଗୁର ନନ୍ଦନ ।
ସେ ଯେତେ ବାରଣ କଲା ନ ମାନିଲା ତାହା
ପ୍ରତିଜ୍ଞା ରଖି ପାତାଳେ ଗଲା ଦୈତ୍ୟନାହା ।
ବୈକୁଣ୍ଠଠାରୁ ଅଧିକ ପାଇଲା ସେ ପୁର
ଦ୍ୱାରେ ତାର ଦ୍ୱାରିପଣେ ଖଟନ୍ତି ଶ୍ରୀଧର ।
ଶୁଣି ରାଣୀର ଶରୀରୁ ସାହା ଗଲା ଉଡ଼ି
ଆହେ ପ୍ରାଣନାଥ ବୋଲି ହୁଏ ମୁଣ୍ଡକୋଡ଼ି ।
ମୁହିଁ ତ ଅବଳା ପୁଣି ଅଳପ ବୟସୀ
ରାଜଜେମା ହୋଇ ପିତାଘରେ ଥିଲି ବସି ।
ଅଳିଅଳ ପଣେ ଅତି ଗେହ୍ଲାରେ ବଢ଼ିଲି
ଭାଗ୍ୟବଳେ ନାଥ ତୁମ୍ଭ ହାତ ମୁଁ ଧଇଲି ।
ତହୁଁ ଅଧିକ ଗେହ୍ଲାରେ ବଢ଼ିଲି ହେ କାନ୍ତ
ତୁମ୍ଭ ବିହୁନେ ଏକାଳେ ହୋଇବି ଅନାଥ ।
ସୁଦର୍ଶନ ଚକ୍ର ଯାର ଶୂନ୍ୟରେ ବୁଲଇ
ବିଷ୍ଣୁ ଦୋହୋକୁ ପାଖେ ନ ଦେବ ବସାଇ ।

ଛାଡ଼ ଛାଡ଼ ନାଥ ଏବେ ଏହି ବୁଦ୍ଧିଗୋଟା
ଆଶ୍ରୟ ବିହୁନେ ଯେହ୍ନେ ଖସିପଡ଼େ ଲଟା ।
ତେସନ ପଡ଼ି ଭୂମିରେ କାନ୍ଦଇ ତରୁଣୀ
ଆହେ ନାଥ ଧରୁଅଛି ମୁଁ ତୁମ୍ଭର ପାଣି ।
ଏକଇବାଳା ଷୋଡ଼ଶ ବୟସ ତାହାର
ତାଠାରେ ନାହିଁ ଶରଧା ତିଳେ କି ତୁମ୍ଭର ।
ରାଣୀକି କୋଳେ ବସାଇ ବୁଝାଇଲା ରାୟେ
ଗୋପୀନାଥ ମନ ରହୁ ଦଶଭୁଜା ପାୟେ ।

....❋.....

## ସାବିତ୍ରୀ ଉପାଖ୍ୟାନ

ଏଥୁଅନ୍ତେ ଶୁଣ ତୁ ହୋ ଅର୍ଜ୍ଜୁନର ନାତି
ପ୍ରଭାବତୀକି ବୁଝାଇ କହଇ ନୃପତି ।
ଧର୍ମପତ୍ନୀ ଅର୍ଦ୍ଧ ଅଙ୍ଗ ଅଟୁ ତୁ ମୋହର
ସ୍ୱଧର୍ମରେ ବାଧା କିମ୍ପା ଦେଉ ରାମାବର ।
ସତ୍ୟଯୁଗର ଗୋ କଥା କହୁଅଛି ତୋତେ
ପୁରାଣମାନଙ୍କରେ ମୁଁ ଶୁଣିଛି ଯେମନ୍ତେ ।
ମଧ୍ୟଦେଶେ ନନ୍ଦିଗ୍ରାମେ ଥିଲା ଏକ ଦ୍ୱିଜ
ପରମ ପଣ୍ଡିତ ସେହି କରେ ଧର୍ମକାର୍ଯ୍ୟ ।
ତ୍ରିକାଳ ସନ୍ଧ୍ୟାରେ ସ୍ନାନ ହୋମ କରେ ନିତି
ଭୋକୀ ଶୋଷୀ ତା ଗୃହରୁ ଦିନେ ନ ଫେରନ୍ତି ।
ଦରିଦ୍ରଙ୍କୁ ଧନବସ୍ତ୍ର ଦିଅଇ ସେ ଡାକି
ତା ଦୁଆରୁ ନ ଫେରନ୍ତି ଦିନେ ଦୁଃଖୀରଙ୍କି ।
ଅତିଥି ସେବା ନ କରି ନ ବସେ ଭୋଜନେ
ଭକତି ତାହାର ଥାଇ ଶ୍ରୀବିଷ୍ଣୁ ଚରଣେ ।
ତାହାର ଭାରିଯା ନାମ ସାବିତ୍ରୀ ସୁନ୍ଦରୀ
ସୁଲକ୍ଷଣୀ ରୂପବତୀ ଅତି ସୁକୁମାରୀ ।
ସତୀଙ୍କ ମଧ୍ୟରେ ସେହି ଗଣନା ହୁଅଇ
ଭକତି ତାର କେବଣ ପତିପାଦେ ଥାଇ ।
ପତିସେବା ବିନୁ ବାଳୀ ନ ଜାଣଇ ଆନ
ବ୍ରତ ଉପବାସ ଦାନ ଧ୍ୟାନ ତୀର୍ଥ ସ୍ନାନ ।
ପତିର ପାଦକୁ ବାଳୀ ବିଷ୍ଣୁ ତୁଲ୍ୟ ମଣି
ସ୍ୱାମୀ ଯାହା କହଇ ତା କରଇ ସେକ୍ଷଣି ।
ଦାସୀପ୍ରାୟ ଖଟିଥାଇ ସ୍ୱାମୀର ଚରଣେ
ରହସ୍ୟକଥା ଆବର ଶୁଣ ସାବଧାନେ ।
ଦିନେ ଯେ ଦୁର୍ବାସା ଋଷି ଘୋରବନେ ପଶି
ଭ୍ରମି ଭ୍ରମି ବିପ୍ରଦ୍ୱାରେ ମିଳିଲେକ ଆସି ।
ପଥଶ୍ରାନ୍ତ ହୋଇ ଋଷି କ୍ଷୁଧାରେ ଆତୁର
ଯୋଗବଳେ ଜାଣିଲେ ଏ ବ୍ରାହ୍ମଣର ଘର ।
ମନେ ବିଚାରିଲେ ଆଜି ଅତିଥି ହୋଇବା
ଭୋକ କଲାଣି ତ ଆଉ ଯାଇ ନ ପାରିବା ।
ଏମନ୍ତ ଭାବି ଦୁଆରେ ମିଳିଲେକ ଋଷି
ଅଗ୍ନିହୋତ୍ର ଘରେ ବିପ୍ର ହୋମ କରି ବସି ।
ସାବିତ୍ରୀ ପଦାର୍ଥମାନ ଯୋଗାଇ ଦିଅଇ
ମହାଋଷି ରହିଛନ୍ତି ଦ୍ୱାରେ ଉଭାହୋଇ ।
ପାଦ ଚାଳନରୁ ଜାଣିପାରି ଦ୍ୱିଜବର
ଭାରିଯାକୁ କହିଲା ତୁ ଦେଖ ଯା ଦୁଆର ।
ଅତିଥି ଆସିଲା ପ୍ରାୟ ଜଣାଯାଏ ମୋତେ
ବସାଇବ ତାଙ୍କୁ ହୋମ ଶେଷ ପରିଯନ୍ତେ ।
ସେଠାରୁ ତୁରିତେ ଗଲା ସାବିତ୍ରୀ ସୁନ୍ଦରୀ
ଦେଖି ଦୁଆରରେ ଉଭା ଏକ ତପଚାରୀ ।
ଛାଲ ଖଣ୍ଡିଏ ପିଣ୍ଡାରେ ଦେଇ ତରବରେ
ଜଳଘଟ ଘରୁ ଆଣି ରଖିଲା ଆଗରେ ।
ବୋଇଲା ହେ ପାଦ ଧୋଇ ବସ ଏ ଆସନେ
ସ୍ୱାମୀ ହୋମ କରୁଛନ୍ତି ବସି ହୋମ ସ୍ଥାନେ ।
ପୂଜା ବୈଶ୍ୱଦେବ ସାରି ଆସିବେ ବହନ ।
କ୍ରୋଧେ ଦୁର୍ବାସା ହେଲେଣି ଅନଳ ସମାନ ।
କ୍ଷୁଧାରେ ଏଣେ ବ୍ୟାକୁଳ ଶରୀର ତାଙ୍କର
ଅଧିକକୋପ ଯୋଗରୁ କମ୍ପଇ ଅଧର ।
ମନେ ମନେ ମହାମୁନି କରନ୍ତି ଭାଳେଣି
ସାମାନ୍ୟ ବିପ୍ର ପରାୟେ ଆମ୍ଭଙ୍କୁ ଏ ମଣି ।
ଆମ୍ଭର ପାଦ ନ ଧୋଇ ଘଟ ଦେଲା ଥୋଇ
ଆବର ଗର୍ବେ ସ୍ୱାମୀର ବଡ଼ାଇ କହଇ ।
ଭାଳୁ ଭାଳୁ ମୁନି କୋପେ ଉଛୁଳି ପଡ଼ିଲା
ତକ୍ଷଣେ ପୁରୁଷ ଏକ ତହୁଁ ଉପୁଜିଲା ।
ମହାଭୟଙ୍କର ରୂପ ବିକଟ ବଦନ
ଜିଭ ଲହ ଲହ କରି ମାଗଇ ଭୋଜନ ।
ଋଷି ସେ କୋପ ପୁରୁଷ ମୁଖକୁ ଅନାଇ
ବୋଇଲେ ଯେବଣ ବିପ୍ର ଏ ଘରେ ଅଛଇ ।
ତାହାକୁ ଆଦର କରି ସନ୍ତୋଷ ଉଦର
ମୁନିଠାରୁ ଆଜ୍ଞାପାଇ ସେ ପୁରୁଷବର ।
ଆଖି କଟମଟ ଦନ୍ତ କଡ଼ମଡ଼ କରି
ବଳାତ୍କାରେ ପଶନ୍ତେ ସେ ବଦନ ବିସ୍ତାରି ।

ଦେଖି ସାବିତ୍ରୀ ସତୀର ଉଡ଼ିଗଲା ସାହା
ବୋଇଲା ରଖହେ ଆସି ପ୍ରଭୁ ଚଉବାହା ।
ମୁହିଁ ଯେବେ ସତୀ ମୋର ସ୍ୱାମୀ ରହୁ ପ୍ରାଣେ
ବିନାଦୋଷେ ଋଷି କୋପକରି ଏ ବ୍ରାହ୍ମଣେ ।
କୋପ ପୁରୁଷ ପଠାଏ ଖାଇବା ନିମନ୍ତେ
ହେ ଜଗତନାଥ ସାହା ହୁଅ ଆସି ଏଥେ ।
ଏ କୋପ ପୁରୁଷ ପଶି ନ'ପାରୁ ମୋ ଘରେ
ଏ ଦୁଷ୍ଟ ଋଷିକି ଭରୁ ଏହାର ଉଦରେ ।
ଏମନ୍ତ ଯହୁଁ କହିଲା ସେହି ମହାସତୀ
ଚକ୍ରକୁ ଉହାଡ଼ି ଦେଲେ ଆଣି ଶିରୀପତି ।
ଘୋର ସୁଦର୍ଶନ ଚକ୍ର ଭ୍ରମେ ଚଉପାଶେ
ଭୟେ ପଶି ନ ପାରିଲା ସେ କୋପ ପୁରୁଷେ ।
ଦୁଆର ମୁହଁରେ ଅଛି ସାବିତ୍ରୀ ସୁନ୍ଦରୀ
ତାହାର ତେଜ ଅନଳଠାରୁ ବଳି କରି ।
ସେ କୋପ ପୁରୁଷ ଘର ଚାରିପାଖ ବୁଲି
ବାଟ ନ ପାଇ ଦୁଆର ମୁହେଁ ପଶେ ପେଲି ।
ସାବିତ୍ରୀର ତେଜ ସହି ନ ପାରି ଫେରିଲା
ଆଁ କରି ଦୁର୍ବାସାଙ୍କୁ ଖାଇ ଗୋଡ଼ାଇଲା ।
ପଳାଇଲେ ମୁନିବର ଗଗନ ମାର୍ଗରେ
କୋପ ପୁରୁଷ ଧାଇଁଛି ତାହାଙ୍କ ପଛରେ ।
କଇଳାସ ପୁରେ ମୁନି ହୋଇଲେ ପ୍ରବେଶ
ଉଚ୍ଚରେ ଡାକ ଛାଡ଼ନ୍ତି ରଖ ହେ ମହେଶ ।
ମୁହିଁତ ଦୁର୍ବାସା ମୁନି ରଖ ରଖ ହର
ଯୋଗେଶ୍ୱର ପୁରୁଷ ତୁ ମୋର ଭୟ ହର ।
କାତର ବାଣୀ ଶୁଣିଣ ସେ ଚନ୍ଦ୍ର ମଉଳି
ପୁରରୁ ବାହାରି ଆସି ମୁନି ପାଖେ ମିଳି ।
ଦେଖିଲେ ପଛେ ଗୋଡ଼ାଇ ଅଛଇ ରାକ୍ଷସ
ଡରିଲେ ତାହାର ରୂପ ଦେଖିଣ ମହେଶ ।
ବୋଇଲେ ହେ ମୁନିତୁହି ବେଗେ ଏଥୁ ପଳା
ଏ ବ୍ରହ୍ମ ରାକ୍ଷସ ଗୋଟା ତେଜେ ଅନର୍ଗଳା ।
ଆମ୍ଭେ ରଖି ନ ପାରିବୁ ତୋତେ ମୁନିବର
ଶିବଙ୍କ ମୁଖୁ ଦୁର୍ବାସା ପାଇଣ ଉତ୍ତର ।
ଭୟେ ପଳାଇ ପଶିଲେ ସ୍ୱର୍ଗପୁରେ ଯାଇଁ
ସୁଧର୍ମା ସଭାରେ ଅଛି ଦେବ ଶଚୀସାଇଁ ।
ବ୍ରହ୍ମା ଆଦି ଦେବତାଏ ବସିଛନ୍ତି ତହିଁ
ଦୁର୍ବାସା ମୁନିବର ଯେ ଆସୁଅଛି ଧାଇଁ ।
କେଶବାସ ଅସମ୍ଭାଳ ରଖ ରଖ ଧ୍ୱନି
ସୁଧର୍ମା ସଭା ମଧ୍ୟରେ ବିଜେ ମହାମୁନି ।
ବୋଇଲା ହେ ବ୍ରହ୍ମା ଇନ୍ଦ୍ର ଆଦି ଦେବଗଣ
ରକ୍ଷାକର ରକ୍ଷାକର ପଶିଲି ଶରଣ ।
ପଛରେ ଏ ଗୋଡ଼ାଇଛି ଖାଇବା ନିମନ୍ତେ
କଇଳାସେ ଶିବ ରଖି ନ ପାରିଲେ ମୋତେ ।
ଏମନ୍ତେ ମୁନିର ଶୁଣି କାତର ବଚନ
ମୁନିଙ୍କୁ ଚାହିଁ ବୋଇଲେ ସହସ୍ର ଲୋଚନ ।
ଆମ୍ଭେ ରଖି ନପାରିବୁତୋତେ ଆହେ ମୁନି
ଏ ବ୍ରହ୍ମରାକ୍ଷସ ତେଜ ସାକ୍ଷାତେ କି ବହ୍ନି ।
ଏହିକ୍ଷଣି ଏ ସୁଧର୍ମା ସଭା ଯିବ ଜଳି
ଯାହା ସହି ନ ପାରଇ ମୁନି ତୁମ୍ଭ ଭଳି ।
ଇନ୍ଦ୍ରର ମୁଖୁଁ ଏମନ୍ତ ଶୁଣି ମୁନିବର
ବୋଇଲେ ଯେ ବୁଦ୍ଧି ଦିଅମୋତେ ବେଦବର ।
ବ୍ରହ୍ମାଏ ବୋଇଲେ ବେଗେ ଏଥୁ ପଳା ମୁନି
ବୈକୁଣ୍ଠପୁରେ ଅଛନ୍ତି ପ୍ରଭୁ ଚକ୍ରପାଣି ।
ତାଙ୍କ ବିନା ତୋତେ କେହି ନ ପାରିବେ ରଖି
ଏମନ୍ତ ଶୁଣି ଦୁର୍ବାସା ହୋଇ ଅତି ଦୁଃଖୀ ।
ସୁଧର୍ମା ସଭାରୁ ଶୂନ୍ୟେ ଶୂନ୍ୟେ ପଳାଇଲା
ବଇକୁଣ୍ଠପୁରେ ପଶି ଉଚ୍ଚେ ଡାକଦେଲା ।
ରଖ ରଖ ନାରାୟଣ ମୁଁ ତୋର ଶରଣ
ଏକ୍ଷଣି ବ୍ରହ୍ମରାକ୍ଷସ କରିବ ଭକ୍ଷଣ ।
ତ୍ରାହି ତ୍ରାହି ଜନାର୍ଦ୍ଦନ ତ୍ରାହି ଭାବଗ୍ରାହୀ
ମୋହର ନାମ ଦୁର୍ବାସା ମୁନିବର ମୁହିଁ ।
ରଖ ରଖ ଚକ୍ରଧର ଚକ୍ରବର ପେଷି
ତ୍ରିଇଲୋକ୍ୟ ଠାକୁର ତୁ ବଇକୁଣ୍ଠ ବାସୀ ।
ଏମନ୍ତେ କାତର ବାଣୀ ଶୁଣି ପୀତବାସ
ନିଦ ଭାଙ୍ଗିଗଲା ବସି ଭାଙ୍ଗିଲେ ଅଳସ ।
ଦେଖିଲେ ଦୁର୍ବାସା ମୁନି ଛାଡ଼ଇ ବୋବାଳି
ଫିଟିଯିବା କେଶବାସ ନ ପାରେ ସମ୍ଭାଳି ।
ଶ୍ରୀହରି ବୋଇଲେ ମୁନି ଥୟ ହୋଇ କହ
ଋଷି ବୋଇଲେ ଭୟରୁ ଅଥୟ ମୋ ଦେହ ।
ଦେଖ ପଛରେ ଗୋଡ଼ାଇ ଅଛଇ ପୁରୁଷ
ଚୋବାଇ ଖାଇବ ଧରି ମୋର ହାଡ଼ ମାଂସ ।
ଶ୍ରୀହରି ବୋଇଲେ ମୁନି କାହୁଁ ଏ ଅଇଲା
ଦୁର୍ବାସା ବୋଇଲେ ମୋର କୋପୁ ଉପୁଜିଲା ।

ଶ୍ରୀହରି ବୋଇଲେ କୋପ କି ନିମନ୍ତେ ତୋର
ଦୁର୍ବାସା ବୋଇଲେ ମୁହିଁ ହୋଇ କ୍ଷୁଧାତୁର ।
ସାବିତ୍ରୀ ବ୍ରାହ୍ମଣୀ ଦ୍ୱାରେ ଅତିଥି ହୋଇଲି
ନ କହି କିଛି ତାହାର ଦୁଆରେ ରହିଲି ।
ପାଣି ଢାଳେ ଘେନି ଘରୁ ସାବିତ୍ରୀ ଅଇଲା
ମୋ ପାଦ ଧୋଇ ନ ଦେଇ ତଳେତା ଥୋଇଲା ।
ଆସନ ଖଣ୍ଡିଏ ଦେଇ ବୋଇଲା ହୋ ବସ
ସ୍ୱାମୀହୋମ କରୁଛନ୍ତି ହେଲେ ତାହା ଶେଷ ।
ତୁମ୍ଭର ସେବା କରିବେ ବିଷ୍ଣୁ ପୂଜା ସାରି
ଅନାଦର ପାଇ କୋପ ବଢ଼ିଲା ଆମ୍ଭରି ।
ଭାବିଲୁଁ ସାମାନ୍ୟ ବିପ୍ର ପ୍ରାୟ ଏ ମଣିଲା
ଅହଙ୍କାରେ ସ୍ୱାମୀର ଏ ବଡ଼ାଇ କହିଲା ।
ଏଣୁ ଆମ୍ଭ କୋପୁ ଜାତ ହୋଇଲା ପୁରୁଷ
ଆମ୍ଭେ ବୋଇଲୁ ବିପ୍ରକୁ କର ଯାଇଁ ଗ୍ରାସ ।
ଘରେ ପଶି ନ ପାରି ସେ ଗୋଡ଼ାଇଛି ମୋତେ
ଶ୍ରୀହରି ବୋଇଲେ ରଖି ନ ପାରିବୁ ତୋତେ ।
ଅବିଚାରେ ଅକାରଣେ କରିଛୁ ତୁ କୋପ
ତହିଁ ଉପୁଜିଛି ଏହି ଭୟଙ୍କର ରୂପ ।
ସେ ମହା ସତୀର ତ୍ରାସେ ନ ପାରିଲା ପଶି
ଜାଣିଲା ଏ ମହାମୁନି ଅଟେ ବଡ଼ ଦୋଷୀ ।
ତେଣୁ ଗୋଡ଼ାଇଛି ତୋତେ ଖାଇବା ନିମନ୍ତେ
ତୁ ମୁନି ଏଥୁ ପଳାଇ ଯାଅ ହେ ତୁରିତେ ।
ସାବିତ୍ରୀ ସତୀର ପାଦେ ପଶ ଯା ଶରଣ
ତୋତେ କରି ନ ପାରିବ ଏ କେବେ ଭକ୍ଷଣ ।
ବିଷ୍ଣୁର ନିଷ୍ଠୁର ବାଣୀ ଶୁଣି ମୁନିବର
ବୈକୁଣ୍ଠ ଛାଡ଼ି ପଳାଇ ଅଇଲା ସତ୍ୱର ।
ନନ୍ଦୀଗ୍ରାମରେ ମିଳିଲା ସାବିତ୍ରୀର ପାଶେ
ଶରଣ ପଶିଲି ବ୍ରହ୍ମ ରାକ୍ଷସର ତ୍ରାସେ ।
ସୁଦୟା କରି ସାବିତ୍ରୀ ରଖିଲେ ପାଖରେ
ବ୍ରହ୍ମରାକ୍ଷସ ଗୋଡ଼ାଇ ଅଛଇ ପଛରେ ।
ସତୀର ତେଜରେ ପାଖେ ନ ପାରିଲା ପଶି
ଦୂରେ ରହି ବିନୟରେ କହେ ଶୁଭ୍ରକେଶୀ ।
କ୍ଷୁଧାର ଅନଳେ ମୋର ଜଳିଲା ଉଦର
ଖାଇବାକୁ ଦେଇ ମାତା ମୋତେ ରକ୍ଷାକର ।
ସାବିତ୍ରୀ ବୋଇଲେ ତୋତେ କି ଦେବଇଁମୁହିଁ
ସନ୍ତୋଷ ହୁଅ ତୋହର ମାଂସ ଖାଇ ତୁହି ।
ସତୀର କଥା ଅନ୍ୟଥା କେବେ ନ ହୋଇଲା
ତାହାର ମାଂସକୁ ସେହି ପୁରୁଷ ଖାଇଲା ।
ଦୁର୍ବାସା ମୁନି ବୋଇଲେ ଧନ୍ୟ ତୁ ଗୋ ସତୀ
ତୋ ଯୋଗୁଁ ସିନା ରାକ୍ଷସ ମୁଖୁଁ ଆମ୍ଭେ ବର୍ତ୍ତି ।
ଚଉଦ ଭୁବନେ କେହି ରଖି ନ ପାରିଲେ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେଖିଣ ଡରିଲେ ।
ଏବେ ତୁ ଭୋଜନ ଦେଇ ଆମ୍ଭ ପ୍ରାଣ ରଖ
ସାବିତ୍ରୀ ସତୀ କହିଲା ଯାଇଁ ସ୍ୱାମୀପାଖ ।
ବିପ୍ର ଆସି ଭକତିରେ ମୁନିଙ୍କି ପୂଜିଲା
ଷଡ଼ରସ ଭୋଜନରେ ତାହାଙ୍କୁ ତୋଷିଲା ।
ଦୁର୍ବାସା ସନ୍ତୋଷ ହୋଇ ଗଲେ ତହୁଁ ଚଳି
ଆବର ଶୁଣ ସେ ସତୀ ମହିମା ଗୋ ବାଳୀ ।
କୋଶଳ ଦେଶରେ ଥିଲା ଏକଇ ବ୍ରାହ୍ମଣ
ତାର ନାମ ଯଜ୍ଞଶର୍ମା ବିଦ୍ୟାରେ ନିପୁଣ ।
ନିତି ସେ ବେଦ ପଢ଼ଇ ଶ୍ରୀବିଷ୍ଣୁ ପୂଜଇ
ତାହାର ଭାରିଯା ନାମ ରୋହିଣୀ ଅଟଇ ।
କାଳେ ସେହି ପତିବ୍ରତା ହେଲା ଗର୍ଭବତୀ
ଦଶଦିନ ଦଶମାସ ଅନ୍ତେ ସେ ଯୁବତୀ ।
ଗର୍ଭରୁ ଜାତ ହୋଇଲା ଏକଇ କୁମର
ଦେବଶର୍ମା ନାମ ଦେଲା ପିଅର ତାହାର ।
ଶରଧାରେ ଯତ୍ନକରି ପାଳିଲା ତା ମାତା
ଆଠ ବରଷରେ ଦେଲେ ତାହାକୁ ପଇତା ।
କିଛିଦିନେ ପିତା ତାର ପାଇଲା ମରଣ
ବାଳୁତ ତା ଲାଗି କଲା ବହୁତ କାରୁଣ୍ୟ ।
ପ୍ରେତକ୍ରିୟାମାନ ସାରି ସେ କୁମରମଣି
ମାତାକୁ କହିଲା ଘରେ ଥିବୁ ତୁ ଜନନୀ ।
ତୀର୍ଥ ବ୍ରତ କରି ସାରି ଆସିବଇଁ ଫେରି
ଅନେକମତେ ତା ମାତା ତାହାକୁ ତିଆରି ।
ନ ମାନି କୁମରମଣି ତୀର୍ଥଯାତ୍ରା କଲା
ଗଙ୍ଗା ଗୟା ଆଦି ତୀର୍ଥ କରି ପିଣ୍ଡ ଦେଲା ।
ନନ୍ଦୀଗ୍ରାମରେ ମିଳିଲା ସେ ବିପ୍ରନନ୍ଦନ
ପାଞ୍ଚସାତ ଘରୁ ଭିକ ମାଗି ପ୍ରତିଦିନ ।
ପୁତ୍ରର ବିଳମ୍ବ ଦେଖି ରୋହିଣୀ ସୁନ୍ଦରୀ
ରୋଦନ କରଇ ବସି ଦିବସ ଶର୍ବରୀ ।
ଦେବଶର୍ମା ନଦୀ ମଧ୍ୟେ କରି ସାରି ସ୍ନାନ
କୂଳକୁ ଆସି ସାରିଲା ସନ୍ଧ୍ୟା ତରପଣ ।

ପାଲଟା ବସନ ଖଣ୍ଡି ଶୁଖାଉଛି ବସି
କାକ ବକ ପକ୍ଷୀ ଦୁହେଁ ଉଡ଼ି ଉଡ଼ି ଆସି ।
ଶୁଖୁଥିବା ବସ୍ତ୍ରପରେ ବସି ଶ୍ରମ ହରି
କ୍ରୋଧଭରେ ଦ୍ୱିଜପୁତ୍ର ଗୋଡ଼ାଇଲା ମାରି ।
ଖଣ୍ଡେଦୂର ଯାଇ ପୁଣି ଆସି ସେ ବସିଲେ
କ୍ରୋଧେ ଦ୍ୱିଜପୁତ ତାଙ୍କୁ ଗାଳି ଦେଇ ବୋଲେ
ଆରେ ପକ୍ଷୀ କର ତୁମ୍ଭେ ଅଭକ୍ଷ୍ୟ ଭକ୍ଷଣ
ମଳଦୂଷିତ ସ୍ଥାନରେ ଦେଇଣ ଚରଣ ।
ମୋ ଶୁଖିଲା ବସନରେ ବାର ବାର ଆସି
ଦୁଷ୍ଟପଣେ ଅପବିତ୍ର କରୁଅଛ ବସି ।
ତୁମ୍ଭଙ୍କୁ ଛୁଇଁଲେ ଆମ୍ଭେ ଅପବିତ୍ର ହେବୁ
ସ୍ନାନ କରିଣ ପିନ୍ଧିଲା ବସନ ଧୋଇବୁ ।
ଏମନ୍ତେ ଭର୍ତ୍ସନା କରି ଦ୍ୱିଜ ଦେଲା ଗାଳି
ଶୁଣି କାକ ବକ ଦୁହେଁ ମନେ ମନେ ଭାଳି ।
ବସନ ଉପରେ ମଳ ତେଜି ଉଡ଼ିଗଲେ
କୋପଭରେ ଦ୍ୱିଜପୁତ୍ର ତାହାକୁ ଚାହିଁଲେ ।
ଭସ୍ମ ହୋଇ ପକ୍ଷୀ ଦୁଇ ଖସିଲେ ଗଗନୁ
ଦେଖି ପୁଲକିତ ହେଲା ଦ୍ୱିଜପୁତ୍ର ତନୁ ।
ମନେ ମନେ ବିପ୍ରସୁତ ଗର୍ବ କରି କହି
ମୋ ସମାନ ଯତି ନାହିଁ ଏ ଜଗତେ କେହି ।
ଏମନ୍ତ ବିଚାରି ବିପ୍ର ଭିକ୍ଷାମୁଣି ଧରି
ଗ୍ରାମେ ଘର ଘର ବୁଲି ଯାଏ ଭିକ୍ଷାକରି ।
ପ୍ରବେଶ ହେଲା ସାବିତ୍ରୀ ସତୀର ଦୁଆରେ
ଏକାକେ ସୁନ୍ଦରୀ ବସିଅଛି ନିଜଘରେ ।
ଏମନ୍ତ ସମୟେ ଭିକ ମାଗେ ବ୍ରହ୍ମଚାରୀ
ଭିକ ଦେବାକୁ ଉଠନ୍ତେ ସାବିତ୍ରୀ ସୁନ୍ଦରୀ ।
ଏମନ୍ତ ବେଳେ ପ୍ରବେଶ ହେଲା ସ୍ୱାମୀ ଆସି
ସ୍ୱାମୀକି ଦେଖି ସାବିତ୍ରୀ ଆଣିଲା କଳସୀ ।
ପାଦ ପଖାଳିଣ ପାଦ ଉଦକ ପିଇଲା
ଆପଣା କାନିପଣନ୍ତେ ପାଦ ପୋଛି ଦେଲା ।
ସ୍ୱାମୀ ସେବାସାରି ବେଗେ ଉଠିଲା ସୁମୁହିଁ
ଭିକ ମୁଠି ଘେନି ଆଗେ ଉଭା ହୋଇରହି ।
ବିଳମ୍ବ ହେବାରୁ ଦ୍ୱିଜପୁତ୍ର କୋପକଲା
ଅଜ୍ଞାନୀ ବ୍ରାହ୍ମଣ ମନ ମଧ୍ୟେ ବିଚାରିଲା ।
କୋପାନଳେ ଜାଳି ଦେବି ଏହାକୁ ଏକ୍ଷଣି
ଏମନ୍ତ ଭାଳି କ୍ରୋଧରେ ଚାହିଁ ପୁଣି ପୁଣି ।
ଦ୍ୱିଜ ମନକଥା ବୁଝି ପାରିଣ ସୁନ୍ଦରୀ
ଧୀରେଧୀରେ କହଇ ଯେ ହସି ହସି କରି ।
ବକ କାକ ପକ୍ଷୀପ୍ରାୟ ମଣିଲୁ କି ମୋତେ
ନଦୀକୂଳେ କୋପାନଳେ ପୋଡ଼ିଲୁ ଯେମନ୍ତେ ।
ତେଣୁ ମନେ ଗର୍ବକରି ଚାହୁଁ ବ୍ରହ୍ମଚାରୀ
ଅନଳଠାରୁ ଅଧିକ ଶରୀର ମୋହରି ।
ନିଅ ନିଅ ଭିକ ମୁଠି ଛାଡ଼ି ସେହି ଆଶା
ତୋ ମାତା ରୋହିଣୀ ତୋତେ କରିଛି ଭରସା ।
ଆଚମ୍ୱିତ ହୋଇ ପାଦେ ପଡ଼ି କହେ ସୁତ
ପକ୍ଷୀ ମରିବାର କଥା ଜାଣିଲ କେମନ୍ତ ।
ମୋର ମାତା ରୋହିଣୀକୁ ଚିହ୍ନିଲ କିପରି
ସାବିତ୍ରୀ ବୋଇଲେ ତୁହୋ ଶୁଣ ବ୍ରହ୍ମଚାରୀ ।
ମୁହିଁ ପତିବ୍ରତା ସତୀ ସବୁ ମୋତେ ଜଣା
ଜ୍ଞାନ ଥାଉଁ ଥାଉଁ କିମ୍ପା ହେଉଛି ତୁ ବଣା ।
ମାତ ପାଦ ସେବି ବିଭା ହୋଇ କର ଘର
ଜ୍ଞାନ ପାଇ ଫେରି ଗୃହେ ଗଲା ଦ୍ୱିଜବର ।
ତୁହି ମହାସତୀ ମୁଁ ତ ଜାଣେ ଭଲକରି
ପ୍ରତିଜ୍ଞା ଲଙ୍ଘି ସ୍ୱଧର୍ମ ଛାଡ଼ିବି କିପରି ।
ଦ୍ୱିଜ ଗୋପୀନାଥ ବୋଲେ ବୋଲ ହରିହରି
ହରି ଭଜିଲେ ଦୁରିତମାନ ଯିବ ସରି ।

## ଅବନ୍ତୀପତିର ରାଜ୍ୟ ତ୍ୟାଗ ଓ ପ୍ରଭାବତୀର ବିଶୋକ ଦ୍ୱାଦଶୀବ୍ରତ

ଏଥୁଅନ୍ତେ ଶୁଣ ତୁହୋ ଅଭିମନ୍ୟୁ ସୁତ
ଅମୃତଠାରୁ ଅଧିକ ଏକଥା ଅମୃତ ।
ରାଜା ରାଣୀ କଥା ହେଉ ରାତି ଗଲା ପାହି
ଭାଟମାନେ ସ୍ତୁତିପାଠ କଲେ ଦ୍ୱାରେ ଥାଇ ।
ଶମ୍ଭୁଆଳେ ଶଙ୍ଖଧ୍ୱନି ଶୁଭେ ଘନ ଘନ
କ୍ଷୁଧା ଆତୁରେ ବାଳୁତେ କଲେକ ରୋଦନ ।
ନବବଧୂ ଶଯ୍ୟା ତେଜି ନଦୀକି ଚଳିଲେ
କାକ ଡାହୁକ ରାବିଲେ କୁକ୍କୁଟେ ରଟିଲେ ।
ନିଦ୍ରା ତେଜି ନୃପମଣି ନିତ୍ୟକର୍ମ ସାରି
ବାହାର ଅବକାଶରେ ଯାଇ ବିଜେକରି ।
ପାତ୍ର ମିତ୍ର ମନ୍ତ୍ରୀ ଆସି କଲେ ଦରଶନ
ଦେଖିଲେ ଯେ ଶୁଖିଅଛି ନୃପତି ବଦନ ।

ମନ୍ତ୍ରୀଙ୍କି ଚାହିଁ ବୋଇଲା ଅବନ୍ତୀର ପତି
ଜଉତିଷଙ୍କୁ ଡକାଇ ଆଣ ମୋର କତି ।
ପୁତ୍ରକୁ ମୁଁ ଯୁବରାଜ ପଣେ ଦେବି ଶାଢ଼ୀ
ମୁହିଁ ବନସ୍ତେ ପଶିବି ରାଜଭୋଗଛାଡ଼ି ।
ଅକାରଣେ ସୈନ୍ୟତୁଛା କିମ୍ବା ମରାଇବି
ସଂଗ୍ରାମରେ ଶ୍ରୀକୃଷ୍ଣଙ୍କୁ ଜିଣି ନ ପାରିବି ।
ତୁମ୍ଭମାନଙ୍କ ହସ୍ତରେଦେଇ ରାଜ୍ୟଭାର
ଚନ୍ଦ୍ରକୁ ଯେ ବୟସ ତ ହୋଇଛି ସତର ।
ଏମନ୍ତ ଶୁଣି ମନ୍ତ୍ରୀଏ ବିଷର୍ଣ୍ଣ ହୋଇଲେ
ଜଉତିଷମାନଙ୍କୁ ଯେ ଡକାଇ ଆଣିଲେ ।
ଖଡ଼ିଧରି ଜଉତିଷେ ଲଗ୍ନ କଲେ ସ୍ଥିର
କାଲି ସୁଚନ୍ଦ୍ରକୁ ହେବ ଶୁଭ ଚନ୍ଦ୍ର ତାର ।
କାଲି ମାଘ ସଂକ୍ରାନ୍ତିର ତେରଦିନ ଭୋଗ
ବାଣିଜ୍ୟ ନାମେ କରଣ ସଉଭାଗ୍ୟ ଯୋଗ ।
ଶୁକଳପକ୍ଷ ପଞ୍ଚମୀ ବୁଧବାର କାଲି
କକଡ଼ାରୁ ବୃହସ୍ପତି ଯିବେ ପୁଣି ଚାଲି ।
ଲଗ୍ନଘରେ ଶୁକ୍ର ବୁଧ ଦୁହେଁ ରହିଛନ୍ତି
ଭାଗ୍ୟ କର୍ମାଧୀପ ଶନି କର୍ମରେ ଅଛନ୍ତି ।
କାଲି ପ୍ରଭାତରେ କର ରାଜ ଅଭିଷେକ
ଆପଣାଙ୍କୁଯଶ ଲାଭ ହୋଇବ ଅନେକ ।
ଜଉତିଷଙ୍କୁ ସନ୍ତୋଷ କଲେ ଧନ ଦେଇ
ମନ୍ତ୍ରୀଙ୍କି ବୋଇଲେ ଆଣ ଯୋଗାଡ଼ ଭିଆଇ
ଅଭିଷେକର ଯୋଗାଡ଼ମାନ ଅଣାଇଲେ
ଘରେ ଘରେ ପୂର୍ଣ୍ଣକୁମ୍ଭମାନ ବସାଇଲେ ।
ପୁରେ ପୁରେ ଗ୍ରାମେ ଗ୍ରାମେ ହୋଇଲା ଉତ୍ସବ
ନର ନାରୀଙ୍କ ଆନନ୍ଦ କେ କହିପାରିବ ।
ସୁଚନ୍ଦ୍ରକୁ ଅଭିଷେକ କରାଇ ରାଜନ
ସୁମରି ସର୍ବମଙ୍ଗଳା ଶ୍ରୀ ଦଧିବାମନ ।
ଘୋଟକୀ ପିଠିରେ ବସି ରାଜ୍ୟ ଛାଡ଼ିଗଲା
ଶୋକସାଗରେ ଅବନ୍ତୀ ନବର ମଜ୍ଜିଲା ।
ଶୋକେ ରାଣୀହଂସପୁର ପଡ଼ିଲା ଉଚ୍ଛୁଳି
ଏମନ୍ତ ବେଳେ ନାରଦ ମୁନି ଆସି ମିଳି ।
ଖବର ପାଇ ଅଇଲା ରାଣୀ ପ୍ରଭାବତୀ
ନାରଦଙ୍କ ପାଦେ ପଡ଼ି କରିଲା ବିନତି ।
ବୋଇଲା ହେ ମୁନିବର ସମ୍ପଦ ସରିଲା
ଏ ଅବନ୍ତୀ ଦେଶ ଶୋକ ସାଗରେ ବୁଡ଼ିଲା ।
ରାଜ୍ୟଛାଡ଼ି ଗଲା ରାଜା ଶ୍ରୀହରିର ଭୟେ
ନୃପତିର ବଞ୍ଚିବାର ଅଛି କି ଉପାୟେ ।
ନାରଦ ବୋଇଲେ ରାଣୀ ନ କର ତୁ ଶୋକ
କରିବି ଅଛି ତହିଁର ଉପାୟ ଯେ ଏକ ।
ବିଶୋକ ଦ୍ୱାଦଶୀ ବ୍ରତ କର ତୁ ଗୋ ରାଣୀ
ଅକ୍ରାମର ହୋଇଥିବ ତୋର ନୃପମଣି ।
ମୁନିର ଏ ବାଣୀ ଶୁଣି କହେ ପ୍ରଭାବତୀ
ବ୍ରତର ବିଧି ବିଧାନ କହ ମହାଯତି ।
ନାରଦ ବୋଇଲେ ଶୁଣ ତାହାର ବିଧାନ
କରିବ ଦଶମୀ ଦିନ ହବିଷ୍ୟ ଭୋଜନ ।
ଏକାଦଶୀ ଦିନ ଉପବାସରେ ରହିବ
ନାନା ଉପହାର ଦେଇ ବିଷ୍ଣୁଙ୍କୁ ପୂଜିବ ।
ଦ୍ୱାଦଶୀ ଦିନ ପ୍ରଭାତୁ ନିତ୍ୟକର୍ମ ସାରି
ଝୀନବସ୍ତ୍ର ଅଳଙ୍କାରମାନ ପିନ୍ଧିକରି ।
ପଞ୍ଚଗବ୍ୟ ପଞ୍ଚାମୃତେ ଶଉଚ ହୋଇବ
ଶ୍ରୀହରିଙ୍କି ହୃଦପଦ୍ମେ ସ୍ମରଣ କରିବ ।
ବିଶୋକାୟ ନମଃ ଏହି ମନ୍ତ୍ର ଉଚ୍ଚାରିଣ
ଭକତିକରି ପୂଜିବ ଶ୍ରୀହରି ଚରଣ ।
ବରଦାୟ ନମଃ କହି ପୂଜିବ ଜଙ୍ଘ ଦୁଇ
ଜାନୁକୁ ପୂଜିବ ଗଣେଶାୟ ନମଃ କହି ।
କନ୍ଦର୍ପାୟ ନମଃ ଏହି ମନ୍ତ୍ରେ ଗୁହ୍ୟଦେଶ
ପୂଜିବ ଭକତି କରି ଦେଇ ଶୁକ୍ଳବାସ ।
ମାଧବାୟ ନମଃ ମନ୍ତ୍ରେ କଟୀ ପୂଜାକରି
ବୈକୁଣ୍ଠାୟ ନମଃ ଏହି ମନ୍ତ୍ରକୁ ଉଚ୍ଚାରି ।
ଆନନ୍ଦମନରେ ଗଳଦେଶକୁ ପୂଜିବ
ବାମନାୟ ନମଃ ଏହି ମନ୍ତ୍ର ଉଚ୍ଚାରିବ ।
ଲଲାଟ ପୂଜିବ ନାରାୟଣ ମନ୍ତ୍ରସାରେ
ସ୍ଥଣ୍ଡିଳ ଅଥବା କୁଣ୍ଡ କରି ବାଲୁକାରେ ।
ତା ମଧ୍ୟରେ ଚନ୍ଦ୍ର ସୂର୍ଯ୍ୟ ଲକ୍ଷ୍ମୀଙ୍କି ପୂଜିବ
ତୁଷ୍ଟି ପୁଷ୍ଟି ସିଦ୍ଧି ବୁଦ୍ଧି ହରିଙ୍କ ଅର୍ଚ୍ଚିବ ।
ବୋଲିବ ସନ୍ତାପହାରି ହେ ଶୋକ ନାଶନ
ବରପ୍ରଦ ନାରାୟଣ ଦେବ ଭଗବାନ ।
ଆହେ ପ୍ରଭୁ ବେଗେ ମୋର ଶୋକ ଦୂର କର
ଏହି ମନ୍ତ୍ର ଉଚ୍ଚାରଣ କରି ବାର ବାର ।
ଗନ୍ଧ ପୁଷ୍ପ ଧୂପ ଦୀପ ଆଦି ଉପହାରେ
ନାରାୟଣ ଦେବତାଙ୍କୁ ପୂଜିବ ସାଦରେ ।

କୁଣ୍ଡମଧ୍ୟେ ଅଗ୍ନି ଥାପି ହୋମ ଶେଷକରି
ନୃତ୍ୟ ଗୀତ କୀର୍ତ୍ତନରେ ତୋଷିବ ଶ୍ରୀହରି ।
ଉଜାଗରେହରିନାମେ ରାତି ପୁହାଇବ
ପରଦିନ ପ୍ରଭାତରେ ବହନ ଉଠିବ ।
ସ୍ନାନ ଆଦି ନିତ୍ୟକର୍ମମାନ ବେଗେ ସାରି
ବିପ୍ର ଦମ୍ପତିକି ତାରଘରୁ ଆଣିକରି ।
ତୃପ୍ତ କରାଇବ ଦେଇ ଉତ୍ତମ ଭୋଜନ
ଯତ୍ନକରି ପିନ୍ଧାଇବ ବସନ ଭୂଷଣ ।
ମେଲାଣି ଦେଇ ଆସିଣ ମିଳିବ ଗୃହରେ
ଜ୍ଞାତି ବନ୍ଧୁ ବାନ୍ଧବଙ୍କୁ ନିମନ୍ତ୍ରି ସାଦରେ ।
ଭୋଜନ ଦେଇ ଆପଣେ କରିବ ଭୋଜନ
ଏମନ୍ତେ ମାସକେ ହେବ ଦୁଇଥର ଜାଣ ।
ବାରମାସେ ସମାପତ କରିବ ଏ ବ୍ରତ
ଉଝାଇଁବା ଦିନ କରି ଶତ ଦଣ୍ଡବତ ।
ଲବଣ ସହିତ ଶଯ୍ୟା ବ୍ରାହ୍ମଣକୁ ଦେବ
ଗୁଡ଼ ସହିତରେ ଧେନୁଦାନହିଁ କରିବ ।
ସୁବର୍ଣ୍ଣର ସୂର୍ଯ୍ୟମୂର୍ତ୍ତି ଯେ କରେ ପ୍ରଦାନ
ବିପୁଳ ଐଶ୍ୱର୍ଯ୍ୟ ଭୋଗକରେ ଚିରଦିନ ।
ବିପ୍ରକୁ କନକ ଲକ୍ଷ୍ମୀ ଯେ ଦାନ ଦିଅଇ
ତାହାର ଗୃହକୁ ଲକ୍ଷ୍ମୀ ଛାଡ଼ି ଯେ ନ ଯାଇ ।
ଯେଉଁ ଯେଉଁ ଫୁଲ ଲୋଡ଼ା ହୁଏ ଏହି ବ୍ରତେ
ତାହା କହୁଅଛି ଶୁଣ ଆଗେ ପତିବ୍ରତେ ।
ଜାଈ ଯୁଈ କରବୀର କୁମୁଦ କହ୍ଲାର
ମଲ୍ଲୀ ସିନ୍ଦୁବାର ନୀଳଉତ୍ପଳ ମନ୍ଦାର ।
ଏ ବ୍ରତ କଲେ ଗୋ ତୋଷହେବେ ନାରାୟଣ
ଶୋକ ତୋର ଦୂରହେବ ଏହା ନିଶ୍ଚେ ଜାଣ ।
ବ୍ରତ କରାଇ ନାରଦ ଗଲେ ଶୂନ୍ୟମାର୍ଗେ
ଗୋପୀନାଥ ମନ ରହୁ ବିଷ୍ଣୁପାଦ ଯୁଗେ ।

.....✻.....

## ଦଣ୍ଡୀରାଜାର ପୃଥିବୀ ଭ୍ରମଣ

ଶୁକମୁନି ପାଦଧରି ରାଜା ପରୀକ୍ଷିତ
ଭୟେ ରାଜ୍ୟ ଛାଡ଼ିଗଲା ଅବନ୍ତୀର ନାଥ ।
କି ଉପାୟ କରି ପୁଣି କାହିଁ ସେ ରହିଲା
ଜଗତ ନାଥର କିଏ ଦୋରେହା ହୋଇଲା ।
ରାଜାର ବଚନ ଶୁଣି କହନ୍ତି ଯେ ମୁନି
ଘୋଟକୀ ଉପରେ ବସି ଗଲା ନୃପମଣି ।
ମଗଧ ଦେଶର ପତି ଜରାସନ୍ଧ ରାୟ
ପୃଥିବୀରେ କାହାକୁ ସେ ନ କରଇ ଭୟ ।
ମଥୁରାକୁ ସେ ଅଠରଥର ଦେଲା ଧାଡ଼ି
ଭୟେ କୃଷ୍ଣ ପଳାଇଲେ ମଥୁରାକୁ ଛାଡ଼ି ।
ଦ୍ୱାରକାରେ ପୁରକରି ରହିଲେ ତା ଡରେ
ଛୟାଶୋଇ ସସ୍ର ରାଜା ରଖିଛି ବନ୍ଦିରେ ।
ବଡ଼ ପ୍ରତାପୀ ଅଟଇ ମଗଧ ରାଜନ
ଦଣ୍ଡୀ ରାଜା ତା ପାଶକୁ କଲାକ ଗମନ ।
ପ୍ରଣାମ କରି କହିଲା ମୁଁ ଅବନ୍ତୀ ପତି
ଶ୍ରୀକୃଷ୍ଣ ଭୟେ ଛାଡ଼ିଲି ଅଚଳ ସମ୍ପତ୍ତି ।
ପୁତ୍ର ଭାରିଯା ଆବର ସବୁ ରାଜଭୋଗ
ବିନାଦୋଷେ ଯେ ଶ୍ରୀକୃଷ୍ଣ କରିଅଛି ରାଗ ।
ଘୋଡ଼ୀ ଗୋଟିଏ ବନସ୍ତୁ ପାଇଲଇଁ ମୁହିଁ
କୃଷ୍ଣ ମାଗି ପଳାଇଲେ କଲି ଯହୁଁ ନାହିଁ ।
ଯୁଦ୍ଧ କରିବା ନିମନ୍ତେ ହେଉଛନ୍ତି ସଜ
ଡରେ ପଳାଇ ଅଇଲି ଆହେ ମହାରାଜ ।
ଶରଣ ପଶିଲି ମୋତେ ପାରିବ କି ରଖି
ତୁମ୍ଭ ତୁଲ୍ୟ ବୀର ମୁହିଁ ମହୀରେ ନ ଦେଖି ।
ଜରାସନ୍ଧ ବୋଇଲା ହେ ଅବନ୍ତୀ ରାଜନ
ଅସମୟରେ ଆସି ତୁ ମାଗୁଛୁ ଶରଣ ।
ପ୍ରମଥନାଥ ଯଜ୍ଞରେ ହୋଇଛି ଦୀକ୍ଷିତ
ତୋ ପାଇଁ ଅବଶ୍ୟ ଯୁଦ୍ଧ ହେବ ଉପସ୍ଥିତ ।
ଯାଗ ଛାଡ଼ି କୃଷ୍ଣ ସଙ୍ଗେ ଯୁଝି ନ ପାରିବି
କେମନ୍ତେ ତୋତେ ମୁଁ କହ ଶରଣ ରଖିବି ।
ଏଣୁ କହୁଅଛି ତୁହୋ ଛାଡ଼ି ମୋର ଆଶା
ଆନ ଉପାୟକୁ ବେଗେ କର ଯା ଭରସା ।
ଜରାସନ୍ଧଠାରୁ ରାଜା ଭରସା ନ ପାଇ
ଚେଦୀ ଦେଶରେ ମିଳିଲା ଘୋଡ଼ୀ ଚଢ଼ି ଯାଇଁ ।
ସେ ଦେଶ ନୃପତି ଅଟେ ଶିଶୁପାଳ ରାୟ
ତିଳେ ମାତ୍ର ନାହିଁ ତାର ଶ୍ରୀକୃଷ୍ଣକୁ ଭୟ ।
ତା ପାଦେ ପଡ଼ି ବୋଇଲା ଅବନ୍ତୀ ରାଜନ
ଶ୍ରୀକୃଷ୍ଣର ଭୟେ ମୁହିଁ ଛାଡ଼ି ରାଜ୍ୟ ଧନ ।
ତୁ ରାଜା ମହୀମଣ୍ଡଳେ ଅଟୁ ମହାବୀର
ମୋ ନାମ ଦଣ୍ଡୀ ମୁଁ ଅଟେ ଅବନ୍ତୀ ଈଶ୍ୱର ।
ବିନାଦୋଷେ ମୋ ଉପରେ ଶ୍ରୀକୃଷ୍ଣର ରାଗ
ମୃଗୟା ନିମନ୍ତେ ଦିନେ ଗଲି ବନଭାଗେ ।

ଘୋଟକୀ ଏକ ପାଇଣ ଆଣିଲଇଁ ଧରି
ସେ ଘୋଟକୀ ଗୋଟି ଜାଣ ନୁହଇ କାହାରି ।
ନାରଦ କହନ୍ତେ କୃଷ୍ଣ ପଠାଇଲା ଦୂତ
ନାହିଁ କରନ୍ତେ ମୋଠାରେ ହୋଇ ରାଗାନ୍ୱିତ ।
ସମର କରିବାପାଇଁ ସାଜୁଅଛି ଥାଟ
ଭୟେ ପଳାଇ ଅଇଲି ଛାଡ଼ି ରାଜ୍ୟ ପାଟ ।
ତୁ ମହାରାଜା ତୋହର ପଶିଲି ଶରଣ
ରଖିବୁ କି ନ ରଖିବୁ କହ ତା କାରଣ ।
ଶିଶୁପାଳ ବୋଇଲା ହୋ ଅବନ୍ତୀ ନୃପତି
ଶ୍ରୀକୃଷ୍ଣର ମୋହର ତ ସର୍ବଦା ଅପ୍ରୀତି ।
କୃଷ୍ଣ ବଳରାମକୁ ମୁଁ ତିଳେ ନ ଡରଇ
ତାଙ୍କ ବଳ ବପୁ ଯେତେ ସବୁ ମୁଁ ଜାଣଇ ।
କେବଳ ଅଛି ତହିଁରେ ଏକଇ କାରଣ
ତେଣୁ ରଖି ନ ପାରଇ ତୋହର ଶରଣ ।
ବସୁଦେବ ଅଟନ୍ତି ଯେ ମାତୁଳ ମୋହର
କୃଷ୍ଣ ବଳରାମ ଦୁଇ ତାହାଙ୍କ କୁମର ।
ମାମୁଁର କଥାକୁ ମୁହିଁ ଭାଙ୍ଗି ନ ପାରିବି
ତୋତେ ରଖି ନ ପାରି ମୁଁ ଅଖ୍ୟାତି ପାଇବି ।
ଏଣୁ ମୁଁ କହୁଛି ଅନ୍ୟ ଉପାୟ ତୁ ଦେଖ
ଅବନ୍ତୀ ରାଜନ ତହିଁ ହୋଇଣ ବିମୁଖ ।
ହସ୍ତିନା ପୁରରେ ଯାଇ ପ୍ରବେଶ ହୋଇଲା
ଦୁର୍ଯ୍ୟୋଧନ ନୃପତିର ପାଶରେ ମିଳିଲା ।
ପ୍ରଣମି ବୋଇଲା ମୁହିଁ ଅବନ୍ତୀ ରାଜନ
ଶ୍ରୀକୃଷ୍ଣର ଭୟେ ପୁଣି ତେଜି ରାଜ୍ୟଧନ ।
ଲକ୍ଷେ ରାଜାର ଉପରେ ତୁ ମଉଡ଼ମଣି
ତୋହର ସମାନ କ୍ଷତ୍ରୀ ନାହିଁ ଏ ଧରଣୀ ।
ଶଙ୍ଖନିଧି ପଦ୍ମନିଧି ଅଛି ତୋର କରେ
କୁରୁବଳ ନାମ ଶୁଣି ସ୍ୱର୍ଗେ ଇନ୍ଦ୍ର ଡରେ ।
ତୁ ମାନଗୋବିନ୍ଦ ମାନ ଅଟୁ ମହାମାନୀ
ଶରଣ ରକ୍ଷଣ ବାନା ଉଡ଼ାଇ ମେଦିନୀ ।
ବିନାଦୋଷେ ମୋ ଉପରେ କୃଷ୍ଣ ରାଗକରି
ଏକେଦିନେ ମୁଁ ବନକୁ ଗଲି ମୃଗ ମାରି ।
ଘୋଟକୀ ଏକ ପାଇଲି ଅତି ସୁଲକ୍ଷଣୀ
ନାରଦ ମୁନି ମୁଖରୁ କୃଷ୍ଣ ତାହା ଶୁଣି ।
ମାଗି ପଠାଇଲେ ମୋତେ ନ ଦେଲଇଁ ତାହା
ଯୁଝିବାକୁ ସଜ ହୋଇ ଆସେ ଚଉବାହା ।
ଡରେ ରାଜ୍ୟ ଛାଡ଼ି ମୁହିଁ ପଳାଇ ଆସିଲି
ତୁ ବଡ଼ ବୋଲି ତୋଠାରେ ଶରଣ ପଶିଲି ।
ରଖିବୁ କି ନ ରଖିବୁ କହ କୁରୁପତି
ଦୁର୍ଯ୍ୟୋଧନ ବୋଲଇ ହୋ ଅବନ୍ତୀର ପତି ।
ରଖି ପାରନ୍ତି ମୁଁ ତୋତେ ଅଛଇ କାରଣ
ଆମ୍ଭର ଯେ ଗଦାଗୁରୁ ଦେବ ସଙ୍କର୍ଷଣ ।
ଗୁରୁ ଶିଷ୍ୟଙ୍କର କାହିଁ ଦେଖିଛ ସମର
ଏଣୁ ମୁଁ କହୁଛି ତୁହୋ ଅବନ୍ତୀ ଈଶ୍ୱର ।
ଆନ ଉପାୟରେ ତୋର ଜୀବନ ତୁ ରଖ
ଦଣ୍ଡୀ ନୃପତି ସେଠାରୁ ହୋଇଣ ବିମୁଖ ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣକୁ ଗଲା
ଗୋଟି ଗୋଟି ରାଜାଙ୍କୁ ସେ ଶରଣ ମାଗିଲା ।
ଶ୍ରୀକୃଷ୍ଣ ଭୟେ ସକଳ କଲେ ତାକୁ ନାସ୍ତି
ମନମଧ୍ୟେ ବିଚାରଇ ଅବନ୍ତୀର ପତି ।
ଲକ୍ଷେକ ରାଜା ଅଛନ୍ତି ପୃଥିବୀ ଭିତରେ
କେହିଁ ରଖି ନ ପାରିଲେ ଶ୍ରୀକୃଷ୍ଣର ଡରେ ।
କି ବୁଦ୍ଧି କରିବି ମୋତେ ବୁଦ୍ଧି ଦିଶୁନାହିଁ
ଶୋକଭରେ କହେ ରାଜା ଅରଣ୍ୟକୁ ଚାହିଁ ।
ତୁମ୍ଭେ ତ ମହାକାନନ ପୃଥିବୀରୁ ଅଧେ
ଅକଳିତ ବଣଜନ୍ତୁ ତୁମ୍ଭ ଗର୍ଭମଧ୍ୟେ ।
ତରୁ ବୃକ୍ଷ ଗୁଳ୍ମଲତା କଣ୍ଟା ଝାଡ଼ ବାଡ଼
ନ କାଟଇ ପୁଣି ତୁମ୍ଭ ଦେହ ଯମଦାଢ଼ ।
ଚନ୍ଦ୍ର ସୂର୍ଯ୍ୟ କିରଣ ତ ପଶି ନ ପାରଇ
ଶରଣ ପଶିଲେ ମୋତେ ଠାବ ଦିଅ ନେଇ ।
ତୋ ଗର୍ଭେ ରହିଲେ ଲୁଚି ନ ପାରିବେ କେହି
କାନନ କହଇ ରାଜା ବିକଳ ନ ସହି ।
ଆହେ ମହାରାଜା ରଖି ନ ପାରିବି ତୋତେ
ରାଗେଅଗ୍ନି ବାଣେ ହରି ପୋଡ଼ିଦେବେ ମୋତେ ।
ମୋର ସଙ୍ଗେ ତୁହି ଯିବୁ ଅକାରଣେ ଜଳି
ବନଦେବତା ବଚନ ଶୁଣି ରାଜା ଭାଳି ।
ନାହିଁ ମୋର ପରିତ୍ରାଣ ନିଶ୍ଚୟ ମରଣ
ଏମନ୍ତ ଭାଳି ସେଠାରୁ ଚଳିଲା ବହନ ।
ଗିରିରାଜ ହିମାଳୟ ନିକଟେ ମିଳିଲା
ପ୍ରଣମି ବିନୟେ କରି ନୃପତି କହିଲା ।
ଆହେ ହିମାଳୟ ତୁହି ଗିରିପରେ ରାଜା
ତୋହର ପୁଣି ଦୁହିତା ଅଟନ୍ତି ଗିରିଜା ।

ତେତିଶ କୋଟି ଦେବ ତା ଅଛନ୍ତି ତୋ ଶିରେ
ଶିବ ପାର୍ବତୀଙ୍କି ପୁଣି ରଖିଛୁ ତୋ ଘରେ ।
ତୋ ଭଣ୍ଡାରେ ନାନା ଜାତି ମଣି ରତ୍ନ ପୂର୍ଣ୍ଣ
ଧାତୁ ଦ୍ରବ୍ୟରେ ତୋହର ଦେହ ନାନାବର୍ଣ୍ଣ ।
ପ୍ରାଣୀହିତେ ସମ୍ପାଦିଛୁ ଔଷଧି ମୌଷଧି
ତୋ ଶରୀରକୁ ପାଷାଣେ ଗଢ଼ିଅଛି ବିଧି ।
ମୋର ମନ୍ଦକର୍ମ ଯୋଗୁଁ ମୁଁ ଅନାଥ ହେଲି
ଶ୍ରୀକୃଷ୍ଣର ଭୟେ ରାଜ୍ୟ ସମ୍ପଦ ତେଜିଲି ।
ଜୀବନ ରକ୍ଷା ନିମନ୍ତେ ପୃଥିବୀ ବୁଲିଲି
ଲକ୍ଷେ ନୃପତିଙ୍କଠାରୁ ବିମୁଖ ପାଇଲି ।
ଶ୍ରୀକୃଷ୍ଣ ଭୟେ ନ ଦେଲେ କେ ମୋତେ ଶରଣ
ବଡ଼ ବଡ଼ ଗୁହା ଅଛି ତୋ ଦେହରେ ପୁଣ ।
ଶରଣ ପଶିଲି ମୋତେ ଠାବ ଦିଅ ତୁହି
ରାଜାର ବିକଳ ଦେଖି ହିମବନ୍ତ କହି ।
ତୁ ଯାହା ବୋଇଲୁ ସତ ଅଟଇ ରାଜନ
ତ୍ରେତାଯୁଗେ ରାମରୂପେ ଜାତ ଭଗବାନ ।
ତାଙ୍କ ଭାରିଯାକୁ ନେଲା ଲଙ୍କାର ରାବଣ
ତାର ଭାଇ ରାମ ପାଦେ ପଶିଲା ଶରଣ ।
ରାମଦୂତ ହନୁମାନ ପବନର ସୁତ
ଉପାଡ଼ି ନେଲା ପୃଥ୍ୱୀରୁ ବହୁତ ପର୍ବତ ।
ଶତଯୋଜନ ସମୁଦ୍ର ପକାଇଲା ବାନ୍ଧି
ଡରେ ମୁଁ କଲି ସେକାଳେ ତା ସଙ୍ଗତେ ସନ୍ଧି ।
ଦୟାକରି ଛାଡ଼ିଦେଲା ପବନ ନନ୍ଦନ
ଏ ଯୁଗେ ସେ ରାମ ହେଲେ ବସୁଦେବ ନାନ ।
ବଞ୍ଚିଛି ତ ପବନର ସୁତ ହନୁମନ୍ତ
ତାହାକୁ କହିବେ ଯେବେ ବସୁଦେବ ସୁତ ।
ସେ ମୋତେ ଉପାଡ଼ି ନେଇ ଫିଙ୍ଗିବ ସାଗରେ
ତୁ ବୁଡ଼ି ମରିବୁ ବାବୁ ମୋହରି ସଙ୍ଗରେ ।
ଏଣୁ ମୁଁ କହୁଛି ତୋତେ ଦେଖ ଆନଗତି
ବିମୁଖ ହୋଇ ସେଠାରୁ ଅବନ୍ତୀର ପତି ।
ଆସୁ ଆସୁ ବାଟରେ ସେ କରଇ ବିଚାର
କଥାର ସନ୍ଧି କହିଲା ଏହି ଗିରିବର ।
କୃଷ୍ଣ ପ୍ରତି ସମୁଦ୍ରର ପୂର୍ବ ରାଗ ଥିବ
ତା ପାଖକୁ ଗଲେ ନିଶ୍ଚେ ମୋତେ ସ୍ଥାନଦେବ ।
ଏମନ୍ତ ବିଚାରି ସେହି ପ୍ରଭାବତୀ ସାଇଁ
ସମୁଦ୍ର କୂଳେ ପ୍ରବେଶ ହୋଇଲାକ ଯାଇଁ ।
ହରି ହରି ବୋଲଭାଇ ଦୁଃଖ ହେବ ଦୂର
ଗୋପୀନାଥ ଦୁଃଖ ହର ଶଙ୍ଖଚକ୍ରଧର ।

.....❀.....

## ସମୁଦ୍ର ସ୍ତବ

ଶୁକ ବୋଇଲେ ହୋ ଶୁଣ ଅଭିମନ୍ୟୁ ସୁତ
ସମୁଦ୍ର କୂଳରେ ରାଜା ହୋଇ ଶୁଚିମନ୍ତ ।
ଘୋଟକୀ ପୃଷ୍ଠୁ ଉତୁରି ଯୋଡ଼ି ଦୁଇକର
ପ୍ରଣାମ କରି ବୋଲଇ ଜୟ ତୁ ସାଗର ।
ଅପାର ମହିମା ତୋର ଗହୀର ଅପାର
ପାତକମାନ ଖଣ୍ଡଇ ତୋ ପବିତ୍ର ନୀର ।
ତୋହର ଗର୍ଭରେ ଅଛି ବଡ଼ବା ଅନଳ
ତୁହି ସତ୍ୟବନ୍ତ ପ୍ରାଣୀ ନ ଲଙ୍ଘୁଛୁ କୂଳ ।
ଯେଉଁଦିନ ଲଙ୍ଘିବୁ ତୁ ସେ ଦିନ ପ୍ରଳୟ
ତୁହି ସିନା ଅଟୁ ନାଥ ଜଳର ଆଳୟ ।
ଜଗତପାବନୀ ଗଙ୍ଗା ତୋହର ଭାରିଯା
ତୁ ନାଥ ସିନା ଚଉଦ ବ୍ରହ୍ମାଣ୍ଡରେ ରାଜା ।
ତୁହି ସିନା ତ୍ରିଜଗତ କରୁଛୁ ପାଳନ
ତୋ ଯୋଗୁଁ ମହୀରେ ସିନା ଶସ୍ୟ ଉତପନ୍ନ ।
ସବୁ ତୀର୍ଥଙ୍କ ମଧ୍ୟରେ ତୁହି ସିନା ସାର
ସବୁ ଜଳ ଆସି ପଶେ ଗର୍ଭରେ ତୋହର ।
ସାର ସାର ରତ୍ନତୋର ଗର୍ଭେ ଅଛୁ ଭରି
ଦୁଷ୍ଟ ଦାନବେ ନିଅନ୍ତି ଆଶ୍ରୟ ତୋହରି ।
ତୋହର ତାହାକୁ ଡର ତୁହି ନିରାନନ୍ଦ
ତୋତେ ଯେ ପୂଜା କରନ୍ତି ବ୍ରହ୍ମା ରୁଦ୍ରଇନ୍ଦ୍ର ।
ଚାରିଖାନି ଜୀବଙ୍କର ତୁହି ସିନା ଜୀବ
ତୋହର ବିହୁନେ ନାଥ ହେବେ ମୃତଶବ ।
ମୁଁ ଅବନ୍ତୀ ଦେଶ ପତି ତୋହର ଶରଣ
କରନ୍ତୁ ଭୋ ନାଥ ମୋର ଭୟ ନିବାରଣ ।
ଅନନ୍ତ ଗର୍ଭ ତୋହର ଅନ୍ତ ତାର ନାହିଁ
ବିପଦେ ପ୍ରାଣୀଙ୍କି ଆଶ୍ରା ଦେଉ ଥାଉ ତୁହି ।
ଏମନ୍ତ ବହୁତ ସ୍ତୁତି କଲାକ ରାଜନ
ସିନ୍ଧୁ ଗର୍ଭୁ ପୁରୁଷେକ ହେଲା ଉତପନ୍ନ ।
ଅପୂର୍ବ ରୂପ ତାହାର ଅତି ମନୋହର
ଉଚ୍ଚରେ ବୋଇଲା ତୁମ୍ଭେ ଅବନ୍ତୀ ଈଶ୍ୱର ।
କାହିଁପାଇଁ ସମୁଦ୍ରକୁ କରୁଅଛ ସ୍ତୁତି
ଏମନ୍ତ ଶୁଣି କହଇ ଅବନ୍ତୀର ପତି ।

ତୁମ୍ଭେ କିଏ ପଚାରୁଛ କହ ସତ୍ୟ କରି
ଜାଣିଲେ ତୁମ୍ଭ ଛାମୁରେ କରିବି ଗୁହାରି ।
ପୁରୁଷ ବୋଇଲା ମୁହିଁ ଅଟଇ ସାଗର
ତୋହର ସ୍ତବେ ସନ୍ତୋଷ ହୋଇ ନୃପବର ।
ପଚାରୁଛି କି ନିମନ୍ତେ କରୁଅଛୁ ସ୍ତୁତି
କାହିଁପାଇଁ କାହାଠାରୁ ପାଇଅଛୁ ଭୀତି ।
ଜାଣିଲେ ସିନା ତୁମ୍ଭଙ୍କୁ ଗର୍ଭେ ଠାବ ହେବା
ନ ଜାଣି କାହୁଁ ତୁମ୍ଭଙ୍କୁ ଶରଣ ରଖିବା ।
ନୃପତି ବୋଲଇ ଶୁଣ ତାହାର କାରଣ
ଦେବକୀର ନନ୍ଦନ ଯେ ଦେବ ନାରାୟଣ ।
ତ୍ରେତାଯୁଗେ ଯେଉଁ କୃଷ୍ଣ ରାମରୂପ ଧରି
ନିର୍ଦ୍ଦୋଷେତତେ ପୋତି ଲେ ପାଷାଣେ ଯେପରି ।
ବନ୍ଧ ବାନ୍ଧି ତୋର ଜଳ କଲେ ବେନିଭାଗ
ତେସନ ମୋଠାରେ କୃଷ୍ଣ ମିଛେ କରି ରାଗ ।
ଦୂତ ପଠାଇଲା ମୋତେ ଶ୍ରୀମୁଖ ଲେଖିଲା
ଆବର ଯୁଦ୍ଧର କଥା କହି ପଠାଇଲା ।
ଶ୍ରୀମୁଖ ପଢ଼ି ଶୁଣାଇ ଦେଲା ମୋତେ ଦୂତ
ଯେଉଁ ଘୋଟକୀ ପାଇଛୁ ଯାଇଁ ତୁ ବନସ୍ତ ।
ଆମ୍ଭଙ୍କୁ ସେହି ଘୋଟକୀ ଯେବେ ତୁ ନ ଦେବୁ
ଜାଣିଥା ତୁ ଆମ୍ଭବାଣେ ସବଂଶେ ମରିବୁ ।
ଶ୍ରୀମୁଖୁ ଶୁଣି ମୁଁ ମନେ ପାଇ ମହାଭୟ
ଦୂତକୁ ବୋଇଲି ମୁହିଁ କରିଣ ବିନୟ ।
ସେ ଘୋଡ଼ୀ ତାଙ୍କର ନୋହେ ବନରୁ ପାଇଲି
ଶରଧା କରି ତାହାକୁ ଆଣି ମୁଁ ପୋଷିଲି ।
ତା ଠାରେ ଶରଧା ମୋର ବଳିଅଛି ଯେତେ
ପୁତ୍ରଭାରିଯାଠାରେ ମୋ ଶ୍ରଦ୍ଧା ନାହିଁ ତେତେ ।
ତା ଲାଗି ପୁତ୍ର ଭାରିଯା ରାଜ୍ୟ ପାରେ ତେଜି
ସେ ଘୋଡ଼ୀ ଉପରେ ମୋର ମନ ଅଛି ମଜି ।
ପ୍ରାଣଗଲେ ଅବା ତାକୁ ଛାଡ଼ି ମୁଁ ପାରଇଁ
ତୁହୋ ଦୁତ ଶ୍ରୀକୃଷ୍ଣଙ୍କୁ କହ ଏହା ଯାଇ ।
ଜଗତନାଥ ସେ ତାଙ୍କୁ ଅପୂର୍ବ କି ଅବା
ମନ କଲେ ପାଇବେ ସେ ଅଶ୍ୱ ଉଚ୍ଚୈଶ୍ରବା ।
ଏମନ୍ତ ବହୁତ ରୂପେ କହିଲି ବୁଝାଇ
ନ ବୁଝି ପୁଣି ସେ ଦୂତ ଦେଲେକ ପଠାଇ ।
ସେ ଆସି ବୋଇଲା ଘୋଡ଼ୀ ନ ଦେଲ ତୁ ମୋତେ
ନିଶ୍ଚୟ ଯୁଦ୍ଧେ ମାରିବେ ଶ୍ରୀକୃଷ୍ଣ ଯେ ତୋତେ ।
ନାହିଁକଲି ତହୁଁ ଦୂତ ଗଲା ବେଗେ ଫେରି
ମୁହିଁ ପଳାଇ ଆସିଲି ରାଜ୍ୟ ଛାଡ଼ି କରି ।
ପୃଥିବୀ ବୁଲିଲି କେହି ନ ପାରିଲେ ରଖି
ତୋତେ ଶରଣ ମାଗୁଛି ହୋଇ ବଡ଼ ଦୁଃଖୀ ।
ଏମନ୍ତ ଶୁଣି ସାଗର ବୋଇଲା ହେ ରାୟ
ପରମ ପୁରୁଷ ସେହି ଦେବକୀ ତନୟ ।
ପୂର୍ବେ ଶଙ୍ଖାସୁର ନାମେ ଏକ ଦୈତ୍ୟଥିଲା
ବ୍ରହ୍ମାର ଯେ ବେଦପୋଥି ଚୋରାଇ ଆଣିଲା ।
ମୋହର ଗର୍ଭେ ଲୁଚାଇ ରଖିଲା ଅସୁର
ଆପେ ଯେ ଲୁଚି ରହିଲା ଜଳର ଭିତର ।
ଶ୍ରୀହରି ଛାମୁରେ ବ୍ରହ୍ମା କଲେକ ଗୁହାରି
କୋପେ ବିଷ୍ଣୁ ମହାମୀନ ରୂପେ ଅବତରି ।
ଶଙ୍ଖାସୁର ମାରି କଲେ ବେଦକୁ ଉଦ୍ଧାର
କୋପେ ମତେ ବୋଇଲେ ମୁଁ ଶୋଷିବି ତୋ ନୀର
ତୁ କିମ୍ପାଇଁ ଅସୁରକୁ ଗର୍ଭେ ଠାବ ଦେଲୁ
ଦୁଷ୍ଟଙ୍କୁ ତୁ ଆଶ୍ରା ଦେଇ ସଂସାର ନାଶିଲୁ ।
ଜଳ ଶୁଖିଗଲେ ତୋର ଗର୍ବ ହେବ ଚୂନା
ରତ୍ନ ରଖି ରତ୍ନାକର ନାମ ବହୁ କିନା ।
ଏମନ୍ତ ମୀନର ବାଣୀ ଶୁଣି କଲି ଭୀତି
ବୋଇଲି ମୋହର ଏକ ଅଛଇ ଦୁହିତୀ ।
ତାର ନାମ ଲକ୍ଷ୍ମୀ ସେହି ଜଗତମୋହିନୀ
ଦେଖିଲେ ଟଳି ପଡ଼ିବେ ସୁର ସିଦ୍ଧ ମୁନି ।
ସତ୍ୟକଲି ତାକୁ ବିଭା ଦେବି ହରି ତୋତେ
ଶରଣ ପଶିଲି ବାରେ ରକ୍ଷାକର ମୋତେ ।
ଏମନ୍ତ ଶୁଣି ଶ୍ରୀହରି ହୋଇଲେ ପ୍ରସନ୍ନ
ବୋଇଲେ ଦେଖାଅ କିନା ସେ କନ୍ୟା ରତନ ।
ମୁଁ ବୋଇଲି ଯେବେ ମୋତେ ମନ୍ଥନ କରିବୁ
ସେକାଳେ ସିନା ମୋ କନ୍ୟାରତ୍ନକୁ ପାଇବୁ ।
ଶ୍ରୀହରି ବୋଇଲେ ତୋର ଜଳ ଯେ ଅପାର
କେମନ୍ତେ ମନ୍ଥିବୁ ତାହା କହ ତୁ ସାଗର ।
ମୁଁ ବୋଇଲି ଦେବ ଦୈତ୍ୟ ଦାନବଅସୁରେ
ମନ୍ଦରଗିରି ଓପାଡ଼ି ଆଣିବେ ମୁଣ୍ଡରେ ।
ସମୁଦ୍ରରେ ପକାଇବେ ଯିବ ସେହି ବୁଡ଼ି
ଦେବ ଦାନବେ ଟାଟକା ହେବେ ଗିରି ଛାଡ଼ି ।
ଜଳେ କୂର୍ମରୂପେ ତୁହି ଟେକିବୁ ସେ ଗିରି
ବାସୁକି ନାଗରାଜାକୁ ତହିଁ ରଜ୍ଜୁ କରି ।

ଦେବ ଦାନବେ ତାହାକୁ ଧରିଣ ମନ୍ଥିବେ
ବହୁତ ଧନ ରତ୍ନ ସେ ତହିଁରୁ ପାଇବେ ।
ତେତେବେଳେ ଦୁହିତାକୁ ଦେବି ହରିତୋତେ
ଶରଣ ପଶିଲି ଏବେ ବାରେ ରଖ ମୋତେ ।
ତାର ବୋଲେହା ମୁଁ ତୋତେ ପାରଇ କି ରଖି
ମୋ ଗର୍ଭେ ପଶି ମାରିବ ନିଶ୍ଚେ ପଦ୍ମଆଖି ।
ଏବେ ତୁ ଆନ ଉପାୟ ଦେଖ ନୃପବର
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ପୟର ।

.....❋.....

## ଗଙ୍ଗା ସ୍ତବ ଓ ସୁଭଦ୍ରା ସହିତ ଅବନ୍ତୀ ପତିର ଭେଟ

ଶୁକମୁନି ବକତା ଯେ ପରୀକ୍ଷିତ ଶ୍ରୋତା
ବିମୁଖ ହୋଇ ରାଜନ ମନେ ପାଇ ଚିନ୍ତା ।
କି ବୁଦ୍ଧି କରିବି କିଛି ବୁଦ୍ଧି ଦିଶୁନାହିଁ
ଗଙ୍ଗାଜଳେ ଝାସ ବିନା ଠାବ ନାହିଁ କାହିଁ ।
ଏମନ୍ତ ଭାଳି ରାଜନ ଗଲା ଗଙ୍ଗାକୁଳେ
ଶଉଚ ହୋଇ ସ୍ନାହାନ କଲା ପଶି ଜଳେ ।
ତରପଣ ସାରି ଆସି କୂଳରେ ମିଳିଲା
କୋଟିଏ ପ୍ରଣାମ କରି କରକୁ ଯୋଡ଼ିଲା ।
ମ୍ପଣି ସେ ତହୁଁ ଯାଇଣ ଅରଣ୍ୟେ ପଶିଲା
ନାନା ଜାତି ଫୁଲତୋଳି ବନରୁ ଆଣିଲା ।
ଉତ୍ତମ ସୁପକ୍ୱ ଫଳର ଆଣିଲା ରାଜନ
ଅଗୁରୁ ଧୂପ ଆବର ମଳୟ ଚନ୍ଦନ ।
କୂଳେ ଥୋଇ ମହାରାଜା ଅଙ୍ଗନ୍ୟାସ କରି
ଆସନକୁ ଶୁଦ୍ଧି କଲା ମନ୍ତ୍ରକୁ ଉଚ୍ଚାରି ।
ପବନ ଉଜାଣି ଟେକି ରଖିଣ ଛାଡ଼ିଲା
ଦେହୁଁ ପାପ ପୁରୁଷକୁ ପୋତି ପକାଇଲା ।
ଦଶଦିଗ ବାନ୍ଧି ଭୂତ ପ୍ରେତଗଣ ନାଶି
ଶ୍ୱେତ ସୋରିଷ ବୁଣିଲା ଆସନରେ ବସି ।
ମନ୍ତ୍ର ପଢ଼ି ବିଘ୍ନକାରିଗଣ ଦେଲା ତଡ଼ି
ପୃଥିବୀକି ସ୍ତବକରି କର ଦୁଇ ଯୋଡ଼ି ।
ଆସନକୁ ଦୃଢ଼ କରି ବସିଲାକ ମାଡ଼ି
ନିକଟରେ ପୂଜାଦ୍ରବ୍ୟ ରଖିଣ ସଜାଡ଼ି ।
ପଚାଶ ବର୍ଣ୍ଣ ମାତ୍ରାକୁ ରଖି ଯେଝା ଠାବେ
ବାହାରେ ଅନ୍ତରେ ମାତ୍ରା ରଖି ଶୁଦ୍ଧଭାବେ ।
ପୁଷ୍ପ ଫଳ ଜଳ ଶୁଦ୍ଧି କରି ପୂଜା କଲା
ଧୂପ ଦୀପ ଗନ୍ଧ ପୁଷ୍ପ ନଇବେଦ୍ୟ ଦେଲା ।
ଧ୍ୟାନ ଧାରଣାରେ ପ୍ରତ୍ୟକ୍ଷୀ ଗଙ୍ଗାଦେବୀ ମନ
କରଯୋଡ଼ି ଗଙ୍ଗାସ୍ତବ ପଢ଼ିଲା ରାଜନ ।
ଜୟ ଜୟ ଜାହ୍ନବୀ ଗୋ ଜହ୍ନୁ ମୁନିସୁତା
ଜୟ ଜୟ ମାତ ବିଷ୍ଣୁ ପଦାଗ୍ର ସଂଭୂତା ।
ବିଷ୍ଣୁ ନଖକୋଣୁ ଜାତ ହୋଇ ଗଲୁ ବହି
ମହେଶ ଶିର ଉପରେ ପଡ଼ିଲୁ ତୁ ଯାଇ ।
ଜଟା ଭିତରେ ଆନନ୍ଦେ ଖେଳିଲୁ ଗୋ ମାତ
ବୋଲାଇଲେ ଗଙ୍ଗାଧର ନାମ ଉମାକାନ୍ତ ।
ଭଗୀରଥ ରାଜା ତୋତେ ମର୍ତ୍ତ୍ୟକୁ ଆଣିଲା
ଶିବଙ୍କୁ ବହୁତ ତପ କରି ମନାଇଲା ।
ଜଟାରୁ ଆସି ପଡ଼ିଲୁ ହୀମ ପରବତେ
ବାଟ ନ ପାଇ ରହିଲୁ ତପ ଗର୍ଭଗତେ ।
ତପେ ମନାଇ ଇନ୍ଦ୍ରକୁ ରାଜା ଭଗୀରଥ
ଐରାବତ ଗଜ ଆଣି ପ୍ରହାରିଲା ଦନ୍ତ ।
ତିନିଧାର ହୋଇ ତହୁଁ ଅଇଲୁ ବାହାରି
ସେଦିନୁ ତୁ ହେଲୁ ହିମାବନ୍ତର କୁମାରୀ ।
ସ୍ୱର୍ଗପୁରେ ସୁରଗଙ୍ଗା ବୋଲାଉ ତୁ ମାତ
ପାତାଳେ ପାତାଳ ଗଙ୍ଗା ନାମରେ ବିଖ୍ୟାତ ।
ପତିତ ତାରିଣୀ ମାଗୋ କଳୁଷ ହାରିଣୀ
ଦୁରିତ ନାଶିନୀ ମାତ ତ୍ରିପଥଗାମିନୀ ।
ତ୍ରିଭୁବନ ଉଦ୍ଧାରିଣୀ ଦେବୀ ମନ୍ଦାକିନୀ
ଅଇରାବତ ଗଜର ଗରବ ନାଶିନୀ ।
ତୋହର ମହିମା ବ୍ରହ୍ମା ଶିବେ ଅଗୋଚର
କଳ କଳ ଧ୍ୱନି ତୋର ଅତି ମନୋହର ।
ବାସବ ମୁକୁଟ ମଣି ଲୁଳେ ତୋ ପୟରେ
ତୋର ପାଦ ସେବୁଥାନ୍ତି ସକଳ ଅମରେ ।
କମଣ୍ଡଳେ ରଖିଥାଇ ତୋତେ ବେଦବର
ମରଣକାଳେ ଘେନଇ ଯେ ତୋହର ନୀର ।
ତାକୁ ଯମ ଭୟ ନାହିଁ ଆଗୋ ସୁରେଶ୍ୱରୀ
କୃପାଜଳମୟୀ ତୁଗୋ ଶଇଳ କୁମାରୀ ।
ମୁହିଁ ଦୀନ ତୋ ଶରଣନେଲି ମନ୍ଦାକିନୀ
କେହି ମୋର ସାହା ନାହିଁ ତୁହି ମୋ ଜନନୀ ।
ତୁ ମାତା ଯେବେ ତୋ ଗର୍ଭେ ଠାବଦେବୁ ମତେ
ସକଳଭୟ ଛାଡ଼ି ମୁଁ ରହିବି ନିଶ୍ଚିନ୍ତେ ।

ମୋତେ ଏ ଜଗତେ ରଖି ନ ପାରିବେ କେହି
କାହିଁ ରହିବାକୁ ଆଉ ମୋତେ ଠାବ ନାହିଁ ।
ଏମନ୍ତେ ବହୁତ ସ୍ତୁତି କଲାକ ରାଜନ
ଜଗତ ପାବନୀଗଙ୍ଗା ହୋଇଲେ ପ୍ରସନ୍ନ ।
ଅର୍ଜୁନର ଭାରିଯା ଯେ ଶ୍ରୀହରି ଭଗିନୀ
ଗଙ୍ଗା ସ୍ନାନେ ଯାଇଥିଲେ ସଙ୍ଗୀ ସଙ୍ଗେ ଘେନି ।
ପୂଜାରେ ଗଙ୍ଗାଙ୍କୁ ତୋଷୀ ସେ ଅବନ୍ତୀପତି
ଘୋଟକୀ ଚାହିଁଣ କହେ କରିଣ ବିନତି ।
ଆଗୋ ସଖି କି କରିବି ନାହିଁ ମୋର ଗତି
ତୋ ଯୋଗୁଁ ତେଜିଲି ସଖି ସକଳ ସମ୍ପତ୍ତି ।
ରାଜ୍ୟ ଛାଡ଼ି ବୁଲିଲି ମୁଁ ଦେଶ ଦେଶାନ୍ତରେ
କେହିମୋତେ ନ ରଖିଲେ ଶ୍ରୀବିଷ୍ଣୁର ଡରେ ।
ବୁଦ୍ଧି ମୋର ହଜିଲାଣି ତେଜିବି ପରାଣ
ଗଙ୍ଗାଜଳେ ଝାସ ଦେବି ଏକଥା ପ୍ରମାଣ ।
ତୋହର କି ଇଚ୍ଛା ତାହା କହ ସଙ୍ଗାତୁଣୀ
ଉର୍ବଶୀ ବୋଇଲା ଶୁଣ ଦଣ୍ଡୀ ନୃପମଣି ।
ପୂର୍ବେ ଯାହା କହିଥିଲି ଘଟିଲାକ ତାହା
କାମେ ମତ୍ତ ହେଲୁ ତୁହି ଅବନ୍ତୀର ନାହା ।
ମୋ ଯୋଗୁ ଅନେକ ଦୁଃଖ ପାଇବୁ ରାଜନ
ମୋର ଆଶା ଛାଡ଼ି କର ଘରକୁ ଗମନ ।
ନ ମାନିଲୁ ସତ୍ୟକଲୁ ରଖିଲୁତ ଘରେ
ଏବେ ଯେବେ ଝାସଦେବୁ ତୁ ହୋ ଗଙ୍ଗାନୀରେ ।
ତୋର ଯେଉଁ ଦଶା ନାଥମୋର ସେହି ଦଶା
ସତ୍ୟ କରି ଅଛି ଛାଡ଼ି ସକଳ ଭରସା ।
ତୁ ଝାସ ଦେଲେ ମୁଁ ଝାସଦେବି ତୋର ସଙ୍ଗେ
ଏମନ୍ତ ରାଜାକୁ କହି ବୋଲେ ଗଙ୍ଗେ ଗଙ୍ଗେ ।
ଉର୍ବଶୀ ବଚନ ଶୁଣି ଅବନ୍ତୀର ନାଥ
ଊର୍ଦ୍ଧ୍ବକୁ ଚାହିଁଣ ପୁଣି ଯୋଡ଼ି ବେନି ହସ୍ତ ।
ବୋଲଇ ହେ ଶୂନ୍ୟବାସୀ ତୁମ୍ଭେ ଥାଅସାକ୍ଷୀ
ଭୋ ଇନ୍ଦ୍ର ଦେବତା ମୁହିଁ ଅଟେ ନିରିମାଖି ।
ସୃଷ୍ଟିର କରତା ନାଥ ପଶୁଅଛି ଜଳେ
ଭୋ ସୂର୍ଯ୍ୟ ଦେବତା ତୁମ୍ଭେ ଅଛ ଅନ୍ତରାଳେ ।
ତେତିଶ କୋଟି ଦେବତା ଦେଖୁଛି ତ ମୁହିଁ
ଶ୍ରୀକୃଷ୍ଣର ଭୟେ ରହି ନ ପାରିଲି କାହିଁ ।
ଗଙ୍ଗାଜଳେ ପଶି ଝାସ ଦେବି ଯାଇ ପ୍ରାଣ
ଭୋ ଅନଳ ଦେବତା ତୁ ସାକ୍ଷୀ ଥାଅ ପୁଣ ।

ବରୁଣ ପବନ ଯମ ଗ୍ରହ ତାରାଗଣ
ଗନ୍ଧର୍ବ କିନ୍ନର ଯକ୍ଷ ସିଦ୍ଧ ଯେ ଚାରଣ ।
ଜଳେ ଝାସ ଦେଉଅଛି ନାହିଁ ମୋର ଦୋଷ
ଦଶଦିଗପାଳ ସାକ୍ଷୀ କରି ନରଈଶ ।
ତଳକୁ ଦୃଷ୍ଟି ଦେଇଣ କହେ କରଯୋଡ଼ି
ମାଗୋ ବସୁମତୀ ସୁଖେ ରହ ମୋତେ ଛାଡ଼ି ।
ମୁହିଁ ମହାଦୋଷୀ ବୋଲି ନ ଦେଲୁ ତୁ ସ୍ଥାନ
ଭୟରେ ମୋହର ମନ ହୁଏ ଛନ୍ନ ଛନ୍ନ ।
ପଶୁଛି ଗଙ୍ଗା ଗର୍ଭରେ ମୋର ଦୋଷ ନାହିଁ
ତୁହୋ ନାଗରାଜା ଅଟୁ ବାସୁକି ଯେ ଅହି ।
ସାକ୍ଷୀ ରହିଲୁ ତୁ ଜଳେ ଦେଉଅଛି ଝାସ
ଅଷ୍ଟକୁଳ ନାଗ ମୋର ନ ଘେନିବ ଦୋଷ ।
ସପତ ସାଗର ଅଷ୍ଟକୁଳ ପରବତ
ସମସ୍ତେ ରହିଲେ ସାକ୍ଷୀ ମୁଁ ଅବନ୍ତୀ ନାଥ ।
ନିରାଶ ହୋଇ ଗଙ୍ଗାରେ ଦେଉଅଛି ଝାସ
ଏମନ୍ତେ ଏହାକୁ ସାକ୍ଷୀ କରି ନରଈଶ ।
ବୋଇଲେ ଗୋ ଗଙ୍ଗାଦେବୀ ତରଳ ତରଙ୍ଗେ
ଶୁଭୁଛି ମୋ ଦୋଷ ନାହିଁ ଘୋଟକୀର ସଙ୍ଗେ ।
ସୁଭଦ୍ରା ଦେବୀ ସେ ତୁଠେ କରୁଥିଲେ ସ୍ନାନ
ଚିତ୍ତେ ଦୟା ଉପୁଜିଲା ଉଠିଲେ ବହନ ।
ନୃପତି ପାଶରେ ଆସି ହୋଇଲେ ପ୍ରବେଶ
ବୋଇଲେ କିପାଇଁ ତୁମ୍ଭେ ଜଳେଦେବ ଝାସ ।
କେଉଁ ଦେଶେ ତୁମ୍ଭ ଘର କି ଜାତି ତୁମ୍ଭର
ସୁନ୍ଦର ମୂରତି ଯୁବା ବୟସ ଆବର ।
ନୃପତି ଲକ୍ଷଣମାନ ବିରାଜୁଛି ଅଙ୍ଗେ
ସୁଲକ୍ଷଣୀ ଘୋଟକୀ ଏ ଅଛି ତୁମ୍ଭ ସଙ୍ଗେ ।
ନୃପତି ବୋଲଇ ତୁମ୍ଭେ ଶୁଣ ଗୋ ଯୁବତୀ
ମୁହିଁ ବଡ଼ ଦୁଃଖୀ ମୋତେ ପଡ଼ିଛି ବିପତ୍ତି ।
ତୁମ୍ଭଙ୍କୁ କହି କି ହେବ ତୁମ୍ଭେ ତ ଅବଳା
ନିଶ୍ଚେ ଝାସଦେବି ଆଉ ମୋତେ ତୁ ନ ବଳା ।
ସୁଭଦ୍ରା କହିଲେ ନିଶ୍ଚେ ଖଣ୍ଡିବି ବିପତ୍ତି
କେମନ୍ତେ ମୁଁ ପ୍ରତେ ଯିବି ବୋଇଲା ନୃପତି ।
ସୁଭଦ୍ରା ବୋଇଲେ ମୁହିଁ କରୁଅଛି ସତ୍ୟ
ହସ୍ତେ ଗଙ୍ଗା ଜଳଧରି କରୁଛି ଶପଥ ।
ଏଥିରେ ସାକ୍ଷୀ ରହିଲେ ଦଶଦିଗପାଳେ
ଶୂନ୍ୟ ପୁରୁଷ ଯେ ଥିଲେ ଗଗନମଣ୍ଡଳେ ।

ଧନ୍ୟ ଧନ୍ୟ ସୁଭଦ୍ରା ଗୋ ବୋଲିପ୍ରଶଂସିଲେ
ଅବନ୍ତୀ ନାଥ ତାହାଙ୍କୁ ଅନାଇ ବୋଇଲେ ।
ଏହି ଅଟଇ ଅବନ୍ତୀଦେଶ ନରପତି
ଏ ଘୋଟକୀ ପାଇଁ ମୋର ଏ ଘୋର ବିପତ୍ତି ।
ମୃଗୟା ଯାଇଁ ବନରୁ ପାଇଲି ଏହାକୁ
ଶରଧା କରି ଧରିଣ ଆଣିଲି ଗୃହକୁ ।
ନାରଦଙ୍କ ମୁଖୁ କୃଷ୍ଣ ପାଇଣ ବାରତା
ଆପେ ଶ୍ରୀମୁଖ ଲେଖିଲେ ଜଗତ କରତା ।
ଦୂତ ହସ୍ତେ ପଠାଇଲେ ପଢ଼ି ଶୁଣାଇଲା
ଘୋଡ଼ୀ ନ ଦେଲେ ତୋ ଶିର କାଟିବେ ବୋଇଲା ।
ଗଉରବ କରି ସେହି ଦୂତକୁ ଅନେକ
ବୋଇଲି କୃଷ୍ଣ ଜଗତ କରତା ନାୟକ ।
ତାଙ୍କୁ କି କଥା ଅପୂର୍ବ ବ୍ରହ୍ମାଣ୍ଡ ଭିତରେ
ଶରଧା କରି ରଖିଛି ଏହାକୁ ମନ୍ଦିରେ ।
ରାଜ୍ୟ ଦେବି ପ୍ରାଣ ଦେବି ଏହାକୁ ନ ଦେବି
ସତ କହୁଛି ରେ ଦୂତ ଏ ମୋର ବାନ୍ଧବୀ ।
ଲେଉଟି ସେ ଦୂତ ଯାଇ କହିଲା ଛାମୁରେ
କ୍ରୋଧେ କହି ପଠାଇଲେ ଯୁଝୁ ମୋ ସଙ୍ଗରେ ।
ଶୁଣି ମୋର ରାଣୀମୋତେ ବୁଝାଇଲା କେତେ
ମନ୍ତ୍ରୀମାନେ ବୁଝାଇଲେ ଆସି ନାନାମତେ ।
ଛାର ଘୋଡ଼ୀ ପାଇଁ କୃଷ୍ଣେ ବିବାଦୀ ନୋହିବା
ଘୋଟକୀ ଦେଇ ହରିଙ୍କି ସନ୍ତୋଷ କରିବା ।
ମୁଁ ବୋଇଲି କେଭେ ମୁହିଁ ସତ୍ୟ ନ ଭାଙ୍ଗିବି
ପ୍ରତିଜ୍ଞା କରିଛି ଦୂତ ଆଗରେ ନ ଦେବି ।
ତା ଲାଗି ଦେଇ ପାରଇ ରାଜ୍ୟ ଧନ ପ୍ରାଣ
ଜାଣି ନ ପାରିବି କୃଷ୍ଣ ସଙ୍ଗେ କରି ରଣ ।
ଏ ଘୋଟକୀ ଘେନି ଡରେ ଅଇଲି ପଳାଇ
ପୃଥ୍ୱୀଯାକ ଭ୍ରମି ଠାବ ନ ପାଇଲି ନାହିଁ ।
ତେଣୁ ଜଳେ ଝାସ ଦେଇ ହରାଇବି ପ୍ରାଣ
ତୁମ୍ଭେ ଯେ କିମ୍ପାଇଁ ମୋତେ କରୁଛ ବାରଣ ।
ତୁମ୍ଭର କେ ପିତା ମାତା ସ୍ୱାମୀ ମୋତେ କହ
କେଉଁ ଦେଶରେ ତୁମ୍ଭର ଅଟଇ ଯେ ଗୃହ ।
ସତ କହିବ ମୋଠାରେ କପଟ ନ କରି
ଏମନ୍ତ ଶୁଣି କହଇ ସୁଭଦ୍ରା ସୁନ୍ଦରୀ ।
ଶୁଣ ହୋ ଅବନ୍ତୀ ନାଥ ମୁଁ କୃଷ୍ଣ ଭଗିନୀ
ବସୁଦେବର ଦୁଲ୍ଲଣୀ ଅର୍ଜୁନ ଘରଣୀ ।
ଦ୍ୱାରକା ଜନମ ଥାନ କହିଲି ମୁଁ ସତ
କରମ ଥାନ ମୋହର ପୁର ଇନ୍ଦ୍ରପ୍ରସ୍ଥ ।
ସତ୍ୟ କରିଅଛି ରାଜା ରଖିବି ନିର୍ଭୟେ
ଏମନ୍ତ ଶୁଣି ମନରେ ବିଚାରଇ ରାୟେ ।
ସଂଶୟ ପଡ଼ିଲା ଏବେ କର ଗୋ ବିଚାର
ଉର୍ବଶୀ ମୁଖକୁ ଚାହିଁ ବୋଲେ ନୃପବର ।
ଆଗୋ ସଖୀ କି କରିବା ପଡ଼ିଲା ସଂଶୟ
କୃଷ୍ଣର ସଖା ପାଣ୍ଡବେ ଏଣୁ ଲାଗେ ଭୟ ।
କୃଷ୍ଣ ପାଣ୍ଡବଙ୍କ ପ୍ରୀତି କ୍ଷୀର ନୀର ପରି
ମୋ ଲାଗି ଅପ୍ରୀତି କାହୁଁ ହେବ ତାହାଙ୍କରି ।
ତୋତେ କୃଷ୍ଣଙ୍କୁ ସମର୍ପି ଭାଙ୍ଗିବେ ମୋ ପଣ
ବିଚାରି କହ ଉର୍ବଶୀ ତୁ ମୋର ପରାଣ ।
ଏମନ୍ତ ଶୁଣି ଉର୍ବଶୀ ବୋଇଲେ ହେ ରାୟେ
ପାଣ୍ଡବ ବିନା ତୁ କାହିଁ ନୋହିବୁ ନିର୍ଭୟେ ।
ସତ୍ୟବନ୍ତ ପ୍ରାଣୀ ସେହି ପ୍ରତିଜ୍ଞାହିଁ ଗାଢ଼
ସଂଶୟମାନ ତୁ ଏବେ ତୋର ମନୁ ଛାଡ଼ ।
ଶ୍ରୀକୃଷ୍ଣ ତାହାଙ୍କୁ ଯୁଦ୍ଧେ ନ ପାରିବ ଜିଣି
ଏ ସୁଯୋଗ ନ ଛାଡ଼ ତୁ ଆହେ ନୃପମଣି ।
ଉର୍ବଶୀ ବଚନେ ସେହି ଅବନ୍ତୀର ପତି
ବୋଇଲା କେମନ୍ତେ ପ୍ରତେ ଯିବ ଆଗୋ ସତୀ ।
ଭାଇ ଭଉଣୀର ପ୍ରୀତି ଅଭେଦ ଅଟଇ
ମୋ ଲାଗି ଯୁଦ୍ଧ କରିବ ନିଶ୍ଚେ ଯଦୁସାଇଁ ।
ସୁଭଦ୍ରା ବୋଇଲେ ତୁହୋ ଶୁଣ ନୃପରାଣ
ଶୁଣିଛ ତ ତ୍ରେତାଯୁଗେ ଲଙ୍କାର ରାବଣ ।
ତାର ଭାଇ ବିଭୀଷଣ ତାକୁ ଛାଡ଼ି କରି
ଶ୍ରୀରାମ ପାଦେ ଶରଣ ପଶିଲା କିପରି ।
ଛେଦ ଭେଦ କହି ଭାଇ ସଙ୍ଗେ କଲା ରଣ
ସତ୍ୟ କହୁଛି ରଖିବି ତୋହର ଶରଣ ।
ଆସ ଆସ ମୋର ସଙ୍ଗେ ଯିବା ନରପତି
ବୃକୋଦର ସ୍ୱାମୀ ତାଙ୍କ ଗୃହରେ ଅଛନ୍ତି ।
ତାହାଙ୍କୁ କହିବା ସେହି ରଖିବେ ଶରଣ
ଦୀନ ଗୋପୀନାଥ ଭଜେ ଶ୍ରୀହରି ଚରଣ ।

.....❋.....

## ଭୀମର ଦଣ୍ଡୀରାଜାପ୍ରତି ଅଭୟପ୍ରଦାନ

କହନ୍ତି ଯେ ଶୁକମୁନି ଶୁଣ ପରୀକ୍ଷିତ
ସୁଭଦ୍ରା ସଙ୍ଗତେ ଗଲା ଅବନ୍ତୀର ନାଥ ।

ଭୀମଙ୍କ ସିଂହ ଦୁଆରେ ପ୍ରବେଶ ହୋଇଲେ
ଅବନ୍ତୀନାଥକୁ ସେହି ଦ୍ୱାରେ ବସାଇଲେ ।
ସହଚରୀଙ୍କି ଘେନିଣ ଗଲେ ଭିତରକୁ
ମହଲେ ବସି ଅଛନ୍ତି ଦେଖିଲେ ଭୀମଙ୍କୁ ।
ସଖୀଙ୍କି କହିଲେ କୁହ ଠାକୁରଙ୍କୁ ଯାଇଁ
ଏଠାରେ ତାଙ୍କୁ ପ୍ରଣାମ କରୁଅଛି ମୁହିଁ ।
ଆଜ୍ଞାଦେଲେ ଠାକୁରଙ୍କୁ ଦୁଃଖ ଜଣାଇବି
ଏମନ୍ତେ ସଖୀଙ୍କି ତହିଁ ପଠାଇଲେ ଦେବୀ ।
ସହଚରୀଗଣ ତହୁଁ ଭିତରେ ପଶିଲେ
ଦୂରୁ ଭୀମଙ୍କୁ ଦେଖିଣ ଓଳଗି ହୋଇଲେ ।
ଭୀମ କହିଲେ ଆସିଛ କହ କି ନିମନ୍ତେ
ଆଗ ହୋଇ ମୁଦ୍ରୁସୁଲୀ କହେ ଯୋଡ଼ ହସ୍ତେ ।
ସୁଭଦ୍ରାଦେବୀ ଭିତର ଘରେ ରହିଛନ୍ତି
ଠାକୁରଙ୍କୁ କହ ଯାଇଁ ବୋଲି କହିଛନ୍ତି ।
ଆଜ୍ଞାଦେଲେ ଜଣାଇବେ ଦୁଃଖ ଅଛି ଯାହା
ଭୀମ ବୋଇଲେ ପଚାରି ଆସ ଯାଇଁ ତାହା ।
ଧାଇଁଗଲା ମୁଦ୍ରୁସୁଲୀ ସୁଭଦ୍ରାଙ୍କ ପାଶେ
ଠାକୁରଙ୍କ ଆଜ୍ଞା ହେଲା କହ ସବିଶେଷେ ।
ସୁଭଦ୍ରା ଦେବୀ ବୋଇଲେ କହିବ ଲୋ ଯାଇଁ
ଅବନ୍ତୀ ଦେଶର ରାଜା ଦଣ୍ଡୀ ନରସାଇଁ ।
ମୃଗୟା ଯାଇ ଗୋଟିଏ ଘୋଟକୀ ପାଇଲା
କୃଷ୍ଣ ମାଗନ୍ତେ ସେ ଘୋଡ଼ୀ ତାହାଙ୍କୁ ନଦେଲା ।
ରାଗେ ଯୁଝିବାକୁ ସଜହେଲେ ଯଦୁପତି
ରାଜ୍ୟ ଛାଡ଼ି ପଳାଇଲା ଦଣ୍ଡୀ କରି ଭୀତି ।
କୃଷ୍ଣଭୟେ ପୃଥିବୀରେ ନ ମିଳିଲା ଠାବ
ବିକଳେ ଗଙ୍ଗାଦେବୀଙ୍କି କରି ପୂଜା ସ୍ତବ ।
ବୁଡ଼ି ମରୁଥିଲା ତାକୁ ଆଣିଛି ଆଶ୍ୱାସି
ଆବର ବୋଲିଛି କୃଷ୍ଣ ହେଲେ ହେବୁ ଦୋଷୀ ।
ବୀର ବୃକୋଦର ଯେହୁ ମଝିଆଁ ଠାକୁର
ଶରଣ ପଶିବୁ ତାଙ୍କ ପାଦେ ନୃପବର ।
ତୋ କଥାମାନି ଶରଣ ରଖିବେ ସେ ତୋଷେ
ନିଶ୍ଚେ ତୋର ପଣ ଆମ୍ଭେ ରଖିବୁ ଯେମନ୍ତେ ।
ଆଜ୍ଞା ହେଲେ ରାଜା ଯିବ ତାହାଙ୍କ ଛାମୁକୁ
ଶୁଣି ମୁଦ୍ରୁସୁଲୀ ଗଲା ଭୀମଙ୍କ ପାଖକୁ ।
ସୁଭଦ୍ରା କହିବା କଥା କହିଲା ବୁଝାଇ
ଭୀମ ବୋଇଲେ କହ ଯା ଆସୁ ନରସାଇଁ ।

ମୁଦ୍ରୁସୁଲୀ ଧାଇଁଆସି କହିଲାକ ପୁଣି
ଆଜ୍ଞା ହେଲା ଯିବାପାଇଁ ଦଣ୍ଡୀ ନୃପମଣି ।
ସୁଭଦ୍ରା ରାଜାକୁ ଡାକି କହିଲେ ଏମନ୍ତ
ଠାକୁରଙ୍କ ପାଖକୁ ହୋ ଯାଅ ଯା ତୁରିତ ।
ଘୋଟକୀ ଘେନିଣ ରାଜା ଗଲା ଭିତରକୁ
ଦୂରରୁ ଦେଖି ଶରଣ ଫୁକାରେ ଭୀମଙ୍କୁ ।
ଭୀମସେନ ଠାକୁର ହେ ବୀର ଚୂଡ଼ାମଣି
ମୋହର ଘର ଅବନ୍ତୀ ବେଶ ରାଜଧାନୀ ।
ମୋର ନାମ ଦଣ୍ଡୀରାୟ ପଶିଲି ଶରଣ
ଶ୍ରୀକୃଷ୍ଣ ଭୟେ ଅଥୟ ମୋହର ପରାଣ ।
ଅକାରଣେ ରାଗ ରଖି ଯଦୁକୁଳ ସାଇଁ
ମାରିବେ ବୋଲି ଖୋଜନ୍ତି ଲୋକ ବରଗାଇ ।
ଦେଶେ ଦେଶେ ଗ୍ରାମେ ଗ୍ରାମେ ଶ୍ରୀକୃଷ୍ଣର ଚାର
ପାଇଲେ ସେ ନେଇ ଦେବ ତାହାଙ୍କ ଛାମୁର ।
ପୃଥିବୀର କାହିଁ ଠାବ ନ ପାଇଲି ମୁହିଁ
ଶ୍ରୀକୃଷ୍ଣ ଡରେ ସମସ୍ତେ କଲେ ମୋତେ ନାହିଁ ।
ସାଗର ପର୍ବତ ବନ ନଦ ନଦୀ ଯେତେ
ଠାବ ନ ଦେଲେ ଶ୍ରୀକୃଷ୍ଣ ଭୟେ ଏ ସମସ୍ତେ ।
ଜରାସନ୍ଧ ଶିଶୁପାଳ ରାଜା ଭଗଦତ୍ତ
କାଶୀପତି ଦୁର୍ଯ୍ୟୋଧନ କୁରୁକୁଳ ନାଥ ।
ନେପାଳ ଭୂପାଳ ଚୋଳ କାଉଁରୀ କାମାକ୍ଷୀ
ସଉରଷ୍ଟ୍ର ଆଦି ରାୟେ ନ ପାରିଲେ ରଖି ।
ନିରାଶେ ମୁଁ ଗଙ୍ଗାଜଳେ ଦେଉଥିଲି ଝାସ
ସୁଭଦ୍ରା ଦେବୀଙ୍କଠାରୁ ପାଇଣ ଆଶ୍ୱାସ ।
ଭରସା କରି ଆସିଛି ଆହେ ବୀରମଣି
ତୁମ୍ଭ ବିନା ମୋର ସାହା ନାହିଁ କେହି ପୁଣି ।
ଅବନ୍ତୀ ନାଥର ଦେଖି ଏମନ୍ତ ବିକଳ
ସୁଭୟାକରି ବୋଇଲେ କୁନ୍ତୀଦେବୀ ବାଳ ।
ନିର୍ଭୟ ହୋଇ ମୋ ପାଶେ ବସ ତୁ ରାଜନ
ପଚାରି ବୁଝିବା ସିନା ଭୟର କାରଣ ।
ଭରସା ପାଇ ନୃପତି ଭୀମ ପାଖେ ଗଲା
ଚରଣେ ପ୍ରଣାମ କରି ଆସନେ ବସିଲା ।
ଭୀମ ବୋଇଲା ହୋ ରାୟେ ଯେ ଦେବାଧିରାୟ
ଜଗତଜନ ଠାକୁର କୃପା ଜଳମୟ ।
ତାହାଙ୍କ ପାଦେ ଦୋରେହା ହୋଇଲୁ କିମ୍ପାଇଁ
କହିଲେ ସିନା ଜାଣିମା ଆହେ ନରସାଇଁ ।

ନୃପତି ବୋଇଲା ଶୁଣ ଠାକୁର ହେ ଭୀମ
ତୁମ୍ଭେ ତ ଅଟ ଯମର ପରେ କାଳଯମ ।
ମିଛ କହି ତୁମ୍ଭ ଆଗେ ନରକେ ପଡ଼ିବି
ଜନ୍ମ ଜନ୍ମାନ୍ତରେ ନାନା ଦୁଃଖ ମୁଁ ପାଇବି ।
ଦିନେ ମୃଗୟାକୁ ଯାଇ ବନସ୍ତେ ପଶିଲି
ଏହି ଘୋଟକୀ ଗୋଟିକୁ ବନରେ ଦେଖିଲି ।
ସୁଲକ୍ଷଣୀ ଦେଖି ମୋର ବଳିଲା ଶରଧା
ଧରା ନ ଦେଲା ପାଇଲି ମୁଁ ଅନେକ ବାଧା ।
ବଡ଼ କଷ୍ଟେ ଧରି ଆଣି ରଖିଲଇଁ ଘରେ
କେହି ନ ଜାଣନ୍ତି ରଖିଥାଇ ଗୁପତରେ ।
ଚଉଦପୁର ବାରତା ନାରଦ ଜାଣନ୍ତି
କଳି ଲଗାଇ ଦେଇଣ ଆନନ୍ଦେ ନାଚନ୍ତି ।
ସେ ମୁନି ଯାଇ କହିଲେ ଶ୍ରୀହରି ଛାମୁରେ ।
ଅନାଧୃଷ୍ଟକୁ ପେଷିଲେ କୃଷ୍ଣ ମୋର ପୁରେ ।
ଶ୍ରୀହରି ଶ୍ରୀମୁଖ ଗୋଟି ପଢ଼ି ବୁଝାଇଲା
ଘୋଡ଼ୀ ନ'ଦେଲେ ମରଣ ନିଶ୍ଚୟ ବୋଇଲା ।
ଘୋଡ଼ୀ ଉପରେ ଶରଧା ଥିବାରୁ ମୋହର
ଲୋଭ ଛାଡ଼ି ନ ପାରିଲି ଆହେ ବୀରବର ।
ପ୍ରତିଜ୍ଞା କରି କହିଲି ଅନାଧୃଷ୍ଟ ଆଗେ
ଘୋଟକୀ ଗୋଟି ଆଣିଛି ମୁଁ ଅତି ସରାଗେ ।
ପିଣ୍ଡେ ପ୍ରାଣ ଥିବାଯାଏ ଛାଡ଼ି ନ ପାରଇ
ତା ଲାଗି ଏ ରାଜ୍ୟ ପଛେ ଶ୍ରୀକୃଷ୍ଣଙ୍କୁ ଦେଇ ।
ଘୋଟକୀ ଘେନି ପଶିବି ଅରଣ୍ୟ ଭିତରେ
ଏହା ଯାଇଁ କରି ତୁହି ଶ୍ରୀକୃଷ୍ଣ ଆଗରେ ।
ଅନାଧୃଷ୍ଟ ଫେରି ଯାଇ କହିଲା ବୁଝାଇ
ପୁଣି ଦୂତ ପଠାଇଲେ ପ୍ରଭୁ ଯଦୁସାଇଁ ।
ମୁଁ ବୋଇଲି ସତ୍ୟ କେଭେ ଲଙ୍ଘି ନ ପାରିବି
ଏଖଣି ତୋ ଆଗେ ରାଜ୍ୟ ଛାଡ଼ି ପଳାଇବି ।
ଏମନ୍ତ କହି ଘୋଟକୀ ଉପରେ ବସିଲି
ରାଜ୍ୟ ଧନ ଛାଡ଼ି ଦେଶ ଦେଶାନ୍ତର ଗଲି ।
ଦୂତ ମୁଖରୁ ବାରତା ପାଇ ଯଦୁପତି
କୋପେ ଅନାଧୃଷ୍ଟ ଆଦି ବୀରଙ୍କୁ ଡାକନ୍ତି ।
ବୋଲନ୍ତି ଅବନ୍ତୀପତି ଗଲା ଘୋଡ଼ୀ ଘେନି
ଚାରଙ୍କୁ ପଠାଇ ଦିଅ ଖୋଜନ୍ତୁ ଅବନୀ ।
ଦେଶ ପୁରଗ୍ରାମ ବନ ପର୍ବତ ସାଗର
ଖୋଜିବେ କାହିଁ ଅଛନ୍ତି ଦଣ୍ଡୀ ନୃପବର ।

ସେ ମୋର ଦୋରେହା ତାକୁ ଯେହୁଁ ଦେବ ଠାବ
ତାଠାରୁ ବେଶୀ ଦୋରେହା ସେ ମୋର ହୋଇବ ।
ଚକ୍ରେ ତାକୁ ଛିନ୍ନ ଭିନ୍ନ କରିବି ନିୟତ
ଦେବତା ଗନ୍ଧର୍ବ କିବା ଦାନବ ଦଇତ ।
ଏମନ୍ତ କହିଲେ ଯହୁଁ ରୁକ୍ମିଣୀର ପତି
ଖୋଜିବା ନିମନ୍ତେ ମୋତେ ଚାରେ ଗଲେ ଧାଇଁ ।
ମୁଁ ଯାହା ପାଖକୁ ଗଲି ସେ କହିଲା ଏହା
ଚାର ପଠାଇଣ ଥିଲେ ପ୍ରଭୁ ଯଦୁନାହା ।
ତୋତେ ଯେ ରଖିବ ତାର ଜୀବନ ସଂଶୟ
ଏମନ୍ତ ଶୁଣି ପାଇଣ ମୁହିଁ ମହାଭୟ ।
ବୁଡ଼ି ମରୁଥିଲି ନାଥ ଆସି ଭାଗ୍ୟବଳେ
ଶରଣ ପଶିଲି ଏବେ ତୋର ପାଦତଳେ ।
ଶୁଣି ବୀର ବୃକୋଦର ମନେ ମନେ ଭାଳି
କ୍ଷତ୍ରୀ ଧର୍ମ ରଖିବଇଁ ଶରଣ ପାଳି ।
ଧର୍ମ ଯହିଁ କୃଷ୍ଣ ତହିଁ ଏକଥା ନିୟତ
ଧର୍ମଛଡ଼ାକୁ ତ ବାସ ନାହିଁ ତ୍ରିଜଗତ ।
ସ୍ୱଧର୍ମ ଛାଡ଼ିବି କିମ୍ପା ମରଣକୁ ଡରି
ମାଇଲେ ମାରିବେ ପଛେ ଦେବ ନରହରି ।
ଏମନ୍ତ ଭାଳି କହଇ ରାଜାକୁ ମାରୁତି
ଅଭୟ ଦେଲି ରହ ତୁ ଅବନ୍ତୀର ପତି ।
ତୋ ଲାଗି ପଛକେ ଯାଉ ଏ ମୋହ ପରାଣ
ନିଶ୍ଚେ ମୁଁ ଶ୍ରୀକୃଷ୍ଣ ସଙ୍ଗେ କରିବଇଁ ରଣ ।
ଏ ବାରତା ପାଇ ରାଜା ଧର୍ମ ଯୁଧିଷ୍ଠିର
ବୋଇଲେ କି କର୍ମ କଲୁ ଆରେ ବୃକୋଦର ।
କାଳସର୍ପ ମୁଖେ ନେଇ ଭରିଲୁ ଅଙ୍ଗୁଳି
ଜାଣୁ ଜାଣୁ ଶିଳା ଫିଙ୍ଗି ପାଡିଲୁ ମଉଳି ।
ଶ୍ରୀକୃଷ୍ଣର ଦୋରେହାକୁ ରଖିଲୁ କିମ୍ପାଇଁ
ଶୁଣିଲେ କିସ ବୋଲିବେ ପ୍ରଭୁ ଯଦୁସାଇଁ ।
ଭାଳିବେ ଜାରଜାତକା ଅଟନ୍ତି ପାଣ୍ଡବେ
ତାଙ୍କ ପାଇଁ ସିନା ଶତ୍ରୁ ମୋର କଉରବେ ।
ମୋ ଯୋଗୁଁ ଦ୍ୱାରକାପୁରେ ବଳେ ପଶି ପାର୍ଥ
ସୁଭଦ୍ରାକୁ ହରି ନେଲା ହୋଇ ଚାରିହାତ ।
ବଳଦେବଙ୍କୁ ଜିଣିଲା ଚକ୍ର ଦେଲି କାଢ଼ି
ମୋ ଯୋଗୁଁ ପୋଡ଼ି ନ ମଲେ ସିନା ଜତୁଘର ।
ମୋ ଯୋଗୁଁ ସିନା ପାଣ୍ଡବେ ଜଗତ ବିଜୟୀ
ଏଡ଼େ ଅବିଚାର ଭୀମ କଲୁ ତୁ କିମ୍ପାଇଁ ।

ଯୁଧିଷ୍ଠିର ମୁଖୁ ଶୁଣି ଏମନ୍ତ ବଚନ
ଗଦା ଉଠାଇ ବୋଇଲେ ବୀର ଭୀମସେନ
କ୍ଷତ୍ରିୟର ଧର୍ମ ଅଟେ ଶରଣ ରକ୍ଷଣ
ମୁଁ ଅଧର୍ମ କରିନାହିଁ ଆହେ ନୃପରାଣ
ବଡ଼ଜଣ ହୋଇ କୃଷ୍ଣ ଅଧର୍ମ କରନ୍ତେ
ନିର୍ଦ୍ଦୋଷ ଅଟଇ ଏହି ଅବନ୍ତୀ ନୃପତେ ।
ଭୟେ ଶରଣ ପଶିଛି ଆସି ମୋହର
ତେଣୁ ଏହାକୁ ରଖିବି ମୁହିଁ ଅପ୍ରମାଦ ।
ସତ୍ୟ ସତ୍ୟ ଏ ମୋହର ତିନିବାର ।
ଏହାଲାଗି ଦେବି ପ୍ରାଣ ଏ ମୋର ନିଶ୍ଚୟ ।
ଏହା ଲାଗି କୃଷ୍ଣ ଯେବେ କରିବେ ...
ଯହିଁକି ଯେ ନ ଡରଇ ଏହି ବୀର ... ।
ତୁମ୍ଭଙ୍କୁ ମୁଁ କହୁନାହିଁ ... ଦେବା ପାଇଁ ...
ସ୍ୱଧର୍ମ ରଖିବ ପ୍ରାଣପଣେ ନରନାଥ ।
ଏମନ୍ତ ପ୍ରତିଜ୍ଞା କଲା ବୀର ବୃକୋଦର
ଦ୍ୱିଜ ଗୋପୀନାଥ ଭଣେ ଅଚ୍ୟୁତ ପୟର ।

.....❀.....

**ଦଣ୍ଡୀ ଅନ୍ୱେଷଣେ ଦୂତଙ୍କର ଗମନ**

ଶୁକ କହନ୍ତି ହେ ଶୁଣ ପରୀକ୍ଷିତ ରାୟ
ଦୂତର ମୁଖୁଁ ଶୁଣିଲେ ଦେବକୀ ତନୟ ।
ରାଜ୍ୟ ଛାଡ଼ିଘୋଡ଼ୀ ଚଢ଼ି ପଳାଇଲା ରାଜା
ନ ମାନିଲା ଯେ କହିଲା ତାହାର ଭାରିଜା ।
ମନେ ମନେ ହସିକୃଷ୍ଣ ବୋଇଲେ କ୍ରୋଧରେ
ଲୁଚିବୁ କାହିଁରେ ମୂଢ଼ ବ୍ରହ୍ମାଣ୍ଡ ଭିତରେ ।
ଜଳ ସ୍ଥଳ ଅନଳରେ ନାହିଁ ତୋର ବାଟ
ଘୋଡ଼ୀର ନିମନ୍ତେ ନିଶ୍ଚେ ଯିବୁ ତୁହି ନାଶ ।
ଏମନ୍ତ କହି ଦୂତଙ୍କୁ ବୋଇଲେ ଅନାଦି
ଚାରିଦିଗେ ଖୋଜି ଚାରି ଗୋଟା ଦୂତ ଯାଅ ।
ବନ ପର୍ବତ ଖୋଜନ୍ତୁ ଯାଇଁ ଚାରିଦୂତେ
ନଦୀ ନଦ ହ୍ରଦ ଆଦି ସାଗର ସହିତେ ।
ପାତାଳ ପୁରକୁ ଯାନ୍ତୁ ସାତ ଗୋଟା ଦୂତ
ବାରତା ପାଇଲେ ଆସି କହନ୍ତୁ ତୁରିତ ।
ସପତ ସ୍ୱର୍ଗ ଖୋଜନ୍ତୁ ସାତ ଜଣ ଯାଇ
ଏମନ୍ତ ଆଜ୍ଞା କୋପରେ ଦେଲେ ଯଦୁସାଇଁ ।
ବାୟୁଲୋକ ଚନ୍ଦ୍ର ଲୋକ ସୂର୍ଯ୍ୟଲୋକ ଆଦି
ଗ୍ରହ ନକ୍ଷତ୍ର ମଣ୍ଡଳ ଗଲେ ଦୂର ଖେଦି ।
ମେଘ ମଣ୍ଡଳ ଖୋଜିଣ ବିଦିଗ ଖୋଜିଲେ
ଐରାବତ ଗଜକୁ ଯେ ବାଟରେ ଦେଖିଲେ ।
ପଚାରନ୍ତେ ଗଜରାଜ ନାହିଁ ନାହିଁ କଲା
ନନ୍ଦନବନରେ ଦୂତ ଯାଇ ପ୍ରବେଶିଲା ।
ଗନ୍ଧର୍ବେ କହିଲେ ଦଣ୍ଡୀରାଜା ଆସି ନାହିଁ
ଅମରାବତୀ ଭୁବନେ ମିଳିଲାକ ଯାଇଁ ।
ସଭାକରି ବସିଅଛି ଦେବ ସୁରପତି
ଅପସରାମାନେ ଆଗେ ନୃତ୍ୟ କରୁଛନ୍ତି ।
ତେତିଶ କୋଟିଦେବତା ଅଛନ୍ତି ସଭାରେ
ଦୂତ ପ୍ରଣାମ କରିଣ ବାସବ ଛାମୁରେ ।
ବୋଇଲା ମୁଁ କୃଷ୍ଣଦୂତ ଦଣ୍ଡୀକି ଖୋଜଇ
ଜାଣିଥିଲେ କହିଦିଅ ଆହେ ସୁରସାଇଁ ।
ଇନ୍ଦ୍ର ବୋଇଲେ ସ୍ୱର୍ଗକୁ ଆସିନାହିଁ ରାଜା
ଶୁଣି ଦୂତ ସେ ସଭାକୁ କରିବେଗେ ତେଜ୍ୟା ।
ଯମପୁର ରୁଦ୍ରପୁର ସକଳ ଖୋଜିଲେ
କୃଷ୍ଣ ଦୂତେ ଖୋଜି ଖୋଜି କାହିଁ ନ ପାଇଲେ
ବ୍ରହ୍ମ ଲୋକ ଧ୍ରୁବଲୋକ ଖୋଜିଣ ଫେରିଲେ ।
ପାଇଲୁ ନାହିଁ କୃଷ୍ଣଙ୍କ ଆଗେ ଜଣାଇଲେ ।
ସାତଦୂତେ ଯାଇ ସପ୍ତପାତାଳରେ ପଶି
ଖୋଜନ୍ତି ଦଣ୍ଡୀ ରାଜାକୁ ନାହିଁ ଦିବାନିଶି ।
ଅତଳ ସୁତଳ ତଳାତଳ ରସାତଳ
ପାତାଳ ବାସୁକୀପୁର ବଳିର ଯେ ଘର ।
ଖୋଜି ଖୋଜି ନ ପାଇଲେ ରାଜାକୁ ସେ କାହିଁ
ଦ୍ୱାରକା ଆସି ଶ୍ରୀକୃଷ୍ଣ ଛାମୁରେ ଜଣାଇ ।
ସପତ ପାତାଳେ ନାହିଁ ଅବନ୍ତୀର ପତି
ଚାରଦିଗେ ଚାରିଦୂତେ ପୃଥିବୀ ଭ୍ରମନ୍ତି ।
ନଦୀ ସାଗର ପର୍ବତ ନ ଛାଡ଼ନ୍ତି ତିଳେ
ଯେତେ ନୃପତି ଅଛନ୍ତି ଏ ମହୀମଣ୍ଡଳେ ।
ସମସ୍ତେ କହିଲେ ଦଣ୍ଡୀରାଜା ଆସିଥିଲା
ଶ୍ରୀକୃଷ୍ଣ ଭୟରେ କାହିଁ ଠାବ ନ ପାଇଲା ।
ସମସ୍ତେ ଫେରିଲେ ଏକା ଗଲା ଅନାଧୃଷ୍ଟ
ବୋଇଲା ମୁଁ ଖୋଜିଆସେ ଯାଇଁ କୁରୁରାଷ୍ଟ୍ର ।
ପାଣ୍ଡବେ ଯେ କୃଷ୍ଣ ସଖା ତାହାଙ୍କୁ କହିବି
ନ ପାଇଲେ ଦ୍ୱାରକାକୁ ଫେରିଣ ଆସିବି ।
ଆଉ ସବୁ ଦୂତେ ଫେରି ଦ୍ୱାରକାକୁ ଗଲେ
କୃଷ୍ଣ ଛାମୁରେ ସକଳ କଥା ଜଣାଇଲେ ।

ଶୁଣି ଗୋବିନ୍ଦ ବୋଇଲେ ଫେରୁ ଅନାଧୃଷ୍ଟ
ନ ହେଲେ ତାହାର ଦଣ୍ଡୀରାଜା ସଙ୍ଗେଭେଟ ।
ସୁଦର୍ଶନ ଚକ୍ର ପେଷି କାଟିବି ତା ଶିର
ଏମନ୍ତ ପ୍ରତିଜ୍ଞା କଲେ ପ୍ରଭୁ ଯଦୁବୀର ।
ଅନାଧୃଷ୍ଟ ଯାଇଁ କୁରୁ ସଭାରେ ମିଳିଲା
ଦୁର୍ଯ୍ୟୋଧନ ନୃପତିକି ବାରତା ପୁଚ୍ଛିଲା ।
ମାନଗୋବିନ୍ଦ ବୋଇଲା ଆସିଥିଲା ଦଣ୍ଡୀ
ଘୋଡ଼ୀ ଗୋଟିକି ଅଛଇ ଯତନରେ ମଣ୍ଡି ।
ଆମ୍ଭେ ନାସ୍ତି କରିବାରୁ ଏଥୁଁ ବାହୁଡ଼ିଲା
କହି ନ ପାରିବୁ ଆମ୍ଭେ ସେ କେଣିକି ଗଲା ।
ଶୁଣି ଅନାଧୃଷ୍ଟ ତହୁଁ ଗଲା ଅତି ବେଗେ
ଇନ୍ଦ୍ରପ୍ରସ୍ଥରେ କହିଲା ଯୁଧିଷ୍ଠିଙ୍କ ଆଗେ ।
ହରି ହରି ବୋଲ ଭାଇ ଦୁଃଖ ଯାଉ ଦୂର
ହରି ବୋଇଲେ ପାତକ ହୋଇବ ଅନ୍ତର ।

## ଯୁଧିଷ୍ଠିରଙ୍କ ସହିତ ଅନାଧୃଷ୍ଟର ମନ୍ତ୍ରଣା

ଶୁକଦେବ କହୁଛନ୍ତି ପରୀକ୍ଷ ଶୁଣନ୍ତି
ଅନାଧୃଷ୍ଟ ଯୁଧିଷ୍ଠିଙ୍କ ଆଗରେ କହନ୍ତି ।
ଅଳିଙ୍ଗ କଳିଙ୍ଗ ମଦ୍ର ମଗଧ ତୈଲଙ୍ଗ
ପାଞ୍ଚାଳ ମଥୁରା ଗୟା ମିଥିଳା ଭୂଲିଙ୍ଗ ।
ଅଯୋଧ୍ୟା ଉତ୍କଳ ମତ୍ସ୍ୟ ମଘ ଦେଶ ଆଦି
ଗୁଜରାଷ୍ଟ୍ର ସଉରାଷ୍ଟ୍ର କାଞ୍ଚି ଜଳନିଧି ।
କନାଉଜ କାଶ୍ମୀର ଯେ ବଙ୍ଗ ଅଙ୍ଗଦେଶ
କାଉଁରୀ କାମାକ୍ଷା ଦେଶ ଭୂପାଳ ଗଣେଶ ।
ଏ ଆଦି ଯେତେକ ଦେଶ ପୃଥିବୀରେ ଅଛି
ସାଗର ପର୍ବତ ନଦ ନଦୀ ବାଛି ବାଛି ।
କାହିଁ ନ ପାଇଲୁ ଆମ୍ଭେ ଦଣ୍ଡୀ ଗଲା କାହିଁ
ହସ୍ତିନାପୁର ଖୋଜି ମୁଁ ଅଇଲଇଁ କହି ।
ଏମନ୍ତ କହି ଚରଣେ ଲୋଟି ଅନାଧୃଷ୍ଟ
ଯୁଧିଷ୍ଠି ବୋଇଲେ ବାବୁ ବସ ହୋଇ ତୁଷ୍ଟ ।
ଶ୍ରୀହରି କୁଶଳ ବଳରାମର କୁଶଳ
ପ୍ରଦ୍ୟୁମ୍ନ ଶାମ୍ବ ଆଦି ସେ କୁମର ସକଳ ।
ରୁକ୍ମିଣୀ ଆଦି ଯେତେକ ଅଷ୍ଟପାଟବଂଶୀ
ଏହାଙ୍କ କୁଶଳ ବାବୁ କହ ତୁ ବିଶେଷି ।
ଅନାଧୃଷ୍ଟ ବୋଇଲା ଏ ସମସ୍ତ କୁଶଳ
କ୍ରୋଧେ ଅଧୀର କେବଳ ବସୁଦେବ ବାଳ ।
ଘୋଟକୀ ଏକ ପାଇଛି ଦଣ୍ଡୀ ନରପତି
ମାଗିଲେ ଯହୁଁ ନ ଦେଲା କୋପେ ଯଦୁପତି ।
ବୋଇଲେ ଦଣ୍ଡୀକି ମାରି ଆଣିବି ଛଡ଼ାଇ
ରାଜ୍ୟଛାଡ଼ି ପଳାଇଛି ଡରେ ନରସାଇଁ ।
ତିନିପୁର ଖୋଜିଲୁଣି ନ ପାଇଲୁ ଅନ୍ତ
ମୋତେ ଚାହିଁ ରହିଥିବେ ଶଙ୍ଖଚକ୍ର ହସ୍ତ ।
ମୋଠାରୁ ଶୁଣିଲେ ପ୍ରଭୁ ହୋଇଣ ନିରାଶ
ପେଷି ଦେବେ ସୁଦର୍ଶନ ଚକ୍ର ଯଦୁଶିଷ୍ୟ ।
କ୍ଷୁଧା ତୃଷାରେ ବ୍ୟାକୁଳ ହେଉଛି ମୋ ଦେହ
ସୂପକାରକୁ ଡାକିଲେ ଯୁଧିଷ୍ଠିର ରାୟ ।
ଅନାଧୃଷ୍ଟକୁ ଭୋଜନ ଦିଅ ଭଲକରି
ଆଜ୍ଞାପାଇ ସୂପକାର ଆଣି ଦେଲା ବାରି ।
ଉଠି ମୁଖ ପଖାଳିଣ ଅନାଧୃଷ୍ଟ ଗଲା
ଷଡ଼ରସ ଯେ ଭୋଜନ ସୁଖେ ବସି କଲା ।
ମୁଖ ପଖାଳି ଆସିଣ ବସିଲା ସଭାରେ
ଯୁଧିଷ୍ଠି ବହୁତ କଥା ଭାଳିଣ ମନରେ ।
କହିଲେରେ ଅନାଧୃଷ୍ଟ କହିବାକୁ ଲାଜ
ନ କହିଲେ ତ ରୁଷିବେ ପ୍ରଭୁ ଦେବରାଜ ।
ଅମାନିଆ ଭୀମ ଯୋଗୁଁ ହେବି ସର୍ବନାଶ
ଭୀମଯୋଗୁଁ ଆମ୍ଭେ ସିନା ଗଲୁ ବନବାସ ।
ମୂର୍ଖ ପଣିଆ ତାହାର କେଭେ ନ ଛାଡ଼ିଲା
ଧୃତରାଷ୍ଟ୍ର ପୁତ୍ରଙ୍କର ସଙ୍ଗେ କଳି କଲା ।
ଭୋଜନେ ରଣେ ଶୃଙ୍ଗାରେ ନାହିଁ ତାର ଶାନ୍ତି
ତା ଆଖିକି ଦେଖିଲେ ତ ଲାଗେ ବଡ଼ଭୀତି ।
କହିବି ତୋର ଆଗେ ମୁଁ ତାହାର କି ଗୁଣ
ତୁହୋ ବୀର ଅନାଧୃଷ୍ଟ ନ ଜାଣୁ କି ପୁଣ ।
ସୁଭଦ୍ରାଦେବୀ ଯେ ଗଙ୍ଗା ସ୍ନାନେ ଥିଲାଯାଇ
ବୁଡ଼ି ମରୁଥିଲା ତହିଁ ଅବନ୍ତୀର ସାଇଁ ।
ଦୟା କରିଣ ଆଶ୍ୱାସି ଘରକୁ ଆଣିଲା
ଭୀମର ଆଗେ ସକଳ ବୁଝାଇ କହିଲା ।
ଅଭୟ ଦେଇ ରଖିଛି ତାକୁ ବୃକୋଦର
ଦୁଷ୍ଟପଣେ ନ ଘେନଇ ବଚନ ମୋହର ।
କି କରିବି ମୋତେ କିଛି ବୁଦ୍ଧି ଦିଶୁନାହିଁ
ମନରେ କଷ୍ଟ କରିବେ ଶୁଣି ଯଦୁସାଇଁ ।

ବୋଲିବେ ଅଣ ବିଶ୍ୱାସୀ ପଞ୍ଚ ସହୋଦର
ମୋର ଶତ୍ରୁକୁ ଲୁଚାଇ ରଖିଛନ୍ତି ଚର ।
ଆରେ ଅନାଧୃଷ୍ଟ ତୁହି କହିବୁ କୃଷ୍ଣଙ୍କୁ
କେତେ ଆପଦରୁ ରଖି ନାହାନ୍ତି ଆମ୍ଭଙ୍କୁ ।
ଆମ୍ଭେ ପାଞ୍ଚ ସହୋଦର ତାଙ୍କ ଅନୁଚର
ଭାବଗ୍ରାହୀ ନାଥ ସେହି କରୁଣା ସାଗର ।
ଅନ୍ତର୍ଯ୍ୟାମୀ ସେ ପ୍ରାଣୀଙ୍କ ଅନ୍ତରେ ଥାଆନ୍ତି
ପ୍ରାଣୀଙ୍କର ଭଲ ମନ୍ଦ ସକଳ ଜାଣନ୍ତି ।
ଆମ୍ଭର ଟେକ ରଖନ୍ତି ହରି କାଳେ କାଳେ
ବିଷମ ସନ୍ଧି ପଡ଼ିଛି ଆସି ଏତେବେଳେ ।
ଏମନ୍ତ ଶୁଣି ବୋଇଲା ଅନାଧୃଷ୍ଟ ବୀର
ତୁମ୍ଭେ ତ ଅଟ ସାକ୍ଷାତେ ଧର୍ମ ନୃପବର ।
ମୋ ମନକଥା କହିବା ପାଇଁ ଲାଗେ ଭୟ
କହ କିନା ବୋଇଲେ ଯେ ଯୁଧିଷ୍ଠିର ରାୟ ।
ଘୋଟକୀ ପାଇଁ କୃଷ୍ଣଙ୍କ କ୍ଷୁଧା ତୃଷା ନାହିଁ
ମନଚଞ୍ଚଳ ତାହାଙ୍କୁ ନିଦ୍ରା ନ ଆସଇ ।
ବସୁଛନ୍ତି ଉଠୁଛନ୍ତି ବାଳୁତ ପରାୟ
ଘୋଟକୀ ଲାଗି ସଂଗ୍ରାମ ହୋଇବ ନିଶ୍ଚୟ ।
ମୋର ସଙ୍ଗେ ଘୋଟକୀକି ଦେଇପାର ଯେବେ
ତୁମ୍ଭ ସଙ୍ଗତେ ଅପ୍ରୀତି ନୋହିବ ବା ତେବେ ।
ଏକଥା ଯେବେ ମନକୁ ଅଇଲା ବିଚାର
ଏମନ୍ତ ଶୁଣି ବୋଇଲେ ରାଜା ଯୁଧିଷ୍ଠିର ।
ଯେତେମତେ ବୁଝାଇଲୁ ନ ବୁଝଇ ଭୀମ
ଦଣ୍ଡୀର ପ୍ରାଣ ରଖିବ କରିଣ ସଂଗ୍ରାମ ।
ଆମ୍ଭ କାହାରି ଭରସା ନ ରଖଇ ସେହି
ଏକାକେ ଯୁଦ୍ଧ କରିବ ଦଣ୍ଡୀରାଜା ପାଇଁ ।
ଭୀମ ମୂର୍ଖ ସିନା କୃଷ୍ଣ ନୁହନ୍ତି ମୁରୁଖ
ଅନନ୍ତ ମାୟା ଜାଣନ୍ତି ପ୍ରଭୁ ପଦ୍ମମୁଖ ।
ତିନିଜଣଙ୍କର ଟେକ ରହିବ ଯେମନ୍ତେ
ବିଷମ ସନ୍ଧି ପରାୟେ ଲାଗୁଅଛି ମୋତେ ।
ଅନାଧୃଷ୍ଟ ବୋଇଲା ମୁଁ ହେଉଛି ମେଲାଣି
ଦୀନ ଗୋପୀନାଥକୁ ହେ ରଖ ଚକ୍ରପାଣି ।

.....❋.....

## ପ୍ରଦ୍ୟୁମ୍ନ ସହିତ ପାଣ୍ଡବଙ୍କ ମନ୍ତ୍ରଣା

ଶୁକଦେବ କହନ୍ତି ହୋ ଶୁଣ ପରୀକ୍ଷିତ
ଦ୍ୱାରକାରେ ପ୍ରବେଶିଲା ଅନାଧୃଷ୍ଟ ଦୂତ ।
ଶ୍ରୀହରିଙ୍କ ଆଗେ ସବୁ କହିଲା ବୁଝାଇ
ପୃଥିବୀ ବୁଲିଲୁ କାହିଁ ଦଣ୍ଡୀକି ନ ପାଇ ।
ବାରତା ଦେବା ନିମନ୍ତେ ଇନ୍ଦ୍ର ପ୍ରସ୍ଥ ଗଲି
ଯୁଧିଷ୍ଠିଙ୍କ ଆଗେ ସବୁ ବୁଝାଇ କହିଲି ।
ଦେଖିଲି ବଦନ ଗୋଟି ଦିଶୁଛି ମଳିନ
କୁଶଳ ବାରତା ପୁଚ୍ଛି ବୋଇଲେ ରାଜନ ।
କି କହିବି ଅନାଧୃଷ୍ଟ ଲାଜ କଥା ତୋତେ
ନ କହିବି ଯେବେ ହରି କି କହିବେ ମୋତେ ।
ଦଣ୍ଡୀରାଜାକୁ ଅଭୟ ଦେଇଅଛି ଭୀମା
ଗଙ୍ଗାସ୍ନାନ କରୁଥିଲା ଅର୍ଜ୍ଜୁନର ବାମା ।
ବୁଡ଼ି ମରୁଥିଲା ଦଣ୍ଡୀ ଆଣିଲୁ ବୁଝାଇ
ଭୀମାକୁ କହି ଦଣ୍ଡୀଙ୍କୁ ଶରଣ ରଖାଇ ।
ଶୁଣି ମୁହିଁ ବୁଝାଇଲି ଯାଇଁ ଯେତେମତେ
ନ ବୁଝିଲା ଭୀମା ଆଖି ଦେଖାଇଲା ମୋତେ
କି ବୁଦ୍ଧି କରିବି କିଛି ବୁଦ୍ଧି ଦିଶୁନାହିଁ
କୃଷ୍ଣବିନେ ପାଣ୍ଡବଙ୍କ ଗତି ଅଛି କାହିଁ ।
ମୋ କହିବା କଥା ଯାକ କହିବୁ କୃଷ୍ଣଙ୍କୁ
କାଳେ କାଳେ ରଖନ୍ତି ସେ ପାଣ୍ଡବ ଟେକକୁ ।
ଏମନ୍ତ କହି ମେଲାଣି ଦେଲେ ଧର୍ମରାୟ
କ୍ରୋଧେ ପ୍ରଜ୍ୱଳିତ ହୋଇ ଦେବକୀ ତନୟ ।
ବୋଇଲେ ପାଣ୍ଡବ ନାମ ଆଜୁ ହେଲା ଲୋପ
ଜାଣନ୍ତି ନାହିଁକି ମୁହିଁ ଅଟେ କାଳସର୍ପ ।
ଏଡ଼େ ଗର୍ବ ମୋର ଶତ୍ରୁ ରଖିଛନ୍ତି ଘରେ
ସାଜ ଯଦୁବଳ ମୋର ପଶିବା ସମରେ ।
ପାଣ୍ଡବଙ୍କ ଗର୍ବ ଆଜି କରିବଇଁ ଚୂନା
ଅନାଧୃଷ୍ଟ କହେ ମୋର କଥାକର ଘେନା ।
ଇନ୍ଦ୍ର ପ୍ରସ୍ଥ ଆଉଥରେ ଯାଉ ଆମ୍ଭ ଦୂତ
ଧର୍ମକୁ ସାକ୍ଷୀ କରିବା ଆମ୍ଭର ଉଚିତ ।
ଏମନ୍ତ ଶୁଣି ଶ୍ରୀକୃଷ୍ଣ ମନେ ମନେ ଭାଳି
ଇନ୍ଦ୍ର ପ୍ରସ୍ଥକୁ ପ୍ରଦ୍ୟୁମ୍ନ ଯାଉ ବେଗେ ଚଳି ।
ଘୋଟକୀ ପାଇଁ ଅବଶ୍ୟ ପଡ଼ିବ ପ୍ରମାଦ
ଅତି ପ୍ରୀତିରେ ଘଟିବ ଅତ୍ୟନ୍ତ ବିବାଦ ।
ରଥେକ ପଡ଼ି ପ୍ରଦ୍ୟୁମ୍ନ ଇନ୍ଦ୍ରପ୍ରସ୍ଥ ଗଲା
ପାଞ୍ଚ ଭାଇଙ୍କର ଆଗ ଚରଣ ବନ୍ଦିଲା ।
ଦ୍ରୌପଦୀ ସୁଭଦ୍ରା କୁନ୍ତୀ ପାଦବନ୍ଦି ଆସି
ଯୁଧିଷ୍ଠିରଙ୍କୁ କହିଲା ସଭାମଧ୍ୟେ ବସି ।

ପାଣ୍ଡବେ କୃଷ୍ଣର ପ୍ରାଣ ଜାଣନ୍ତି ସମସ୍ତେ
କ୍ରିଷ୍ଣଶତ୍ରୁ ଭୀମସେନ ରଖିଲେ କେମନ୍ତେ ।
ଯୁଧିଷ୍ଠି ବୋଇଲେ ଭୀମ ମୋର କଥା ମାନ
ଘୋଟକୀ ଘେନିଣ ଯାଉ ରୁକ୍ମିଣୀ ନନ୍ଦନ ।
ଜଣାଯାଉଛି ଦଣ୍ଡୀର ଅଛି କିଛି ଦୋଷ
ନ ଥିଲେ କି ଗୋବିନ୍ଦର ବଢ଼ିଥାନ୍ତା ରୋଷ ।
ଦଣ୍ଡୀପାଇଁ ଯାଇଁ ମୁହିଁ କୃଷ୍ଣଙ୍କୁ କହିବି
ଜାନି ପକାଇ ଦଣ୍ଡୀର ଦୋଷ ମାଗି ନେବି ।
ଅନାଦି ପୁରୁଷ ଯାର ମହିମା ଅନନ୍ତ
ଯା ନାମ ଧଇଲେ ଡରେ ପଳାଏ କୃତାନ୍ତ ।
ବନ୍ଧୁ ସଙ୍ଗେ କଳି ଦ୍ୱନ୍ଦ୍ୱ କରଇ କି କେହି
ଆମ୍ଭର ପରମ ବନ୍ଧୁ ଅଟେ ଭାବଗ୍ରାହୀ ।
ଆମ୍ଭରାଜ୍ୟ ଧନ ପ୍ରାଣ ଅଟଇ ସେ ହରି
କୃଷ୍ଣପ୍ରାୟ ଆମ୍ଭର କେ ଅଛି ଉପକାରୀ ।
ତାର ଅପକାର କଲେ ହେବ ଧର୍ମହାନି
ଧର୍ମର ଯେ ଗୂଢ଼ ତତ୍ତ୍ୱ ନ ଜାଣି ନ ମାନି ।
ଧର୍ମ କରୁଅଛି ବୋଲି ମନେ କରୁ ଗର୍ବ
ଗରବ ଗଞ୍ଜନ ବାନା ବହେ ବାସୁଦେବ ।
ମାର୍ଜାର ଆଗେ ମୂଷାର ଗର୍ବ କରେ ରହି
ଗରୁଡ଼ ଛାମୁରେ ଗର୍ବ କରଇ କି ଅହି ।
ଅଧର୍ମକୁ ଛାଡ଼ି ଏବେ ଧର୍ମକର ବାବୁ
ଧର୍ମହନ୍ତା ହେଲେ ନିଶ୍ଚେ ନାଶଯିବ ସବୁ ।

.....ଁ.....

## ଜଣ୍ଟୁ ରାଜୋପାଖ୍ୟାନ

ଯୁଧିଷ୍ଠି ମୁଖୁଁ ଏମନ୍ତ ଶୁଣି ବୃକୋଦର
ବୋଇଲେ ତୁମ୍ଭ ବଚନ ଅଲଙ୍ଘିତ ମୋର ।
ଆମ୍ଭର ଠାକୁର ତୁମ୍ଭେ ଧର୍ମବନ୍ତ ପ୍ରାଣୀ
ଜାଣଇ ତ ମୋର ମୂର୍ଖପଣ ଯଦୁମଣି ।
ଆପଣଙ୍କୁ ଧର୍ମ ତତ୍ତ୍ୱ ଅଛି ଜଣା ଯେତେ
ନ ଜାଣନ୍ତି କେହି ତାହା ଏ ତିନି ଜଗତେ ।
ଆପଣ ସକଳ ଧର୍ମ କରନ୍ତି ପାଳନ
ବୋଇଲେ ଆମ୍ଭର ବନ୍ଧୁ ଦେବ ଜନାର୍ଦନ ।
ଜାଣିଛ ତ ମୂର୍ଖ ମୁହିଁ ନ ଧରିବି ଦୋଷ
କୃଷ୍ଣ କି ଏକା ଆମ୍ଭର ବନ୍ଧୁ ହେ ନରେଶ ।
ଜଗତର ନାଥ କୃଷ୍ଣ ଜଗତର ବନ୍ଧୁ
ତାହାଙ୍କୁ ବୋଲନ୍ତି ଲୋକେ ପରା କୃପାସିନ୍ଧୁ ।

ଆତଙ୍କକାଳେ ଯେ ଜନ ଶତ୍ରୁ ଭୟ ପାଇ
ଶରଣ ପଶଇ କୃଷ୍ଣ ପାଦତଳେ ଯାଇ ।
ତାହାକୁ ଶତ୍ରୁ ମୁଖରେ ଦିଅନ୍ତି କି ହରି
ଏହାକୁ ଅଧର୍ମ ଯେବେ ବୋଲ ଦଣ୍ଡଧାରୀ ।
ପୁରାଣେ ଯା ଶୁଣିଅଛି କହୁଛି ତା ଶୁଣ
ରଘୁରାଜାଙ୍କର ଧର୍ମକର୍ମ ଆଦି ଗୁଣ ।
ସୂର୍ଯ୍ୟବଂଶରେ ଜନମି ଥିଲା ସେହି ରାୟ
ପୃଥିବୀ ଭିତରେ ନାହିଁ ଜାହାକୁ ତା ଭୟ ।
ପ୍ରତାପେ ସୂର୍ଯ୍ୟ ଦେବତା ନୋହିବେକ ସରି
ଇନ୍ଦ୍ର ସମାନ ଅଟଇ ସେହି ଧନୁର୍ଦ୍ଧାରୀ ।
ଟାଣପଣେ ମୋହଠାରୁ ଗରୁ ସେହି ରାଜା
ଧର୍ମରେ ସେ ପାଳୁଥାଇ ତାର ରାଜ୍ୟପ୍ରଜା ।
ପୁଣ୍ୟବନ୍ତ ପ୍ରାଣୀ ବୋଲି ସମସ୍ତେ ଜାଣନ୍ତି
ଯାଗ ଯଜ୍ଞ ହୋମ କର୍ମ କରୁଥାଇ ନିତି ।
ଦେବତାମାନେ ଡରନ୍ତି ତାର ପୁଣ୍ୟ ଦେଖି
ମନେ ମନେ ଭାଳି ଇନ୍ଦ୍ର ହେଉଥାଇ ଦୁଃଖୀ ।
କାଳେ ଏ ମୋହର ଇନ୍ଦ୍ର ପଦ ପାରେ ନେଇ
ଯମପଦ ଯିବା ଭୟେ ଯମ ଡରୁଥାଇ ।
ଚଉଦ ଭୁବନ ଲୋକେ ଜାଣିଲେ ଏମନ୍ତ
ରଘୁରାଜା ପରି ଆଉ ନାହିଁ ପୁଣ୍ୟବନ୍ତ ।
ତାର ପୁଣ୍ୟ କର୍ମମାନ ଶୁଣି ନାରାୟଣ
ମନେ ମନେ ଗରୁଡ଼ଙ୍କୁ କଲେ ସୁମରଣ ।
ଜାଣି ବିନତା ନନ୍ଦନ ମିଳିଗଲା ଆସି
ତା ପିଠିରେ ବିଜେକଲେ ପ୍ରଭୁ ବ୍ରହ୍ମରାଶି ।
ବୋଇଲେ ଚାଲ ହୋ ଆମ୍ଭେ କଇଳାସେ ଯିବା
ଶିବ ପାର୍ବତୀଙ୍କି ତହିଁ ଦରଶନ ଦେବା ।
ଏମନ୍ତ ଶୁଣି ଗରୁଡ଼ ଉଡ଼ିଲା ଆକାଶେ
କ୍ଷଣକେ ମିଳିଲା ଯାଇ ପୁର କଇଳାସେ ।
ନାରାୟଣ ଶିବଙ୍କର କରାଇଲା ଭେଟ
ଅଲଗା ହୋଇ ରହିଲା ବିନତାର ବାଟ ।
ଶିବଙ୍କୁ ତାହିଁ କହିଲେ ଦେବ ନାରାୟଣ
ସୂର୍ଯ୍ୟବଂଶେ ରଘୁନାମେ ଅଛଇ ରାଜନ ।
ତାହାଙ୍କ ପୁଣ୍ୟ ଜଗତଜନେ ବଖାଣନ୍ତି
ପରଖିବା ପାଇଁ ଯିବା ଚାଲ ପଶୁପତି ।
ଏମନ୍ତ ବିଚାରି ଦୁଇ ଦେବତା ଉଠିଲେ
ନାରାୟଣ ସ୍ୱାମୀ ବିପ୍ର ବାଳକ ହୋଇଲେ ।

ମହାମାନ ବ୍ୟାଘ୍ର ରୂପ ହେଲେ ସଦାଶିବ
ଗୋଡ଼ାନ୍ତି ପଛେ ଶଙ୍କର ପଳାନ୍ତି କେଶବ ।
ବିପ୍ର ବାଳକ ନୃପତି ସଭାରେ ମିଳିଲା
ରଖନ୍ତେ ରାଜନ ବୋଲି ଉଚ୍ଚରେ ବୋଇଲା ।
ଭୟେ ବିପ୍ର ବାଳକର ସର୍ବାଙ୍ଗ ଥରଇ
ଘନ ଘନ ହୋଇ ଊର୍ଦ୍ଧ୍ୱ ପବନ ବହଇ ।
ମୂର୍ଚ୍ଛା ଯାଉଣ ପଡ଼ିଲା ସଭାର ଭିତରେ
ଆସନୁ ଉଠି ନୃପତି ତୋଳି ନେବନିକରେ ।
କାନଫୁଙ୍କି ଜଳ ସିଞ୍ଚି କରାଇଲେ ଚେତା
ବୋଇଲା ମନରୁ ତୋର ଛାଡ଼ ସବୁଚିନ୍ତା ।
ନିର୍ଭୟରେ କହ ବାବୁ ଦେଲଇଁ ଅଭୟ
ବୋଲଇ ଯେ ବିପ୍ରସୁତ ଶୁଣ ମହାରାୟ ।
ବ୍ୟାଘ୍ରର ଭୟେ ନେଲଇଁ ମୁଁ ତୁମ୍ଭ ଶରଣ
ତୁମ୍ଭେ ଧର୍ମବନ୍ତ ପ୍ରାଣୀ ରଖ ମୋର ପ୍ରାଣ ।
ବ୍ୟାଘ୍ର ମୋତେ ଗୋଡ଼ାଇଛି ଖାଇବା ନିମନ୍ତେ
କହୁଁ କହୁଁ ବିପ୍ରସୁତ ରାଜାର ଅଗ୍ରତେ ।
ବ୍ୟାଘ୍ର ଗର୍ଜନ ଶୁଭିଲା ମହା ଭୟଙ୍କର
ବସିଥିବା ଲୋକେ ଶୁଣି ହୋଇଲେ କାତର ।
ଭୟେ ସେ ସଭାରେ କହି ପଡ଼ିଲାକ ତଳି
କୁଦାମାରି ଆସି ବ୍ୟାଘ୍ର ସେ ସଭାରେ ମିଳି ।
ଲାଙ୍ଗୁଳ ପିଟି ବିକଟ ଦଶନ ଦେଖାଇ
ନୃପତି କୋଳରେ ବିପ୍ର ସୁତକୁ ଦେଖାଇ ।
ଭୟେ ନୃପତି ପାଶକୁ ନ ଗଲା ଭରସି
ସିଂହପରି ସେହି ସଭା ମଧ୍ୟରେ ସେ ବସି ।
ବୋଲଇ ରାଜନ ପରା ତୁହି ପୁଣ୍ୟବନ୍ତ
ଲୋକେ ତୋହର ପ୍ରଶଂସା କରନ୍ତି ବହୁତ ।
ଏବେ ସାକ୍ଷାତେ ଦେଖିଲି ଅଟୁ ବଡ଼ ପାପୀ
କ୍ଷୁଧାରେ ଆତୁର ମୁହିଁ ହେଉଛି ସନ୍ତାପୀ ।
ଷଡ଼ମାସ ହେଲା ନାହିଁ ଆହାର ମୋହର
ଭାଗ୍ୟେ ପାଇଛି ଆଜି ମୁଁ ଏ ବାଳ କୁମର ।
ଖାଇଲା ପତରେରାଜା ପକାଉଛୁ ଧୂଳି
କ୍ଷୁଧାଅନଳେ ମୋ ପେଟ ଯାଉଅଛି ଜଳି ।
ଛାଡ଼ ଛାଡ଼ ରାଜନ ସେ ବ୍ରାହ୍ମଣ ପୁତ୍ରକୁ
ଭୋକରେ ଆଜି ସନ୍ତୋଷ କରିବି ଆମ୍ଭାକୁ ।
ବ୍ୟାଘ୍ରର ବଚନ ଶୁଣି ବୋଇଲେ ନୃପତି
ଆନ ଭୋଜନେ ତୁମ୍ଭଙ୍କୁ କରିବା ତୃପତ ।

ଛେଳି ମେଣ୍ଢା ମଇଁଷି ମୁଁ ଦେଉଅଛି ଆଣି
ଏ ବିପ୍ର ସୁତକୁ ଦେଲେ ହେବ ଧର୍ମ ହାନି ।
ତୋ ଭୟେ ପଳାଇ ଆସି ପଶିଛି ଶରଣ
ବ୍ୟାଘ୍ର ବୋଲଇ କି କଥା କହୁ ନୃପରାଣ ।
ଆମ୍ଭେ ପଶୁଜାତି ଧର୍ମ ଅଧର୍ମ ନ ଜାଣୁ
ପେଟ ପୋଷୁ ନିତି ଜୀବଜନ୍ତୁ ମାରି କଣୁ ।
ଆମ୍ଭଙ୍କୁ ଦେଖି ଲୁଚନ୍ତି ନ ଦିଅନ୍ତି ଦେଖା
ତେଣୁ ଦେଖ ଅନାହାରେ ପେଟ ମୋହର ଖାଲା ।
କୋମଳ ମାଂସ ପାଇଛି ଷଡ଼ମାସେ ଆଜି
ତିକ୍ତ ଭୁଞ୍ଜଇ କି କେହି ମଧୁରକୁ ତେଜି ।
କୋମଳ ଛାଡ଼ି କଠିନ ଭୁଞ୍ଜଇ କି କେହି
ସୁଆଦ ପାଇଲେ ଲୋଭ ଛାଡ଼ି କି ହୁଅଇ ।
ତୁମ୍ଭେ ପୁଣ୍ୟବନ୍ତ ପ୍ରାଣୀ ହୋଇ କହ ଏହା
ଆନ ଜୀବ ଆଣି ମୋତେ ଦେବ ନରନାହା ।
ତହିଁରେ କି ଜୀବହତ୍ୟା ପାପ ନ ଲାଗିବ
ଏକ ନ ମାରି ମାରିବୁ ତୁ ବହୁତ ଜୀବ ।
ବ୍ୟାଘ୍ରର ମୁଖୁଁ ଏମନ୍ତ ଶୁଣି ନରପତି
ବୋଇଲେର ବ୍ୟାଘ୍ର ଅଟୁ ଆମ୍ଭେ କ୍ଷତ୍ରିଜାତି ।
ମୃଗୟା କରି ଅନେକ ଜୀବ ଆଣୁ ମାରି
ପଶୁପକ୍ଷୀ ବଧେ ଦୋଷ ନାହିଁ ନା ଆମ୍ଭରି ।
ଏ ବିପ୍ର ସୁତ ବାଳୁତ ପୁଣି ମହାପ୍ରାଣୀ
ଏହାକୁ ଦେଲେ ଆମ୍ଭର ହେବ ଧର୍ମହାନି ।
ଏହାକୁ ନୋହିବେ କୋଟି ପଶୁପକ୍ଷୀ ସରି
ବ୍ୟାଘ୍ର ବୋଲଇ କହଇ ଯାହା ଦଣ୍ଡଧାରୀ ।
ଯୁଦ୍ଧେ ମହାପ୍ରାଣୀ ହତ୍ୟା କରୁଛ କେମନ୍ତେ
ଏହାକୁ ଛାଡ଼ି ଦିଅ ମୁଁ ଭକ୍ଷିବି ତୁରିତେ ।
ନ ଦେଲେ ତ ପୁଣ୍ୟହାନି ହୋଇବ ତୁମ୍ଭର
ଆଜ୍ଞା ରହିଅଛି ମୋର ଏ ପ୍ରାଣୀ ଉପର ।
ମରିବି ପଛକେ ଛାଡ଼ି ଯାଇ ନ ପାରିବି
ଆମ୍ଭକୁ ହତ୍ୟା କରିଣ ଶାପେ ବୁଡ଼ାଇବି ।
ସେ ପାପ ମୋତେ ନ ଲାଗି ତୋଠାରେ ପଡ଼ିବ
ସବୁ ପୁଣ୍ୟ ଯାକ ଯିବ ପାପରେ ବୁଡ଼ିବ ।
ନୃପତି ବୋଇଲେ ବ୍ୟାଘ୍ର କହିଲୁ ଯା ସତ
ତୁ କାହୁଁ ଜାଣିବୁ ଅଛି ତହିଁରେ ଯେ ତତ୍ତ୍ୱ ।
କ୍ଷତ୍ରୀର ଧର୍ମ କେମନ୍ତ ଅଛି ତାହା ଶୁଣ
ସମ୍ମୁଖ ଯୁଦ୍ଧେ ମରିବୁ ଆମ୍ଭେ ଗୋ ବ୍ରାହ୍ମଣ ।

ଯେହୁ ଶରଣ ପଶିବ ଆସି ଆମ୍ଭଠାରେ
ତାହାପାଇଁ ପ୍ରାଣଆମ୍ଭେ ଦେବୁ ସଂଗ୍ରାମରେ ।
ପଶୁପକ୍ଷୀ କୀଟ ହେଉ ଅବା ମହାପ୍ରାଣୀ
ତାହାକୁ ରଖିବୁ ନିଶ୍ଚେ ପ୍ରାଣଦେଇ ପୁଣି ।
ଜାଣ ବ୍ୟାଘ୍ର ଏ ସ୍ୱଧର୍ମ ଅଟଇ ଆମ୍ଭର
ସ୍ୱଧର୍ମଛାଡ଼ିଲେ ଧର୍ମଛଡ଼ା ହୁଏ ନର ।
ଧର୍ମଛଡ଼ା ନରକୁ ଏଯେ ଛାଡ଼ନ୍ତି ଶ୍ରୀହରି
ଶ୍ରୀହରି ଛାଡ଼ିଲେ ତାର ତୁଟି ଯାଇ ଶିରୀ ।
ଶିରୀ ତୁଟି ଯିବା ଲୋକ ପାଇ ନାନା ଦୁଃଖ
ଦୁଃଖ ପାଇଣ କରଇ ନାନାଦି ପାତକ ।
ପାତକ ବଳେ ସେ ଜନ ଅଳପାୟୁ ହୋଇ
ଘୋର ନରକରେ ପଡ଼ି ଯାତନା ଭୋଗଇ ।
ଏଣୁ ମୁଁ ତୋତେ କହୁଛି ମୋର କଥାମାନ
ଆନ ମାଂସ ଖାଇ ରଖ ଆପଣା ଜୀବନ ।
ଏ ଶିଶୁ ଜୀବନ ରହୁ ମୋର ଧର୍ମ ରହୁ
ଏହା ନ କଲେ ପଛକେ ମୋର ପ୍ରାଣ ଯାଉ ।
ଏଥିପାଇଁ ଦେଇପାରେ ମୋ ଦେହରୁ ମାଂସ
ତାହାକୁ ଖାଇଣ ବ୍ୟାଘ୍ର ହୁଅ ତୁ ସନ୍ତୋଷ ।
ଏହାହୁଁ ମୋହର ମାଂସ ଅଧିକ କୋମଳ
ବ୍ୟାଘ୍ର ବୋଲଇ ତୁ ଅଟୁ ରାଜ୍ୟେ ମହୀପାଳ ।
ତୁ ପ୍ରାଣ ଦେଲେ ମରିବେ କୋଟିକୋଟି ପ୍ରାଣୀ
ବାଳୁତ ଏହି ଭିକାରୀ ବ୍ରାହ୍ମଣ ଯେ ପୁଣି ।
ଏହାପାଇଁ କୋଟି ପ୍ରାଣୀ ହତ୍ୟା ତୁ କରିବୁ
ଏଥିରୁ ପୁଣି ଅଧିକ ପାପ ଅରଜିବୁ ।
ରାଜା ବୋଇଲେରେ ବ୍ୟାଘ୍ର ଶୁଣ ତା କାରଣ
ସବୁ ପ୍ରାଣୀଠାରୁ ବଡ଼ ଅଟଇ ବ୍ରାହ୍ମଣ ।
ବିପ୍ର ରକ୍ଷାହିଁ କେବଳ ଅଟେ କ୍ଷତ୍ରିବୃତ୍ତ
ନ ବୁଝି କିମ୍ବା ତୁ ବ୍ୟାଘ୍ର କହୁଛୁ ଏମନ୍ତ ।
ନ ରଖି ପାରିବ ଯେବେ କ୍ଷତ୍ରି ବାହୁବଳେ
ବିପ୍ରପାଇଁ ଧନ ପ୍ରାଣ ଦେବ ସେ ସମୂଳେ ।
ପୂଜ ରକ୍ତ ମଳ ମୂତ୍ରେ ପୂରିଛି ଏ ଦେହ
ଅବଶ୍ୟ ଦିନେ ଏ ଜୀବ ଯିବ ଯମଗୃହ ।
ଏଣୁ ଏ ପ୍ରାଣକୁ ଦେଇ ରଖିବି ଏ ପ୍ରାଣୀ
ବ୍ୟାଘ୍ର ବୋଇଲା ଯେ ଇଚ୍ଛା ତୋର ନୃପମଣି ।
ମୁହିଁ ମାଗୁନାହିଁ ତୋତେ ତୋହର ଯେ ମାଂସ
ଆପଣା ଇଚ୍ଛାରେ ତହି ଦେଉଛୁ ନରେଶ ।
ପରପାଇଁ କଲ ଯେବେ ନିଜ ମାଂସଦାନ
ପୁତ୍ର ଭାରିଯା କରିବେ ତୋ ପାଇଁ ରୋଦନ ।
ବନ୍ଧୁ ମିତ୍ର ପ୍ରଜା ଆଦି ଯେତେକ ଅଛନ୍ତି
ତୋ କଷ୍ଟ ଦେଖି ରୋଦନ କରିବେ ନୃପତି ।
କଳପଣା ଦ୍ରବ୍ୟ ଦାନ ହୁଅଇ କି କହ
ଅର୍ଦ୍ଧଅଙ୍ଗ ତୋ ରାଣୀର ଅଟଇ ତୋ ଦେହ ।
ଏଣୁ କଳ୍ପନା କରିବ ନିଶ୍ଚୟ ତୋ ରାଣୀ
କେ ଦେବପୁଣି ତୋହର ମାଂସ ମୋତେ ହାଣି ।
ତୁହି ସିନା ଧର୍ମବନ୍ତ ପ୍ରାଣୀ ଅଟୁ ରାୟେ
ବିଚାର ତୁ ଏମାନେ କି ହେବେ ତୋହ ପ୍ରାୟେ ।
ଏମନ୍ତ ଶୁଣି ରାଜନ କହିଲାକ ବସି
ସ୍ୱହସ୍ତେ ମୋହର ମାଂସ କାଟି ଦେବି ବସି ।
ପୁତ୍ର ଭାରିଯା ମୋ ପାଇଁ ନୋହିବେ ବିକଳ
ରୋଦନହିଁ ନ କରିବେ ପରଜା ସକଳ ।
ନୃପତି କଥାରେ ବ୍ୟାଘ୍ର ସନମତ କଲା
ଦୂତ ଯାଇ ମୃଦୁସୁଲୀ ଆଗରେ କହିଲା ।
ମୃଦୁସୁଲୀ ଜଣାଇଲା ମହାଦେଈ ପାଶେ
ଶୁଣି ରାଣୀର ନୟନୁ ଜଳବିନ୍ଦୁ ଖସେ ।
ଟୋପାଟୋପା ହୋଇ ଲୁହବହି ପଡ଼େ ତଳେ
ରୋଦନ କରଇ ବସି ଅତ୍ୟନ୍ତ ବିକଳେ ।
ଶିରେ କରତାଡ଼ି ବୋଲେ କି କଲୁରେ ବିହି
କେମନ୍ତେ ବିଧବା ହୋଇ ରହିବଇଁ ମୁହିଁ ।
ଯେତେବେଳେ ଥିଲି ମୁହିଁ ମୋର ବାପଘରେ
ନାରଦ ଆସି ମିଳିଲେ ପିତାଙ୍କ ଛାମୁରେ ।
ଘରୁ ଆସି ପିତାଙ୍କର କୋଳେ ଗଲି ବସି
ପିତା ବୋଇଲେ ଲୋ ଝିଅ ବସିଛନ୍ତି ଋଷି ।
ଏହାଙ୍କ ପାଦରେ ତୁ ଲୋ ଜେଜେକର ଯାଇଁ
ଠାକୁର ଅଟନ୍ତି ଜାଣ ଏହି ତପୀସାଇଁ ।
ଋଷି କଲ୍ୟାଣରେ ମାଗୋ ଆୟୁଷ ବଢ଼ିବ
ଭଲ ଶାଶୁଘର ଗୋଟା ତୋତେ ଗୋ ମିଳିବ ।
ପିତା ବଚନେ ପଡ଼ିଲି ଋଷି ପାଦେ ଯାଇଁ
ବହୁତ କଲ୍ୟାଣ କଲେ ସେ ମୁନି ଗୋସାଇଁ ।
ଆବର ମୋହର ବାମ ହସ୍ତକୁ ଦେଖିଲେ
ସୁଲକ୍ଷଣୀ ହେବୁ ବୋଲି ମତେ ସେ ବୋଇଲେ ।
ଆବର ବୋଇଲେ ତୁ ଗୋ ବିଧବା ନୋହିବୁ
ଧନ ପୁତ୍ରବତୀ ହୋଇ ସୁଖରେ ରହିବୁ ।

ଧର୍ମବନ୍ତ ପ୍ରାଣୀର ତୁ ହୋଇବୁ ଭାରିଯା
ବୁଢ଼ୀ ହେବା ଯାଏ ତୁହି ନଛାଡ଼ିବୁ ଲଜ୍ଜା ।
ନାରଦ ମୁନି କଦାପି ନ କହନ୍ତି ମିଛ
ବିଷ୍ଣୁଙ୍କ ଭକତି ସେହି ଦେବବ୍ରହ୍ମା ବତ୍ସ ।
ଏମନ୍ତ କହି ରୋଦନ କରି ଉଚ୍ଚସ୍ୱରେ
ସଭାରେ ଆସି ମିଳିଲା ସ୍ୱାମୀ ପାରୁଶରେ ।
ପାତ୍ରମନ୍ତ୍ରୀ ଅମାତ୍ୟେ ଯେ ବସିଛନ୍ତି ଘେରି
ବିରସ ବିନା ହରଷ ନାହିଁ ଯେ କାହାରି ।
ଲୋତକ ଜଳେ ପୂରିଛି ସବୁରି ନୟନ
ବୋଲନ୍ତି କାହୁଁ ଅଇଲା ଏ ବିପ୍ର ନନ୍ଦନ ।
ଏହାର ଯୋଗୁଁ ସିନାଏ ରାଜାଦେଲେ ପ୍ରାଣ
ଆମ୍ଭର ମନ୍ଦ କର୍ମକୁ ଘଟିଲା ଏ ଜାଣ ।
ଏମନ୍ତ ରାଜା ପାଇବା ଆଉ ଆମ୍ଭେ କାହୁଁ
ରାଜାର ଜୀବନ ଗୋଟା ଯିବ ଚାହୁଁ ଚାହୁଁ ।
ଏଡ଼େ ଧାର୍ମିକ ପ୍ରାଣୀକି ନ ରଖିବେ ହରି
ଏମନ୍ତ ଶୋକ କରନ୍ତି ମୁଖ ପୋତି କରି ।
ମହାଦେଈଙ୍କି ଚାହିଁଣ ବୋଇଲେ ନୃପତି
ଏ ବିପ୍ରବାଳକ ଜାଣ ତୁମ୍ଭର ସମ୍ପତ୍ତି ।
ଏହା ପାଇଁ ଏ ବ୍ୟାଘ୍ରକୁ ଦେଉଛି ମୁଁ ମାଂସ
ତୁମ୍ଭେ ତ ଅର୍ଦ୍ଧ ଅଙ୍ଗ ମୁଁ କହିବଇଁ କିସ ।
ତୁମ୍ଭେତ ମହାସତୀ ଗୋ ସବୁ ଜାଣିପାର
ମୋର ମାଂସ ଦାନେ ସତୀ କଳ୍ପନା ନ କର ।
କଳ୍ପନା କଲେ ଏ ବ୍ୟାଘ୍ର ନ ଖାଇବ ମାଂସ
ମାଂସ ନ ଖାଇଲେ ମୋର ପୁଣ୍ୟ ହେବ ଶେଷ ।
ଏଣୁ ମୁଁ ବୋଲଇ ସତୀ ନୁହ ତୁ ବିମନା
ରଖି ନ ପାରିବେ କେହି ଏହା ବିଷ୍ଣୁ ବିନା ।
ଯେହି ବିଷ୍ଣୁ ସେହି ଶିବ ସେହି ବେଦବର
ଭେଦ ନାହିଁ ଏକା ଜାଣ ଏ ତିନି ଶରୀର ।
ଏ ପୁତ୍ରକୁ କୋଳେ ଧରି ଦେଖୁଥିବ ବସି
ନେତ୍ରୁ ଯେହ୍ନେ ଲୁହ ଟୋପା ନ ପଡ଼ିବ ଖସି ।
ରାଣୀକି ଏମନ୍ତ କହି ପ୍ରଜାଙ୍କୁ ଅନାଇ
ଏତେ ଧର୍ମ କର୍ମ ସିନା ସବୁ ତୁମ୍ଭ ପାଇଁ ।
ତୁମ୍ଭେ ମୋର ପୁତ୍ର ମୁହିଁ ପିତା ଯେ ତୁମ୍ଭର
ଏତେବେଳେ ବାବୁ କେହି ରୋଦନ ନ କର ।
ଦେହକୁ କାଠ କରିଣ ଦେଖୁଥାଅ ବସି
ଏମନ୍ତ କହି ଖଡ଼୍‌ଗ ଧରି ହୋଇ ଖୁସି ।

ବ୍ୟାଘ୍ର ମୁଖରେ ଦିଅନ୍ତି ଚାଞ୍ଛି ଦେହ ମାଂସ
ଅସ୍ଥି ଚର୍ମହିଁ କେବଳ ଅଛି ଅବଶେଷ ।
ଗଳା କାଟନ୍ତେ ଧଇଲା ଆସି ବ୍ୟାଘ୍ରବର
ରହ ରହ ମୋର କଥା ଶୁଣ ନୃପବର ।
ଜାଣିଲି ତୁହୋ ନୃପତି ଧର୍ମବନ୍ତ ପ୍ରାଣୀ
ଆମ୍ଭେ ବ୍ୟାଘ୍ରରୂପଧାରୀ ଦେବ ଶୂଳପାଣି ।
ଦ୍ୱିଜ ବାଳକରୂପୀ ଯେ ପ୍ରଭୁ ହୃଷୀକେଶ
କୋଳେ ଧଇଲୁ ଥିବାରୁ ପୁଣ୍ୟ ତୋ ଅଶେଷ ।
ଏମନ୍ତ କହିଣ ନିଜରୂପେ ହେଲେ ଉଭା
ବାମେ ଯେ ପାର୍ବତୀ ଦେବୀ ପାଉଛନ୍ତି ଶୋଭା ।
ଜଟାରେ ଗଙ୍ଗାଦେବୀର କଳ କଳ ଧ୍ୱନି
ପଞ୍ଚବଦନରେ ଶୋଭା ପାଏ ନେତ୍ର ତିନି ।
ଏ ଅପୂର୍ବ ରୂପ ଗୋଟି ଦେଖିଣ ନୃପତି
ଶିରେ ବେନିକର ଯୋଡ଼ି ଆରମ୍ଭିଲା ସ୍ତୁତି ।
ଜୟ ଜୟ ପଶୁପତି ଯୋଗୀନ୍ଦ୍ର ପୁରୁଷ
ସବୁ ଦେବଙ୍କ ଉପରେ ବୋଲାଉ ତୁ ଈଶ ।
ପ୍ରାଣୀଙ୍କ ହିତେ ତୋହର ବାସ ଶମସାନେ
ଚନ୍ଦ୍ର ସୂର୍ଯ୍ୟ ଅନଳ ତୁ ବହୁ ତ୍ରିନୟନେ ।
କପାଳ ଧାରଣ କରି କପାଳୀ ବୋଲାଉ
ଶରୀର ଯାକ ତୁ ଭସ୍ମ ବୋଳି ହେଉଥାଉ ।
ସଦାନନ୍ଦ ପୁରୁଷତୁ ଧବଳ ମୂରତି
ଭୋଳାମହେଶ୍ୱର ତୋତେ ସମସ୍ତେ ବୋଲନ୍ତି ।
କାମକୁ ଦହିଲୁ ତୁହି ନୟନ ଅନଳେ
ଗରଳ ଭକ୍ଷି ତୁ ପାରକଲୁ କୁତୂହଳେ ।
ବାସୁକୀ ନାଗକୁ ଦେବ କରିଛୁ ପଇତା
ତାଣ୍ଡବ ନୃତ୍ୟରେ ସ୍ୱାମୀ ତ୍ରିଭୁବନ ଜିତା ।
ଡମ୍ବରୁ ବାଦ୍ୟ ବଜାଇ ଥାଉ ଅନୁବ୍ରତେ
ପିନାକ ଧନୁ ଶୋଭଇ ତୋର ବାମ ହସ୍ତେ ।
ଅନନ୍ତ ନାଗ ତୋ ଶିରେ ଅଛି ଫଣା ଟେକି
ପ୍ରସନ୍ନ ହେଲେ ତୁ ବର ଯାଚି ଦେଉ ଡାକି ।
ମୁଁ ମୂଢ଼ ଅଜ୍ଞାନଜନ କରିବି କି ସ୍ତୁତି
ଦୀନ ଗୋପୀନାଥ ଦୁଃଖ ହର ଉମା ପତି ।
ବ୍ରହ୍ମାଣ୍ଡ ସୁତକୁ ରାଣୀ ଧରିଥିଲା କୋଳେ
ବକ୍ଷେ କଉସ୍ତୁଭମଣି ବନମାଳା ଗଳେ ।
ଶଙ୍ଖ ଚକ୍ର ଗଦାପଦ୍ମ ଚିହ୍ନ ବିରାଜଇ
ଅପୂର୍ବ ମୋହନ ରୂପ ଦେଖି ମହାଦେଈ ।

କରଯୋଡ଼ି ବୋଇଲେ ହେ ଅନାଦି ନିଧନ
ମୁହିଁ ଜାତିରେ ଅବଳା କେତେ ମୋର ଜ୍ଞାନ ।
ଜଗତଜନ ବନ୍ଦନ ସ୍ୱାମୀ ନରହରି
ଯହିଁ ଧର୍ମ ତହିଁ ତୁହି ଥାଉ ଘର କରି ।
ଶୂନ୍ୟରେ ଥାଇ ତୁ ସ୍ୱାମୀ ଦେଖୁତୁ ସକଳ
ତୋତେ କେହି ନ ଦେଖଇ ତୁହି ଆଦିମୂଳ ।
ମତ୍ସ କଚ୍ଛପ ବରାହ ଆଦି ରୂପ ଧରି
ଦୁଷ୍ଟଜନଙ୍କୁ ନିବାରୁ ସନ୍ଥକୁ ଉଦ୍ଧରି ।
ତୋହର ମାୟା କେବଳ ତୋତେ ଏକାଜଣା
ଶିବ ବ୍ରହ୍ମା ଆଦି ଭ୍ରମି ହେଉ ଥାନ୍ତି ବଣା ।
ଦୀନଜନ ବାନ୍ଧବ ତୁ ଦରିଦ୍ରର ଧନ
ଅନ୍ଧାର ଲଉଡ଼ି ସ୍ୱାମୀ ଆରତ ନାଶନ ।
କେତେଜନ୍ମେ କେତେ ତପ କେତେ ପୁଣ୍ୟକରି
କୋଳେ ଧଇଲି ଏଜନ୍ମେ ପ୍ରଭୁ ଦଇତ୍ୟାରି ।
ରାଣୀର ସ୍ତବେ ପ୍ରସନ୍ନ ହୋଇ ଗଦାଧର
ବୋଇଲେ ମାଗିବୁ ଯାହା ଦେବା ସେହିବର ।
ରାଣୀ ବୋଇଲା ସେ ବରେ ମୋର କାର୍ଯ୍ୟ ନାହିଁ
ସବୁବର ପାଇଲୁଣି ତୋର ରୂପ ଚାହିଁ ।
ଆମ୍ଭେ ଦୁଇ ପ୍ରାଣୀଙ୍କର ରହୁ ଧର୍ମେ ମତି
ସର୍ବଦା ଥାଉ ତୋହର ପାଦରେ ଭକତି ।
ଏମନ୍ତ ଶୁଣି ଶ୍ରୀହରି ଆନନ୍ଦ ହୋଇଲେ
ନୃପତିକି ଚାହିଁ ପୁଣି ଏମନ୍ତ ବୋଇଲେ ।
ଆହୋ ମହାରାଜା ଆମ୍ଭ ହେଲୁ ସୁପ୍ରସନ୍ନ
ଯେ ଇଚ୍ଛା ତୋହର ସେହି ବର ମାଗିଘେନ ।
ନୃପତିବୋଇଲା ତୁମ୍ଭେ ପତିତ ପାବନ
ମୋହର ବଂଶରେ ଜାତ ହେବ ଜନାର୍ଦ୍ଦନ ।
ମୋହର ଯେ ନାମ ତାର ସେହି ନାମହେବ
ଏ ରଘୁବଂଶକୁ ସ୍ୱାମୀ ପବିତ୍ର କରିବ ।
ହେବ ହେଉ କହି ହରି ହର ଦୁଇ ଗଲେ
ଲାବଣ୍ୟ ମୂରତି ଧରି ନୃପତି ରହିଲେ ।
ଏଣୁ ସ୍ୱାମୀ ଦଣ୍ଡୀକୁ ମୁଁ ଦେଇ ନ ପାରଇ
ଦଣ୍ଡୀର ନିମନ୍ତେ ପଛେ ଜୀବନ ଦେବଇଁ ।
ଏମନ୍ତ ଶୁଣି ଆତଙ୍କ ହେଲେ ଯୁଧିଷ୍ଠିର
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ପୟର ।

.....❀.....

## ଗାଲବୋପାଖ୍ୟାନ

ଏଥୁ ଅନନ୍ତରେ ଶୁଣ ପରୀକ୍ଷିତ ରାୟ
କର ଯୋଡ଼ିଣ କହଇ ବୀର ଧନଞ୍ଜୟ ।
ତୁମ୍ଭେ ତ ମୋର ଠାକୁର ମୁହିଁ ତୁମ୍ଭ ଦାସ
ଯାହା ମୁଁ କହିବି ମୋର ନ ଘେନିବ ଦୋଷ ।
ଶରଣ ରକ୍ଷଣ ଧର୍ମ ଅଟେ କ୍ଷତ୍ରିୟର
ଯାହାକି କହିଲେ ସ୍ୱାମୀ ନୃପତି ଛାମୁର ।
ଗୋବିନ୍ଦ ଅଟନ୍ତି ସ୍ୱାମୀ ଆମ୍ଭ ପ୍ରାଣଧନ
କଂସ ନିମନ୍ତେ ବୋଲଇ ଦେବକୀ ନନ୍ଦନ ।
ଗରବ ଗଞ୍ଜନ ହରି ଜାଣେ ନାନା ମାୟା
ଅକ୍ରୂରକୁ ଦେଖାଇଲେ ଜଳେ ନିଜ ଛାୟା ।
ବ୍ରହ୍ମାଦିନେ ଗର୍ବକରି ବତ୍ସା ନେଲା ହରି
ଅନ୍ତର୍ଯ୍ୟାମୀ ସ୍ୱାମୀ ନାଥ ତାହା ଜାଣିପାରି ।
ଅଙ୍ଗୁ ଗୋପସୁତ ବତ୍ସାମାନ କଲେ ଜାତ
ବ୍ରହ୍ମା ଗରବ ଗଞ୍ଜିଲେ ଯେ ପ୍ରଭୁ ଅନନ୍ତ ।
ପୁତନା ପ୍ରାଣ ହରିଲେ କରି କ୍ଷୀରପାନ
ଅଷ୍ଟମଲ୍ଲ ମାରି କଲେ କଂସକୁ ନିଧନ ।
ଇନ୍ଦ୍ରଗର୍ବ କରି ଗୋପେ ଘୋର ବୃଷ୍ଟିକଲା
ଗୋବର୍ଦ୍ଧନ ଧରି ଯେହୁ ଗୋପକୁ ରଖିଲା ।
ତାଙ୍କ ଛାମୁରେ କି ଗର୍ବ ଦେଖାଇବା ଆମ୍ଭେ
ଦଣ୍ଡୀ ରାଜାକୁ ଯେ ରଖି ନ ପାରିବା କେବେ ।
କରଯୋଡ଼ି ବୋଇଲା ଯେ ନକୁଳ କୁମାର
ସାନ କଥାମାନି ସ୍ୱାମୀ ସଂଗ୍ରାମ ନ କର ।
ସୂଚି ମୁନରେ କି ମେରୁ ପର୍ବତ ଟଳଇ
ଆମ୍ଭେ ଛାର ମାନବ ସେ ଠାକୁର ଅଟଇ ।
ବଳୀଠାରୁ ବଳବନ୍ତ ନ ଥିଲା ତ କେହି
ଯଜ୍ଞ କରି ଦାନ ଦେଲା ମନେ ଗର୍ବ ବହି ।
ବାମନ ରୂପରେ ହରି ବିଜେ କଲେ ଯାଇ
ତିନିପାଦ ଭୂମି ତାକୁ ମାଗିଲେ ଗୋସାଇଁ
ଶୁକ୍ରମନ୍ତ୍ରୀ ବୁଝାଇଲେ ନ ବୁଝିଲା ବାଳୀ
ବାମନ ହସ୍ତରେ ପୁଣି ଶଙ୍ଖ ଦେଲା ଟେକି ।
ତା ସର୍ବସ୍ୱ ନେଇ ତାକୁ ପାତାଳେ ରଖିଲେ
ସେ ଜଗତନାଥ ସଙ୍ଗେ ଆମ୍ଭେ ବାଦକଲେ ।
ଧନ ପ୍ରାଣ ସବୁ ଦେଇ ନିଶ୍ଚେ ପଡ଼ିବା
ଦଣ୍ଡୀକି ଦେଇ ତା ପାଦେ ଶରଣ ପଶିବା ।

ସହଦେବ ମନ୍ତ୍ରୀ ଉଠି ଯୋଡ଼ି ଦୁଇକର
ବୋଇଲା ଠାକୁର ତୁମ୍ଭେ ଆମ୍ଭମାନଙ୍କର ।
କୃଷ୍ଣ କୋପେ ବଂଶ ଧ୍ୱଂସ କରିବା କିମ୍ପାଇ
ଶରଣ ପଶିବା ଚାଲ ଦଣ୍ଡୀରାଜା ଦେଇ ।
କୁନ୍ତୀ ବୋଇଲେ ରେ ଭୀମା ଛାଡ଼ ଦୁଷ୍ଟବୁଦ୍ଧି
ଗୋବିନ୍ଦ ସଙ୍ଗରେ ବାବୁ ନୁହ ତୁ ବିବାଦୀ ।
କ୍ଷଣକରେ ଯିବ ସବୁ ସକଳ ସମ୍ପଦ
ଆମ୍ଭଙ୍କୁ ଯେ ରଖେ ଆସି ପଡ଼ିଲେ ବିପଦ ।
ପରପାଇଁ କୃଷ୍ଣ ପରା ଧନକୁ ଛାଡ଼ିବା
ଅକାରଣେ କାହିଁପାଇ ବଂଶ ମରାଇବା ।
ଶୁଣି ଶୁଣି ଭୀମସେନ କରଇ ଉତ୍ତର
ଜାଣଇ ଗୋବିନ୍ଦ ଅଟେ ବିଷ୍ଣୁ ଅବତାର ।
ସକଳ ପ୍ରାଣୀ ତାହାର ମାୟାରେ ମୋହିତ
ଜାଣଇ ମୁଁ ବିଷ୍ଣୁ ମାୟା ସକଳ ଜଗତ ।
ଆରେ ବାବୁ ଅର୍ଜୁନ ତୁ ଯା କହିଲୁ ମୋତେ
ଗର୍ବେ ଯୁଝୁନାହିଁ ମୁହିଁ ବିଷ୍ଣୁର ସଙ୍ଗତେ ।
ପୃଥ୍ୱୀ ଆପତେଜ ବାୟୁ ଶୂନ୍ୟରୂପୀ ସେହି
ଅନ୍ତର୍ଯ୍ୟାମୀ ଅନ୍ତରାତ୍ମା ଆଜ ଭାବଗ୍ରାହୀ ।
ଅନାଦି ଅବ୍ୟୟ ସେହି ପୁରୁଷ ପୁରାଣ
ମୁଁ ଛାର କି କରିପାରେ ତା ଛାମୁରେ ଟାଣ ।
ଧର୍ମ ଯହିଁ କୃଷ୍ଣ ତହିଁ ରହିଛି ପୁରାଣେ
ଧର୍ମ ଛଡ଼ା ପାଶେ କୃଷ୍ଣ ନ ରହନ୍ତି କ୍ଷଣେ ।
ଅନାଥର ନାଥ ସେହି ଅଗତିର ଗତି
ଧର୍ମବନ୍ତର ଟାଣକୁ ରଖନ୍ତି ଶ୍ରୀପତି ।
ଅତି ପୁରାତନ କଥା କହୁଅଛି ଶୁଣ
ଗାଲବ ନାମରେ ଥିଲେ ଏକଇ ବ୍ରାହ୍ମଣ ।
ଚିତ୍ରକୂଟ ପରବତେ ତାହାର କୁଡ଼ିଆ
ବିଷ୍ଣୁ ଭଜନ ବିନା ତା ନାହିଁ ଖିଆପିଆ ।
ଏକମନେ ଏକଧ୍ୟାନେ ନାମକୁ ଭଜଇ
ନାମ ବିନା ଜପମନ୍ତ୍ର କିଛି ନ ଜାଣଇ ।
ଆପଣା ଧର୍ମକୁ ରଖିଥାଇ ପ୍ରାଣପଣେ
ନାରାୟଣ ସେବା ବିନା ଆନ ସେ ନ ଜାଣେ ।
ପ୍ରତିଦିନ ତାଙ୍କ ନାମ କରଇ ଭଜନ
ଏକ ଦିନକର କଥା ଶୁଣ ତୁ ଅର୍ଜୁନ ।
ଅକସ୍ମାତେ ରାତି ଅଧେ ଘୋରନାଦ ହେଲା
ଗଗନମଣ୍ଡଳ ଧୂଳିରାଶି ଆଚ୍ଛାଦିଲା ।

ଚମକି ପଡ଼ିଲା ବିପ୍ର ଶୁଣି ସେ ଶବଦ
ଉଚ୍ଚସ୍ୱରେ ବୋଇଲାକ ଗୋବିନ୍ଦ ଗୋବିନ୍ଦ ।
କୁଡ଼ିଆରୁ ଆସି ଦେଲା ବାହାରକୁ ଚାହିଁ
ଅକଳିତ ଥାଟ ଘେନି ଆସେ ନରସାଇଁ ।
ବାଦ୍ୟନାଦ କୋଳାହଳ ଗହଳ ଚହଳ
ପାଦଭରେ ବସୁମତୀ ହୁଏ ଟଳମଳ ।
ବିପ୍ର ଦେଖୁ ଦେଖୁ ସେହି ନୃପତି ଅଇଲା
କୁଡ଼ିଆ ଦୁଆରେ ସେହି ବିପ୍ରକୁ ଦେଖିଲା ।
ବିଷ୍ଣୁ ତେଜେ ବିପ୍ରଦେହ ହୋଇଛି ଉଜ୍ଜ୍ୱଳ
ଚନ୍ଦ୍ର ଉଦେ ହେଲେ ଯେହ୍ନେ ଅନ୍ଧାର ପଟଳ ।
ତେସନ ଘୋର ଅନ୍ଧାର ରଜନୀରେ ଦ୍ୱିଜ
ଅପୂର୍ବରୂପ ବିକାଶେ ଚଉଦିଗେ ତେଜ ।
ଦ୍ୱିଜତେଜ ଦେଖି ରାଜା ମନେ ଭୟ କଲା
ଭୟରେ ଭକତି ଗୋଟା ତାର ଉଦେହେଲା ।
ପଡ଼ିଗଲା ଲମ୍ବହୋଇ ବିପ୍ର ପାଦତଳେ
ଉଠି କର ଦୁଇଯୋଡ଼ି ରଖଇ କପାଳେ ।
ରାଜାର ଭକତି ଦେଖି ଦ୍ୱିଜ ପୁଲକିତେ
କୁଶ ଆସନ ଖଣ୍ଡିଏ ଦେଇଣ ତୁରିତେ ।
ଗଉରବ କରି ତହିଁ ବସାଇ ରାଜାକୁ
କୁଶଳ ବାରତାମାନ ପୁଛିଲେ ତାହାଙ୍କୁ ।
ନୃପତି ବୋଇଲେ ତବ ପରସାଦେ ମୁନି
କୁଶଳେ ଅଛି ମୁଁ ପ୍ରଜାପୁତ୍ର ନାତି ଘେନି ।
ମୃଗୟା ନିମନ୍ତେ ଆସି ପଶିଲି ଏ ବନେ
ପଥଶ୍ରାନ୍ତ ହୋଇଲେଣି ଏ ମୋହର ସୈନ୍ୟେ ।
ସୁଭାଗ୍ୟ ବଳୁ ପାଇଲି ତବ ଦରଶନ
କଲ୍ୟାଣ କରନ୍ତୁ ଯିବି ଆପଣା ଭୁବନ ।
ଗାଲବ ବୋଇଲେ ଏହା କହୁଛ କେମନ୍ତେ
ମୋ ଘର ଛାଡ଼ି ଏଠାରୁ ଯିବ ଏତେ ରାତ୍ରେ ।
ତୁମ୍ଭେ ଏଥୁଁ ଗଲେ ମୋର ଧର୍ମ କି ରହିବ
ମୋତେ ଛାଡ଼ି ତୁମ୍ଭ ସଙ୍ଗେ ସଙ୍ଗେ ଚାଲିଯିବ ।
ନୃପତି ବୋଇଲେ ଯେବେ ହୋଇଥାନ୍ତି ଏକା
ଅତିଥି ହୋଇ କରନ୍ତି ତୁମ୍ଭ ଧର୍ମ ରକ୍ଷା ।
ଅକଳିତ ଥାଟ ମୋର ଅଛନ୍ତି ସଙ୍ଗରେ
ତାହାଙ୍କୁ ଛାଡ଼ି କି ମୁନି ଏକା ରହିପାରେ ।
କୁଡ଼ିଆ ଖଣ୍ଡି ତୁମ୍ଭର ବଖରାଏ ଘର
କେମନ୍ତେ କାହିଁ ରହିବେ ଏ ଥାଟ ମୋହର ।

ଏତେ ରାତ୍ରେ ଫଳ ମୂଳ କାହୁଁ ଦେବ ଆଣି
ତୁମ୍ଭେ ଏକାକେ ଆମ୍ଭେ ତ ବହୁତ ପରାଣୀ ।
ଦ୍ୱିଜ ବୋଇଲେକ ରାଜା ହୋଇଲୁ ତୁ ବାଇ
ତୋତେକି ଏକା ଅତିଥି ହେବାପାଇଁ କହି ।
ତୋହର ଥାଟ ଘେନିଣ ଅତିଥି ତୁ ହୁଅ
ଶୋଇବାକୁ ଖାଇବାକୁ ଦେବଇଁ ନିଶ୍ଚୟ ।
ବିପ୍ରବାଣୀ ଶୁଣି ରାଜା ମନେ ମନେ ଭାଳି
ନମାନିଲେ ବିପ୍ରଶାପେ ଯିବୁ ଆମ୍ଭେ ଜଳି ।
ଏମନ୍ତ ଭାଳି ନୃପତି କହିଲେ ବିପ୍ରଙ୍କୁ
ସମସ୍ତେ ଅତିଥି ହେଲୁ ଦିଅ ଖାଇବାକୁ ।
ମନେ ମଧ୍ୟେ ପୁଣି ପୁଣି ନୃପତି ଭାଳଇ
ଫଳ ମୂଳ କିଛି ଏହା କୁଡ଼ିଆରେ ନାହିଁ ।
ରହି ପାରିବେ ତହିଁରେ ଜଣେ ଦୁଇଜଣ
କେମନ୍ତେ ଏତେ ଲୋକଙ୍କୁ ରଖାଇ ବ୍ରାହ୍ମଣ ।
ରାଜା ରହିବାର କଥା ହେଲା ଯହୁଁ ସ୍ଥିର
ଚିନ୍ତାଭରେ ଅଥୟ ଯେ ହୋଇ ବିପ୍ରବର ।
ଅନ୍ତର୍ଯ୍ୟାମୀ ନାଥ ଆହେ ଦୟାଳୁ ଠାକୁର
ଏ ଘୋର ବିପଦୁ ମୋତେ କରନ୍ତୁ ଉଦ୍ଧାର ।
କୁଡ଼ିଆରେ କିଛି ନାହିଁ କି ଦେବି ଭୋଜନ
ବସିବାକୁ ଦେବା ପାଇଁ ନାହିଁତ ଆସନ ।
ଘରଘାଟୀ ନାହିଁ ମୋର ରହିବେ କାହିଁରେ
ଥାଟ ଘେନିଣ ନୃପତି ରହିଲା ଦୁଆରେ ।
ଅନାଦର ପାଇଲେ ସେ କରିବ ନା ରୋଷ
ଅଳପକେ ସବୁ ଧର୍ମ ଯିବ ମୋର ନାଶ ।
ବ୍ରାହ୍ମଣର ଧର୍ମ ଅଟେ ଅତିଥି ପୂଜିବା
ରାତିଅଧେ ରାଜା ଥାଟ ମୋ ଦୁଆରେ ଉଭା ।
ଫେରାଇ ଦେଲେ ମୁଁ ନାଥ ଧର୍ମଛଡ଼ା ହେବି
ଧର୍ମ ଛଡ଼ା ହୋଇ ଅନ୍ତେ ନରକେ ପଡ଼ିବି ।
ଆଶା ଭରସା ମୋହର ଆନ କେହି ନାହିଁ
ତୁମ୍ଭ ବିନା ଏ ସଂସାରେ ଆହେ ଭାବଗ୍ରାହୀ ।
କରୁଣା ସାଗର ତୁମ୍ଭେ ମୁକୁନ୍ଦ ମୁରାରି
ଗୋବିନ୍ଦ ମାଧବ ଗଦା ଶଙ୍ଖ ଚକ୍ରଧାରୀ ।
ଶରଣ ପଞ୍ଜର ବାନା ଉଡ଼ଇ ତୋହର
ଦୀନଜନ ବାନ୍ଧବ ହେ ଭକତ ସୋଦର ।
ଏମନ୍ତେ ଚିନ୍ତା କରନ୍ତେ ଦ୍ୱିଜବର ବସି
ଶୂନ୍ୟ ଦରଶନ ଆସି ଦେଲେ ଶୂନ୍ୟବାସୀ ।
ବୋଇଲେ କି ଭାବନା ତୁ କରୁ ଦ୍ୱିଜବର
ପ୍ରସନ୍ନ ହୋଇଲି ମାଗ ଘେନ ଇଚ୍ଛାବର ।
ଧର୍ମବନ୍ତ ପ୍ରାଣୀକି ମୁଁ ରଖିବା ନିମନ୍ତେ
ସୁଦର୍ଶନ ଚକ୍ର ଧରି ବୁଲୁଥାଇ ନିତ୍ୟେ ।
ଧର୍ମଛଡ଼ାଙ୍କୁ ମୁଁ କାଟି କରେ ବେନିଖଣ୍ଡ
ସ୍ୱଧର୍ମ ପାଳିବା ଲୋକେ ମୋର ଜାଣ ପିଣ୍ଡ ।
ବିପ୍ର ବୋଲଇ ହେ ନାଥ ଏହି ନୃପବର
ଥାଟ ଘେନିଣ ରହିଛି ଦୁଆରେ ମୋହର ।
ପାନ ଭୋଜନ ଶୟନେ କରିବ ସନ୍ତୋଷ
ଏହି ବର ମାଗୁଅଛି ଆହେ ପୀତବାସ ।
ବିପ୍ରର କରେ ଅପୂର୍ବ ମଣି ଦେଲେ ଆଣି
ଯାହା ମନାସିବୁ ତାହାଦେବ ଏହିକ୍ଷଣି ।
ମଣି ଦେଇ ଅନ୍ତର୍ଦ୍ଧାନ ହେଲେ ନାରାୟଣ
ସାନନ୍ଦ ହୋଇ ମଣିକି ବୋଇଲା ବ୍ରାହ୍ମଣ ।
ମନ୍ତ୍ରୀର ଉଆସ ପୁଣି ରାଜାର ମନ୍ଦିର
ପାତ୍ର ଅମାତ୍ୟଙ୍କ ପାଇଁ ଅପୂର୍ବ ଯେ ଘର ।
ଜେନା ବିଶୋଇ କରଣ ସମସ୍ତଙ୍କ ପାଇଁ
କୋଟି କୋଟି ଘର ମଣି ଦିଅ ତୁ ଗଢ଼ାଇ ।
ହାତୀଶାଳ ଓଟଶାଳ ଘୋଡ଼ା ଗଧଶାଳ
ପଦାତିଙ୍କ ପାଇଁ ଘର ଗାଈଙ୍କ ଗୁହାଳ ।
ଦୀର୍ଘ ପ୍ରତି ସମତୁଲ ହେବ ସବୁଘର
କାନ୍ଥ ଯାକ ହେବ ସବୁ ସ୍ଫଟିକ ପଥର ।
ମୁଗୁନି ପଥର ହେବ ସବୁରି ଅଗଣା
ତହିଁରେ ଶଙ୍ଖ ପଥର ଥିବ ହୋଇ ବଣା ।
ଅଷ୍ଟରତ୍ନର ପିତୁଳାମାନ ଥିବ ରହି
ରତ୍ନଦୀପ ଜଳୁଥିବ ଧାଡ଼ି ଧାଡ଼ି ହୋଇ ।
ଗଜଦନ୍ତର ପଲଙ୍କ ଥିବ ପ୍ରତି ଘରେ
ଚାନ୍ଦୁଆ ଟଣା ହୋଇବ ଗୃହର ଭିତରେ ।
ନ ଥିବ ଏମନ୍ତ ଘର ଚଉଦ ଭୁବନେ
ଖାଇ ପାଚେରୀ ପୋଖରୀ ଥିବ ସ୍ଥାନେ ସ୍ଥାନେ ।
ବନ ଉପବନେ ଥିବ ନାନା ଫୁଲ ଫଳ
ଯେ ଯାହା ବାଞ୍ଛା କରିବ ପାଇବ ସକଳ ।
ନୃତ୍ୟ ଗୀତ ବାଦ୍ୟ ଆଦି ରମଣୀରତନ
ନାନା ପ୍ରକାର ବାସନାମିଷ୍ଟ ପକ୍ୱ ପାନ ।
ଏମନ୍ତେ ବିପ୍ର ମାଗନ୍ତେ ମଣି ସବୁ ଦେଲା
ସକଳ ଦେଖି ବ୍ରାହ୍ମଣ ସନ୍ତୋଷ ହୋଇଲା ।

ବିନୟୀ ହୋଇ କହିଲା ନୃପତି ଛାମୁରେ
ମୁହିଁ ବନବାସୀ ତୁମ୍ଭେ ରାଜା ଏ ରାଜ୍ୟରେ ।
ନିଶା କାଳରେ ସମ୍ପାଦି ଅଛି ଯାହା ଯାହା
ଥାଟକୁ ଘେନି ସଙ୍ଗରେ ଆସି ନରନାହା ।
ଭୋଜନ ପାନ ଶୟନେ ହୋଇଣ ସନ୍ତୋଷ
ସ୍ୱଧର୍ମ ରଖି ମୋହର ଯାଅ ନିଜ ବାସ ।
ଶୁଣି ସାନନ୍ଦ ହୋଇଣ ଉଠିଲେ ନୃପତି
ଦେଖିଲେ ଧବଳଗୃହ ଅଛି ଚଉକତି ।
ସ୍ଫଟିକ ପଥର ପ୍ରାୟ ନିର୍ମଳ ସୁନ୍ଦର
ଗିରିତୁଲ୍ୟ ବିରାଜଇ ଗଡ଼ର ପ୍ରାଚୀର ।
ଗଭୀର ପ୍ରସାର ଖାଇ ଅଛି ଚଉପାଶେ
ରାତିରେ ସେ ଘରମାନ ଜଳ ଜଳ ଦିଶେ ।
ଥାଟ ଘେନିଣ ନୃପତି ପଶିଲେ ତହିଁରେ
ଶୋଭା ପାଉଛି ଉଦ୍ୟାନ ବାପୀ ସରୋବରେ ।
ନାନା ଫଳ ପୁଷ୍ପ ତହିଁ ବିରାଜୁ ଅଛଇ
ଅଶ୍ୱଙ୍କ ନିମନ୍ତେ ଘାସ ଗଦା ଗଦା ରହି ।
ଆନନ୍ଦେ ସେ ଗୃହେ ରହି ଫଳମୂଳ ଖାଇ
ସ୍ୱାଦୁ ମିଷ୍ଟ ଅନ୍ନ ଭୁଞ୍ଜି ପାଣି ପଣା ପିଇ ।
ତାମ୍ବୁଳ ଭକ୍ଷି ପଲଙ୍କେ ବସିଲେ ସମସ୍ତେ
ରମଣିଗଣ ତୋଷିଲେ ବାଦ୍ୟ ନୃତ୍ୟଗୀତେ ।
ଦାସ ଦାସୀ ଜଣ ଜଣକରେ ଖଟିଛନ୍ତି
ଆଚମ୍ଭିତ ପାତ୍ର ମିତ୍ର ପଦାତି ନୃପତି ।
ଯାହାକି ଖାଇଲେ କେ ବେନି ଥିଲେ ସେ ଖାଇ
ଯାହାକି ପିଇଲେ କେବେ ନ ଥିଲେ ସେ ପିଇ ।
ଯେ ଶେଯେଶୋଇଲେ କେବେ ନଥିଲେ ସେ ଶୋଇ
ଯେ ଘର ପାଇଲେ କେବେ ନଥିଲେ ସେପାଇ ।
ନୃତ ରଙ୍ଗରେ ଖଟିଲେ ଯେବଣ ସୁନ୍ଦରୀ
ଦେଖି ନ ଥିଲେ ସେ କେବେ ସୁନ୍ଦରୀ ସେପରି ।
ଯେଉଁ ରତନ ବସନ ଭୂଷଣ ଦେଖିଲେ
ନେତ୍ରେ ଦେଖି ନ ଥିବାରୁ ଆଚମ୍ଭିତ ହେଲେ ।
ବିନୟେ ଗାଲବ ବିପ୍ର ବୋଇଲେକ ଆସି
ନିଦ୍ରାକର ପାହି ଯିବ ଏହିକ୍ଷଣି ନିଶି ।
ଶ୍ରମ ନିବାରି ପ୍ରଭାତେ ଯିବ ନିଜପୁର
ଏମନ୍ତ କହି ସେଠାରୁ ଗଲେ ଦ୍ୱିଜବର ।
ସ୍ୱର୍ଗ ବିଦ୍ୟାଧରୀ ପରି ଅପୂର୍ବ ସୁନ୍ଦରୀ
ରମ୍ଭା ଅପସରୀ ତାଙ୍କୁ ନୋହିବେକ ସରି ।
ଦିବ୍ୟ ଅଳଙ୍କାରେ କରି ଅଙ୍ଗକୁ ଶୋଭନ
ଖଟିଲେ ଜଣ ଜଣଙ୍କୁ ଧରିଣ ବ୍ୟଜନ ।
ଗଜଦନ୍ତ ପଲଙ୍କରେ ନିଶ୍ଚିନ୍ତେ ଶୋଇଲେ
ପ୍ରଭାତ ହୁଅନ୍ତେ ଉଠି ସମସ୍ତେ ଦେଖିଲେ ।
କୁଡ଼ିଆ କେବଳ ଅଛି ଆଉ କିଛି ନାହିଁ
କୁହାକୁହି ହୁଅନ୍ତି ଯେ ଆଚମ୍ଭିତ ହୋଇ ।
ବିପ୍ରଙ୍କୁ ପ୍ରଣାମ କରି ବୋଲଇ ନୃପତି
ମେଲାଣି ଦିଅ ଘରକୁ ଯିବୁ ବ୍ରହ୍ମଯତି ।
ବଳାଇ ଦେଇ ରାଜାଙ୍କୁ ଅଇଲେ ବ୍ରାହ୍ମଣ
ଥାଟ ଘେନିଣ ସେଠାରୁ ଗଲେ ନୃପରାଣ ।
ବାଟେ ଯାଉ ଯାଉ ଭେଟ ପଡ଼ିଲେ ଶ୍ୱଶୁର
ଖୁଡୁତାଶୁର ଅଛଇ ତାଙ୍କ ସଙ୍ଗତର ।
ଅକଳିତ ଥାଟ ସଙ୍ଗେ କରନ୍ତି ମୃଗୟା
ପର୍ବତ ପ୍ରାୟ ବଢ଼ାଇ ଦେଉଛନ୍ତି କାୟା ।
ଶ୍ୱଶୁର ଖୁଡୁତାଶୁର ଦେଖିଣ ନୃପତି
ଯାନ ତେଜିଣ ଚରଣେ କଲାକ ପ୍ରଣତି ।
ଦୁଃଖ ସୁଖ କଥାବାର୍ତ୍ତା ହେଲେ ତହିଁ ବସି
ଦୀନ ଗୋପୀନାଥ ଭଜେ ବଇକୁଣ୍ଠ ବାସୀ ।

....❋....

## ହେତୁ ପ୍ରହେତୁ ଅସୁର ବଧ

କହନ୍ତି ଅର୍ଜ୍ଜୁନ ଆଗେ ବୀର ବୃକୋଦର
ଶ୍ୱଶୁର ଖୁଡୁତାଶୁର ଜାମାତା ଆବର ।
ଏ ତିନିଜଣ ଏକାଠି ହେବାରୁ ସେଠାରେ
ଦରଶନ କଲେ ପାତ୍ର ମନ୍ତ୍ରୀଏ ଛାମୁରେ ।
ବନ୍ଧୁ ମିତ୍ର ସହୋଦର ଆସି ତହିଁ ମିଳି
ସଭା ଗହ ଗହ ଶବ୍ଦେ ପଡ଼ିଲା ଉଛୁଳି ।
ହେତୁ ପଚାରଇ ତୁମ୍ଭେ ଥିଲ କାଲି କାହିଁ
ଏ ଘୋର ବନମଧ୍ୟରେ ଘର ଗ୍ରାମ ନାହିଁ ।
କି ଖାଇ ବଞ୍ଚିଲ ତୁମ୍ଭେ ଅଗମ୍ୟ ବନସ୍ତେ ।
ଏଥିର ବୃତ୍ତାନ୍ତ ବାବୁ କହକିନା ମୋତେ ।
ନୃପତି ବୋଇଲା ଶୁଣ ଶ୍ୱଶୁର ଠାକୁର
ଏ ଘୋର ବନରେ ଅଛି ଏକ ବିପ୍ରବର ।
କୁଡ଼ିଆ ଖଣ୍ଡିଏ କରି ରହିଅଛି ଏକା
ନିର୍ଭୟେ ରହିଛି ତାର ହୃଦେ ନାହିଁ ଦକା ।
ଜପ ତପ ଧ୍ୟାନ କିଛି ନ ଦେଖିଲୁ ତାର
ଚନ୍ଦ୍ରମା ପ୍ରାୟ ଉଜ୍ଜ୍ୱଳ ବିପ୍ରର ଶରୀର ।

ଆଦିତ୍ୟ ପ୍ରାୟ ସେ ବିପ୍ର ତେଜ ବିକାଶଇ
ଦେଖିଲା ମାତ୍ରେ ମନରେ ଭୟ ଉପୁଜଇ ।
ମୃଗୟା କରୁ ଆମ୍ଭଙ୍କୁ ହେଲା ରାତିଅଧ
ସେ ବିପ୍ର ଦେଖିଭୟେ ମୋ କଣ୍ଠ ହେଲା ରୋଧ ।
ମନେ ବିଚାରିଲି ହେବ କେ ବଣ ଦେବତା
ନିରୀକ୍ଷି ଚାହିଁ ଦେଖିଲି କନ୍ଧରେ ପଇତା ।
ଭୟରେ ମୁହିଁ ବିପ୍ରର ଚରଣେ ପଡ଼ିଲି
କୁଶଳ ବାରତାମାନ ତାହାର ପୁଛିଲି ।
ବୋଇଲି ହେ ଦ୍ୱିଜ ଆମ୍ଭେ ଯାଉଛୁ ଘରକୁ
ବିନୟେ ସେ ବିପ୍ରମଣି ବୋଇଲା ଆମ୍ଭଙ୍କୁ ।
ଅତିଥି ନ ହେଲେ ମୋର ଧର୍ମ ହେବଲୋପ
ଭାଳିଲି ନ ମାନି ଗଲେ ଦ୍ୱିଜଦେବ ଶାପ ।
ରହିବାକୁ କହନ୍ତେ ସେ ଦ୍ୱିଜ ମୁହୂର୍ତ୍ତକେ
ଯେଉଁପୁର ଭିଆଇଲା ନାହିଁ ତିନିଲୋକେ ।
ଖାଇବାକୁ ଦେଲା ଯାହା ଖାଇନାହୁଁ କେବେ
କେଜାଣି କେତେ ଖାଇଲୁ ଲୋଭେ ପଡ଼ି ଆମ୍ଭେ ।
ଯେବଣ ପଲଙ୍କେ ଆମ୍ଭେ ଶୋଇଲୁ ହେ ତାତ
କୋମଳ ଶେଜ ସୁବାସ କୁସୁମେ ମଣ୍ଡିତ ।
ନୃତ୍ୟଗୀତବାଦ୍ୟେ ତୋଷକଲେ ଯେଉଁବାଳୀ
ଦେବୀ ରାକ୍ଷସ ମାନୁଷୀ ନୁହନ୍ତି ସେଭଳି ।
ଅପସରୀ ବିଦ୍ୟାଧରୀ ନାଗ କନ୍ୟାମାନେ
ତାଙ୍କ ପାଦ ନଖ ସରି ନୋହିବେ ସମାନେ ।
ଏ ଅପୂର୍ବ ଭୋଗ କରି ରଜନୀ ବଞ୍ଚିଲୁଁ
ପ୍ରଭାତରୁ ଉଠି ତାତ କିଛି ନ ଦେଖିଲୁଁ ।
ଶାପକୁ ଡରି ବିପ୍ରକୁ କିଛି ନ ପଚାରି
ମେଲାଣି ମାଗି ଘରକୁ ଯାଉଅଛୁ ଫେରି ।
ହେତୁ ବୋଇଲାରେ ବାପ ଏଡ଼େ ତୁ ଅଜ୍ଞାନ
ବୁଝିନ ପାରିଲୁ ବିପ୍ର କୂଟର ନନ୍ଦନ ।
ଚୋରାଇ ଆଣି ପୋତିଛି ସେ ବହୁତ ଧନ
ରାତିହେଲେ ତାହା ସବୁ କାଢ଼େ ତହୁଁ ପୁଣ
ତାର ସଙ୍ଗୀମାନେ ତହୁଁ ରହିଥାନ୍ତି ଲୁଚି
ଶଣି ବିଦ୍ୟାରେ ସେମାନେ ଏ ସକଳ ରଚି ।
ଥାଟ ତୋ ସଙ୍ଗେ ଥିବାରୁ ପାଇ ମହାଭୟ
ମନ ଲଗାଇ ତୁମ୍ଭଙ୍କୁ କଲାକ ବିଦାୟ ।
ପ୍ରହେତୁ ବୋଇଲା ସତ ମନକୁ ଏ ଗଲା
ନ ବୁଝି ଯାହା ଚୋରକୁ ଧରି ଛାଡ଼ିଦେଲା ।

ଚାଲ ସଇନ୍ୟ ଘେରାଇ ଧରିବା ସେ ଚୋର
ନୃପତି ବୋଇଲା ଶୁଣ ଶ୍ୱଶୁର ଠାକୁର ।
ମନ୍ତ୍ରୀଙ୍କି ପଠାଇବା ସେ ଦେଖିଆସୁ ଯାଇଁ
କୁଡ଼ିଆରେ ଅଛଇକି ଯାଇଛି ପଳାଇ ।
ଏକାକେ ଥିଲେ ସଇନି କାହିଁପାଇଁ ଯିବେ
ପଳାଇ ଯିବକି ବିପ୍ର ଜଣେ ଗଲେ ଆମ୍ଭେ ।
ନ ଥିଲେ ତାହାକୁ ବନେ ଧରିବାନା ଖୋଜି
ତରକି ଲୁଚିଲେ ଯିବ ଆମ୍ଭ ବୁଦ୍ଧି ହଜି ।
ଜାମାତା କଥା ଶ୍ୱଶୁର ମନକୁ ଆସିଲା
ରାଜାର ମନ୍ତ୍ରୀ ସେଠାରୁ ଧୀରେ ଧୀରେ ଗଲା ।
ଦେଖିଲା କୁଡ଼ିଆ ଦ୍ୱାରେ ଅଛି ଦ୍ୱିଜବର
ମନ୍ତ୍ରୀ ଯାଇଁଣ ବନ୍ଦିଲା ସେ ବିପ୍ର ପୟର ।
ଦ୍ୱିଜ ବୋଇଲେ ହୋ ମନ୍ତ୍ରୀ ଅଇଲୁ କିମ୍ପାଇଁ
ମନ୍ତ୍ରୀ ବୋଇଲା ନୃପତି ଦେଲେକ ପଠାଇ ।
ଦ୍ୱିଜ ବୋଇଲେ କିମର୍ଥେ ପେଷିଲେ ରାଜନ
ମନ୍ତ୍ରୀ ବୋଇଲା କହୁଛି ଶୁଣ ସାବଧାନ ।
ଯେବଣ ଭୋଗେ ରାତିକ ବଞ୍ଚିଲେ ନୃପତି
ପାନ ଭୋଜନେ ଶୟନେ ହୋଇଣ ତୃପତି ।
ପ୍ରଭାତେ ନ ଦେଖି କିଛି ଗୁଡୁପୁଡୁ ମନେ
ଡରେ ମେଲାଣି ମାଗିଣ ଗଲେ ବନେ ବନେ ।
ପଚାରି ଆସ ଯା ବୋଲି ପଠାଇଲେ ମୋତେ
ତେଣୁ ଅଇଲି ତୁମ୍ଭଙ୍କୁ ପୁଛିବା ନିମନ୍ତେ ।
ଏମନ୍ତ ଶୁଣି ମନରେ ଭାଳି ଦ୍ୱିଜମଣି
ବୋଇଲେ ଏହାର ମୂଳ ଅଟଇ ଏ ମଣି ।
ଏହାର ପ୍ରସାଦେ ସବୁ ପାରିଲି ଭିଆଇ
ଏ ମଣି ବିନୁ ମୋହର ଆନଗତି ନାହିଁ ।
ଯାହା ଯା ଯା ମନାସିଲି ସବୁ ଦେଲା ଆଣି
ଶୁଣିଣ ମନ୍ତ୍ରୀ ସେଠାରୁ ହୋଇଲା ମେଲାଣି ।
ନୃପତି ଆଗେ କହିଲା ସବୁ ସମାଚାର
ଶୁଣ ରାଜା ବୋଲେ ଏହା ଗୁପତ ତୁ କର ।
ପୁଣି ସେହି ବିପ୍ରକୁ ତୁ କହ ଯା ବୁଝାଇ
ଧନ ରତ୍ନ ନେଇ ମଣି ଦେଉ ବଦଳାଇ ।
ଘରବାଡ଼ି ଦେଇ ତାକୁ ବିଭା କରାଇବି
ମୋହର ରାଜ୍ୟରେ ତାକୁ ସୁଖରେ ରଖିବି ।
ଏମନ୍ତ ଶୁଣି ଯେ ମନ୍ତ୍ରୀ ପୁଣି ଗଲା ଧାଇଁ
ବିପ୍ର ବୋଇଲେ ତୁ ପୁଣି ଅଇଲୁ କିମ୍ପାହିଁ ।

ମନ୍ତ୍ରୀ ବୋଇଲା ପଠାଇ ଦେଲେକ ରାଜନ
ଏ ମଣି ବଦଳେ ନିଅ ତୁମ୍ଭେ ଧନରତ୍ନ ।
ଘରବାଡ଼ି ଦେବେ ରାଜା ବିଭା କରାଇବେ
ରାଜ୍ୟେ ତୁମ୍ଭଙ୍କୁ ବହୁତ ସୁଖରେ ରଖିବେ ।
ଦ୍ୱିଜ ବୋଇଲେ କି ମନ୍ତ୍ରୀ ତୁ ହୋଇଲୁବାଇ
ଆମ୍ଭେତ ବନେ ରହିଛୁ ଫଳ ମୂଳ ଖାଇ ।
ସେ ସବୁ ନେଇଣ ଆମ୍ଭେ କହ କି କରିବୁ
ଭୋଜନ ଦେଇ ଦକ୍ଷିଣା ବିପ୍ରେ ଦ୍ୟନ୍ତି ବାବୁ ।
କ୍ଷତ୍ରୀ କି ଦେଲେଣି ଏବେ ଭୋଜନୀ ଦକ୍ଷିଣା
ବିପ୍ରଙ୍କଠାରୁ ପାହାଚେ଼ କ୍ଷତ୍ରିୟେକ ଊଣା ।
ସେ କେମନ୍ତେ ବିପ୍ରଠାରୁ ଘେନିବେ ହେ ଦାନ
ଆହେ ମନ୍ତ୍ରୀ ରାଜାକୁ ତୁ ବୁଝା ଯା ବହନ ।
ମନ୍ତ୍ରୀ ଆସି ଗୁପତରେ ରାଜାକୁ କହିଲା
ଭୟ ଦେଖାଇ ଆଣ ଯା ନୃପତି ବୋଇଲା ।
ମନ୍ତ୍ରୀ ଯାଇ ମିଳି ପୁଣି ଦ୍ୱିଜବର ପାଶେ
ବୋଇଲା ମଣି ନ ଦେଲେ ରାଜା ଆସିରୋଷେ ।
ବଳେ ଘେନିଯିବେ ତୁମ୍ଭେ କ କରିବ ଦ୍ୱିଜ
ଦିଗପାଳଙ୍କ ତେଜରେ ତାତ ମହାରାଜ ।
ତାଙ୍କ କଥା ନ ମାନିଲେ ହୁଏ ଧର୍ମହାନି
ପାପ ତାଙ୍କରନୋହିବ ବଳେ ଗଲେ ଘେନି ।
ପ୍ରଜା ଉପରେ ରାଜାର ଅଛି ଅଧିକାର
ପ୍ରଜାର ଧନ ସେ ସବୁ ଅଟଇ ରାଜାର ।
ମଣି ଦେଇ ରଖ ତୁମ୍ଭେ ସବୁ ଦିନ ପ୍ରୀତି
ରାଜାର ଦୋରେହା ହୋଇ ପାରିବ କି ବର୍ତ୍ତି ।
ଦ୍ୱିଜ ବୋଇଲା ମନ୍ତ୍ରୀ ତୁ କହିଲୁ ଯା ସତ
ଅନୀତି କରିବ ଯେବେ ପୃଥିବୀର ନାଥ ।
ପ୍ରଜା ନ ସହି ପଳାଇ ଯିବେ ଅବା କହି
ପଳାଇ ଗଲେ ରହିବା ପାଇଁ ସ୍ଥାନ ନାହିଁ ।
ଏ ମଣି ଗୋଟି ମୋହର ଧର୍ମ ରକ୍ଷାକଲା
ଏହାର ଯୋଗୁ ଅତିଥି ସେବା ସିନା ହେଲା ।
ଏହାପାଇଁ ଯାଉ ପଛେ ଏ ମୋର ଜୀବନ
ବଳେ ଆସି ପଛେ ନେଉ ଛଡ଼ାଇ ରାଜନ ।
ମନ୍ତ୍ରୀ ଫେରି ଆସି ସବୁ କହିଲା ରାଜାକୁ
ଶୁଣି ନୃପତି କହିଲା ଯାଇଁ ଶ୍ୱଶୁରକୁ ।
ଶ୍ୱଶୁର ବୋଇଲା ମୁଁ ଯାହା କହିଥିଲି ଦେଖ
ଅନେକ ମଣି ସେପରି ଅଛଇ ତା ପାଖ ।

ଥାଟ ଦେଖିଲେ ଯେ ଦ୍ୱିଜଦେବ ସବୁ ଡରି
ଶୁଣି ଦୁଇ ଥାଟ ତହୁଁ ଗଲେ ଅସ୍ତ୍ରଧରି ।
ଦେଖିଣ ଦ୍ୱିଜ ମଣିକି ଅନାଇଁ ବୋଇଲା
ବଳେତୋତେ ନେବ ବୋଲି ନୃପତି ଅଇଲା ।
କହି ଦ୍ୱିଜ ପଳାଇଲା ଭୟେ ଛାଡ଼ି ମଣି
ସଇନ ମାଡ଼ି ଆସନ୍ତି ବଢ଼ି ପାଣି ଜାଣି ।
କୁଡ଼ିଆକୁ ଶତପୁର କରି ଗଲେ ବେଢ଼ି
ତା ପଛକୁ ତା ପଛକୁ ଆସୁଚନ୍ତି ମାଡ଼ି ।
କୁଡ଼ିଆ ଦୁଆରେ ରହି ଆଗ ସେନାପତି
ଭିତରକୁ ଚାହିଁ ଦେଲା ନାହିଁ ତହିଁ ଯତି ।
ଦୋହରା ଅଗ୍ନି ଗୃହରେ ଅଛଇ ଯେ ମଣି
ତେଜ ତାର ବିକାଶଇ କୋଟି ସୂର୍ଯ୍ୟ ଜିଣି ।
ସେ ତେଜରେ ଭିତରକୁ ନ ପାରିଲେ ପଶି
ବିଚାରିଲେ ପୋଡ଼ି ଦେବା ଆସ ଆମ୍ଭେ ମିଶି ।
ଏହା ବିଚାରନ୍ତେ ମଣି ସୈନ୍ୟ କଲା ଜାତ
କୋଟି କୋଟି ରଥ ଗଜ ଅଶ୍ୱ ଶତ ଶତ ।
ଖଡ଼ଗ ଶକତି ଧନୁ ଶର ଧରି ହାତେ
ବାର ସେନାପତି ଆଗେ ପଛରେ ସମସ୍ତେ ।
ଦିଶନ୍ତି ସେ ଭୟଙ୍କର ବୀର ବେଶଧାରୀ
ତାହାଙ୍କର ନାମ ଶୁଣ କହୁଛି ବିସ୍ତାରି ।
ସୁଭଦ୍ରା ସୁକାନ୍ତି ମନ୍ଦ ଶୁଭ ଦରଶନ
ସୁରଶ୍ମି ସୁନ୍ଦର ଶମ୍ଭୁସୁଯଶା ପ୍ରଚ୍ଛନ୍ନ ।
ସୁଖଦ ସୁଶୀଳ ଘେନି ସୁଶାନ୍ତି ଏ ବାର
ବାର ଆଦିତ୍ୟ ପରାଏ ତେଜ ତାହାଙ୍କର ।
ସିଂହକୁ ଦେଖି ପଶୁଏ ଭାଗନ୍ତି ଯେସନ
ବ୍ୟାଘ୍ର ଦେଖି ଛାଗପଲ ଯେହ୍ନେ ଛନ୍ନ ଛନ୍ନ ।
କାନ୍ଧରେ ବାଜି ଯେସନେ ଲେଉଟଇ ପାଣି
ଦେଖି ପଛଘୁଞ୍ଚା ଦେଲେ ରାଜାର ସଇନି ।
କୁଡ଼ିଆ ବାହାରେ ରହି ତାର ସେନାପତି
ନାରାଚ ମୁନେ କାହାର ବୁକୁ ବିଦାରନ୍ତି ।
କାହା ହାତ ଗୋଡ଼ କାଟି କଲେ ଲଣ୍ଡାବୃକ୍ଷ
କାହାର ଶିର କାଟିଲେ ମାରିଣ ବିଶିଖ ।
ଏମନ୍ତ ରାଜାର ସୈନ୍ୟ ପକାଇଲେ ମାରି
ଦେଖି ସେନାପତିମାନେ ହେଲେ ଆଗସରି ।
ବାର ସେନାପତି ସଙ୍ଗେ କଲେ ଘୋର ରଣ
ଜିଣି ନ ପାରି ଆପଣେ ଲଭିଲେ ମରଣ ।

ବାସଭଗ୍ନ ପକ୍ଷୀ ପ୍ରାୟ ପଳାଇଲେ ଥାଟ
ବନସ୍ତେ ଲୁଚିଲେ କେହି ନ ପାଇଣ ବାଟ ।
ସେନାପତି ପଡ଼ିବାର ଶୁଣିଣ ନୃପତି
ଆବର ତାଙ୍କ ସଙ୍ଗରେ ପଡ଼ିଲେ ପଦାତି ।
ରଥଗଜ ଅଶ୍ୱ ଓଟ ପଡ଼ିଲେ ବହୁତ
ରୋଦନ କରଇ ରାଜା ମୁଣ୍ଡେ ଦେଇ ହାତ ।
ଜାମାତ ବିକଳ ଦେଖି ବୋଇଲା ଶ୍ୱଶୁର
ସଜହୋଇ ବେଗେ ଆସଆସ ସୈନ୍ୟମୋର ।
ଦ୍ୱିଜମାଂସ ଖାଇ ମୁଖ ଗନ୍ଧ ନିବାରିବ
ବଳେ ମଣି ଆଣି ମୋର ଜାମାତାକୁ ଦେବ ।
ଏମନ୍ତ ଶୁଣି ବାହାର ହୋଇଲେ ଅସୁରେ
ଗର୍ଜନ କରି ଧାଇଁଲେ ଅସ୍ତ୍ର ଧରି କରେ ।
ବାଦ୍ୟ ନାଦେ ମୁଖଗୋଳ କମ୍ପଇ ମେଦିନୀ
ବନ୍ଧ ଭାଙ୍ଗିଲେ ଯେସନ ଯାଏ ବଢ଼ିପାଣି ।
ତେସନ ଆସନ୍ତି ମାଡ଼ି ଅସୁରର ଥାଟ
ବାର ସେନାପତିସଙ୍ଗେ ବାଟେ ହେଲେ ଭେଟ ।
ଲୁଚି ରହି ଦ୍ୱିଜବର ଯୁଦ୍ଧ ଦେଖୁଥିଲା
ଅସୁର ଥାଟକୁ ଦେଖି ଜ୍ଞାନ ହଜିଗଲା ।
ବୋଇଲା ଯେବେଟି ଧର୍ମ ଚାରିଯୁଗେ ସତ
ଯହିଁ ଧର୍ମ ତହିଁ ଯେବେ ରହନ୍ତି ଅଚ୍ୟୁତ ।
ମୋର ବଇରୀକୁ ମାରି ରଖିବେ ନା ଧର୍ମ
ମୁହିଁତ ଜାତିରେ ଦ୍ୱିଜ ନ ଜାଣେ ସଂଗ୍ରାମ ।
ଦେଖିଲେ ଅସୁର ମୋତେ ଖାଇବେ ନା ପୋଡ଼ି
ବୁଦା ତଳେ ଡରେ ବିପ୍ର ଲୁଚେ ଶୋଇପଡ଼ି ।
ଗରୁଡ଼ ପିଠିରେ ବସି ଦେବ ଚକ୍ରଧର
ଆକାଶେ ଥାଇ ବୋଇଲେ ତୁହୋ ଖଗବର ।
ପକ୍ଷୀ ପବନେ ଉଡ଼ାଇ ଦିଅ ଅସୁରକୁ
ଉପ୍ରୋଧ କଲେ କି ଜିଣି ପାରିବା ଏହାଙ୍କୁ ।
ପ୍ରଭୁ ଆଜ୍ଞା ପାଇ ଖଗ ପକ୍ଷୀ ଦେଲା ଝାଡ଼ି
ଅସୁର ସଇନି ଗଲେ ଶୂନ୍ୟ ମାର୍ଗେ ଉଡ଼ି ।
ପର୍ବତେ ପଡ଼ିଣ କେହି ଛେଚି ହୋଇ ମଲା
ସମୁଦ୍ରରେ ପଡ଼ି ଯାଇ କେହି ବୁଡ଼ିଗଲା ।
ବଳବନ୍ତ ସେ ଗରୁଡ଼ ପକ୍ଷର ପବନ
ଅଣଆଶ ମୂର୍ତ୍ତି ଧରି କରଇ ଗର୍ଜନ ।
ପତଙ୍ଗ ପ୍ରାୟ ଗଗନେ ଦିଶନ୍ତି ଅସୁରେ
ପବନାଶର ମାଇଲେ ବିଷ୍ଣୁ ଏ କାଳରେ ।

ରଥ ଗଜ ଅଶ୍ୱ ଉଡ଼ି ପଡ଼ି ହେଲେ ଚୂନା
ଜଣେ କେହି ନବର୍ତ୍ତିଲେ ଥିଲେ ଯେତେ ସେନା ।
ଅସୁର ଥାଟେ ପନ୍ଦର ସେନାପତି ବର୍ତ୍ତି
ଶ୍ୱଶୁର ଖୁଡୁତାଶୁର ଜୋଇଁ ତିନିମୂର୍ତ୍ତି ।
ଏମନ୍ତେ ଅଠର ଜଣ ବିନୁ ଆନ ନାହିଁ
ଥାଟ ନ ଦେଖି ଅସୁରେ ଶୂନ୍ୟେଦେଲେ ଚାହିଁ ।
ଶଙ୍ଖ ଚକ୍ର ଗଦା ଧରି ଗରୁଡ଼ ଉପରେ
ବିରାଜନ୍ତି ଦଇତାରି ଗଗନ ମାର୍ଗରେ ।
ହେତୁ ବୋଇଲାରେ ଆଉ କି ବିଚାର କର
କାଳେ କାଳେ ଶତ୍ରୁ ଅଟେ ଯେ ବିଷ୍ଣୁ ଆମ୍ଭର ।
ତାକୁ ଆଜି ପାଇଥାଇଁ ଆମ୍ଭ ଭାଗ୍ୟବଳେ
ରହିଛି ଦେଖ ଗରୁଡ଼ ପୃଷ୍ଟେ ଅନ୍ତରାଳେ ।
ସମସ୍ତେ ଘେରି ରେ ମାର ବିଳମ୍ବ ନ କର
ପଳାଇ ଗଲେ ଆଉ କି ପାଇବା ଆବର ।
ଏମନ୍ତ ଶୁଣି ଅସୁରେ ଉଠିଲେ ଗରଜି
ଡରେ ଆକାଶର ମେଘ ପଡ଼ିବ କି ଭାଜି ।
କିବା ସେ ପ୍ରଳୟ କାଳ ସିନ୍ଧୁ ଗରଜନ
ଭୟେ ଛନ୍ନ ଛନ୍ନ ହେଲେ ସହସ୍ର ଲୋଚନ ।
ବୃହସ୍ପତିଙ୍କ ପୁଚ୍ଛିଲେ ଏ କିସ ଶବଦ
ବୃହସ୍ପତି ବୋଇଲେକ ଅସୁରଙ୍କ ନାଦ ।
ଇନ୍ଦ୍ର ବୋଇଲେ କେବଣ ଅସୁର କି ଜାଣ
ଗୁରୁ ବୋଇଲେ କହଇ ଶୁଣ ସୁରରାଣ ।
ପ୍ରତାପୀ ଅସୁର ହେତୁ ପ୍ରହେତୁ ଏ ଦୁଇ
ବ୍ରହ୍ମା ବରେ ବଳୀୟାର ନ ଜାଣୁ କି ତୁହି ।
ବଳେ ଆସି ବସିଥିଲେ ସ୍ୱର୍ଗପୁର ମାଡ଼ି
ବ୍ରହ୍ମା ବଚନେ ସ୍ୱର୍ଗକୁ ତୋତେ ଦେଲେ ଛାଡ଼ି ।
ଆଜି ବିଷ୍ଣୁ ଅଗ୍ରତରେ ପଡ଼ିଛନ୍ତି ଭେଟ
ଏମନ୍ତ ଶୁଣି ବାସବ ହୋଇଲା ଉଚ୍ଚାଟ ।
ଅଇରାବତ ଆରୋହୀ ଗଗନେ ରହିଲା
ଯମ ମଇଁଷି ବାହନେ ଚଢ଼ି ବିଜେ କଲା ।
ନର ବାହନରେ ବିଜେ କୁବେର ଦେବତା
ଦେଖିବାପାଇଁ ଅଇଲେ ସ୍ୱର୍ଗର ବନିତା ।
ତେତିଶ କୋଟି ଦେବତା ବିଜେ ହେଲେ ଆସି
ଏମନ୍ତ ବେଳେ ମିଳିଲେ ନାରଦ ଯେ ଋଷି ।
କଳି ଧୋକଡ଼ି ମୁଣିକି ଧରି ଦେଲେ ଝାଡ଼ି
ଲାଗୁ ଲାଗୁ ବୋଲି ନୃତ୍ୟ କଲେ ତାଳିମାଡ଼ି

କୋପେ ଅସୁର ବିନ୍ଧିଲେ ଧରି ନାନା ଶର
ଯେସନେ ବରଷାକାଳେ ବରଷାର ଧାର ।
କୋପେ ଶାରଙ୍ଗ ଧନୁକୁ ଧରି ନାରାୟଣ
କାଟି ଖଣ୍ଡ ଖଣ୍ଡ କଲେ ଅସୁରଙ୍କ ବାଣ ।
ଏମନ୍ତେ ଘଡ଼ିଏ ହେଲା ବିଷମ ସମର
କୋପେ ଶ୍ରୀ ବିଷ୍ଣୁ ଧଇଲେ ନାରାୟଣ ଶର ।
ସେନାପତିଙ୍କର ଶିର ପକାଇଲେ ଛେଦି
ଆନନ୍ଦ ହୋଇଲେ ଶୂନ୍ୟେଥାଇ ଜୟଭେଦୀ ।
ଘୋର ଗର୍ଜନ କରିଣ ପଡ଼ିଲେ ଅସୁରେ
ପନ୍ଦର ମଲେ ରହିଲେ ଆଉ ତିନି ବୀରେ ।
ଶ୍ରୀବିଷ୍ଣୁ ସଙ୍ଗେ କରନ୍ତି ପ୍ରତାପେ ସମର
ସୂର୍ଯ୍ୟ ଆଗେ ଜୁଳୁଜୁଳା ପୋକ ପରକାର ।
ଅଗ୍ନିବାଣ ବ୍ରହ୍ମବାଣ ପର୍ବତା ବାରୁଣା
କେହି କାହାକୁ ନୁହଁନ୍ତି ବୀରପଣେ ଊଣା ।
ବାଣେ ସେହି ଲୁଚାଇଲେ ଆଦିତ୍ୟର ରଥ
ଦିବସେ ଅନ୍ଧାର ହେଲା ନ ଦିଶିଲା ପଥ ।
ଶୂନ୍ୟମାର୍ଗେ ପକ୍ଷୀବର ଚଳି ନ ପାରିଲା
ଦେବତାଙ୍କ ଚିତ୍ତେ ମହାଭୟ ଉପୁଜିଲା ।
ନାରାୟଣଙ୍କର ବାଣ କାଟଇ ନୃପତି
କୋପେ ପାଶୁପତ ଶର ମାରି ଶିରୀପତି ।
ନୃପତି ହସ୍ତରୁ ଧନୁ କାଟି ପକାଇଲେ
ଗଦା ମାରିଣ ରାଜାର ଶିରକୁ ଛେଦିଲେ ।
ଜାମାତା ମରିବା ହେତୁ ଦେଖି କଲା କୋପ
ଲାଞ୍ଜ ଧଇଲେ ଯେମନ୍ତ ଗର୍ଜେ କାଳସର୍ପ ।
ଧନୁ ଧରି ଦୁଇଭାଇ ହୋଇ କୋପମୂର୍ତ୍ତି
ବାଣେ ନାରାୟଣଙ୍କୁ ଯେ ପକାଇଲେ ପୋତି ।
ବଇଷ୍ଣବୀ ଚକ୍ରମାରି କାଟିଲେ ତାହାରି
ହେତୁ ଦୈତ୍ୟ ଗଗନରେ ଉଠେ ଶୂଳଧରି ।
ଗରୁଡ଼ର ଶିରେ ନେଇ ପ୍ରହାରିଲା ବଳେ
ଗର୍ଜନ କରି ପଡ଼ିଲା ପକ୍ଷୀବର ତଳେ ।
ବାହନ ବିହୁନେ ବିଷ୍ଣୁ ମନେ କ୍ରୋଧବହି
ଦନୁଜ ମୁଣ୍ଡେ ପିଟିଲେ ଗଦାକୁ ବୁଲାଇ ।
ଶୂଳ ଦେଖାଇ ଅସୁର ଗଦା ନେଲା ରୋକି
ବିଅର୍ଥ ହେବାର ଦେଖି ଗଦା କୌମାଦକୀ ।
ଆଜ୍ଞାମାତ୍ରେ ସୁଦର୍ଶନ ଚକ୍ରଆସି ବେଗେ
ବେନି ଅସୁରଙ୍କ ମୁଣ୍ଡ କାଟିଗଲା ରାଗେ ।
ଗର୍ଜନ କରି ପଡ଼ିଲେ ଭୂମିରେ ସେ ଦୁଇ
ମେରୁ ମନ୍ଦର ଉପୁଡ଼ି ଗଡ଼ିକି ଅଛଇ ।
ଦାନବ ନିଧନ କରି ଦାନବ ବଇରୀ
ବୋଇଲେ ଅମୃତ ତୁହୋ ଆଣ ବଜ୍ରଧାରୀ ।
ଗରୁଡ଼ ଉପରେ ସିଞ୍ଚ ବଞ୍ଚୁ ପକ୍ଷୀବର
ତକ୍ଷଣେ ଆଣି ଅମୃତ ସିଞ୍ଚି ସୁନାସୀର ।
ଗରୁଡ଼କୁ ବଞ୍ଚାଇଲା ଆନନ୍ଦେ ଶ୍ରୀହରି
ଅଜ୍ଞାନ ହୋଇ ପଡ଼ିଛି ଦ୍ୱିଜବର ଡରି ।
ଶ୍ରୀହସ୍ତେ ତୋଳି ଶ୍ରୀହରି ଚେତା କରାଇଲେ
ନୟନ ମେଲିଣ ଦ୍ୱିଜ ବିଷ୍ଣୁଙ୍କୁ ଚାହିଁଲେ ।
ନବ ଜଳଧର କାନ୍ତି ଅପୂର୍ବ ମୂରତି
ଦେଖି ଗାଲବ ବିପ୍ରର କୁଣ୍ଢେ ମୋଟ ଛାତି ।
ଗୋବିନ୍ଦ ଗୋବିନ୍ଦ କହି ରହିଲା ମଉନେ
ମନ ନୟନ ରଖିଛି ଅଭୟ ଚରଣେ ।
ବୋଇଲେ ବିପ୍ରକୁ ଡାକି ପୁଣି ନାରାୟଣ
ଧର୍ମବନ୍ତ ପ୍ରାଣୀ ମୋର ଅଟଇ ପରାଣ ।
ତା ଯୋଗୁଁ ଏ ସ୍ଥାନଗୋଟି ହୋଇଲା ପବିତ୍ର
ଯଜ୍ଞେଶ୍ୱର ରୂପେ ମୁହିଁ ଥିବି ଦିବାରାତ୍ର ।
ସଂସାରେ ଅଛି ଯେତେକ ପୁଣ୍ୟ ତୀର୍ଥ ସ୍ଥାନ
ଏ ଚିତ୍ରକୁଟେ ପର୍ବତ ତହିଁରେ ପ୍ରଧାନ ।
ସବୁଠାରୁ ବଡ଼ ତୀର୍ଥ ଏ ସ୍ଥାନ ହୋଇଲା
ତିନିଦିନ ଉପବାସେ ଯେ ଉଠି ରହିଲା ।
ଅଜ୍ଞାତ ବନରେ ଜାତ ହୋଇବ ସେ ଜନ
ଶତ ଅଶ୍ୱମେଧ ଯଜ୍ଞେ ହୁଏ ଯେତେ ପୁଣ୍ୟ ।
ତହୁଁ ପୁଣ୍ୟବନ୍ତ ହେବ ଅଧିକ ସେ ଜାଣ
ଅନ୍ତେ ଦେବଇ ତାହାକୁ ବଇକୁଣ୍ଠେ ସ୍ଥାନ ।
ମଣିରୁ ଜାତ ହୋଇଲେ ଯେଉଁ ବାରଜଣ
ଏ ମହୀମଣ୍ଡଳେ ସେହି ହେବେ ନୃପରାଣ ।
ମହୀତଳେ ଯଶ ରଖି ବସିବେ ସ୍ୱର୍ଗରେ
ତୁ ଦ୍ୱିଜବର ଏ ସ୍ଥାନେ ଥାଅ ନିର୍ଭୟରେ ।
ଆଜୁ ଏ ତୀର୍ଥର ନାମ ହେଲା ଯଜ୍ଞେଶ୍ୱର
ଏହାକହି ଅନ୍ତର୍ଦ୍ଧାନେ ଗଲେ ଚକ୍ରଧର ।
ଦ୍ୱିଜଗୋପୀନାଥ ବୋଲେ ବୋଲ ହରିହରି
ଦେଖ ଦେଖ ହରି ଭଜି ବିପ୍ର ଗଲା ତରି ।

.....✳.....

## ଭୀମର କ୍ରୋଧ, ପ୍ରଦ୍ୟୁମ୍ନର ଦ୍ୱାରକା ଗମନ, ଶ୍ରୀକୃଷ୍ଣଙ୍କର ତ୍ରିଭୁବନ ସୈନ୍ୟ ସଂଗ୍ରହ

ଶୁକ କହନ୍ତି ଶୁଣ ହୋ ରାଜା ପରୀକ୍ଷିତ
କାହାରି କଥା ନ କଲା ପବନର ସୁତ ।
କ୍ରୋଧେ ଜର ଜର ହୋଇ ରୁକ୍ମିଣୀ ନନ୍ଦନ
ବୋଇଲା ଯାଉଛି ଫେରି ଦ୍ୱାରକା ଭୁବନ ।
ଜାଣିଲି ମାରୁତି ଏକା ଅନର୍ଥର ମୂଳ
ଏ ଭୀମ ଯୋଗୁଁ ବୁଡ଼ିବ ପଣ୍ଡୁ ରାଜକୁଳ ।
ମୃତ୍ୟୁ ନିକଟ ହୋଇଲେ ପ୍ରାଣୀଏ ଯେସନ
ଭଲ କହିଲେ ତହିଁରେ ନ ଦିଅନ୍ତି କାନ ।
ଆପଣାକୁ ବଡ଼ ମଣି ଏହି ବୃକୋଦର
ତ୍ରିଭୁବନ ନାଥ ସଙ୍ଗେ କରଇ ସମର ।
ମେରୁକୁ ମାରଇ ଢେଲା ଦୁଷ୍ଟ ବୁଦ୍ଧି ପଣେ
ଚରାଚର ମହୀ ତାଡ଼ି ଲୋଡ଼େ ଶୁଚିମୁନେ ।
ଆକାଶକୁ ବାନ୍ଧିବାକୁ କରଇ ଯତନ
ଜାଲ ପାତିଛି ଜାଲେ କି ପଡ଼ିବ ପବନ ।
ସୀତା ନ ଦେଇ ଯେମନ୍ତ ମଲାଟି ରାବଣ
ଦଣ୍ଡୀର ପାଇଁ ତେସନ ପାଣ୍ଡବ ମରଣ ।
ଚିନ୍ତାରେ ଧର୍ମନନ୍ଦନ ନ କହନ୍ତି କିଛି
ବିସ୍ମିତ ହୋଇ ଅର୍ଜ୍ଜୁନ ମୁଖ ପୋତିଅଛି ।
ନକୁଳ ସହଦେବର ଶୁଖିଛି ବଦନ
ଲୋତକେ କୁନ୍ତୀଦେବୀର ନେତ୍ର ଥନ ଥନ ।
ପ୍ରଦ୍ୟୁମ୍ନ ବଚନେ ଭୀମ କୋପେ ଉଠେ ଜଳି
ଅନଳ କୁଣ୍ଡେ କି ଆଣି ଘୃତ ଦେଲା ଢାଳି ।
ବୋଇଲାରେ ପ୍ରଦ୍ୟୁମ୍ନ ତୁ ତୋ ବାପକୁ ଯାଇଁ
କହ ଏପରି ଅନୀତି କରୁଛି କିମ୍ପାଇଁ ।
ଦଣ୍ଡୀରାଜା ବନୁ ଯାଇ ଘୋଟକୀ ଆଣିଲା
ଶରଧା କରି ତାହାକୁ ଯତନେ ପାଳିଲା ।
ତୋ ବାପ ପୋଷିଲା ଘୋଡ଼ୀ ନୁହଇତ ସେହି
ମାଗି ପଠାଇଲା ଦଣ୍ଡୀ କଲା ଯେବେ ନାହିଁ ।
ଏଥିପାଇଁ ତାକୁ ମାରି ଘୋଡ଼ୀ ନେବ ବଳେ
ଏପରି ଅନୀତି ପୁତ୍ରଠାରେ ପିତା କଲେ ।
ଆପଣାର କୁଳନାଶ ହୁଅଇ ଯେସନ
ପ୍ରଜାଠାରେ ଏ ଅନୀତି କଲେଟି ରାଜନ ।
ଆପଣାର ରାଜ୍ୟ ଧ୍ୱଂସ ହୁଅଇ ଯେପରି
ଭାରିଯାଠାରେ ଏପରି ସ୍ୱାମୀ ଯେବେ କରି ।
ଆପଣାର ଧର୍ମନାଶ ହୁଅଇ ଯେସନ
ତ୍ରିଭୁବନ ନାଥ ହୋଇ ତୋ ବାପ ତେସନ ।
ଦଣ୍ଡୀରାଜାଠାରେ କିପାଁ କରେ ଏ ଅନୀତି
ରସାତଳେ ପଶିଯିବ ସିନା ବସୁମତୀ ।
ଧର୍ମ ଶିଖାଇବା ପାଇଁ ଅଛି ଅବତରି
କହିବୁ ଅଧର୍ମ କିମ୍ପା ଶିଖାଉଛି ହରି ।
ତାର ଭୟେ ଦଣ୍ଡୀ କାହିଁ ଠାବ ନ ପାଇଲା
ବୁଡ଼ି ମରୁଥିଲା ତାକୁ ସୁଭଦ୍ରା ରଖିଲା ।
ଦୟା ପାଇ ତାକୁ ଆଣି ଦେଇଛି ମୋ ପାଶେ
ତା ଲାଗି ଏ ପ୍ରାଣ ପଛେ ଯାଉବିନା ଦୋଷେ ।
ଦଣ୍ଡୀକି ନ ଦେବି କ୍ଷତ୍ରିଧର୍ମ ନ ଛାଡ଼ିବି
କାହାରି ସାହା ନ ନେଇ ଏକାକେ ଯୁଝିବି ।
ଏ ମୋହର ପଣ ବାବୁ ଜାଣ କାମଦେବ
ଦଣ୍ଡବଳ ସାଜି ଏଥେ ଆସୁ ବାସୁଦେବ ।
ଭୀମର ପ୍ରତିଜ୍ଞା ଶୁଣି ରୁକ୍ମିଣୀ କୁମର
ସଭାରୁ ଉଠି ସେ ଗଲା ସୁଭଦ୍ରାର ପୁର ।
ପ୍ରଣମି ବୋଇଲା ଦେବୀ ଯାଉଛି ଲେଉଟି
ନିଶ୍ଚୟ ଯୁଦ୍ଧ କରିବେ ଭୀମଙ୍କ କିରୀଟି ।
ସୁଭଦ୍ରା ବୋଇଲେ ବାବୁ କହିବୁ ଭାଇଙ୍କି
ଦଣ୍ଡୀକି ଛାଡ଼ି ଦିଅନ୍ତୁ ମୋହର ପାଇଁକି ।
ସେ ଛାର ଘୋଡ଼ୀ ନିମନ୍ତେ ନକରୁ ସେ ରଣ
ମୁହିଁ ତ ଅଟଇ ବାବୁ ତାଙ୍କଠାରୁ ସାନ ।
ଦୟା ପାଇ ଦଣ୍ଡୀକି ମୁଁ ରଖିଅଛି ଆଣି
ଏମନ୍ତ କହି ସୁଭଦ୍ରା ଦେଲେକ ମେଲାଣି ।
ପ୍ରଦ୍ୟୁମ୍ନ ଯାଇଁ ଦ୍ୱାରକା ପୁରେ ପ୍ରବେଶିଲା
ସକଳ କଥା କୃଷ୍ଣଙ୍କୁ ବୁଝାଇ କହିଲା ।
କୋପେ ଶ୍ରୀହରି ବୋଇଲେ ସାଜ ଯଦୁବଳ
ମହୀରେ ମୁଁ ନ ରଖିବି ପାଣ୍ଡୁ ରାଜାକୁଳ ।
ଯେତେକ ବୀର ଅଛନ୍ତି ଦ୍ୱାରିକାରେ ମୋର
ସକଳେ ସଜ ହୁଅନ୍ତୁ ଯିବେ ମୋ ସଙ୍ଗର ।
ପୁତ୍ର ନାତି ସହିତରେ ଭାଇ ବଳରାମ
ଦୂତମାନଙ୍କୁ ପଠାଇ ଦିଅ ତୁହୋ କାମ ।
କୈଳାସେ ଯାଇଁ କହିବେ ଶିବଙ୍କ ଆଗରେ
ଚଉଦ କୋଟି ଗଣଙ୍କୁ ଘେନି ସଙ୍ଗତରେ ।

ଦ୍ୱାରକା ନଗରେ ମୋର ହୋଇବେ ପ୍ରବେଶ
ଦୁଷ୍ଟଙ୍କୁ ଛାଡ଼ି ମହୀରେ ଯେତେକ ନରେଶ ।
ଥାଟ ସଜକରି ବେଗେ ଦ୍ୱାରକା ଆସିବେ
ହିମବନ୍ତ ପର୍ବତକୁ ଏ ଖବର ଦେବେ ।
ସମୁଦ୍ରକୁ କହି ତହୁଁ ଯିବେ ଲଙ୍କାପୁରେ
ବିଭୀଷଣକୁ ଖବର ଦେଇଯିବେ ତାରେ ।
କଦଳୀ ବନେ ହନୁକୁ କହିବେ ଆସିବ
ପାଣ୍ଡବଙ୍କ ସହିତରେ ସମର ହୋଇବ ।
ତହୁଁ ପୁଣି ପାତାଳକୁ ଯିବାବେଳେ ବାଟେ
ଜାମ୍ବବକୁ କହିଯିବେ ବାସୁକୀ ନିକଟେ ।
ତାହାର ଖବର କହି ପଶିବେ ଆକାଶେ
ଦିଗପାଳଙ୍କୁ କହିଣ ଯିବେ ଇନ୍ଦ୍ରପାଶେ ।
ଖବର କରି ସେଠାରୁ ଯିବେ ବ୍ରହ୍ମଲୋକେ
ବ୍ରହ୍ମାକୁ କହି ମିଳିବେ ଆସି ମୋର ପାଖେ ।
ଆଜ୍ଞା ପାଇଣ ପ୍ରଦ୍ୟୁମ୍ନ ବରଗିଲା ଦୂତ
କୃଷ୍ଣ ପାଣ୍ଡବଙ୍କ ରଣ ହେବ ଆଚମ୍ବିତ ।
ଶ୍ରୀବିଷ୍ଣୁଙ୍କୁ ସାହାପକ୍ଷ ହେବ ଥାଟ ଘେନି
ଦୂତେ ଏମନ୍ତେ ବାରତା ଦେଇ ପୁର ତିନି ।
ଦ୍ୱାରକାକୁ ଆସି କୃଷ୍ଣ ଛାମୁରେ କହିଲେ
ଯଦୁବଳ ସାଜିବାକୁ ପ୍ରଭୁ ଆଜ୍ଞାଦେଲେ ।
ସାରଥିକି ବୋଇଲେ ମୋ ରଥ ଆଣି ସାଜି
ଏମନ୍ତ ବେଳେ ମିଳଇ ହନୁ ଗଳଗାଜି ।
ପାଦେ ପଡ଼ି ଠାକୁରଙ୍କୁ ଦରଶନ କଲା
ଶ୍ରୀରାମ ରୂପକୁ ଦେଖି ଆନନ୍ଦ ହୋଇଲା ।
ହନୁପାଇଁ ରାମରୂପ ହେଲେ ଯଦୁପତି
ଶିରେ ଜଟା କରେ ଧନୁ ଶ୍ୟାମଳ ମୂରତି ।
ହନୁକୁ ଏକା ଦିଶଇ ନ ଦିଶେ କାହାକୁ
ପ୍ରବେଶିଲା ବିଭୀଷଣ ଘେନି ଅସୁରଙ୍କୁ ।
ଲଙ୍କାର ରାକ୍ଷସ ସେହି ମହା ଭୟଙ୍କର
ଚଉଦ ଭୁବନେ ନାହିଁ ଭୟ ତାହାଙ୍କର ।
ରାବଣ ସମାନ ବୀର ଅଟନ୍ତି ସମରେ
ହନୁକୁ କେବଳ ଏକା ଡରନ୍ତି ଅସୁରେ ।
ଉପରମୁହାଁ ସେ ହୋଇ ଡେଇଁ ଅସୁଥିଲେ
ହନୁକୁ ଦେଖି ଭୟରେ ତଳମୁହାଁ ହେଲେ ।
ରୁଦ୍ରଗଣ ସଙ୍ଗେ ଘେନି ବିଜେ ପଶୁପତି
ବୃଷଭ ଉପରେ ବସି ଡମ୍ବରୁ ବଜାନ୍ତି ।
କାର୍ତ୍ତିକ ଗଣେଶ ନନ୍ଦୀ ଭୃକୁଟୀ ଏ ଚାରି
ଥାଟ ଆଗେ ଆସୁଛନ୍ତି କରେ ଧନୁ ଧରି ।
ଏ ବେଳେ ଆସି ମିଳିଲେ ଦେବ ପୁରନ୍ଦର
କରେ ବଜ୍ର ଥିବାରୁ ସେ ଦିଶନ୍ତି ସୁନ୍ଦର ।
ତେତିଶକୋଟି ଦେବତା ଅଛନ୍ତି ସଙ୍ଗତେ
ଯମ ଅଗ୍ନି ନଇରତ କୁବେର ସହିତେ ।
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା ବରୁଣ ପବନ
ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ଯାଇଁ କଲେ ଦରଶନ ।
ମରାଳ ବାହନେ ବିଜେ ଚତୁର୍ମୁଖ ବ୍ରହ୍ମା
ସଙ୍ଗେ ଅଛନ୍ତି ନାରଦ ମୁନି ମହାତମା ।
ଦେବରଷି ବ୍ରହ୍ମରଷି ଅନେକ ଅଛନ୍ତି
ଚାରିବଦନରେ ଚାରି ବେଦକୁ ଘୋଷନ୍ତି ।
ବେଦମନ୍ତ୍ର ପଢୁଛନ୍ତି ଋଷିମୁନି ଆଗେ
ଗୋବିନ୍ଦଙ୍କୁ ଦରଶନ କଲେ ଆସି ବେଗେ ।
ହିମବନ୍ତ ଗିରି ଆସି ମିଳିଲା ଏକାଳେ
ସଙ୍ଗେ ଘେନି ମେରୁ ଆଜି ସକଳ ଶଇଳେ ।
ସମୁଦ୍ର ଆସି ମିଳିଲା ନଦୀଗଣ ଘେନି
ହ୍ରଦ ଆଦି ସରୋବରେ ବ୍ୟାପିଲା ମେଦିନୀ ।
ନାଗଙ୍କ ରାଜା ବାସୁକୀ ଆସିଣ ଭେଟଇ
ବହୁତ ସର୍ପ ତାହାର ସଙ୍ଗତେ ଅଛଇ ।
ଅନନ୍ତ ନାଗ ତକ୍ଷକ ନାଗ କର୍କୋଟକ
ପଦ୍ମ ମହାପଦ୍ମ ଶଙ୍ଖ ଆବର କୁଳିକ ।
କାଳୀ ମାଳୀ ସ୍ୱର୍ଣ୍ଣମଣି କେଉଁଟା ନାଗୁଣୀ
ଦୁଇମୁଖୀ ଶ୍ମଶ୍ରୁମୁଖା ଅହିରାଜ ଫଣୀ ।
ବୋଡ଼ା ଚିତି କଉଡ଼ିଆ ଲାଉଡ଼ଙ୍କ ସାପ
କାଳିଅଞ୍ଜ ଗୁଣ୍ଡୁଚ ଯେ ଅଛନ୍ତି ଅମାପ ।
ଫୁଙ୍ଫୁକାର ଧ୍ୱନିରେ ସେ କମ୍ପାଇ ମେଦିନୀ
ଅଜଗର ସାପ କେତେ କେ ପାରିବ ଗଣି ।
ଅଙ୍ଗଦ ଭେଟିଲା ଆସି ଘେନି କପିବଳ
କରେଘେନି ଅଛନ୍ତି ସେ ତରୁ ଶାଳଶିଳ ।
କାଳିମୁଖା ଦଧିମୁଖା ଗୋଲାଙ୍ଗୁଡ଼ା ସୈନ୍ୟ
ଋକ୍ଷରାଜ ଜାମ୍ବବ ଯେ କଲା ଦରଶନ ।
ଋକ୍ଷ କପିବଳଙ୍କ ରେ ପୃଥିବୀ ଘୋଟିଲା
କିଳିକିଳା ନାଦେ ତିନିଭୁବନ କମ୍ପିଲା ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ପୁଚ୍ଛାକଲେ ଗୋବିନ୍ଦଙ୍କୁ
କାହା ସଙ୍ଗେ ଯିବ ତୁମ୍ଭେ କହ ଯୁଝିବାକୁ ।

ଗୋବିନ୍ଦ ବୋଇଲେ ଶୁଣ ତହିଁର ବିଧାନ
ଦଣ୍ଡୀ ନାମେ ନରପତି ଅବନ୍ତୀ ରାଜନ ।
ସୁଲକ୍ଷଣୀ ଘୋଟକୀଏ ଥିଲା ତାର ତହିଁ
ନାରଦ ମୁଖରୁ ଆମ୍ଭେ ଏ ବାରତା ପାଇ ।
ମାଗିଲୁ ତାକୁ ନ ଦେଲା ସେ ଘୋଡ଼ୀ ଆମ୍ଭଙ୍କୁ
ସଇନ୍ୟ ସାଜିଲୁ ଆମ୍ଭେ ଯୁଦ୍ଧ କରିବାକୁ ।
ଘୋଡ଼ୀ ଘେନି ରାଜ୍ୟ ଛାଡ଼ି ପଳାଇଲା ଡରେ
ଏ ପୃଥିବୀ ମଧ୍ୟେ ଥିଲେ ଯେତେ ନୃପବରେ ।
ଶରଣ ମାଗିଲାଯାଇଁ ଅବନ୍ତୀ ରାଜନ
କେହି ଆଶ୍ରା ନ ଦେଲେ ମୋ ଉପ୍ରୋଧ ରଖିଣ ।
ବୋଇଲେ କୃଷ୍ଣଦୋରେହା ହୋଇବୁ କିମ୍ପାଇଁ
ତୁ କୃଷ୍ଣ ଦୋରେହା ହୋଇ ଭ୍ରମୁ ନରସାଇଁ ।
ଶୁଣ ତୁମ୍ଭେ ବ୍ରହ୍ମା ଇନ୍ଦ୍ର ଶଙ୍କର ଦେବତା
ପାଣ୍ଡବମାନେ ଅଟନ୍ତି ତେଣୁ କାରଜାତା ।
ତାଙ୍କ ପାଇଁ କେତେ କଷ୍ଟ ସହି ନାହିଁ ମୁହିଁ
ତାଙ୍କର ଚକ୍ଷୁରେ ଟିକେ ଉପରୋଧ ନାହିଁ ।
ମୋହର ଶତ୍ରୁକୁ ନେଇ ରଖିଛନ୍ତି ଘରେ
ପ୍ରଦ୍ୟୁମ୍ନଯାଇଁ ବୁଝାଇ ଯେତେକ ପ୍ରକାରେ ।
ଶତ୍ରୁକୁ ନ ଦେଲେ ଲୋକେ ଯୁଦ୍ଧ କଲେ ସ୍ଥିର
ତୁମ୍ଭେମାନେ ଏତେବେଳେ ସାହା ହୁଅ ମୋର ।
ପାଣ୍ଡବଙ୍କୁ ମାରି ଶତ୍ରୁଦିଅ ମୋତେ ଆଣି
ପାଣ୍ଡବଙ୍କ ମନେ ଗର୍ବ ବହୁତ ହେଲାଣି ।
ଗର୍ବଗଞ୍ଜନ ବାନା ମୁଁ ଉଡ଼ାଇ ଜଗତେ
ବଳ ଗର୍ବେ ପଣ୍ଡୁ ପୁତ୍ରେ ନ ଚିହ୍ନିଲେ ମୋତେ ।
ଦେବ ଇନ୍ଦ୍ର ବୋଇଲେ ହୋ ଶୁଣ ଯଦୁସାଇଁ
ଜାଣ ତ ମୋହର ପୁତ୍ର ଅର୍ଜ୍ଜୁନ ଅଟଇ ।
ମାତଳି ଯାଇଁ ପଚାରି ଆସୁ ତାଙ୍କୁ ବାରେ
ତଦନ୍ତେ ସିନା ପଶିବା ଆମ୍ଭେ ସଂଗ୍ରାମରେ ।
ଶ୍ରୀକୃଷ୍ଣ କହିଲେ ହେଉ ଯାଉ ଯେ ମାତଳି
ଆପେ ସୈନ୍ୟ ସଜାଇଲେ ପ୍ରଭୁ ବନମାଳୀ ।
ସେନାପତି କାମ ହେଲେ ଥାଟେ ଆଗୁଆଣି
ମକର କେତନ ରଥ ଶୋହଇ ଧରଣୀ ।
କରେ ଶୋହେ ଫୁଲବାଣ ଫୁଲ ଶରାସନ
ତାଙ୍କ ପଛେ ଶାମ୍ବ ଆଦି କୃଷ୍ଣଙ୍କ ନନ୍ଦନ ।
ବସୁଦେବ ଉଗ୍ରସେନ ଉଦ୍ଧବ ଅକ୍ରୁର
ଅନାଧୃଷ୍ଟ ଅନିରୁଦ୍ଧ ସାତ୍ୟକି ଆବର ।
ମହାବଳୀ ଯଦୁବଳ ଅଇଲେକ ମାଡ଼ି
ସିନ୍ଧୁଘୋଷ ପ୍ରାୟେ ଘୋର ରଡ଼ିମାନ ଛାଡ଼ି ।
ପାଦଭରେ ଦଲ ଦଲ ହୁଅଇ ମେଦିନୀ
ସିନ୍ଧୁଘୋଷ ଜିଣି ଶୁଭେ ମୁଖରାବ ଧ୍ୱନି ।
ଆରେରେ ପାଣ୍ଡବ ବୋଲି ରେବତୀ ରମଣ
ଲଙ୍ଗଳ ମୂଷଳ ଧରି କରନ୍ତି ଗମନ ।
ତାଳଧ୍ୱଜ ରଥ ଘେନି ପଛରେ ଦାରୁକ
ସଜହୋଇ ବାହାରିଲେ ରୁକ୍ମିଣୀ ନାୟକ ।
ରୁକ୍ମିଣୀ ବୋଇଲେ ନାଥ ଯାଉଅଛ କେଣେ
ଶ୍ରୀହରି ବୋଇଲେ ଯିବି ହସ୍ତିନା ଭୁବନେ ।
ଘୋଟକୀ ନିମନ୍ତେ ଅତି କରି ଘୋର ରଣ
ପଞ୍ଚପାଣ୍ଡବଙ୍କୁ ନିଶ୍ଚେ କରିବି ନିଧନ ।
ରୁକ୍ମିଣୀ ବୋଇଲେ ନାଥ କହୁଛ ଅନୀତି
ସାକ୍ଷାତେ ଧର୍ମ ମୂରତି ଧର୍ମ ନରପତି ।
ଅର୍ଜ୍ଜୁନ ଅଟେ ପ୍ରାଣରୁ ଅଧିକ ତୁମ୍ଭର
ତାହାଙ୍କ ସଙ୍ଗେ କେମନ୍ତେ କରିବ ସମର ।
ଶ୍ରୀହରି ବୋଇଲେ ନାହିଁ ଉପ୍ରୋଧ ତାଙ୍କର
ମୋହର ଶତ୍ରୁକୁ ନେଇ ରଖିଛନ୍ତି ଘର ।
ରୁକ୍ମିଣୀ ବୋଇଲେ ନାଥ କହିଲେ ମୁଁ ଯିବି
ଦ୍ରଉପଦୀ ସୁଭଦ୍ରାକୁ ବୁଝାଇ କହିବି ।
ଇଚ୍ଛାହେଲେ ଯାଇପାରେ ନାହିଁ ନ କରଇ
ଏମନ୍ତ ଶୁଣି ରୁକ୍ମିଣୀ ସଜ ହେଲେ ଯାଇଁ ।
ନନ୍ଦୀଘୋଷ ରଥେ ବିଜେ କଲେ ଠାକୁରାଣୀ
ଦାରୁକ ବାହିଲା ରଥ ଶୂନ୍ୟେ ମନ ଜାଣି ।
ପାଣ୍ଡବଙ୍କ ଅନ୍ତପୁରେ ହୋଇଲେ ପ୍ରବେଶ
ଦାରୁକ ଫେରି ଅଇଲା ଘେନି ନନ୍ଦୀଘୋଷ ।
ଗରୁଡ଼କୁ ସୁମରଣା କଲେ ଚକ୍ରପାଣି
ବେଗେ ଅଇଲା ବିନତାସୁତ ତାହା ଜାଣି ।
ଗରୁଡ଼ ପୃଷ୍ଠରେ ବିଜେ ଦେବ ନାରାୟଣ
ଦ୍ୱିଜ ଗୋପୀନାଥ ନିତ୍ୟ ଚରଣେ ଶରଣ ।

.....❀.....

## ମାତଳିର ଅର୍ଜ୍ଜୁନ ନିକଟରେ ପ୍ରବେଶ ଓ ପାଣ୍ଡବଙ୍କ ସହିତ ମନ୍ତ୍ରଣା

ବାସବ ଆଜ୍ଞାରେ ଚଳେ ମାତଳି ସାରଥି
ବିଜେ କଲା ଯହିଁ ଅଛି ପାର୍ଥ ମହାରଥୀ ।

ମାତଳିକି ଦୂରୁ ଦେଖି ଉଠିଲେ ଅର୍ଜୁନ
ଖଣ୍ଡେ ଦୂରୁ ଯାଇଁ କଲେ ଚରଣ ବନ୍ଦନ ।
ଗଉରବ କରି ନେଇ ବସାଇ ଆସନେ
କି ନିମନ୍ତେ ଆଗମନ ମୋହର ଭବନେ ।
ମାତଳି ବୋଇଲେ ଇନ୍ଦ୍ର ପଠାଇଲେ ମୋତେ
ତେତିଶକୋଟି ଦେବତା ଅଛନ୍ତି ସଙ୍ଗତେ ।
ବ୍ରହ୍ମାଆଦି ଦିଗପାଳେ ରହିଛନ୍ତି ତହିଁ
କେତେ ଛନ୍ତି ବ୍ରହ୍ମା ଋଷି ତାର ଲେଖାନାହିଁ ।
ଯକ୍ଷ ସଇନି ଅସଂଖ୍ୟ କୁବେର ସଙ୍ଗତେ
ଅସ୍ତ୍ର ଶସ୍ତ୍ର ରହିଅଛି ସମସ୍ତଙ୍କ ହସ୍ତେ ।
ଯମଗଣ ଘେନି ଯମ କରେ କାଳଦଣ୍ଡ
ଆଦିତ୍ୟଗଣ ସଙ୍ଗରେ ପ୍ରଚଣ୍ଡ ମାର୍ତ୍ତଣ୍ଡ ।
ଅଗ୍ନି ଦେବତା ଆବର ବରୁଣ ପବନ
ରୁଦ୍ରଗଣଙ୍କ ସହିତ ଦେବ ତ୍ରିଲୋଚନ ।
ନନ୍ଦୀ ଭୃଙ୍ଗୀ ମଣିଭଦ୍ର କାର୍ତ୍ତିକ ଗଣେଶ
ଶସ୍ତ୍ର ଧରି ରହିଛନ୍ତି ମହେଶଙ୍କ ପାଶ ।
ଅନନ୍ତ ନାଗବଳଙ୍କୁ ଘେନିଣ ବାସୁକୀ
ନାଗୁଣୀବଳ ଯେ କେତେ କେ ପାରିବ ଲେଖି ।
ପୃଥିବୀର ରାଜାମାନେ ଆସିଛନ୍ତି ବାହି
ଯଦୁବଳ ଘେନି ବିଜେ ଆପେ ଭାବଗ୍ରାହୀ ।
ଗରୁଡ଼ ପୃଷ୍ଠରେ ବିଜେ କୋପେ ଗୁରୁତର
ହଳମୂଷଳ ଘେନିଣ ବିଜେ ହଳଧର ।
ଲଙ୍କାରୁ ଯେ ବିଭୀଷଣ ଆସିଅଛି ବାହି
ତା ସଙ୍ଗେ ଅସୁର ଯେତେ କେ ପାରିବ କହି
କପିରାଜ ଅଙ୍ଗଦ ଯେ କିଷ୍କିନ୍ଧ୍ୟାରୁ ବିଜେ
ପବନସୁତ ହନୁ ଯେ ଆସିଅଛି ନିଜେ ।
ଋକ୍ଷ ରାଜ ଜାମ୍ବବାନ ଅଛଇ ଆବର
ଋକ୍ଷ କପିବଳ କେତେ ଲେଖା ନାହିଁ ତାର ।
ଋକ୍ଷ କପି ରାକ୍ଷସରେ ପୂରିଅଛି ମହୀ
ଶାଳ ଶିଳ ଘେନି ବିଜେ କରିଛନ୍ତି ତହିଁ ।
ସମସ୍ତେ ବିଚାର କରି ପଠାଇଲେ ମୋତେ
ଅର୍ଜୁନ ଆଗେ ଏମାନ କହ ଯା ତୁରିତେ ।
ଜଗତ ଠାକୁର କୃଷ୍ଣ ଅନାଦି ପୁରୁଷ
ଯାର ମହିମା ନ ଜାଣି ପାରନ୍ତି ତ୍ରିଦଶ ।
ତା ସଙ୍ଗେ ବିବାଦ କରି ଅବନ୍ତୀ ରାଜନ
ତିନିପୁରେ ରହିବାକୁ ନ ପାଇଲା ସ୍ଥାନ ।
ତାହାକୁ ପାଣ୍ଡବେ କିମ୍ପା ରଖିଛନ୍ତି ଘରେ
ଅକାରଣେ କଳି କିମ୍ପା ଶ୍ରୀହରି ସଙ୍ଗରେ ।
ତାକୁ ଦେଇ ହରିଙ୍କି ସେ କରନ୍ତୁ ସନ୍ତୋଷ
ନ ମାନିଲେ ନ ଘେନିବେ ଆଉ ଆମ୍ଭ ଦୋଷ ।
ଗୋବିନ୍ଦ ଉପ୍ରୋଧ ଆମ୍ଭେ ଛାଡ଼ି ନ ପାରିବୁ
ଛାଡ଼ିଲେ ଆମ୍ଭେ ସ୍ୱର୍ଗରେ କେମନ୍ତେ ରହିବୁ ।
କାଳେ କାଳେ ଅସୁରଙ୍କୁ ମାରନ୍ତି ଗୋବିନ୍ଦ
ଆମ୍ଭ ପାଇଁ ଦେହ ଧରି କଲେ କଂସବଧ ।
ମାତଳି ମୁଖୁଁ ଏମନ୍ତ ଶୁଣିଣ ଅର୍ଜୁନ
ଧର୍ମ ରାଜାଙ୍କ ପାଖକୁ ଚଳିଲେ ବହନ ।
ମାତଳି ଆସିବା କଥା ଜଣାଇଲେ ତାଙ୍କୁ
ବହନ ଯୁଧିଷ୍ଠି ଗଲେ ମାତଳି ପାଖକୁ ।
ଚରଣ ବନ୍ଦି ବହୁତ ବିନୟୀ ହୋଇଣ
ବୋଇଲେ ମୂର୍ଖ ଅଟଇ ଭାଇ ଭୀମସେନ ।
ଯେତେ ବୁଝାଇଲେ ସେହି କଥା ନ ବୁଝଇ
ଅର୍ଜୁନକୁ ବୋଇଲେ ତୁ ଯାଅ ଆରେ ଭାଇ
ଭୀମକୁ ଡାକି ଆଣିବୁ ମୋ ପାଖକୁ ବେଗେ
ନକୁଳ ସହଦେବହିଁ ଥିବେ ସଙ୍ଗେ ସଙ୍ଗେ ।
ଆଜ୍ଞା ମାତ୍ରକେ ବହନ ଗଲେ ଧନଞ୍ଜୟ
ଯହିଁ ବିଜେ କରିଅଛି ପବନ ତନୟ ।
ପାୟେ ପଡ଼ି ଶୋଇ ଉଠି ଶିରେ ଦେଇ କର
ଠାକୁରଙ୍କ ଆଜ୍ଞା ବେଗେ ଆସ ମୋ ସଙ୍ଗର ।
ନକୁଳ ସହଦେବହିଁ ଯିବେ ସଙ୍ଗତରେ
ତୁରିତେ ଉଠିଲେ ଭୀମ ଗଦା ଧରି କରେ ।
ନକୁଳ ସହଦେବ ହିଁ ଗଲେ ଖର ହୋଇ
ଧର୍ମଙ୍କ ପାଦେ ପ୍ରଣାମ କରି ତିନି ଭାଇ ।
ମାତଳି ଚରଣ ବନ୍ଦି ବସିଲେ ଆସନେ
କହିଲେ ସବୁ ମାତଳି ଭୀମ ସନ୍ନିଧାନେ ।
ସବୁ କଥା ଯାକ ଶୁଣି ଶୁଣି ବୃକୋଦର
ବୋଇଲେ ଯେ ଜଗତରେ ଅଟନ୍ତି ଠାକୁର ।
ସେ ଯେତେ କଥା ନ ବୁଝି କରିବେ ଅନୀତି
ସଂସାରେ ସକଳ ପ୍ରାଣୀ ତହିଁରେ ପ୍ରବର୍ତ୍ତି ।
ଧର୍ମ କର୍ମ ଛାଡ଼ି ପାପେ ବଳାଇବେ ମତି
ଆପଣ ଆମ୍ଭମାନଙ୍କ ଦେବତା ଅଟନ୍ତି ।
ତୁମ୍ଭେ ଯାହା କରିବ ତା କରିବୁ ନା ଆମ୍ଭେ
କେମନ୍ତେ ଏ ଶିକ୍ଷା ଦିଅ ଆସି ହୋଇ ଦେବେ ।

ଦଣ୍ଡୀ ରାଜା ବନୁ ଏକ ଘୋଟକୀ ପାଇଲା
ସେ ଘୋଟକୀ କୃଷ୍ଣଙ୍କର ନୁହଇ ତ ଭଲା ।
ପରଦ୍ରବ୍ୟ ନେବାପାଇଁ କଲେ ଯେବେ ମନ
ମାଗିଲେ ତାହା ନ ଦେଲା ଯେବେ ସେ ରାଜନ ।
ଠାକୁର ହୋଇ ବିଚାର ନ କଲେ ତ ତାହା
ପରଦ୍ରବ୍ୟ ହରଣରେ ପାପ ହେବ ଯାହା ।
ପାପ କି ଏକା ମାତଳି ଗରିବଙ୍କ ପାଇଁ
ଗରିବ ହରିଲେ ଯାଇଁ ନରକେ ପଡ଼ଇ ।
ଠାକୁରେ ହରିଲେ· ତାର ନାହିଁ କିଛି ଦୋଷ
ମାରି ଲୋଡ଼ିଲେ,ରାଜାକୁ ଧରି ମନେ ରୋଷ ।
ଡରେ ପଳାଇ ଆସିଣ ଶରଣ ପଶିଲା
ଭାରିଯା ଧନ ସମ୍ପଦ ରାଜ୍ୟହିଁ ତେଜିଲା ।
ଦୟାଳୁ ଠାକୁର ହୋଇ ନ କଲେ ତ ଦୟା
ତୁମ୍ଭେ ପରା ମାତଳି ହୋ ଧର ଦେବ କାୟା ।
ତୁମ୍ଭର ତହିଁରେ ପୁଣି ହେଲା କି ବିଚାର
ଶରଣ ରଖିବା ଦୋଷ ବାଛିଲ ଆମ୍ଭର ।
ବୁଦ୍ଧି ଦେଉଅଛ ପୁଣି ଫେରାଇ ଦେବାକୁ
ଆମ୍ଭ କର୍ମ ଦୋଷ ଆମ୍ଭେ କହିବା କାହାକୁ ।
ଜୀବନ ଭୟେ ଯେ ପ୍ରାଣୀ ଶରଣ ପଶଇ
କ୍ଷତ୍ରିହୋଇ ଯେବେ ତାକୁ ଦିଏ ଘଉଡ଼ାଇ ।
ସାତଜନ୍ମ ପରିଯନ୍ତେ ନର୍କେ ପଡ଼ିଥାଇ
ଶରଣ ରଖି ଯେ ପୁଣି ଶତ୍ରୁ ମୁଖେ ଦେଇ ।
ବିଶ୍ୱାସଘାତକା ବୋଲି ବୋଲନ୍ତି ତାହାକୁ
ଡରେ କେହି ନ ପଶନ୍ତି ତାହାର ପାଖକୁ ।
ମଲେ ଯେ ନରକେ ପଡ଼େ ଶୁଣିଛି ପୁରାଣେ
ବହୁତ କଷ୍ଟ ଦିଅନ୍ତି ତାକୁ ଯମଗଣେ ।
ପ୍ରାଣଡରେ ସିନା ମୁହିଁ ଧର୍ମକୁ ଲଘିବି
ଧର୍ମ ଛାଡ଼ିବି ମାତଳି ଅମର ହୋଇବି ।
ପର ଅର୍ଥେ ଗଲେ ପଛେ ଯାଉ ଏ ଜୀବନ
ଜନମ ହେଲେ ପ୍ରାଣୀର ଅବଶ୍ୟ ମରଣ ।
ଅକାରଣ ମୃତ୍ୟୁଠାରୁ ଏ ମୃତ୍ୟୁ ଅଧିକ
ଅବନ୍ତୀ ନାଥକୁ ଦେଇ ମୋ ବଞ୍ଚିବା ଧିକ ।
ହେ ମାତଳି ଏଥୁ ତୁମ୍ଭେ ଯାଅ ବେଗେ ଫେରି
ବାସବ ଦେବତା ଆଗେ କହିବ ବିସ୍ତାରି ।
ମୋ ପାଇଁ ସେ ଶ୍ରୀହରିଙ୍କି କହିବେ ବୁଝାଇ
ଜଗତ କରତା ହରି ଜଗତ ଗୋସାଇଁ ।
ସେ ଅନୀତି କଲେ ତାଙ୍କୁ କେ ପାରେ ନିବାରି
ରାଜା ଅନୀତି କଲେ କି ପ୍ରଜା ବଞ୍ଚି ପାରି ।
ସ୍ୱାମୀ ଅନୀତି କଲେ କି କରିବ ଯୁବତୀ
ପିତାହିଁ ଅନୀତି କଲେ ପୁତ୍ରର କି ଗତି ।
ଦେବତା ଅନୀତି କଲେ ଧର୍ମ କାହିଁ ରହି
ମେଘେ ଅନୀତି କଲେ କି କୃଷି କର୍ମ ହୋଇ ।
ଭୀମ ମୁଖୁ ଏ ବଚନ ଶୁଣିଣ ମାତଳି
ଫେରି ଦ୍ୱାରକାପୁରକୁ ଗଲା ବେଗେ ଚଳି ।
ବାସବ ଆଗେ ସକଳ କହିଲା ବୁଝାଇ
ଶୁଣିଣ ମଉନ ହେଲେ ଦେବ ଶଚୀସାଇଁ ।
ବାସବକୁ ଚାହିଁ ପୁଣି ବୋଇଲେ ଗୋବିନ୍ଦ
ମାତଳି ମୁଖୁଁ ସକଳ ଶୁଣିଲ ତ ଇନ୍ଦ୍ର ।
ଜାରଜାତକ ତାଙ୍କର ଉପ୍ରୋଧ କି ଅଛି
ସୁଭଦ୍ରା ହରଣ ବେଳେ ମୁଁ କି ନ କରିଛି ।
ଭାଇ ବଳରାମ ସଙ୍ଗେ ଅର୍ଜୁନ ବିବାଦୀ
ଭାଇକି ଛାଡ଼ି ଉପ୍ରୋଧ କରି ଜମ୍ଭଭେଦୀ ।
ସୁଦର୍ଶନ ଚକ୍ର ଦେଲି ଅର୍ଜୁନର ହସ୍ତେ
ଦେଖି ବଳରାମ ଯୁଦ୍ଧ ନ କରେ ତା ସାଥେ ।
ମୋର ଯନ୍ତ୍ରଣାରେ ଗଲେ ଜତୁଘରୁ ତରି
ଦେଖିଛ ତ ଲାଖବିନ୍ଧାଠାରେ ବଜ୍ରଧାରୀ ।
ଚକ୍ର ଉହାଡ଼ିଲି ବିନ୍ଧି ନ ପାରିଲେ କେହି
ତାଙ୍କପାଇଁ ମୋତେ ରାତିଦିନ ନିଦ ନାହିଁ ।
ଉପ୍ରୋଧ ନ କଲେ ପୁଣି ମୋଠାରେ ସେ ତିଳେ
ମୋର ଶତ୍ରୁକୁ ରଖିଲେ ନେଇ ବନେବଳେ ।
ତୁମ୍ଭ କହିବା କଥାକୁ ମାନିବେ ସେ କାହୁଁ
ଏବେ କି ବିଚାରି କହ ତୁ ହୋ ବଜ୍ରବାହୁ ।
ଇନ୍ଦ୍ର ବୋଇଲେ କରିବା ଏଥର ସମର
ଦୀନ ଗୋପୀନାଥ ଭଜେ ଅଚ୍ୟୁତ ପୟର ।

.....❋.....

## ରୁକ୍ମିଣୀଙ୍କର ଦ୍ରୌପଦୀପୁରେ ପ୍ରବେଶ ଓ ସୁଭଦ୍ରା ସହିତ ମନ୍ତ୍ରଣା

ଶୁକମୁନି ବକତା ଯେ ପରୀକ୍ଷିତ ଶ୍ରୋତା
ତୃତୀୟ ଖଣ୍ଡ ଏ କୂର୍ମ ପୁରାଣର କଥା ।
ରୁକ୍ମିଣୀ ଯାଇଁ ମିଳିଲେ ଦ୍ରଉପଦୀ ପୁରେ
ଦୂରୁ ଦେଖିଣ ପାଛୋଟି ଗଲେ କୃଷ୍ଣା ଖରେ ।

କର ଧରି ଆଣି ପୁଣି ବସାଇଲେ ପାଶେ
କୁଶଳ ବାରତାମାନ ପୁଛିଲେ ହରଷେ ।
ଗଉରବ କଲେ ତାଙ୍କୁ ଦ୍ରୁପଦ କୁମାରୀ
ବୋଇଲେ ତୁ ସଖି ଅଟୁ କୃଷ୍ଣ ମନୋହାରୀ ।
ସାକ୍ଷାତରେ ଅଟୁ ତୁ ଗୋ ଲକ୍ଷ୍ମୀ ଠାକୁରାଣୀ
ଦ୍ୱାରକାର ଅଷ୍ଟ ପାଟବଂଶୀ ଶିରୋମଣି ।
ଜାଣିଲି ମୋ ପୂର୍ବଭାଗ୍ୟ ଆଜି ଉଦେ ହେଲା
ଯେଣୁ ଲକ୍ଷ୍ମୀ ଠାକୁରାଣୀଆସି ପାଦଦେଲା ।
ପରିବାରୀ ମୁଦୁସୁଲି ଥିଲେ ତହିଁ ଯେତେ
ଧାଇଁ ଯାଇଁ ଜଣାଇଲେ ସୁଭଦ୍ରା ଅଗ୍ରତେ ।
ଶୁଣିଣ ସୁଭଦ୍ରା ଦେବୀ ତୁରିତେ ଉଠିଲେ
ଦ୍ରଉପଦୀ ଦେବୀଙ୍କର ପୁରରେ ମିଳିଲେ ।
ରୁକ୍ମିଣୀ ଦେବୀଙ୍କ ପାଦତଳେ ଯାଇଁ ପଡ଼ି
ଉଠି ପୁଣି ନମସ୍କାର କଲେ କରଯୋଡ଼ି ।
ସୁଭଦ୍ରାଙ୍କ କର ଧରି ବିଷ୍ଣୁ ପାଟରାଣୀ
ପାଶେ ବସାଇ କୁଶଳ ପୁଛାକଲେ ପୁଣି ।
ସୁଭଦ୍ରାବୋଇଲେ ଦେବୀ ତୋ କଲ୍ୟାଣେ ମୋର
ରାମକୃଷ୍ଣ ପରା ଥାଉଁ ଥାଉଁ ସହୋଦର ।
ଅମଙ୍ଗଳ କି କରିବ ମାଗୋ ଗୋସାମଣି
ତୋର ଯା ଠାରେ ସୁଦୟା ଥିବ ଠାକୁରାଣୀ ।
ଏ ସଂସାରେ ବୋଲାଇ ସେ ଧର୍ମବନ୍ତ ପ୍ରାଣୀ
ଚଉବର୍ଗ ମିଳେ ତାଙ୍କୁ ଅକ୍ଳେଶରେ ପୁଣି ।
ଧର୍ମ ଯହିଁ ହରି ତହିଁ ଥାଇ ଅନୁକ୍ଷଣେ
ହରି ଯହିଁ ପୁତ୍ର ତହିଁ ଶୁଣିଛି ପୁରାଣେ ।
ଧର୍ମଛଡ଼ା ପ୍ରାଣୀ ଦେହୁଁ ଶିରୀ ତୁଟି ଯାଇ
ଶିରୀ ତୁଟିଗଲେ ପ୍ରାଣୀ ଅଶୋଭା ଦିଶଇ ।
ଅଶୋଭା ବନ୍ତକୁ ଲୋକେ ନ ବସାନ୍ତି ପାଖେ
ତାର ଦିନଯାକ ଯାଉଥାଇ ଅତି ଦୁଃଖେ ।
ତୁ ଜଗତମାତ ମୋତେ ବାରେ ରକ୍ଷାକର
କାଳେ କାଳେ ଶରଣ ମୁଁ ତୋହର ପୟର ।
ଏମନ୍ତ କହି ପଡ଼ିଲେ ରୁକ୍ମିଣୀ ଚରଣେ
ଶ୍ରୀହସ୍ତେ ଟେକି ଧଇଲେ ରୁକ୍ମିଣୀ ତକ୍ଷଣେ ।
ବୋଇଲେ ସୁଭଦ୍ରା କହ କି ଦୁଃଖ ତୋହର
ଜଗତ ନାଥ ଠାକୁର ତୋହର ସୋଦର ।
ସୁଭଦ୍ରା ବୋଇଲେ ମାତ କେହି ମୋର ନାହିଁ
ଏଣୁ ତୋ ପାଦେ ଶରଣ ପଶିଲଇଁ ମୁହିଁ ।
ତୁ ଜଗତ ମାତ ମୋତେ କର ବାରେ ତ୍ରାହି
ତୁ ଯେବେ ରଖିବୁ ମାତ ମରିବା ବା କେହି ।
ତୋର କୃପାରେ ନିର୍ଧନୀ ହୁଏ ଧନବନ୍ତ
ଜ୍ଞାନୀ ସୁଜ୍ଞାନୀ ଆବର ବୋଲାଇ ପଣ୍ଡିତ ।
ତିନି ପୁର ପ୍ରାଣୀଙ୍କର ପ୍ରାଣ ତୋହ ହସ୍ତେ
ତୋର ବିନା ରଖନ୍ତା କେ ନାହିଁ ଏ ଜଗତେ ।
ଏମନ୍ତ ସ୍ତୁତି ବଚନ ଶୁଣି ସୁଭଦ୍ରାର
ରୁକ୍ମିଣୀ ବୋଇଲେ ଭୟ କାହାକୁ ତୋହର ।
ପ୍ରସନ୍ନ ହେଲି ସୁଭଦ୍ରା ମାଗି ଘେନ ବର
ନିଶ୍ଚେ ମୁଁ ଅଭୟ ଦେବି ସତ୍ୟ ସତ୍ୟ ମୋର ।
ତୋ ପାଇଁ ବିବାଦୀ ଯେବେ ହେବେ ଦେବତାଏ
ବ୍ରହ୍ମା ରୁଦ୍ର ଦିଗପାଳ ଇନ୍ଦ୍ର ନାଗରାୟେ ।
ସ୍ୱାମୀ ଦେଢ଼ଶୁର ଆସି କହିଲେ ତୋ ପାଇଁ
ନ ମାନିବି ସତ୍ୟ ସତ୍ୟ ସ୍ୱାମୀ ରାଣ ଖାଇ ।
କହ ଗୋ ସୁଭଦ୍ରା ଆଉ ଭୟ ତୋ କାହାକୁ
ଏମନ୍ତ ଶୁଣି ସୁଭଦ୍ରା ଚାହିଁ ଉପରକୁ ।
ବୋଇଲେ ହେ ଇନ୍ଦ୍ର ଆଦି ଦଶଦିଗପାଳ
ତେତିଶ କୋଟି ଦେବତା ନକ୍ଷତ୍ର ସକଳ ।
ନାଗଲୋକେ ବ୍ରହ୍ମଲୋକେ ଅଛ ଯେତେ ରହି
ତୁମ୍ଭେମାନେ ସାକ୍ଷୀଥାଅ ବରମାଗେ ମୁହିଁ ।
ମହତ ବାକ୍ୟ ସମାନ ହସ୍ତୀବନ୍ତ ତୁଲେ
ଏଡ଼େଇ ନ ହେବ ସେହି କେଭେ କାହା ବୋଲେ ।
ସତ୍ୟେ ଆତଯାତ ସିନା ଚନ୍ଦ୍ର ସୂର୍ଯ୍ୟ ଶୂନ୍ୟେ
ସତ୍ୟ ମାନି ବିନ୍ଧ୍ୟଗିରି ନ ଉଠେ ଗଗନେ ।
ସତ୍ୟ ରଖିଣ ସମୁଦ୍ର ନ ଲଙ୍ଘଇ କୂଳ
ବାସୁକୀ ମହୀ ବହିଛି ସତ୍ୟ କରି ମୂଳ ।
ଜଗତ ଠାକୁରାଣୀ ଯେ ବିଷ୍ଣୁ ପାଟରାଣୀ
ବର ମାଗୁଅଛି ଶୁଣି ତାର ସତ୍ୟବାଣୀ ।
ଏମନ୍ତ କହି ସୁଭଦ୍ରା ବୋଇଲେ ଗୋ ମାତ
ରାମକୃଷ୍ଣ ଅଟନ୍ତି ଯେ ମୋର ବେନି ଭ୍ରାତ ।
ତାହାଙ୍କର ଶତ୍ରୁ ଅଟେ ଅବନ୍ତୀ ରାଜନ
ସେ ଭୟେ ଆସି ପଶିଛି ତୋ ପାଦେ ଶରଣ ।
ଭୀମସେନ ଠାକୁରକୁ ମୁଁ ବହୁତ କହି
ଅବନ୍ତୀ ରାଜାକୁ ନେଇ ରଖାଇଛ ତହିଁ ।
ତାହାପାଇଁ ଭାଇ ମୋର ଆସୁଛନ୍ତି ବହି
ଦେବ ଦାନବ ମାନବ ଗନ୍ଧର୍ବ ଯେ ଅହି ।

ଆସୁଛନ୍ତି ଯୁଝିବାକୁ ପାଣ୍ଡବଙ୍କ ସଙ୍ଗେ
କି କହିବି ଠାକୁରାଣୀ ମୁଁ ତୁମ୍ଭର ଆଗେ ।
ବ୍ରହ୍ମା ରୁଦ୍ର ସହିତରେ ଋଷି ବିପ୍ର ଯେତେ
ପୃଥିବୀର ରାଜାଗଣ ଅଛନ୍ତି ସଙ୍ଗତେ ।
ପାଞ୍ଚଭାଇ ପାଣ୍ଡବଙ୍କ କେତେ ଅବା ବଳ
ଧର୍ମକୁ ନ ଲଘିଁ ରହି ଅଛନ୍ତି କେବଳ ।
ସମର୍ପି ଦେଲେ ଅବନ୍ତୀ ରାଜନକୁ ନେଇ
ସବୁ ଦୂର ହୋଇଯାନ୍ତା ଆଗୋ ମହାମାୟୀ ।
କ୍ଷତ୍ରିୟର ଧର୍ମ ଜାଣ ଶରଣ ରକ୍ଷଣ
ଧର୍ମ ରଖିବେ ଦେଇଣ ଆପଣାର ପ୍ରାଣ ।
ସଂଗ୍ରାମେ ଯେବେ କି ପ୍ରାଣ ଦେବେ ପାଞ୍ଚଭାଇ
ଆମ୍ଭର ଛାର ଜୀବନ ରଖିବୁ କିମ୍ପାଇଁ ।
ତୁମ୍ଭେ ଜଗତ ଜନନୀ ହେବ ମୋର ସାହା
କି କରି ପାରିବେ ସେହି ମୋର ଚଉବାହା ।
ସତ୍ୟ ଯେବେ କରିଅଛ ରଖ ଆମ୍ଭ ଟାଣ
ଏ ପାଣ୍ଡବ ପାଞ୍ଚଭାଇ ତୁମ୍ଭର ଶରଣ ।
ଏହି ବର ମାଗୁଅଛି ଦିଅ ଠାକୁରାଣୀ
ଏମନ୍ତ ଶୁଣି ବୋଇଲେ ଦେବୀ ଯେ ରୁକ୍ମିଣୀ ।
ନିଶ୍ଚୟ ରଖିବି ଟାଣ ଏ ମୋହର ସତ୍ୟ
ପଞ୍ଚପାଣ୍ଡବେ ଆମ୍ଭର କାଳେ କାଳେ ଭୃତ୍ୟ ।
ମିଳାଇ ଦେବାକୁ ମୁହିଁ ଆସିଥିଲି ଯାହା
ଯାଉଛି ମୁଁ ଦ୍ୱାରକାକୁ ହେବି ତୁମ୍ଭ ସାହା ।
ସ୍ୱାମୀଙ୍କି କହିବି ଯେବେ ନ ମାନିବେ ସେହି
ନିଶ୍ଚୟ ଯୁଝିବୁ ଆମ୍ଭେ କରେ ଶସ୍ତ୍ର ବହି ।
ଏମନ୍ତ କହି ସେଠାରୁ ହୋଇଣ ମେଲାଣି
ଦ୍ୱାରକା ଗଲେ ରଥେକ ଆରୋହି ରୁକ୍ମିଣୀ ।
ଗୋବିନ୍ଦଙ୍କ ପାଦପଦ୍ମ ବଳି ହେଲେ ଉଭା
ଭୋ ସ୍ୱାମୀ ଏବେ ପାଣ୍ଡବ ବାରତା ଶୁଣିବା ।
ମୁଁ ଏଥୁଁ ଯାଇଁ ମିଳିଲେ ଦ୍ରଉପଦୀ ପୁରେ
ସୁଭଦ୍ରା ଆସି ପ୍ରବେଶ ହୋଇଲା ସେଠାରେ ।
ଅବନ୍ତୀ ରାଜା ନିମନ୍ତେ କହିଲା ବହୁତ
ଶରଣ ପଶିଲା ମୋର ପାଦେ ହୋଇ ଭୀତ ।
ମୁଁ ତାକୁ ଅଭୟବର ଦେଲି ପ୍ରାଣନାହା
ସଂଗ୍ରାମ ଆଉ ନ କର ତୁମ୍ଭେ ଚଉବାହା ।
ପାଣ୍ଡବେ ମଲେ ସୁଭଦ୍ରା ହୋଇବ ବିଧବା
ତାହାର ସେ କଷ୍ଟ ଆମ୍ଭେ ସହି ନ ପାରିବା ।
ନେଉ ପଛେ ସେ ଘୋଟକୀ ଅବନ୍ତୀ ରାଜନ
ଆମ୍ଭର ପ୍ରାଣର ବନ୍ଧୁ ପାଞ୍ଚ ଭାଇ ଜାଣ ।
ଛାର ଘୋଟକୀ ନିମନ୍ତେ ବିବାଦ କରିବା
କାଳକାଳକୁ ଯେ ଗୋଟା କଥା ରୁହାଇବା ।
ଏମନ୍ତ ଶୁଣି ବୋଇଲେ କୋପେ ଚକ୍ରଧର
ଭଉଣୀ ନୋହେ ସୁଭଦ୍ରା ଶତ୍ରୁ ଜାଣ ମୋର ।
ଭାଇର ଶତ୍ରୁକୁ ଠାବ ଦିଏ କି ଭଉଣୀ
ଅପାଣ୍ଡବ କରି ନିଶ୍ଚେ ରଖିବି ଧରଣୀ ।
ତୁମ୍ଭେ ବଳାଇଲେ ତୁମ୍ଭ କଥା ନ ରହିବ
ତେବେ ଯାଅ ରାଣୀ ହଂସପୁରେ ରହିଥିବ ।
ଏମନ୍ତ କହି ସୈନ୍ୟଙ୍କୁ ଆଜ୍ଞା ଦେଲେ ହରି
ଆଗୁଆଣୀ ଥାଟ ଘେନି ଚଳୁ ଶମ୍ବରାରି ।
ସଜ ହୋଇ ପଛେ ପଛେ ଯାଉଅଛୁଁ ଆମ୍ଭେ
ମୁଖ ଶୁଖାଇ ରୁକ୍ମିଣୀ ଦେବୀ ଗଲେ ଜବେ ।
ସଜ ହୋଇବାକୁ ଗଲେ ଦେବ ଚକ୍ରଧର
ଦ୍ୱିଜ ଗୋପୀନାଥ ଭଜେ ଅଚ୍ୟୁତପୟର ।

## ଶ୍ରୀକୃଷ୍ଣର ବୀରବେଶ ଓ ରୁକ୍ମିଣୀଙ୍କ ସହିତ ଦୁର୍ଗାଙ୍କର ମନ୍ତ୍ରଣା

ଶୁକମୁନି କହନ୍ତି ହୋ ଶୁଣ ପରୀକ୍ଷିତ
ପଦପଦକେ ଅଟଇ ଏ ରସ ଅମୃତ ।
ଶ୍ରୀକୃଷ୍ଣଙ୍କ ବୀରବେଶ ଅତି ମନୋହର
କହୁଅଛି ମନଦେଇ ଶୁଣ ନୃପବର ।
ପୀତପଟ କଟୀତଟେ କାଛଟି ପିନ୍ଧିଲେ
ସୁନା ଘାଗୁଡ଼ୀ ମାଳାଏ ଉପରେ ବାନ୍ଧିଲେ ।
ବାହୁରେ ବାହୁଟି ନବରତନ ଜଡ଼ିତ
କଳାମେଘ ଝଟ ଝଟ ଯେସନେ ତଡ଼ିତ ।
ଜକ ଜକ ଦିଶେ ହସ୍ତେ ଥିବା ସୁନାଖଡୁ
ତା ମଧ୍ୟରେ ବୀରନେତ ଦିଶେ ଅତି ଚାରୁ ।
ଦଶ ଅଙ୍ଗୁଳିରେ ସୁନାମୁଦି ଝଟକଇ
କଉସ୍ତୁଭମଣି ହୃଦ ଦେଶେ ବିରାଜଇ ।
ଗଳେ ଝୁଲେ ବନମାଳା ପୃଷ୍ଠରେ ତୂଣୀର
କନ୍ଧରେ ସୁନା ପଇତା ଦିଶଇ ସୁନ୍ଦର ।
କର୍ଣ୍ଣରେ କୁଣ୍ଡଳ ବେନି କପୋଳରେ ଝୁଲେ
ନାସେ ଥିବା ନାସା ମୋତି ପବନରେ ହଲେ ।

ବାଙ୍କ ଚୂଳକୁ ଯେ ବାଙ୍କ ମୁକୁଟ ସଜାଇ
ତା ଉପରେ ବରହିର ପୁଛ ବିରାଜଇ ।
ଚରଣ ବେନି ନୂପୁର ବାଜେ ରୁଣୁଝୁଣୁ
ଶିରେ ଖୋସିଲେ ମୋହନ ବ୍ରହ୍ମଦଣ୍ଡ ବେଣୁ ।
ଏକକରେ କୌମୋଦିକୀ ଗଦା ବିରାଜଇ
ଶାରଙ୍ଗ ଧନୁ ଧଇଲେ ପ୍ରଭୁ ଗୁଣ ଦେଇ ।
ସୁଦର୍ଶନ ଏକ କରେ ଚକ୍ର ଏକ କରେ
ଅତି ଯତନେ ସାଞ୍ଜୁରେ ଆବରି ଶରୀରେ ।
ଘନ ଘନ ଶଙ୍ଖ ଫୁଙ୍କି ବଢ଼ାଇଲେ ପାଦ
ରୁକ୍ମିଣୀ ଦେବୀ ଦେଖିଣ ପାଇଲେ ବିଷାଦ ।
ମନେ ମନେ ବିଚାରିଲେ କି କରିବି ମୁହିଁ
ଯୁଦ୍ଧକୁ ଗମନ କଲେ ପ୍ରଭୁ ଭାବଗ୍ରାହୀ ।
ଯେତେ ପ୍ରକାରେ କହିଲି ନ ଘେନିଲେ ତାହା
ଏବେ ବୀରବେଶେ ଗଲେ ପ୍ରଭୁ ଯଦୁନାହା ।
ଅଭୟ ବର ତ ମୁହିଁ ସୁଭଦ୍ରାକୁ ଦେଲି
ପାଣ୍ଡବ ମାନଙ୍କୁ ଏବେ ରଖିନ ପାରିଲି ।
ଏମନ୍ତ ଭାଳି ରୁକ୍ମିଣୀ ବସିଲେ ଆସନେ
ଶ୍ରୀ ଦୁର୍ଗା ଦେବୀଙ୍କୁ ଲୟ କଲେ ଏକମନେ ।
କରଯୋଡ଼ି ବୋଇଲେ ଭୋ ମହିଷମର୍ଦ୍ଦିନୀ
ଅଭୟବର ଦାୟିନୀ ଶଙ୍କର ଘରଣୀ ।
ଦେବଙ୍କ ଆତୁର ସହି ନ ପାରିଲୁ ମାତ
ପୃଥ୍ୱୀରୁ ଅସୁରବଳ କଲୁ ଗୋ ନିପାତ ।
ଏବେ ବିପଦେ ପଡ଼ି ମୁଁ ସୁମରୁଛି ତୋତେ
ଏ ଘୋର ବିପଦୁଁ ତ୍ରାହିଁ ମାତା କର ମୋତେ ।
ଏମନ୍ତେ ରୁକ୍ମିଣୀ ଦେବୀ କରନ୍ତେଣ ସ୍ତୁତି
କଇଳାସ ପୁରେ ଥିଲେ ଦେବୀ ହେ ପାର୍ବତୀ ।
ମିଳିଲେ ଆସି ତକ୍ଷଣେ ରୁକ୍ମିଣୀ ମନ୍ଦିରେ
ଦେଖି ରୁକ୍ମିଣୀ ପଡ଼ିଲେ ସେ ଦେବୀ ପୟରେ
ଶ୍ରୀହସ୍ତେ ଟେକି ଉଠାଇ ବସାଇଲେ ଆଣି
ବୋଇଲେକି ଦୁଃଖତୋର ବୋଲ ଗୋ ରୁକ୍ମିଣୀ ।
ଏମନ୍ତେ ଶୁଣି ବୋଇଲେ ଶ୍ରୀହରିର ବାମା
ଯେବେ ତୁ ସାହା ନୋହିବୁ ମାଗୋ ଦେବୀ ଉମା ।
ନିଶ୍ଚେ ତେଜିବି ଏ ପ୍ରାଣ ନ ରଖିବି କ୍ଷଣେ
ତୋ ବିନା ଆଶ୍ରା ମୋହର ନାହିଁ ଆନ ଜଣେ ।
ଦଣ୍ଡୀ ନାମେ ରାଜା ଥିଲା ଅବନ୍ତୀ ନଗରେ
ମୃଗୟା ଅର୍ଥେ ପଶିଲା ବନସ୍ତ ଭିତରେ ।
ସୁଲକ୍ଷଣୀ ଘୋଟକୀଏ ପାଇଲା ସେ ତହିଁ
ରଖିଲା ଆଣି ତା ଘରେ ତାକୁ ନରସାଇଁ ।
ନାରଦ ମୁଖୁ ବାରତା ପାଇ ସ୍ୱାମୀ ମୋର
ମାଗିଲେ ଘୋଡ଼ୀ ନ ଦେଲା ଯହୁଁ ନୃପବର ।
ଦୂତ ପଠାଇଲେ ଯୁଦ୍ଧ କରିବା ନିମନ୍ତେ
ଭୟେ ରାଜ୍ୟ ଧନ ତେଜି ପଶିଲା ବନସ୍ତେ ।
ଘୋଟକୀଘେନି ବୁଲିଲା ରାଜା ତିନିପୁର
ସ୍ୱାମୀଙ୍କ ଡରେ ସମସ୍ତେ କଲେ ମାର ମାର ।
ଡରେ ଗଙ୍ଗା ଜଳେ ଝାସି ପ୍ରାଣ ଦେଉଥିଲା
ସ୍ନାନ କରି ଆସିଥିଲା ସୁଭଦ୍ରା ଦେଖିଲା ।
ରାଜାକୁ ଆଶ୍ୱାସୀ ନେଲା ଭୀମର ପାଖକୁ
ଅଭୟ ଦେଇଣ ଭୀମ ରଖିଲା ରାଜାକୁ ।
ବାରତା ପାଇଣ ସ୍ୱାମୀ ମହା କୋପକଲେ
ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ଦେବଙ୍କୁ ଡାକିଲେ ।
ରୁକ୍ଷ ରାକ୍ଷସ ବାନର କିନ୍ନର ସହିତେ
ରୁକ୍ଷ ରକ୍ଷ ଗନ୍ଧର୍ବହିଁ ଅଛନ୍ତି ସମସ୍ତେ ।
ପୃଥିବୀର ରାଜାମାନେ ଆସିଛନ୍ତି ବାହି
ନାଗବଳ ସଙ୍ଗେ ଘେନି ବାସୁକୀ ଯେ ଅହି ।
ଏମନ୍ତ ଦେଖି ସ୍ୱାମୀଙ୍କି କହି ବେଗେ ଗଲି
ପାଣ୍ଡବ ପୁରେ ଦ୍ରୌପଦୀ ସଙ୍ଗେ ଭେଟ ହେଲି ।
ମିଳାଇ ଦେବା ନିମନ୍ତେ ଯାଇଥିଲି ମାତ
ସୁଭଦ୍ରା ଦେବୀର ମୁହିଁ ଦେଖିଣ ଆରତ ।
ସହି ନ ପାରି ଅଭୟ ବର ଦେଲି ତାକୁ
ସ୍ୱାମୀଙ୍କୁ କହିଲି ନ ଯା ତୁମ୍ଭେ ଯୁଝିବାକୁ ।
ନ ଘେନିଣ ବୀରବେଶେ ଗଲେ ସ୍ୱାମୀଚଳି
ତେଣୁ ମୁଁ ତୁମ୍ଭ ଚରଣେ ଶରଣ ପଶିଲି ।
ପାଣ୍ଡବଙ୍କ ଟାଣ ମାତା ରହିବ ଯେମନ୍ତେ
ଏହି ବର ମାଗୁଅଛି ଦିଅ ମାତ ମୋତେ ।
ଏମନ୍ତ ଯହୁଁ ରୁକ୍ମିଣୀ କହିଲେ ବିନୟେ
ପ୍ରସନ୍ନ ହୋଇ ବୋଇଲେ ହେମବନ୍ତୀ ମାୟେ ।
ଆରତ ନ ହୁଅ ତୁ ଗୋ ହୋଇବି ମୁଁ ସାହା
ଏମନ୍ତ କହିଣ ଗଲେ ଶଙ୍କରଙ୍କ ଜାୟା ।
ସେ ଦେବୀ ହେମବନ୍ତୀର ଅଭୟ ଚରଣ
ଭଜି ଦ୍ୱିଜ ଗୋପୀନାଥ ପଶିଲା ଶରଣ ।

.....✱.....

## ପାଣ୍ଡବଙ୍କ ସୈନ୍ୟ ସଂଗ୍ରହ

ଏଥୁ ଅନନ୍ତରେ ତୁହୋ ଶୁଣ ମହାରାୟ
ମାତଳି ବାହୁଡ଼ି ଯାନ୍ତେ ଧର୍ମର ତନୟ ।
ଚାରି ଭାଇ ଘେନି ବସି କରନ୍ତି ବିଚାର
ବିଷମ ସନ୍ଧି ଆସି ତ ପଡ଼ିଲା ଏଥର ।
କିବୁଦ୍ଧି କରିବା ଆମ୍ଭେ କି ଉପାୟେ ତରି
ତ୍ରିଭୁବନ ଲୋକେ ଶତ୍ରୁ ହୋଇଲେ ଆମ୍ଭରି ।
ଧର୍ମଙ୍କ ମୁଖୁଁ ଏମନ୍ତ ଶୁଣି ବୃକୋଦର
ବୋଇଲେ କିମ୍ପାଇଁ ଭୟ କର ନୃପବର ।
ମରିବା ମାରିବା ପୁଣି ହାରିବା ଜିଣିବା
ଏଥିପାଇଁ କିମ୍ପା ଏତେ ବିଚାର କରିବା ।
ଶରଣ ଜନ ରଖିବା ଯୁଝି ପ୍ରାଣ ପଣେ
ଶରଣ ନ ପଶି ଆମ୍ଭେ ଶତ୍ରୁର ଚରଣେ ।
ଧର୍ମ ନ ଛାଡ଼ିବା କ୍ଷତ୍ରୀ ବୃତ୍ତି ଆଚରିବା
ସୈନ୍ୟ ଘେନି ଦୁରୁଯାଇଁ ଆଗୁଁ ଓଗାଳିବା
ପୁରରେ ପଶିଲେ ଶତ୍ରୁ ହେବେ ବଳବନ୍ତ
ସୈନ୍ୟ ସାଜିବାକୁ ଆଜ୍ଞା ଦିଅ ନୃପନାଥ ।
ପ୍ରାଣ ଭୟେ ଯେବେ କେହି ନ କରିବ ରଣ
ଭୀମ କେଭେ ନ ଛାଡ଼ିବ ତାହାର ଯେ ପଣ ।
ନିଶ୍ଚେ ଦଣ୍ଡୀ ରାଜାପାଇଁ କରିବ ସମର
ହାରିବା ଜିଣିବା ଅଟେ କ୍ଷତ୍ରୀର ବେଭାର ।
ଭୀମର ମୁଖୁଁ ଏମନ୍ତ ଶୁଣି ଧନଞ୍ଜୟ
ବୋଇଲେ କିମ୍ପାଇଁ ସ୍ୱାମୀ କର ଏଡ଼େଭୟ ।
ଯହିଁ ଧର୍ମ ତହିଁ ହରି ଏକଥା ପ୍ରମାଣ
ଧର୍ମ ଲଘିଲେ ପାଣ୍ଡବେ ପାଇବେ ମରଣ ।
ଭୀମସେନ ଠାକୁରେ ଯା କହିଲେ ତା ସତ
ସୈନ୍ୟ ସାଜିବାକୁ ଆଜ୍ଞାକର ନୃପନାଥ ।
ନକୁଳ ବୋଇଲା ସ୍ୱାମୀ ନ ହୁଅ କାତର
କ୍ଷତ୍ରୀଧର୍ମ ନ ଛାଡ଼ିବା କରିବା ସମର ।
ଯୁଧିଷ୍ଠି ବୋଇଲେ ସତ କହୁଛରେ ଭାଇ
ମୋ ମନ ଘାଣ୍ଟି ହେଉଛି କହ କାହିଁପାଇଁ ।
କୃଷ୍ଣହୁଁ ଅଧିକ ପ୍ରିୟ ନାହିଁ ଆନ ଜଣେ
ସେ ଶତ୍ରୁ ହେଲେ ଆମ୍ଭର କେବଣ କାରଣେ ।
ଜଣା ଯାଉଛି ଗୁପତେ ଦେଉଛି କେ ଶାପ
ପୁଣ୍ୟ କ୍ଷୟ ପାଇ ବୃଦ୍ଧି ପାଇଲାକି ପାପ ।
କି ଅବା ଗ୍ରହ ଅବଳୁ ଘଟିଲା ଏମନ୍ତ
ଆହେ ସହଦେବ ବୁଝ ଏଥିର ତଦନ୍ତ ।
ଜଉତିଷ ପଣ୍ଡିତଙ୍କୁ ଆଣ ଯା ଡକାଇ
ଗ୍ରହମାନଙ୍କ ଅବସ୍ଥା କହନ୍ତୁ ବୁଝାଇ ।
ଅଚଳ ଥିଲେକ ତାଙ୍କୁ କରାଇବା ଶାନ୍ତି
ବିପ୍ରେ ଦାନ ଦେଲେ କ୍ଷୟ ଯାଇଟି ଦୁର୍ଗତି ।
ଦେବାଦେବୀ ପୂଜାକଲେ ସନ୍ତୋଷ ଶ୍ରୀହରି
ଏମନ୍ତ ଯହୁଁ କହିଲେ ଧର୍ମଦଣ୍ଡଧାରୀ ।
ଶୁଣି ମନ୍ତ୍ରୀ ସହଦେବବେଗେ ଉଠିଗଲେ
ଜଉତିଷ ପଣ୍ଡିତଙ୍କୁ ଡକାଇ ଆଣିଲେ ।
କାଠି କାଟି ଜଉତିଷେ ଗ୍ରହମାନ ଥାପି
ଗଣନା କରି କହିଲେ ରାଜାଙ୍କୁ ସଂକ୍ଷେପି ।
କକଡ଼ାଘରେ ତୁମ୍ଭର ଅଛି ବୃହସ୍ପତି
ନବମେ ଶୁକ୍ର କର୍ମରେ ମଙ୍ଗଳ ଅଛନ୍ତି ।
ଚତୁର୍ଥଘର ଚନ୍ଦ୍ରମା ରହିଛି ଆବୋରି
କୁମ୍ଭରେ ଶନି ତୁମ୍ଭର ଅଛି ଦଣ୍ଡଧାରୀ ।
କନ୍ୟାଘରେ ବୁଧ ଦଶା ପଡ଼ିଛି ତାହାର
କେହି ଶତ୍ରୁ ନାହିଁ ତିନି ଭୁବନେ ତୁମ୍ଭର ।
ଅଜୟେ ତୁମ୍ଭେ ଜଗତେ କହିଲୁ ଯେ ସତ
ଏମନ୍ତ ଶୁଣି ନୃପତି ହୋଇଲେ ଉଷତ ।
ଜଉତିଷ ପଣ୍ଡିତଙ୍କୁ ସୁନା ରୁପା ଦେଇ
ବିଦାକରି ଦେଲେ ତାଙ୍କୁ ସନ୍ତୋଷ କରାଇ ।
ଏମନ୍ତେ ଡାକି କହିଲେ କହ ସହଦେବ
ସତେ କି ଆମ୍ଭଙ୍କୁ କୋପ କଲେ ବାସୁଦେବ ।
ରାଜା ବଚନେ କହନ୍ତି ସହଦେବ ମନ୍ତ୍ରୀ
ଆପଣାର ବାମହସ୍ତ ରେଖାକୁ ଗଣନ୍ତି ।
ବୋଲନ୍ତି ସ୍ୱାମୀ ଆମ୍ଭର ହେବ ନିଶ୍ଚେ ଜୟ
ଏହି ମୁହୂର୍ତ୍ତରେ ଯାତ୍ରା କର ନୃପରାୟ ।
ଅସ୍ତ୍ର ଧରିଣ ଯୁଧିଷ୍ଠି ବଢ଼ାଇଲେ ପାଦ
ଗଦାଧରି ଭୀମସେନ କଲା ସିଂହନାଦ ।
ଶଙ୍ଖ ଫୁଙ୍କିଣ ଅର୍ଜୁନ ହେଲେ ଯାଇଁ ସଜ
ସହଦେବ ବୋଇଲେ ରେ ସୈନ୍ୟ ବେଗେ ସାଜ ।
ରାଉତ ମାହୁନ୍ତ ଗଜ ପାଇକ ପଦାତି
ସଜ ହୋଇ ରଥ ଚଢ଼ି ଆଗ ହୋଇଲେ ରଥୀ ।
ରଣଜୟ ହସ୍ତୀ ସାଜି ଚଳାଇଲେ ଆଗେ
ଅଶ୍ୱମାନେ ସଜ ହୋଇ ଧାଇଁଲେ ବେଗେ ।

ବୀର ମହାବୀରମାନେ ଫରୀ ଖଣ୍ଡା ଧରି
ଚାଲ ଚାଲ ଆସ ଆସ ଉଚ୍ଚବାଚ କରି ।
ଭେରୀ ତୂରୀ ମହୁରୀ ଯେ ଟମକ ନିଶାଣ
ଢୋଲ ଦମା ରାମତାଳି କାହାଳି ଧରିଣ ।
ବାଦ୍ୟକାରେ ଆଗହୋଇ ବଜାଇଲେ ବାଜା
ହସ୍ତୀ ପୃଷ୍ଠରେ ବିଜୟ କଲେ ଧର୍ମରାଜା ।
ନନ୍ଦିଘୋଷ ରଥେ ବିଜେ ବୀର ଧନଞ୍ଜୟ
ଗଦା ବୁଲାଇ ଧାମଇ ପବନ ତନୟ ।
ନକୁଳ ଯେ ସହଦେବ ଅଶ୍ୱଚଢ଼ି ଧାଇଁ
କୁରୁକ୍ଷେତ୍ରରେ ବିଜୟ ହେଲେ ନରସାଇଁ ।
ଆଗୁଆଣି ଥାଟେ ସେନାପତି ଜୟସିଂହ
ଭଦ୍ର ନାମେ ସେନାପତି ଅଛି ତାର ସଙ୍ଗ ।
ତାଙ୍କ ପିଠି ରକ୍ଷା କଲେ କୋଟି ଏକ ଯୋଦ୍ଧା
ତାଙ୍କ ପଛେ ପଛେ ବୀର ଯେ ମୁକୁଟବନ୍ଧା ।
ଅୟୁତେ ହସ୍ତୀ ରହିଲେ ତାହାଙ୍କୁ ଆବୋରି
ଦଶ ଅୟୁତ ରହିଲେ ଖଣ୍ଡା ଫରୀ ଧରି ।
ଅର୍ବୁଦେ ଅଶ୍ୱ ଉପରେ ରହି ଧରି ଖଣ୍ଡା
ବରଛା ଧରି ରହିଲେ ରଣଜୟୀ ଭେଣ୍ଡା ।
ସମସ୍ତଙ୍କ ପଛେ ରହି ଧର୍ମ ନରସାଇଁ
ନକୁଳକୁ ଅଣାଇଲେ ଦୂତ ବରଗାଇ ।
ବୋଇଲେ ତୁ ଏହିକ୍ଷଣି ହସ୍ତିନାକୁ ଯିବୁ
ଧୃତରାଷ୍ଟ୍ରଙ୍କ ଛାମୁରେ ସକଳ କହିବୁ ।
ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନ କର୍ଣ୍ଣକୁ କହିବୁ
ଶକୁନି ଆଦି ଗୋଟିଏ ତହିଁ ନ ଛାଡ଼ିବୁ ।
କୁରୁବଳ ସାଜି ବେଗେ ବସିବେ ଯେମନ୍ତେ
ଶୁଣିଣ ନକୁଳ ଗଲା ସେଠାରୁ ତୁରିତେ ।
ହସ୍ତିନାପୁରେ ପ୍ରବେଶ ହୋଇଲା ସେ ଯାଇ
ଧୃତରାଷ୍ଟ୍ର ରାଜାପାଦେ ଗଡ଼ଘାଲି ଶୋଇ ।
ଉଠି ଶିରେ କରଦେଇ କହିଲା ସକଳ
ଶୁଣି ଅନ୍ଧ ନରପତି ହୋଇଲେ ବିକଳ ।
ତହୁଁ ନକୁଳ ବିଦୁର ଚରଣ ବନ୍ଦିଲେ
ଯୁଧିଷ୍ଠି ଯା କହିଥିଲେ ସକଳ କହିଲେ ।
ଶୁଣି ବିଦୁର ମନରେ ଭାଳି କିଛି କ୍ଷଣ
ବିଚାରିଲେ ଅଛି ଏଥେ ଗୁପତ କାରଣ ।
ନ ଥିଲେ କି ପାଣ୍ଡବଙ୍କ ସଙ୍ଗେ କୃଷ୍ଣ କଳି
ଦେଖିଲେ ଜାଣିମା ସିନା କୋପ କେତେ ଭଳି ।
ତହୁଁ ନକୁଳ ମିଳିଲା କୁରୁସଭା ତଳେ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ଅଛନ୍ତି ସକଳେ ।
ଆଗ ଯାଇ ଭୀଷ୍ମ ଦ୍ରୋଣ ଚରଣ ବନ୍ଦିଲା
ତହୁଁ ଦୁର୍ଯ୍ୟୋଧନ ପାୟେ ପଡ଼ିଣ ଶୋଇଲା ।
କର୍ଣ୍ଣ ଶକୁନି ଆବର ଦୁଃଶାସନ ଆଦି
ମାଦ୍ରୀ ନନ୍ଦନ ଏହାଙ୍କ ଚରଣକୁ ବନ୍ଦି ।
ସଭାରେ ବସି କହିଲେ ସବୁ ସମାଚାର
ଶୁଣି ରାଜା କୁରୁପତି ହୋଇ କୋପଭର ।
ବୋଇଲେ ମାମୁଁ ବିଳମ୍ବ କରୁଛ କାହିଁକି
କୁରୁବଳ ସାଜ ବେଗେ ଯିବା ନା ତହିଁକି ।
ଦ୍ରୋଣ ବୋଇଲେ ହେ ଭିକ୍ଷୁ ଏକ ଆଚମ୍ବିତ
ବୁଝ ଏଥିର କାରଣ କରିଣ ତଦନ୍ତ ।
ଭୀଷ୍ମ ବୋଇଲେ ବିଷ୍ଣୁର ମାୟା ଅଗୋଚର
ଦେଖିଲେ ସିନା ଜାଣିମା କାରଣ ତାହାର ।
ଉଠି ସଜ ହୁଅ ଚାଲ ଯିବା ବେଗହୋଇ
ଦ୍ୱିଜ ଗୋପୀନାଥ ବୋଲେ ହରି ବୋଲ ଭାଇ ।

## ସୈନ୍ୟ ସହିତ ଦୁର୍ଯ୍ୟୋଧନର କୁରୁକ୍ଷେତ୍ରେ ପ୍ରବେଶ

ଶୁକମୁନି କହୁଛନ୍ତି ଏଥୁ ଅନନ୍ତରେ
ସଜହୋଇ କୁରିବଳ ଚଳିଲେ ଆଗରେ ।
ଏଗାର କ୍ଷଉଣୀ ବଳ ବଳେ ବଳୀୟାର
ଯାହାକୁ ଦେଖିଲେ ଭୟ କରେ ପୁରନ୍ଦର ।
ବାଦ୍ୟ ଘୋଷ ମୁଖରାବେ ସମୁଦ୍ର ଉଚ୍ଛୁଳି
ପାଦଭରେ ଦଲ ଦଲ ହୁଏ ମହୀସ୍ଥଳୀ ।
ଦୁର୍ଯ୍ୟୋଧନ ଷଡ଼ଭାଇ କର୍ଣ୍ଣ ସେନାପତି
କାର୍ତ୍ତିକଠାରୁ ଅଧିକ ଦିଶେ ତାଙ୍କ ଜ୍ୟୋତି ।
ଭୀଷ୍ମ ଦ୍ରୋଣଙ୍କର ଜ୍ୟୋତି ଅଗ୍ନି ପ୍ରାୟ କାଳେ
ସୂର୍ଯ୍ୟପୁତ୍ର ସୂର୍ଯ୍ୟଠାରୁ ତେଜରେ ଉଚ୍ଛୁଳେ ।
ବ୍ରହ୍ମତେଜେ ତେଜୋବନ୍ତ କୃପ ଅଶ୍ୱଥାମା
ଭଗଦତ୍ତ ଚଢ଼ିଅଛି ଗଜ ଅଶ୍ୱଥାମା ।
ଦେଶେ ଦେଶେ କୁରୁପତି ପଠାଇଲା ଚାର
ବରଣ ପାଇ ଅଇଲେ ନୃପତି ଆବର ।
ପାଞ୍ଚଲକ୍ଷ ସୈନ୍ୟ ଘେନି ଆସି ଶିଶୁପାଳ
ସପତ ହଜାର ସୈନ୍ୟ ଘେନି ଆସେ ଶଲ୍ୟ ।

ସୋମଦତ୍ତ ଦନ୍ତବକ୍ର ଜରାସନ୍ଧ ବୀର
ଏହାଙ୍କ ସଙ୍ଗେ ସଇନି ଅଛନ୍ତି ଅପାର ।
ଅଳମ୍ବୁଷ ଅଳାୟୁଧ ଅଇଲେ ଏ ବେନି
ଏହାଙ୍କ ସଙ୍ଗେ ଅପାର ଅସୁର ସଇନି ।
କାଶୀ ନୃପତିର ସଙ୍ଗେ ଏକ କୋଟି ହୟ
ଆପେ ତେଜର ନିନ୍ଦଇ ବୀର କାର୍ତ୍ତିକେୟ ।
ରାଜାମାନଙ୍କ ସଙ୍ଗରେ ଚଳେ ଦୁର୍ଯ୍ୟୋଧନ
କାର କରେ ଶର କାର କରେ ଶରାସନ ।
ସମସ୍ତେ ଆୟୁଧ ଧରି ହୋଇଲେ ବାହାର
ଯହିଁ ବିଜେ କରିଛନ୍ତି ରାଜା ଯୁଧିଷ୍ଠିର ।
ସକଳେଯାଇଁ ସେଠାରେ ପ୍ରବେଶ ହୋଇଲେ
ଗଉରବ ପାଇ ତହିଁ ଆସନେ ବସିଲେ ।
ଧର୍ମ ନୃପତି ଉଠିଣ ଦୁଃଖ ଜଣାଇଲେ
ତିନିପୁର ସୈନ୍ୟ ଘେନି କୃଷ୍ଣ ବିଜେକଲେ ।
ତୁମ୍ଭମାନଙ୍କ ବାହାକୁ ଆଶା କଲି ଏଣୁ
ମୋର କେହି ଆଉ ସାହା ନାହିଁ ତୁମ୍ଭବିନୁ ।
ଯୁଧିଷ୍ଠି ଦେବଙ୍କ ମୁଖୁଁ ଶୁଣି ଏ ବଚନ
ବିଚାର କରନ୍ତି ବସି ସକଳ ରାଜନ ।
ଆମ୍ଭ ପକ୍ଷରୁ ବାଛିଣ ଜଣେ ପଠାଇବା
ଶ୍ରୀକୃଷ୍ଣଙ୍କୁ ବୁଝାଇଣ ସନ୍ଧି କରାଇବା ।
ଭୀଷ୍ମ ଦ୍ରୋଣ ବୋଇଲେ ଏ ଅଇଲା ମନକୁ
ଯୁଝିବା କେମନ୍ତେ ଆମ୍ଭେ ନ ପଚାରି ତାଙ୍କୁ ।
ନ ପଚାରିଲେ ସେ ପଛେ ଆମ୍ଭଙ୍କୁ ବାଛିବେ
ଜ୍ଞାନୀ ହୋଇଣ ଅଜ୍ଞାନୀ ହୋଇଲେ ବୋଲିବେ ।
ଆମ୍ଭ ବିଚାରେ ବିଦୁର ଯାଉ ତାଙ୍କ ଯାଏ
ବୋଲୁ ମୋତେ ପଠାଇଲେ ସକଳ ରାଜାଏ ।
ଜରାସନ୍ଧ ଯୁଧିଷ୍ଠିର ରାଜା ଦୁର୍ଯ୍ୟୋଧନ
କାଶୀରାଜ ଶିଶୁପାଳ ଆଦି ଯେ ରାଜନ ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଆଦି ଯେତେ ବୀର
ଆୟୁଧରେ ଶୋଭାପାଏ ସମସ୍ତଙ୍କ କର ।
ଥାଟ ଘେନି ଆସିଛନ୍ତି ଯୁଝିବା ନିମନ୍ତେ
ବିଚାର କରି ସମସ୍ତେ ପଠାଇଲେ ମୋତେ
କୃଷ୍ଣର ପରମ ବନ୍ଧୁ ପାଣ୍ଡବେ ଅଛନ୍ତି
ତାଙ୍କୁ କିମ୍ପା ଉପରୋଧ ନ କଲେ ଶ୍ରୀପତି ।
ଭୀମସେନ ମୁର୍ଖପଣେ ରଖିଲା ଶରଣ
ଜାଣିବାର ହୋଇ କୃଷ୍ଣ ବାଞ୍ଛନ୍ତି ତାରଣ ।
ଫେରାଇ ଦେବାକୁ ଆମ୍ଭେ ବୋଲନ୍ତୁ ତାହାକୁ
ସଂସାର ଲୋକେ ଅଖ୍ୟାତି ଦେବେତ ଆମ୍ଭଙ୍କୁ ।
ବୋଲିବେତ ଧର୍ମ ଛଡ଼ା ହେଲେଣି ରାଜାଏ
କ୍ଷତ୍ରି ଧର୍ମକୁ ଛାଡ଼ିଲେ ମରଣର ଭୟେ ।
ଏଣୁ କୃଷ୍ଣଙ୍କୁ କହିବ ଛାର ଘୋଡ଼ୀପାଇଁ
ପାଣ୍ଡବଙ୍କ ସଙ୍ଗେ ଯୁଦ୍ଧ କେଭେ ନ ଯୋଗାଇ ।
କ୍ରୋଧରୁ ପରମଶତ୍ରୁ ଅଟେ ପ୍ରାଣୀଙ୍କର
ଆମ୍ଭେ କି କହିବୁ ସେ ତ ଜଗତ ଠାକୁର ।
ଧର୍ମ ଥାପିବା ନିମନ୍ତେ ଅବତାର ହେଲେ
ଅଧର୍ମ ହେବ ବହୁତ ଲୋକେ ଯୁଦ୍ଧେ ମଲେ ।
ଦୁଇ ଦଳଙ୍କୁ ଅବଶ୍ୟ ପଡ଼ିବ ପ୍ରମାଦ
ଏଣୁ ବାରେ ନଘେନନ୍ତୁ ଭୀମ ଅପରାଧ ।
କେବେ କିଛି ଦୋଷ କରି ନାହାନ୍ତି ତୁମ୍ଭର
ବାରେ ମାତ୍ର କ୍ଷମା କରି ଛାଡ଼ ଏ ସମର ।
ମଧ୍ୟପାତ୍ର ପଣେ ଆମ୍ଭେ କରାଉଛୁଁ ସନ୍ଧି
ସ୍ୱାମୀ ସିନାସହେ ହେଲେ ଭୃତ୍ୟ ଅପରାଧୀ ।
ଏମନ୍ତେ ବିଦୁର ଯାଇ କହିଲା କୃଷ୍ଣଙ୍କୁ
ପ୍ରତି ଉତ୍ତର ଦେଲେ ସେ ଶୁଣି ବିଦୁରକୁ ।
ମୁହିଁ ଧର୍ମଛଡ଼ା ହେବି ନ ରଖିଲେ ପଣ
ମରଣ ଭୟରେ ସିନା ଛାଡ଼ିବଇଁ ରଣ ।
ଲୋକେ ବୋଲିବେ ଶ୍ରୀକୃଷ୍ଣ ଗଲେ ରଣେ ହାରି
ଜାଣିଲୁ କ୍ଷତ୍ରିଙ୍କ ପଣ ଜଳବିମ୍ବ ପରି ।
ଅବଶ୍ୟ ଯୁଦ୍ଧ କରିବ ଧର୍ମହାନି ଭୟେ
ଏଥିକି ବିଚାର ଯାହା କରନ୍ତୁ ରାଜାଏ ।
ଧର୍ମଛଡ଼ା ହୋଇବେ ସେ ଘୋଡ଼ୀ ଦେଲେ ମତେ
ଏଣୁ ଉଚିତ ତାଙ୍କର ରଣ ମୋ ସଙ୍ଗତେ ।
ମୁହିଁ ଧର୍ମଛଡ଼ା ହେବି ନ କଲେ ସଂଗ୍ରାମ
ଏଣୁ ହୋ ବିଦୁର ଫେରି ଯାଅ ନିଜ ଧାମ ।
ଶୁଣି ବିଦୁରକୁ ଆଉ କିଛି ନ ସ୍ଫୁରଇ
ପୁନରପି କରଯୋଡ଼ି କୃଷ୍ଣଙ୍କୁ କହଇ ।
ଆହେ ପ୍ରଭୁ ଭାବଗ୍ରାହୀ ଅନ୍ତର୍ଯ୍ୟାମୀ ନାଥ
ପାଣ୍ଡବେ ଅଟନ୍ତି ତୋର କାଳେକାଳେ ଭୃତ୍ୟ ।
ରାଣ୍ଡୀ ପୁଅକୁ ତୁ ଗାଳି କଲୁ ଏତେ ବଡ଼
ଆଜି ସେ ଉପ୍ରୋଧ ଛାଡ଼ି କିମ୍ପା ହେଲୁ ରାଢ଼ ।
ବିଷତରୁ ଏକ ରୋପି ମୂଳେ ଢାଳି ଜଳ
ଅତି ଯତନେ ବଢ଼ାଇ ହେଲେ ମୂଳଫଳ ।

ଫଳରୁ ଯେବେ ଚିହ୍ନିଲ ବିଷବୃକ୍ଷ ବୋଲି
ସ୍ୱହସ୍ତେ ଛେଦି କି ତାହା ପାର ବନମାଳୀ ।
ବାଳକାଳରୁ ତ ଜାଣ ଭୀମ ଦୁଷ୍ଟପଣ
ଏବେ କ୍ଷମା ନ କରୁଛ କେମନ୍ତେ ଆପଣ ।
କୃଷ୍ଣ ବୋଇଲେ ସେ କଥା ଛାଡ଼ ତୁ ବିଦୁର
ପାଣ୍ଡବଙ୍କୁ ରଖିବାକୁ ଇଚ୍ଛା ଯେବେ ତୋର ।
ଅବନ୍ତୀ ପଡ଼ି ସହିତ ଘୋଡ଼ୀ ଦିଅ ଆଣି
ନୋହିଲେ ସଂଗ୍ରାମ କରି ନିଅନ୍ତୁ ତା ଜିଣି ।
କୃଷ୍ଣ ନିଷ୍ଠୁର ବଚନ ଶୁଣିଣ ବିଦୂର
ଦୁଃଖମନରେ ମିଳିଲା ଯହିଁ ଯୁଧିଷ୍ଠିର ।
କହିଲା ସକଳ କଥା ସଭାର ଭିତରେ
ଶୁଣିଣ ବୋଇଲା ଭୀଷ୍ମ ଉଠି କୋପ ଭରେ ।
ଆମ୍ଭଙ୍କୁ ଶୃଗାଳ ପ୍ରାୟ ମଣିଲାଣି ହରି
ଜାଣୁ ଶୃଗାଳ କି ଆମ୍ଭେ ସଂଗ୍ରାମ କେଶରୀ ।
ଏତେ କହି ଧନୁଶର ଧଇଲାକ ହସ୍ତେ
ଦ୍ରୋଣହିଁ ଉଠିଲେ ତାଙ୍କ ସଙ୍ଗେ କୋପ ଚିତ୍ତେ ।
ଜରାସନ୍ଧ ଆଦି ରାଏ ଉଠିଲେ ତୁରିତେ
ଭୀମ ଦୁଃଶାସନ ଦୁହେଁ ଗଦାକୁ ବୁଲାନ୍ତେ ।
ଡରେ ଥରହର ହୋଇ କମ୍ପିଲା ଧରଣୀ
କୂଳକୁ ଲଙ୍ଘି ଅଇଲା ସମୁଦ୍ରର ପାଣି ।
ଗାଣ୍ଡିବ ଧନୁରେ ଗୁଣ ଚଢ଼ାଇ ଅର୍ଜ୍ଜୁନ
ଟଙ୍କାରନ୍ତେ ତହୁଁ ନାଦ ଶୁଭେ ଘନ ଘନ ।
କର୍ଣ୍ଣର ଗୁଣ ଟଙ୍କାର ମିଶିଲା ତା ସଙ୍ଗେ
ଭୟେ କମ୍ପିଲେ ଯେ ରହିଥିଲେ ଶୂନ୍ୟ ମାର୍ଗେ
ନକୁଳ ସହଦେବ ଯେ କୁନ୍ତ ଧନୁ ଧରି
ସିଂହନାଦରେ କମ୍ପାଇ ଦେଲେ ବସୁନ୍ଧରୀ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ଉଠିଲେ ବହନ
ବାଦ୍ୟ ନାଦରେ କମ୍ପିଲା ଚଉଦ ଭୂବନ ।
ହସ୍ତୀଙ୍କର ହିଁ ହିଁ ଶବ୍ଦ ସେନାଙ୍କ ଘାଗୁଡ଼ି
ଶବଦରେ ପଡୁଅଛି ପୃଥିବୀ ଉଛୁଳି ।
ଧନୁର ଟଙ୍କାର ନାଦ ସବୁ ଏକ ହୋଇ
ଚଉଦ ଭୁବନ ଯାକ ଦେଲାକ କମ୍ପାଇ ।
ଶୁଭ ଅନୁକୂଳ ଧରି ହେଲେ ଆଗଭର
ଭଣେ ଗୋପୀନାଥ ଯେ ଶ୍ରୀବିଷ୍ଣୁ ପୟର ।

.....✽.....

## ବଳରାମ ଓ ଦୁର୍ଯ୍ୟୋଧନର ମନ୍ତ୍ରଣା

କହୁଛନ୍ତି ଶୁକମୁନି ଶୁଣୁଛନ୍ତି ରାୟେ
ବଳରାମଙ୍କ ଛାମୁରେ ଗୋବିନ୍ଦ ବିଜୟେ ।
ପ୍ରଣମି ବୋଇଲେ ସ୍ୱାମୀ କଥାଏ କରିବା
ଦୁର୍ଯ୍ୟୋଧନକୁ ଆମ୍ଭର ଆଡ଼କୁ ଆଣିବା ।
ସ୍ୱାମୀ ଯାଇ ବୁଝାଇଣ ଘେନି ଆସ ତାକୁ
ବନ୍ଧୁ ହୋଇ ଛାଡ଼େ କିମ୍ପା ଆମ୍ଭ ଉପ୍ରୋଧକୁ ।
ଶ୍ରୀକୃଷ୍ଣ ମୁଖୁଁ ଏସନ ଶୁଣି ହଳଧର
ଆନନ୍ଦ ହୋଇଣ ଗଲେ ସେଠାରୁ ସତ୍ୱର ।
ଦୁର୍ଯ୍ୟୋଧନ ରାଜାପାଶେ ମିଳିଲେକ ଯାଇ
ରାମଙ୍କ ପାଦେ ପ୍ରଣାମ କଲା କୁରୁସାଇଁ ।
ପଚାରନ୍ତି କି ନିମନ୍ତେ ତବ ଆଗମନ
ବଳରାମ ବୋଇଲେ ତୁ ଶୁଣ ଦୁର୍ଯ୍ୟୋଧନ ।
ଆମ୍ଭେ ତୋର ବିଦ୍ୟା ଗୁରୁ ତୁ ଆମ୍ଭର ଶିଷ୍ୟ
ତେଣୁ ନୃପତି ଅଇଲୁ ଆମ୍ଭେ ତୋର ପାଶ ।
ଶାମ୍ବ କୁମରକୁ ପୁଣି ଦେଇଛୁ ଦୁହିତା
କାଳେ କାଳେ ଅଟନ୍ତି ତୋ ଶତ୍ରୁ ପଞ୍ଚଭ୍ରାତା ।
ତୁ ଆମ୍ଭଙ୍କୁ ଛାଡ଼ି କିମ୍ପା ହେଲୁ ତାଙ୍କ ସାହା
ଲକ୍ଷେ ରାଜାର ମଉଡ଼ ମଣି ନରନାହା ।
କୃଷ୍ଣ ମୋତେ ପଠାଇଲା ଆଜି ତୋ ପାଶକୁ
ଥାଟ ଘେନି ଆସ ତୁହି ଆମ୍ଭର ଆଡ଼କୁ ।
ପାଣ୍ଡବଙ୍କ ଠାରେ ନାହିଁ କୃଷ୍ଣର ଉପ୍ରୋଧ
ନିଶ୍ଚେ ପାଣ୍ଡବଙ୍କୁ ଚକ୍ରେ ଛେଦିବ ଗୋବିନ୍ଦ ।
କାଳେ କାଳେ ଶ୍ରଦ୍ଧାଥାଇ ମୋର ତୋହପ୍ରତି
ପାଣ୍ଡବ ପକ୍ଷେ ଥିବାର ଶୁଣି ହେଲା ଭୀତି ।
ଗୋବିନ୍ଦର ଉପ୍ରୋଧ ଯେ ହେଲା ତୋର ସାଇଁ
ଆପେ ଆପେ ମୋ ପାଶକୁ ଆସି ଭାବଗ୍ରାହୀ ।
ବୋଇଲା ଆମ୍ଭର ବନ୍ଧୁ ହୋଇ କୁରୁପତି
ଉପ୍ରୋଧ ଛାଡ଼ି ଶତ୍ରୁର ସଙ୍ଗେ କଲା ପ୍ରୀତି ।
ତୁମ୍ଭେ ବୁଝାଇଣ ଘେନିଆସ ଯାଇ ତାକୁ
ଅକସ୍ମାତେ ଦରିଦ୍ର କି ପାଇଲା ଧନକୁ ।
ତେସନ ଆନନ୍ଦ ମନେ ବିଚାରିଣ ପୁଣି
ମନୁ ଯାହା ଲୋଡୁଥିଲା ବୈଦ୍ୟ ଦେଲାଆଣି ।
ତେଣୁ ତୋ ପାଶକୁ ଆମ୍ଭେ ଅଇଲୁ ଯେ ଧାଇଁ
ଆସ ଆମ୍ଭ ସଙ୍ଗେ ବେଗେ ଯିବା କୁରୁସାଇଁ ।

ରାମର ମୁଖୁଁ ଏମନ୍ତ ଶୁଣି ଦୁର୍ଯ୍ୟୋଧନ
ବୋଇଲା କହିଲି ଯାହା ସତ୍ୟ ଏ ବଚନ ।
ଆଗରୁ କିମ୍ପା ବରଣ ନ କଲ ହେ ମୋତେ
ଏତେବେଳେ ପାଣ୍ଡବଙ୍କୁ ଛାଡ଼ିବ କେମନ୍ତେ ।
ଛାଡ଼ିଲେ କି ବୋଲିମୋତେ ବୋଲିବେ ରାଜାଏ
ଏଡ଼େ ବିଶ୍ୱାସଘାତକ କୁରୁକୁଳ ରାୟେ ।
ତୁମ୍ଭେ ମୋର ବିଦ୍ୟାଗୁରୁ ଜାଣନ୍ତିତ ଲୋକେ
ତୁମ୍ଭ ବଚନ ଲଙ୍ଘିଲେ ପଡ଼ିବି ନରକେ ।
ଏଣିକି ବିଚାର କର ସ୍ୱାମୀ ହଳପାଣି
ଗୁପତ କଥା ମୁଁ ତୋତେ କହୁଅଛି ପୁଣି ।
ସପକ୍ଷ ବିପକ୍ଷ ଏହି ଦୁଇ ଥିଲେ ଲାଭ
ସର୍ବଦା ଶତ୍ରୁ ମୋହର ଅଟନ୍ତି ପାଣ୍ଡବ ।
କଳେ କଉଶଳେ ଯେତେ ଶତ୍ରୁ ମାରି ପାରି
ପଞ୍ଚ କଟକରେ ମୁହିଁ ହେବି ଦଣ୍ଡଧାରୀ ।
ଶ୍ରୀକୃଷ୍ଣ ଯୋଗୁଁ ପାଣ୍ଡବେ ଜଗତେ ଅଜୟ
ତାହାର ଶତ୍ରୁ ହେଲାଣି ଯିବେ ନିଶ୍ଚେ କ୍ଷୟ ।
ଆମ୍ଭେ କି ତାଙ୍କ ନିମନ୍ତେ ହେବୁ ଆମ୍ଭ ପ୍ରାଣ
ଏଣୁ ତାହାଙ୍କ ସପକ୍ଷ ହୋଇଅଛୁ ଜାଣ ।
ଆଗରୁ ଯେବେ ବିପକ୍ଷ ହୋଇଥାନ୍ତୁ ଆମ୍ଭେ
ଲୋକ ଅପବାଦ ପୁଣି ନ ଶୁଣନ୍ତୁ କେଭେ ।
ଏହିକ୍ଷଣି ଆମ୍ଭେ ଯେବେ ବିପକ୍ଷ ହୋଇବୁ
ଅଖ୍ୟାତି ପାଇବୁ ପୁଣି ନର୍କରେ ପଡ଼ିବୁ ।
ଆପଦ ବେଳେ ଭାଇକି ଛାଡ଼ିଲା ବୋଲିବେ
ଏଣୁ ମୋତେ କ୍ଷମା ଦେଇ ଯାଅ ସ୍ୱାମୀ ଏବେ ।
ଶୁଣି ଆନନ୍ଦ ମନରେ ଗଲେ ସଙ୍କର୍ଷଣ
ଗୋବିନ୍ଦଙ୍କ ସନ୍ନିଧିରେ ପ୍ରବେଶିଣ ପୁଣ ।
ବୋଇଲା ସେ ନ ମାନିଲା ଆମ୍ଭର ଯେ କଥା
ମାନେ ମାନଗୋବିନ୍ଦ ଯେ ଅଟେ ମହାରଥା ।
ବୋଇଲା ଆଗରୁ କିମ୍ପା ନ କଲ ବରଣ
ଏକ୍ଷଣି ତାଙ୍କୁ ମୁଁ ଛାଡ଼ି ନ ପାରଇ ଜାଣ ।
ଅନ୍ତର୍ଯ୍ୟାମୀ ନାଥ ସବୁ କଥା ଜାଣିପାରି
ମନେ ମନେ ହସି ପୁଣ ଆଜ୍ଞାଦେଲେ ହରି ।
ଆଗୁଆଣି ଥାଟେ ଆଗ ଲାଗୁ ରଣଗୋଳ
ଭଜେ ଦ୍ୱିଜ ଗୋପୀନାଥ ମଦନ ଗୋପାଳ ।

.....❀.....

## ଶ୍ରୀକୃଷ୍ଣଙ୍କ ସହିତ କୁନ୍ତୀଙ୍କର ପରାମର୍ଶ

ଶୁକ କହନ୍ତି ହୋ ଶୁଣ ଅର୍ଜୁନର ନାତି
ସଂଗ୍ରାମ ବାରତାମାନ ପାଇ ଦେବୀ କୁନ୍ତୀ ।
ଦାସୀକି ଡାକିବୋଇଲେ ଯାଅ ତୁଲୋ ବେଗେ
କହିବୁ ଯାଇ ମୋକଥା ଗୋବିନ୍ଦର ଆଗେ ।
ତୁମ୍ଭ ପିଉସୀ ତୁମ୍ଭଙ୍କୁ ଡାକୁଛନ୍ତି ଆସ
ଦାସୀ ବେଗହୋଇ ଗଲା ଶ୍ରୀକୃଷ୍ଣଙ୍କ ପାଶ ।
ଶ୍ରୀହରିଙ୍କ ଶ୍ରୀପୟରେ କଲା ନମସ୍କାର
ଉଠି ଉଭାହୋଇ ପୁଣି ଶିରେ ଦେଲା କର ।
ବୋଇଲେ ତୁମ୍ଭ ମାଉସୀ ପଠାଇଲେ ମୋତେ
ଏହିକ୍ଷଣି ଯିବାପାଇଁ ମୋହର ସଙ୍ଗତେ ।
ଦାସ ମୁଖୁଁ ଶୁଣି କୃଷ୍ଣ ତୁରିତେ ଅଇଲେ
କୁନ୍ତୀଙ୍କପୁରେ ପ୍ରବେଶି ପାଦେ ପ୍ରଣମିଲେ ।
ଚରଣରୁ ଧୂଳି ନେଇ ଲଗାଇଲେ ଶିରେ
ଗୋବିନ୍ଦଙ୍କୁ ଦେଖି କୁନ୍ତୀ ଉଠି ତରଭରେ ।
କୋଳକରି ମୁଖେ ଚୁମ୍ବ ଦେଇଣ ବୋଲନ୍ତି
ଆସ ଆସ ବାପଧନ ବସ ମୋର କତି ।
କହ ବାବୁ ଭାଇ ବସୁଦେବର କୁଶଳ
କୁଶଳେ ଅଛି କି ତୋର ଭାଇ କାମପାଳ ।
ଭାଉଜ ମୋର ଦେବକୀ ଅଛି ନା କୁଶଳେ
ଆବର ଅଛି ତ ଉଗ୍ରସେନ ମହୀପାଳେ ।
ପ୍ରଦ୍ୟୁମ୍ନ ଆଦି ତୋହର ଯେତେକ କୁମର
ବଧୂମାନଙ୍କ କୁଶଳ କହ ଯଦୁବୀର ।
କୃଷ୍ଣ ବୋଇଲେ ପିଉସୀ ସମସ୍ତ କୁଶଳ
ଥାଟ ଘେନି କୁରୁକ୍ଷେତ୍ରେ ମିଳିଛୁ ସକଳ ।
ତୋ ପୁତ୍ରଙ୍କ ସଙ୍ଗେ ଯୁଦ୍ଧ ହୋଇବ ମୋହର
ଜରାସନ୍ଧ ଦୁର୍ଯ୍ୟୋଧନ ଆଦି ନୃପବର ।
ସାହା ହୋଇଛନ୍ତି ତୋର ପୁତ୍ରଙ୍କୁ ମୋ ମାତ
ମୋହର ବଇରୀ ଅଟେ ଅବନ୍ତୀର ନାଥ ।
ଶରଣ ପଶିଲା ଭୀମ ରଖିଲା ତାହାକୁ
ମାଗିଲୁ ତାକୁ ନ ଦେଲା କେଭେ ସେ ଆମ୍ଭଙ୍କୁ ।
ସେଥିପାଇଁ ତିନିପୁର ଲୋକ ଅଛୁ ମିଳି
ବ୍ରହ୍ମା ବିଷ୍ଣୁ ରୁଦ୍ର ଇନ୍ଦ୍ର ଚନ୍ଦ୍ର ଅଂଶୁମାଳୀ ।
ନାଗଲୋକ ସୁରଲୋକ ଗନ୍ଧର୍ବ ସହିତେ
ଯକ୍ଷ ରକ୍ଷ ରକ୍ଷକପି ବିହଗାହିଁ ଯେତେ ।

ଶୁଣି ଉଚ୍ଚରେ ରୋଦନ କରି ଦେବୀ କୁନ୍ତୀ
ଆପଣାର ଶିରେ ନେଇ କରକୁ ତାଡ଼ନ୍ତି ।
ବୋଇଲେ କି କହୁ କୃଷ୍ଣ ବଜ୍ର ପ୍ରାୟ ମଣେ
ଏତେକାଳେ ଏଡ଼ କଥା ଶୁଣାଗଲା କାନେ ।
ସ୍ୱାମୀ ଛାଡ଼ିଗଲେ ତାଙ୍କ ସଙ୍ଗେ ମୁଁ ନଗଲି
ବାଳୁତ ପୁତ୍ରଙ୍କ ପାଇଁ କଷ୍ଟ ମୁଁ ସହିଲି ।
ବାରବରଷ ବନରେ କାଟିଲି ମୁଁ ଦିନ
କାଳେ କାଳେ ଭୃତ୍ୟ ତୋର ମୋହର ନନ୍ଦନ ।
ପାଳିଲୁ ପୁଣି ମାରିବୁ କେମନ୍ତେ ରେ ବାବୁ
ମୋହର ମୁହଁକୁ କୃଷ୍ଣବେଳେ ନ ଚାହିଁବୁ ।
ମୁହିଁ ତୋର ମାତାଠାରୁ ଅଧିକ ଅଟଇ
ଭୀମ ଦୁଷ୍ଟପଣ କୃଷ୍ଣ ନ ଜାଣୁ କି ତୁହି ।
ଆଗ ମୋତେ ମାରି ପଛେ ମୋ ପୁତ୍ରକୁ ମାର
ପୁତ୍ରଶୋକୁଁ ଆଗ ମୋତେ କର ତୁ ଉଦ୍ଧାର ।
ଅଭାଗିନୀ ଅନାଥିନୀ ଦୁଃଖିନୀ ପିଉସୀ
ବାଳକାଳୁ କଷ୍ଟମାନ ସହି ସହି ଆସି ।
ବୃଦ୍ଧକାଳେ ଅପୁତ୍ରିକ ହେବି କିମ୍ପା ହରି
ଦୁର୍ଯ୍ୟୋଧନ ଭୋଗକରୁ ଏହି ବସୁନ୍ଧରୀ ।
ରାଜ୍ୟଧନ ସମ୍ପଦହିଁ ସକଳ ତୋହର
ଦେଲେଦେବୁ ନେଲେ ନେବୁ ଦୁଃଖ ନାହିଁ ମୋର ।
ମାଇଲେ ମାରିବୁ ହରି ରଖିଲେ ରଖିବୁ
ପାଣ୍ଡବ ନାଶନବାନା ଗୋଟି ଉଡ଼ାଇବୁ ।
ମାରୁ ତାରୁ ହରୁ ବୋଲି ନାମ ତୋର ହରି
ଦୁଃଖୀର ପୁତ୍ରକି କାହିଁ ସୁଖ ଭୋଗ କରି ।
ଦୀନବନ୍ଧୁ ଜାଣି ସିନା ତୋତେ ଆଶାକଲୁ
ଦୀନ ବିନାଶନ ବୋଲି ଏତେ ତ ଜାଣିଲୁ ।
ଅକଳଙ୍କ ନାମରେ କି କଳଙ୍କ ରଖିବୁ
ଦୟାଳୁଠାକୁର ହୋଇ ଏହା କି କରିବୁ ।
ଅନ୍ତର୍ଯ୍ୟାମୀନାଥ ତୋତେ କି କହିବି ଆଉ
ପ୍ରାଣୀ ଅନ୍ତର ବାହାରେ ସଦା ରହିଥାଉ ।
ଶ୍ରୀବତ୍ସ ବିପ୍ର କ୍ରୋଧରେ ପ୍ରହାରିଲା ପାଦ
ସେ ଚିହ୍ନ ବହିଲୁ ହୃଦେ ବହିଣ ଆନନ୍ଦ ।
ଆଜି ଭୀମଠାରେ କିମ୍ପା ଏଡ଼େ ତୋର ମାୟା
ତ୍ରିଭୁବନେ ବ୍ୟାପିଅଛି ଏ ତୋହର କାୟା
ତୋର ଆଜ୍ଞାରେ ଜଳରେ ଭାସଇ ପଥର
ଛାର ଭୀମ ଅବା ତୋତେ କେତେକ ମାତର ।
ଏଥିପାଇଁ ତିନିପୁର ସୈନ୍ୟ ଆସୁ ଘେନି
ଦୁର୍ଜୟ ଦାନବ ନୋହେ ମୋ ପୁତ୍ର ପାବନୀ ।
ଏମନ୍ତ ବିଳାପବାଣୀ ଶୁଣି କୁନ୍ତୀଙ୍କର
ଗୋବିନ୍ଦ ବୋଇଲେ ମାତ ନୁହଁ ତୁ କାତର ।
ପାଣ୍ଡବେ ମୋହର ପ୍ରାଣ ମୁହିଁ ତାଙ୍କ ପିଣ୍ଡ
ତାହାଙ୍କୁ ମାରି କେମନ୍ତେ ପାଳିବୁ ବ୍ରହ୍ମାଣ୍ଡ ।
କହୁଛି ଶୁଣ ଗୁପତ କାରଣ ତହିଁର
ସାମାନ୍ୟ ଶତ୍ରୁ ନୁହଇ ଅନ୍ଧର କୁମର ।
ଲକ୍ଷେ ରାଜାର ମଉଡ଼ମଣି ଦୁର୍ଯ୍ୟୋଧନ
ଯାର କରେ ଅଛି ଶଙ୍ଖ ପଦ୍ମନିଧି ଚିହ୍ନ ।
ପନ୍ନଗ ନାରାୟଣ ସେମାନେ ମହାମାନୀ
ଗଦାଯୁଦ୍ଧ ସମ ତାକୁ ନୁହଇ ପାବନି ।
ରାଜନୀତି କଉଶଳ ଶୁକ୍ରଠାରୁ ବଳି
ଭୀଷ୍ମ ଦ୍ରୋଣ କର୍ଣ୍ଣ ତୁଲ୍ୟ ତହିଁରୁ ଉଗୁଳି ।
ତେଣୁ ତ୍ରିଭୁବନ ସୈନ୍ୟ କଲଇ ସଂଗ୍ରହ
ତୋ ପୁତ୍ରଙ୍କ ସଙ୍ଗତରେ କରିବେ ବିଗ୍ରହ ।
ହାରିବେ ସକଳଜୟୀ ହେବେ ତୋରପୋଏ
ଏ ଗୁପତ କଥା କାହିଁ ନ କହିବୁ ମାଏ ।
ତୋର ପୁତ୍ରଙ୍କ ବିକ୍ରମ ଦେଖି ଶତ୍ରୁଗଣ
ଭୟ ପାଇବେ ଶରୀରୁ ବଳ ହେବ କ୍ଷୀଣ ।
ନିଶ୍ଚିନ୍ତ ହୋଇ ଗୃହରେ ଥାଅ ମା ପିଉସୀ
ବେଳ ଉଛୁର ହେଉଛି କଲ୍ୟାଣ କରସି ।
ଏମନ୍ତ ଶୁଣି ଶ୍ରୀହରି ମାଗିଲେ ମେଲାଣି
ଆନନ୍ଦେ କଲ୍ୟାଣ କଲେ ପାଣ୍ଡବ ଜନନୀ ।
କୁନ୍ତୀଙ୍କୁ ପ୍ରବୋଧି ହରି ଗଲେ ଖରତରେ
ଦୀନ ଗୋପୀନାଥ ମନ ଗୋବିନ୍ଦ ପୟରେ ।

## ସଞ୍ଜୟ ସହିତ ଧୃତରାଷ୍ଟ୍ରର ପରାମର୍ଶ ଓ ଯୁଦ୍ଧାରମ୍ଭ

ଏଥୁ ଅନନ୍ତରେ ଶୁଣ ଅଭିମନ୍ୟୁସୁତ
ସଞ୍ଜୟକୁ ପଚାରଇ ଅନ୍ଧ ନରନାଥ ।
ହେ ମନ୍ତ୍ରୀ ସଞ୍ଜୟ କହ ମୋହର କୁମରେ
ଯୁଦ୍ଧ କରିବାକୁ ଗଲେ କାହା ସଙ୍ଗତରେ ।
ସଞ୍ଜୟ କହିଲା ଶୁଣ ଅନ୍ଧ ନୃପମଣି
ପାଣ୍ଡବଙ୍କ ସଙ୍ଗେ ଯୁଦ୍ଧ କଲେ ଚକ୍ରପାଣି ।

ପାଣ୍ଡବଙ୍କ ସାହା ହେଲେ ତୋର ପୁତ୍ରେ ଯାଇଁ
ଏମନ୍ତ ଶୁଣି ବୋଇଲେ ଅନ୍ଧ ନରସାଇଁ ।
ପାଣ୍ଡବ ଗୋବିନ୍ଦ କଳି ହେଲା କି କାରଣେ
ପାଣ୍ଡବେ କୃଷ୍ଣଙ୍କୁ ଖଟିଥାନ୍ତେ ଭୃତ୍ୟପଣେ ।
ଅଭେଦ ପ୍ରୀତିରେ ଭେଦ ଜନ୍ମିଲା କିମ୍ପାଇଁ
ସଞ୍ଜୟ କହଇ ଶୁଣ ଅନ୍ଧ ନୃପସାଇଁ ।
ଅବନ୍ତୀ ଦେଶରେ ଥିଲା ଦଣ୍ଡୀନାମେ ରାଜା
ଧର୍ମରେ ଥାଇ ପାଳଇ ସେହି ତାର ପ୍ରଜା ।
ମୃଗୟା କରୁଁ ବନରୁ ଘୋଟକୀ ପାଇଲା
ସୁଲକ୍ଷଣୀ ଦେଖି ତାକୁ ଗୃହରେ ରଖିଲା ।
ନାରଦ ମୁଖୁଁ ବାରତା ପାଇ ଚକ୍ରଧର
ମାଗିଲେ ନ ଦେଲା ତାଙ୍କୁ ଦଣ୍ଡୀ ନୃପବର ।
କ୍ରୋଧେ ଯୁଦ୍ଧ କରିବାକୁ କହିଲେ ଶ୍ରୀହରି
ରାଜ୍ୟଛାଡ଼ି ପଳାଇଲା ଦଣ୍ଡୀରାଜା ଡରି ।
ତିନିପୁରେ କେହି ସ୍ଥାନ ନ ଦେଲେ ତାହାକୁ
କାତରେ ମିଳିଲା ଗଙ୍ଗାକୂଳେ ଝାସିବାକୁ ।
ସୁଭଦ୍ରା ଦେବୀ ଗଙ୍ଗାରେ କରୁଥିଲେ ସ୍ନାନ
ବୁଝାଇ କରି ସଙ୍ଗରେ ଆଣିଲେ ବହନ ।
ଭୀମଙ୍କୁ କହେ ଅଭୟ ବର ଦେଲେ ତାକୁ
ଦୂତ ମୁଖୁଁ ଶୁଣି କୃଷ୍ଣ ପେଶିଲେ କାମକୁ ।
ନ ମାନି ନ ଦେଇ ଭୀମ ଯୁଦ୍ଧେ କଲାପଣ
ଶୁଣି ମହାକୋପ କଲେ ଦେବ ନାରାୟଣ ।
ତିନିପୁର ସୈନ୍ୟ ଡାକି କଲେକ ଏକାଠି
ହଂସ ବାହନରେ ବିଜେ କଲେ ପରମେଷ୍ଠୀ
ରୁଦ୍ରଗଣ ଘେନି ରୁଦ୍ର ହେଲେ ତାଙ୍କୁ ସାହା
ଦେବଗଣ ଗନ୍ଧର୍ବଙ୍କୁ ଘେନି ଶଚୀନାହା ।
ନାଗବଳ ଘେନି ନାଗରାଜ ହେଲା ବିଜେ
ଯମଗଣ ସଙ୍ଗେ ଘେନି ଆସେ ଜନ୍ତୁରାଜେ ।
ଯକ୍ଷଗଣ ଘେନି ବିଜେ କଲାକ କୁବେର
ବିଭୀଷଣ ଆସେ ସଙ୍ଗେ ଘେନି ନିଶାଚର ।
ରକ୍ଷରାଜ ଜାମ୍ବବାନ ଆସେ ରକ୍ଷ ଘେନି
ଗରୁଡ଼ ଅଇଲା ଘେନି ବିହଗା ସଇନି ।
କପିରାଜ ଅଙ୍ଗଦର ସଙ୍ଗେ କପିବଳ
ହିମବାନ ସଙ୍ଗତରେ ସଇନ ସକଳ ।
କି କହିବି ତୁମ୍ଭ ଆଗେ ପୂରିଅଛି ମହୀ
ଏମନ୍ତ ସଞ୍ଜୟ ଆଗେ ଧୃତରାଷ୍ଟ୍ର କହି ।
ଶୁଣି ବିକଳ ହୁଅଇ ଅନ୍ଧ ନରପତି
ଭୀମା ଯୋଗୁଁ ନାଶଯିବ ସକଳ ସମ୍ପତ୍ତି ।
କୁରୁପାଣ୍ଡବେ କି ଆଉ ରହିବେ ଜୀବନେ
ଅପୁତ୍ରିକ ହେବି ମୁହିଁ ନିଶ୍ଚେଁ ବୁଢ଼ାଦିନେ ।
ଜଣାଗଲା କୁରୁକୁଳ ନିଶ୍ଚେଁ ହେବ ଲୋପ
ଯେଣୁ ଜଗନ୍ନାଥଙ୍କର ବଢ଼ିଲାଣି କୋପ ।
ଜାଣୁ ଜାଣୁ ପୂରାଇଲେ ଅଣ୍ଟିରେ ଅନଳ
ଜାଣି ଶୁଣି ଧରିଛନ୍ତି ସାପର ଲାଙ୍ଗୁଳ ।
ପର୍ବତ ପକାଇ ପୁଣି ପାତୁଛନ୍ତି ଶିର
କାଳ ଘୋଟିବାରୁ ସିନା ଏଡ଼େ ଅହଙ୍କାର ।
ଅହଙ୍କାର ଯୋଗୁଁ ସିନା ବୁଦ୍ଧି ହେଲା ଲୋପ
ଏମନ୍ତେ ଅନ୍ଧ ବହୁତ କରନ୍ତେ ବିଳାପ ।
ସଞ୍ଜୟ କହିଲା ରାଜା ନ ହୁଅ କାତର
କଉରବ ପାଣ୍ଡବଙ୍କ ବଳ ହିଁ ଅପାର ।
ଜରାସନ୍ଧ ଶିଶୁପାଳ ଦନ୍ତବକ୍ର ମୂଳେ
ବହୁତ ସୈନ୍ୟ ସଙ୍ଗତେ ଘେନି ମହୀପାଳେ ।
ଅଳମ୍ବୁଷ ଅଳାୟୁଧ ଅଛନ୍ତି ଆବର
ପ୍ରାଣପଣେ କରିବେ ସେ ଯୁଦ୍ଧ ଭୟଙ୍କର ।
ଅନ୍ଧ ବୋଇଲେ ସଞ୍ଜୟ ହୋଇଲୁକି ବାଇ
ସୂଚୀ ମୁନରେ ପର୍ବତ ଟଳି କି ପଡ଼ଇ ।
ପବନ କି ଧରା ପରେ ବସାଇଲେ ପାଶ
ଜଗତ ଠାକୁର ସେହି ବାସୁଦେବ ଶିଷ ।
ମାରଇ ତାରଇ ସେହି ତ୍ରିଭୁବନ ସାର
ସୃଜଇ ପାଳଇ ଲୟ କରଇ ଆବର ।
ତାର ସଙ୍ଗେ ବାଦୀ ହୋଇ ବର୍ତ୍ତିବେ କି କେହି
ଏମନ୍ତ ଶୁଣି ସଞ୍ଜୟ ପୁନରପି କହି ।
ମୁହିଁ ଭଲରୂପେ ଜାଣେ ଆହେ ନରପତି
ପାଣ୍ଡବେ ଜିଣିବେ ନିଶ୍ଚେ ହାରିବେ ଶ୍ରୀପତି ।
ଏମନ୍ତ ଶୁଣି ନୃପତି ହୋଇଲା ସନ୍ତୋଷ
ରାତଦିନ ଗୋପୀନାଥ ଭଜେ ପୀତବାସ ।

.....❋.....

## ଯାଦବଙ୍କ ସହ କୁରୁପାଣ୍ଡବଙ୍କର ଯୁଦ୍ଧ ସମାଗମ

ଏଥୁଅନ୍ତେ ଶୁଣ ତୁହୋ ପରୀକ୍ଷିତ ରାୟ
କୁରୁବଳ ଯଦୁବଳ ଜଗତେ ଅଜୟ ।
ବାଜିଲା ବିବିଧ ବାଦ୍ୟ କମ୍ପିଲା ଧରଣୀ
ଦୁଇବଳ ଏବେ ଆଗଭର ହେଲେ ପୁଣି ।

ଢୋଲ ଦମା ଟମକ ଯେ ନିଶାଣ ବାଜଇ
ବାଦ୍ୟ ନାଦରେ ଆକାଶ ପାତାଳ କମ୍ପଇ
ଯଦୁବଳ କୁରୁବଳ ମିଳି କଲେ ରଣ
ପ୍ରାଣପଣେ ଯୁଝନ୍ତି ସେ ନ ଛାଡ଼ନ୍ତି ଟାଣ ।
ନାରାୟଣୀ ସେନା ଆସି ପଶିଲେ ସମରେ
ବିଷମ ଆୟୁଧମାନ ଧରି କୋପଭରେ ।
ଲଙ୍କା ରାକ୍ଷସେ ସଂଗ୍ରାମେ ଅଟନ୍ତି ନିଶଙ୍କା
କାଳେ କାଳେ ଋକ୍ଷ କପିବଳ ରଣ ରଙ୍କା ।
ଶାଳଶିଳ କରେ ଧରି ପଶିଲେ ସମରେ
ଯୁଦ୍ଧେ ପଛଘୁଞ୍ଚାଦେଲେ କୁରୁବଳ ଡରେ ।
ଦେଖି କୋପକଲା ଭୀମପୁତ୍ର ମେଘବର୍ଣ୍ଣ
ତାର ସଙ୍ଗେ ଅଭିମନ୍ୟୁ ଅର୍ଜୁନ ନନ୍ଦନ ।
କର୍ଣ୍ଣସୁତ ବୃଷକେତୁ ଅଛଇ ଆବର
ଦୁର୍ଯ୍ୟୋଧନର ନନ୍ଦନ ଲକ୍ଷ୍ମଣ କୁମାର ।
ଘଟୋତ୍କଚ ଅଟଇ ଯେ ହିଡ଼ିମ୍ବାର ସୁତ
ତାହାର ସଙ୍ଗେ ଅଛନ୍ତି କୃଷ୍ଣା ପାଞ୍ଚପୁତ୍ର ।
ଏମାନେ ଧାଇଁଲେ କରେ ଧରି ଧନୁଶର
କେହି ରଥେ କେହି ଗଜେ କେ ଅଶ୍ୱ ଉପର ।
ସୈନ୍ୟଙ୍କୁ ବୋଇଲେ କିମ୍ପା ଯାଉଛ ପଳାଇ
ପଳାଇଗଲେ କି ତୁମ୍ଭେ ଜୀବନ କି ପାଇ ।
ଯହିଁ ତହିଁ ଗଲେ ତୁମ୍ଭ ମରଣ ନିୟତ
ଶତ୍ରୁମୁଖୁଁ ଗଲେ ରାଜା ହସ୍ତେ ଦେବ ମୃତ ।
ଏଣୁ ଯୁଦ୍ଧେ ପ୍ରାଣ ଦେଇ କର ସ୍ୱର୍ଗଭୋଗ
ଆମ୍ଭେମାନେ ଯାଉଛୁତ ତୁମ୍ଭ ଆଗ ଆଗ ।
ଦେଖୁଥା ପଛରେ ରହି ଆମ୍ଭ ବୀରପଣ
ଏମନ୍ତ କହି ବିନ୍ଧିଲେ ତୀକ୍ଷ୍ଣ ତୀକ୍ଷ୍ଣ ବାଣ
ଏକମୁଖେ ଏକାବେଳେ କରନ୍ତି ସନ୍ଧାନ
କୋଟି କୋଟି ଲକ୍ଷ ଲକ୍ଷ ଘୋଟଇ ଗଗନ ।
ନିରତେ ଖସଇ ବାଣ ଜଳଧାରା ପରି
ଯୁଦ୍ଧେ ପଛଘୁଞ୍ଚାଦେଲେ ଯଦୁବଳ ଡରି ।
ରଣ ଛାଡ଼ି ପଳାଇଲେ ପଛକୁ ନ ଚାହିଁ
ଋକ୍ଷ କପି ରକ୍ଷ ନର ନ ରହିଲେ କେହି ।
ରହ ରହ ବୋଲୁଛନ୍ତି କୃଷ୍ଣର କୁମରେ
ନ ଶୁଣନ୍ତି ନା ରହନ୍ତି ପଳାନ୍ତି ସେ ଡରେ ।
ପ୍ରଦ୍ୟୁମ୍ନ ବୋଇଲା ଭୟ କାହାକୁ ତୁମ୍ଭର
ଥୟହୋଇ କହ ଆରେ ଆମ୍ଭ ଅଗ୍ରତର ।
ସେନାଏ ବୋଇଲେ ବାଣ ପଡ଼େ ନିରନ୍ତର
କହିବାକୁ ବେଳନାହିଁ ତୁମ୍ଭ ଅଗ୍ରତର ।
ଅଭିମନ୍ୟୁ ଆଦି ବୀରେ ଆସୁଛନ୍ତି ଦେଖ
ଦିଶୁଛନ୍ତି କାଳଯମଠାରୁ ସେ ଅଧିକ ।
ଅନଳଠାରୁ ଉଗୁଳି ବିକାଶଇ ତେଜ
ଶୁଣି କୋପଭରେ ବୋଲେ ଗୋବିନ୍ଦ ତନୁଜ ।
ଲାଜ ମାଡୁ ନାହିଁ ଡରି ପଳାଉଛ କିରେ
ଶୁଣି କି ବୋଲବେ ପ୍ରଦ୍ୟୁମ୍ନ ତୁମ୍ଭଙ୍କୁରେ ବୀରେ ।
ଅସ ଆସ ଆମ୍ଭ ସଙ୍ଗେ ଦେଖ ଆମ୍ଭ ରଣ
କହି ଆଗଭର ହେଲେ ଧରି ଧନୁର୍ବାଣ ।
ତାଙ୍କ ପଛରେ ଧାଇଁଲେ ସକଳ କୁମର
ବିକ୍ରମ କେଶରୀ ପ୍ରାୟ ଧାମନ୍ତି ଆଗର ।
ଅଭିମନ୍ୟୁ ବୃଷକେତୁ ଥିଲେ ଆଗ ହୋଇ
ଏମାନେ ତାହାଙ୍କୁ ବାଟ ଓଗାଳିଲେ ଯାଇଁ ।
ବାଜିଲାକ ରଣ ଗୋଳ କମ୍ପିଲା ବ୍ରହ୍ମାଣ୍ଡ
ଅଭିମନ୍ୟୁ ଆଦିଙ୍କର ନାରାଚ ପ୍ରଚଣ୍ଡ ।
ହାରିଲେ ଶ୍ରୀକୃଷ୍ଣ ସୁତେ ଜିଣି କୁରୁସୁତେ
ସିଂହନାଦ ଶଙ୍ଖନାଦ କରନ୍ତି ସମସ୍ତେ ।
ଦେଖି ଦେବ କାମପାଳ ହେଲେ ଆଗଭର
ତାଙ୍କ ପଛରେ ଶ୍ରୀକୃଷ୍ଣ ବାସବ ଶଙ୍କର ।
ଯମ ପବନ କୁବେର ସମସ୍ତେ ଧାଇଁଲେ
ଦେଖି ଅଭିମନ୍ୟୁ ଆଦି ପଛଘୁଞ୍ଚାଦେଲେ ।
ଭୀମ ଦୁଃଶାସନ ଚାହିଁ ହେଲେ କୋପଭର
କରେ ଗଦାବର ଧରି ହେଲେ ଆଗଭର ।
ଭୀଷ୍ମ ଦ୍ରୋଣ ଆଦି ବୀରେ ତାଙ୍କ ପଛେଗଲେ
ଉଭୟ ବଳ ସଂଗ୍ରାମେ ଭେଟାଭେଟି ହେଲେ ।
ଶଙ୍କରଙ୍କ ସଙ୍ଗେ ଯୁଦ୍ଧ ହେଲା ଭୀଷ୍ମଙ୍କର
ଦୀନ ଗୋପୀନାଥ ଭଜେ ଶଙ୍କର ପୟର ।

.....❋.....

## ଭୀଷ୍ମଙ୍କ ସହିତ ଶିବଙ୍କର ଯୁଦ୍ଧ ଓ ପରାଜୟ

ଏଥୁ ଅନନ୍ତରେ ଶୁଣ ଯୁଦ୍ଧ ସମାଚାର
ଶିବ ସଙ୍ଗେ ଯୁଦ୍ଧକଲେ ଗଙ୍ଗାର କୁମର ।
କୋପେ ବାଣ ବିନ୍ଧୁଛନ୍ତି ଦେବ ତ୍ରିପୁରାରୀ
ପ୍ରତି ଶରେ ଗଙ୍ଗାପୁତ୍ର ତାହାକୁ ନିବାରି ।

ଏମନ୍ତେ ସଂଗ୍ରାମ କଲେ ବେନି ଘଡ଼ିଯାଏ
ସମାନ ବୀର ସେ କେହି ନ ଘୁଞ୍ଚନ୍ତି ପାୟେ ।
ବେଳୁଁ ବେଳ ଶଙ୍କରଙ୍କ କୋପ ଗୁରୁତର
ବୋଇଲେ ସମ୍ଭାଳ ଏବେ ଗଙ୍ଗାର କୁମର ।
ଏତେ କହି ଅଗ୍ନିବାଣ ବସାଇଲେ ଗୁଣେ
ବିନ୍ଧନ୍ତେ ତାହାର ଶିଖା ଉଠିଲା ଗଗନେ ।
ଦେଖି ମହା ଭୟ କଲେ ସୁରାସୁର ନର
ବଡ଼ ବୁଦ୍ଧିମନ୍ତ ସେହି ଗଙ୍ଗାର କୁମର ।
ଜଳଧାରା ବାଣ ଗୁଣେ ବସାଇଲେ ନେଇ
ବୋଇଲେ ଶିବଙ୍କ ବାଣ ଛେଦିପକା ଯାଇଁ ।
ଏହା କହି ବିନ୍ଧନ୍ତେ ସେ ଉଠିଲା ଗଗନେ
ଅଗ୍ନି ଲିଭିଗଲା ଜଳଧାରା ବରଷଣେ ।
ବାଣ ବିଅର୍ଥ ହେବାର ଦେଖି ତ୍ରିଲୋଚନ
ବିନ୍ଧିଲେ ପର୍ବତ ବାଣ କରିଣ ଗର୍ଜନ ।
ନ ଆସୁ ଭୀଷ୍ମ କାଟିଲେ ବଜ୍ର ବାଣ ମାରି
ପନ୍ନଗ ଅସ୍ତ୍ର ମାଇଲେ ପୁଣି ତ୍ରିପୁରାରି ।
ଫୁଫୁକାର କରି ନାଗେ ଆସନ୍ତି ଆକାଶେ
ଗରଳ ଛାଡ଼ନ୍ତି ଶୂନ୍ୟ ମେଘ କି ବରଷେ ।
ଗରୁଡ଼ ଶର ମାଇଲେ ଗଙ୍ଗାର ତନୟ
ଶତ ଶତ ଖଗବର ହୋଇଲେ ଉଦୟ ।
ସର୍ପଙ୍କୁ ଶୂନ୍ୟରେ ଥାଇ ଗିଳିଦେବ ଦେଖି
କୋପେ ଶଙ୍କର ବରୁଣ ପାଶ ଗୁଣେ ଯୋଖି
ନ ଆସୁ ଛେଦିଲେ ତାହା ଗଙ୍ଗାର ତନୟ
କୋପେ ଶଙ୍କରଙ୍କ ତେଜ ହୋଇଲା ଅଥୟ ।
ମହା ଭୟଙ୍କର ରୁଦ୍ର ତେଜି ବିକାଶିଲେ
ସୁରନାଗ ଲୋକ ଦେଖି ଭୟେ ତ୍ରସ୍ତହେଲେ ।
ବିଚାରିଲେ ଗଙ୍ଗାସୁତ ନ ବର୍ତ୍ତିବ ଆଉ
ଚନ୍ଦ୍ର ପାଖରେ ଯେସନେ ବିରାଜଇ ରାହୁ ।
ତେସନ ସଞ୍ଜାତ ଭୀଷ୍ମ ପାଖେ ଗଙ୍ଗାଧର
ଗଙ୍ଗାର ନନ୍ଦନ ଦେଖି କୋପ ଗୁରୁତର ।
ବୋଇଲେ ଭୋଦେବ ଦେବ ମହାଦେବ ହର
ତୁମ୍ଭେ ଆମ୍ଭମାନଙ୍କର ଅଟ ଯେ ଠାକୁର ।
ତୁମ୍ଭେ ମାରୁଅଛ ମୋତେ ନ ମାରଇ ମୁହିଁ
ଧର୍ମକୁ ଲଙ୍ଘିଲ ପ୍ରଭୁ ମୋର ଦୋଷ ନାହିଁ ।
ମାରୁଅଛି ବାଣ ନାଥ ସମ୍ଭାଳ ସମ୍ଭାଳ
ଗଙ୍ଗାର ନନ୍ଦନ ମୁହିଁ ବୀରଙ୍କର କାଳ ।
ଏହା କହି ପାଞ୍ଚ ବାଣ ବିନ୍ଧିଲେ ନିଠାଇ
ନିବାରି ନ ପାରିଲେ ତା ପାର୍ବତୀର ସାଇଁ ।
ପଞ୍ଚ ଲଲାଟ ଫୁଟିଣ ବହିଲା ରୁଧିର
ପଞ୍ଚଶୃଙ୍ଗ ଗିରିରୁ କି ବହେ ଝର ନୀର ।
ଅସମ୍ଭାଳ ହୋଇ ଶିବ ଦେଲେ ପଛଘୁଞ୍ଚା
ପୂର୍ଣ୍ଣ ନୋହିବାରୁ ତେଣେ ଭୀଷ୍ମ ମନୋବାଞ୍ଛା ।
ବାଣେକ ମାଇଲା ପୁଣି ଗଲା ସେହୁ ଖରେ
ବାଜିଲା ଯାଇଁ ଶିବଙ୍କ ଛାତିର ଉପରେ ।
କ୍ଷଣେ ଅଚେତ ହୋଇଲେ ଦେବ ଗଙ୍ଗାଧର
ସଚେତ ହୋଇ କ୍ରୋଧରେ ଧରି ଧନୁଶର ।
ବାଣେ ଗଗନ ମାର୍ଗକୁ ପ୍ରଭୁ ଦେଲେ ଛାଇ
ଭୀଷ୍ମ ବାଣେ ପଡ଼ିଲା ସେ ଖଣ୍ଡ ଖଣ୍ଡ ହୋଇ ।
କୋପେ ପାଶୁପତ ବାଣ ମାଇଲେ ଶଙ୍କର
ନାରାୟଣ ଶର ଭୀଷ୍ମ ମାଇଲେ ସତ୍ୱର ।
ବେନି ଶର ଯୁଦ୍ଧ କଲେ ଆକାଶରେ ରହି
କମ୍ପିଲା ଗିରି ସମୁଦ୍ର ସହିତ ଯେ ମହୀ ।
ଭୟପାଇ ବେଦବର କଲେ ତାଙ୍କୁ ସ୍ତୁତି
ଜୟ ଜୟ ଶର ତୁମ୍ଭେ ହରିହର ମୂର୍ତ୍ତି ।
ସଂହାର ନ କର ତୁହି ଛାଡ଼ ଛାଡ଼ କୋପ
ନିଜ ନିଜସ୍ଥାନେ ଯାଅ ହୋଇ ଶାନ୍ତରୂପ ।
ଏମନ୍ତ ବ୍ରହ୍ମାର ସ୍ତୁତି ଶୁଣି ଶର ବେନି
ଯୁଦ୍ଧ ଛାଡ଼ି ଯିବା ଦେଖି ଦେବ ଶୂଳପାଣି ।
ବ୍ରହ୍ମ ଶରକୁ ଧରନ୍ତେ ଦେଖି ଗଙ୍ଗାସୁତ
ବ୍ରହ୍ମାଶିର ନାମେ ଅସ୍ତ୍ର ଧଇଲେ ତୁରିତ ।
ତା ଦେଖି ଶରଙ୍କ ରଣ ତେଜ୍ୟା କରିଗଲେ
ଗଙ୍ଗାର ନନ୍ଦନ ଜୟ ଶଙ୍ଖ ବଜାଇଲେ ।
ଶ୍ରୀ କୂର୍ମପୁରାଣେ ଏହି ଶିବ ଭୀଷ୍ମରଣ
ପରମ ପବିତ୍ର କଳି କଳୁଷ ହରଣ ।
ଯେ ପଢ଼ଇ ଶୁଣଇ ଯେ ପାପ ତାର ଧ୍ୱଂସ
ଦୀନ ଗୋପୀନାଥ ସଦା ସେ ପ୍ରଭୁର ଦାସ ।

.....※.....

## ଭୀମ ସହିତ ବଳରାମଙ୍କର ଯୁଦ୍ଧ ଓ ପରାଜୟ

ଏଥୁ ଅନନ୍ତରେ ତୁହୋ ଶୁଣ ଦଣ୍ଡଧର
ଭୀଷ୍ମଙ୍କୁ ଯୁଦ୍ଧେ ନ ପାରି ପଳାନ୍ତେ ଶଙ୍କର ।

ଧାଇଁଲେ ହଳ ମୂଷଳ ଧରି ହଳପାଣି
କର୍ଣ୍ଣରେ କୁଣ୍ଡଳ ଲୁଳେ ଶିରେ ସପ୍ତଫଣୀ ।
ଆରେ ରେ ପାଣ୍ଡବ ତୁମ୍ଭେ ଅଟ ଜାରଜାତ
ତୁମ୍ଭ ପାଞ୍ଚି ପୋଛିଲାଣି ସଂଯମନୀ ନାଥ ।
ଏମନ୍ତ କ୍ରୋଧରେ ଗାଳି ଦେଇଣ ଧାମନ୍ତି
ଡରେ ରଥ ଗଜ ଅଶ୍ୱ ଆଡ଼ ହୋଇଯାନ୍ତି ।
କୋଟି ସିଂହ ପରାକ୍ରମ ଧରନ୍ତି ଯେ ରାମ
ତାଙ୍କୁ ବାଟ ଉଗାଳିଲା ବୀରବର ଭୀମ ।
ପର୍ବତ ପର୍ବତ କିବା ହେଲା ଭେଟାଭେଟି
କେତୁ ଆସିବାର ଦେଖି ମଙ୍ଗଳ କି ଉଠି ।
ସିଂହଙ୍କୁ ଯାଇ କି ସିଂହ ଉଗାଳିଲା ବାଟ
ଦୁଇ ବୀର ଅଟନ୍ତି ତ ସମରେ ବଳିଷ୍ଠ ।
ଅବନ୍ତୀ ରାଜନ ଅଛି ଭୀମ ପିଠି କତି
ଘୋଟକୀ ପୃଷ୍ଠରେ ବିଜେ ସେ ଅବନ୍ତୀପତି ।
ଭୀମକୁ ଦେଖିଣ ରାମ ହୋଇ କୋପଭର
ବୋଇଲେ ରେ ଜାରଜାତା ପବନ କୁମର ।
ମୋ ଶତ୍ରୁକୁ ରଖିବୁ ତୁ ଏଡ଼େ ଗର୍ବତୋର
ସିଂହ ଆଗେ ଶଶା ଗର୍ବ କଲା ପରକାର ।
ଏହିକ୍ଷଣି ଯମପୁରେ ପଠାଇବି ତୋତେ
ତୋ ମୁଣ୍ଡ ଛେଦିବି ଏହି ମୂଷଳ ଆଘାତେ ।
ଏମନ୍ତ ଶୁଣି ମାରୁତି କରଇ ଉତ୍ତର
ଗଉଡ଼ ଅଖବା ତୁହି କି ଜାଣୁ ସମର ।
ଉଚ୍ଚ କଥା କହୁ ତୁହି ହୋଇ ଛୋଟ ଜାତି
ଲଙ୍ଗଳ ଗୋଟା କାନ୍ଧରେ ଥାଇ ତୋର ନିତି ।
ଜାଣିଲି ଆୟୁଷ ତୋର ଅଛି ଅଳ୍ପକ୍ଷଣ
ତେଣୁ କହୁଅଛୁ ଏହି ପ୍ରଳାପ ବଚନ ।
ଏହିପରି ଉଚ୍ଚବାଚ ହୋଇ ବେନିଜନ
ଚକ୍ରାକାର ଗତିକରି ଆରମ୍ଭିଲେ ରଣ ।
ଦୁଇଗୋଟି ଗଦା ଅଛି ଦୁହିଁଙ୍କ ହସ୍ତରେ
ଜଗା ଜଗି ଛକାଛକି ହୁଅନ୍ତି ସମରେ ।
କେ ପଶ୍ଚିମେ କେ ଉତ୍ତରେ ଦକ୍ଷିଣେକେ ପୂର୍ବେ
ଏମନ୍ତେ କରନ୍ତି ଯୁଦ୍ଧ ଦେଖୁଛନ୍ତି ସର୍ବେ ।
ଏକ ପ୍ରହାରିଲେ ଗଦା ଆରେକ ଦେଖାଇ
ଏମନ୍ତେ ଘଡ଼ିଏ କାଳ ଗଲା ତହିଁ ବହି ।
କୋପେ ବଳରାମ ଗଦା ବୁଲାଇ ବୁଲାଇ
ଭୀମସେନର ଉପରେ ପିଟିଲେ ନିଠାଇ ।
ଗଦାମାଡ଼େ ଭୀମ ଗଲା ଭୂମିପରେ ବସି
କରେ କ୍ଷଣକେ ଆପଣା ମୁଣ୍ଡକୁ ଆଉଁସି ।
ଶତଶୃଙ୍ଗ ପର୍ବତକୁ କଲା ସୁମରଣ
ଶତସିଂହ ପରାକ୍ରମ ବହିଲା ତକ୍ଷଣ ।
ଆରେ ରେ ଗଉଡ଼ ବୋଲି ଉଠିଲା ଗରଜି
ରଡ଼ିଘାତେ ତିନିପୁର ପଡ଼ିବ କି ଭାଜି ।
କୁରାଳ ଚକ୍ର ପରାୟ ଗଦାକୁ ବୁଲାଇ
ପିଟନ୍ତେ ଦେଖିଲେ ତାହା ରେବତୀର ସାଇଁ ।
ଆପଣା ଗଦା ବୁଲାଇ କରେ ପରିତାଳ
ଗଦାରେ ଗଦା ବାଜିଣ ଉଠିଲା ଅନଳ ।
ରାମହସ୍ତୁ ଗଦା ଖସି ପଡ଼ିଲାକ ତଳେ
ଭୀମର ଗଦା ବାଜିଲା ରାମ କାନମୂଳେ ।
ଅଚେତ ହୋଇ ପଡ଼ିଲେ ରାମ କିଛିକ୍ଷଣ
ହଳ ମୂଷଳ ଛଡ଼ାଇ ନେଇ ଭୀମସେନ ।
ନିରସ୍ତ୍ର ହୋଇଣ ରାମ ଯୁଦ୍ଧେ ଗଲେ ହାରି
ଭଜେ ଦୀନ ଗୋପୀନାଥ ରାମ ହଳ ଧାରୀ ।

.....❀.....

## କର୍ଣ୍ଣର ସହିତ ପ୍ରଦ୍ୟୁମ୍ନର ଯୁଦ୍ଧ ଓ ପରାଜୟ

ଏଥୁ ଅନନ୍ତରେ ଶୁଣ ଉତ୍ତରା ତନୟ
ପ୍ରଦ୍ୟୁମ୍ନ ଦେଖିଣ ରାମଙ୍କର ପରାଜୟ ।
କ୍ରୋଧେ ପ୍ରଜ୍ୱଳିତ ଅଗ୍ନି ପରାୟ ଦିଶିଲା
ପବନହୁଁ ବେଗେ ତାର ରଥ ଚଳାଇଲା ।
କରେ ଧନୁଶର ଧରି ହେଲା ଆଗଭର
ଦେଖି ସାରଥିକି କହେ ସୂର୍ଯ୍ୟର କୁମର ।
ପ୍ରଦ୍ୟୁମ୍ନ ଆଗକୁ ମୋର ରଥ ବାହା ବେଗେ
ଏହା କହି ଧନୁଶର ଧଇଲାକ ରାଗେ ।
ସାରଥି ନେଇ ପ୍ରଦ୍ୟୁମ୍ନ ଆଗେ କଲା ରଥ
ଯୁଦ୍ଧ ବିଦ୍ୟାରେ ସେ ବେନି ଅଟନ୍ତି ସମର୍ଥ ।
କର୍ଣ୍ଣକୁ ଚାହିଁ କହଇ ରତିଦେବୀ ପତି
ଆଡ଼ ହୁଅ ତୁ କି ଜାଣୁ ସଂଗ୍ରାମର ରୀତି ।
କ୍ଷତ୍ରି ପୁତ୍ର ନୋହୁ ତୁ ତ ଅଟୁ ସୂତପୁତ୍ର
ତୋର ସଙ୍ଗେ ଯୁଝିବାର ନୁହଇ ଉଚିତ ।
ଧର୍ମ ଅନୁସାରେ କ୍ଷତ୍ରୀ ସଙ୍ଗେ ଯୁଝେ କ୍ଷତ୍ରୀ
ପଦାତି ସଙ୍ଗେ ପଦାତି ରଥୀ ସଙ୍ଗେ ରଥୀ ।

କର୍ଣ୍ଣ ବୋଇଲା ତୁ କାମ ହୋଇଲୁ କି ବାଇ
ବିଭାଘର ନୋହୁ କୁଳ ଖୋଜୁ ତୁ କିମ୍ପାଇ
ବଳବୀର୍ଯ୍ୟ ପରାକ୍ରମ ପରଖନ୍ତି ରଣେ
ଅଛି ଯେବେ ଯୁଦ୍ଧକର ଧନୁ ଧରି ଟାଣେ ।
ଏମନ୍ତ ଶୁଣି ପ୍ରଦ୍ୟୁମ୍ନ କୋପେ ଗୁରୁତର
ବାଛି ବାଛି ପ୍ରହାରିଲା ତୀକ୍ଷ୍ଣ ତୀକ୍ଷ୍ଣ ଶର ।
ବୀରବର କର୍ଣ୍ଣ ସବୁ ଦୁରୁ ନିବାରଇ
ବେଢ଼ୁଁବେଢ଼ କୋପକରେ ରତିଦେବୀ ସାଇଁ ।
ଅନଳ ସମାନ ବାଣ କରଇ ସନ୍ଧାନ
ତୀକ୍ଷ୍ଣବାଣେ କର୍ଣ୍ଣ ତାହା କରଇ ଛେଦନ ।
ଅଗ୍ନିବାଣ କାମଦେବ ପ୍ରହାରିଲା କୋପେ
ମେଘାସ୍ତ୍ରେ ତା ନିବାରିଲା ଅଙ୍ଗଦେଶ ନୃପେ ।
ପର୍ବତାସ୍ତ୍ର ପ୍ରହାରିଲା କୃଷ୍ଣର କୁମର
ବଜ୍ରଶରେ ନିବାରିଲା କର୍ଣ୍ଣ ଧନୁର୍ଦ୍ଧର ।
ନାଗଫାଶବାଣ କୋପେ ପ୍ରହାରିଲା କାମ
ଗରୁଡ଼ାସ୍ତ୍ରେ ନିବାରିଲା କର୍ଣ୍ଣ ବହି ତମ ।
ଏମନ୍ତେ ଯେ ବେନି ବୀରେ କରନ୍ତି ସମର
ଦୁହିଙ୍କର ବାଣ ଦୁହେଁ କରନ୍ତି ସଂହାର ।
ବ୍ରହ୍ମବାଣ ନୀଳବାଣ ଆଦି ଯେତେ ବାଣ
ମରାମରି ହୋଇ ଦୁହେଁ କରୁଛନ୍ତି ରଣ ।
ଦେଖଣାହାରି ହୋଇଲେ ତହିଁ ବେନି ବଳ
ଦେଖୁଛନ୍ତି ଦୁହିଁଙ୍କର ରଣ କଉଶଳ ।
ଦୁହିଁଙ୍କର ବଳବୀର୍ଯ୍ୟ ଅଟଇ ସମାନ
ନିମିଷକେ କରନ୍ତି ସେ ଆଦାନ ସନ୍ଧାନ ।
ଯୁଦ୍ଧବିଦ୍ୟାରେ ଚତୁର ଅଟନ୍ତି ସେ ବେନି
ଦୁହେଁ ଦିଶନ୍ତି ସଂଗ୍ରାମେ ସାକ୍ଷାତେ କି ବହ୍ନି ।
ଦଇବବଳେ ବଳିଷ୍ଠ ହେଲା କର୍ଣ୍ଣବୀର
ତୂଣୀରୁ ବାଛି କାଢ଼ିଲା ସମ୍ମୋହନ ଶର ।
ମନ୍ତ୍ରିଣ ବିନ୍ଧିଲା ବାଣ ଗଲା ଗଗନରେ
କାମଦେବଙ୍କୁ ମୋହିତ କଲା ରଥପରେ ।
ଜାଣି ସାରଥି ତା ରଥ ନେଲା ବାହୁଡ଼ାଇ
ଜୟ ଶଙ୍ଖ ବଜାଇଲା କର୍ଣ୍ଣ ରଣଜୟୀ ।
କଉରବ ପାଣ୍ଡବଙ୍କ ଥାଟେ ସିଂହନାଦ
ଗୋବିନ୍ଦ ଆଦି ସକଳେ ଲଭିଲେ ବିଷାଦ ।
ଦୀନ ଗୋପୀନାଥ ବୋଲେ ବୋଲ ହରିହରି
ଭବବାରି ତରିବାକୁ ହରିନାମ ତରୀ ।

## ଅଭିମନ୍ୟୁ ସହିତ ଶାମ୍ବର ଯୁଦ୍ଧ ଓ ପରାଜୟ

ଶୁକ କହନ୍ତି ହୋ ଶୁଣ ପରୀକ୍ଷିତ ରାୟ
ଶାମ୍ବ ନାମେ ବୀର ଯେହୁ କୃଷ୍ଣର ତନୟ ।
ପ୍ରତିଜ୍ଞା କରିଣ ବୀର ହେଲା ଆଗୁଁସାର
ସୁନ୍ଦର ପଣରେ ନିନ୍ଦେ ଅଶ୍ୱିନୀ କୁମାର ।
କୃଷ୍ଣସମ ବୀର ସେହୁ ସଂଗ୍ରାମେ ନିପୁଣ
କରେ ଧରି ଅଜଗର ସମ ଶରାସନ ।
ବାର ବାର ଟଙ୍କାରି ସେ କମ୍ପାଇଲା ମହୀ
ବୀରଗର୍ବେ ଅଇଲା ସେ ରଥଗୋଟା ବାହି ।
ସୁଭଦ୍ରା କୁମର ଦେଖି ହେଲା ଆଗଭର
କେତନ ନାମେ ସାରଥି ଅଟଇ ତାହାର ।
ତାହାକୁ ଚାହିଁ ବୋଇଲା ବାହା ମୋର ରଥ
ନିବାରିବା ବେଗେ ଶାମ୍ବରଥ ଗତି ପଥ ।
ଏମନ୍ତ କହି ସୁଭଦ୍ରା ସୁତ ଅଭିମନ୍ୟୁ
ପିନାକ ଧନୁ ସମାନ କରେ ଧରି ଧନୁ ।
ଗଗନକୁ ଛାଇଦେଲା ଶରେ ଶର ଛନ୍ଦି
ଦେଖିଣ ଶାମ୍ବ କୁମର ତୀକ୍ଷ୍ଣ ବାଣ ବିନ୍ଧି ।
ଅଭିମନ୍ୟୁ ଶର ଜାଲ ପକାଇଲା କାଟି
ଗଗନ ମାର୍ଗକୁ ବୀର ରଥେ ଗଲା ଉଠି ।
ଦେଖି ଅଭିମନ୍ୟୁ ବୋଲେ ସାରଥି କେତନ
ମୋ ରଥ ଗୋଟାକୁ ଶୂନ୍ୟେ ବାହାନ୍ତୁ ବହନ ।
ବରୁଣ ସଙ୍ଗତେ ରଣ କଲା ଦୁର୍ଯ୍ୟୋଧନ
ଦୁର୍ଜୟ ସଙ୍ଗତେ ଯୁଦ୍ଧ କରେ ଚିତ୍ରସେନ ।
ମେଘବର୍ଣ୍ଣ ସଙ୍ଗେ କଲା ସମର ମରୁତ
ଜୟଦ୍ରଥ ସଙ୍ଗତରେ ଯୁଝିଲେ ଆଦିତ୍ୟ ।
ଭୀଷ୍ମ ସଙ୍ଗେ ତ୍ରିଲୋଚନ କରନ୍ତି ସମର
ଯମ ସଙ୍ଗେ ଯୁଦ୍ଧ କରେ ଦୁଃଶାସନ ବୀର ।
ଅଠାଣୋଇ ଭାଇ ସଙ୍ଗେ କପି ଯୂଥପତି
ନକୁଳ ସଙ୍ଗତେ ଯୁଦ୍ଧ କରେ ରକ୍ଷପତି ।
ହନୁସଙ୍ଗେ ଜରାସନ୍ଧ କଲାକ ସମର
ଅଳମ୍ବୁଷ ଅଙ୍ଗଦର ରଣ ଘୋରତର ।
ଆନନ୍ଦାନନ୍ଦ ସଙ୍ଗତେ ବୃଷକେତୁ ଯୁଦ୍ଧ
ଲକ୍ଷଣକୁମର ସଙ୍ଗେ ଯୁଝେ ଅନିରୁଦ୍ଧ ।
ଶାମ୍ବ ଅଭିମନ୍ୟୁର ସେ ଯୁଦ୍ଧ ହେଲା ପୁଣି
ଉଗ୍ରସେନ ସଙ୍ଗେ ଯୁଦ୍ଧ କରଇ ଶକୁନି ।

ସହଦେବ ସଙ୍ଗତରେ ଯୁଦ୍ଧ କରେ ବହ୍ନି
ଏହିପରି ଦୁଇଦଳ ହେଲେ ଅନ୍ୟୋଅନି ।
ଏମନ୍ତେ ସମର କଲେ ହୋଇ ମିଶା ମିଶି
ଶାଳଶିଳ ଘେନି ଋଷିକପି ରଣେ ପଶି ।
ଅସୁର ସଙ୍ଗେ ଅସୁରେ କରନ୍ତି ସମର
ସବୁହୁଁ ଋକ୍ଷ କପିଙ୍କ ବଳହିଁ ଅପାର ।
ବୃକ୍ଷ ପଥର ଫୋପାଡ଼ି କଲେ ଘୋର ରଣ
ତା ଉପରେ ଦେବାବାଣ ପଡ଼େ ଅନୁକ୍ଷଣ ।
ଭୟଙ୍କର ଗରଜନ କରି ନାଗବଳ
ଦନ୍ତ ପ୍ରହାରି ବେଗରେ ଛାଡ଼ନ୍ତି ଗରଳ ।
କୁରୁ ପାଣ୍ଡବଙ୍କ ଥାଟ ନ ପାରିଲେ ସହି
ପଳାଇଲେ ରଣ ଛାଡ଼ି ଏକମୁହାଁ ହୋଇ ।
ରହ ରହ ବୋଇଲେ ସେ ନ ରହନ୍ତି କେହି
ପଳାନ୍ତି ସକଳେ ଭୟେ ପଛକୁ ନ ଚାହିଁ ।
ସୈନ୍ୟ ଭାଙ୍ଗିବାର ଦେଖି ସେନାପତିମାନେ
ରଣଛାଡ଼ି ପଳାଇଲେ ନ ରହିଲେ ଜଣେ ।
ଭୀଷ୍ମ ଦ୍ରୋଣ ଆଦି ବୀରେ ନ ପାରନ୍ତି ସହି
ପଳାଇଲେ ଯୁଧିଷ୍ଠିର ଆଦି ସବୁଭାଇ ।
ଜରାସନ୍ଧ ଆଦି ଯେତେ ରାଜାମାନେ ଥିଲେ
ସମସ୍ତେ ତ ପଳାଇଲେ କେହି ନ ରହିଲେ ।
ଏକା ଭୀମ ଅରଜୁନ କରନ୍ତି ସମର
ତାଙ୍କ ପାଖେ ପାଖେ ଅଛି ଦଣ୍ଡୀ ନୃପବର ।
ନିଷ୍କମ୍ପ ଶରୀରେ ପାର୍ଥ ଗାଣ୍ଡୀବ ଧରିଲା
ମନେ ମନେ ଅନଳଙ୍କୁ ସୁମରଣା କଲା ।
ଜାଣି ଅନଳ ଦେବତା ହେଲେ ସୁପ୍ରସନ୍ନ
ଅର୍ଜ୍ଜୁନଙ୍କୁ ଦେଲେ ଆଣି ଦେବ ଅସ୍ତ୍ରମାନ ।
ଅକ୍ଷୟ ତୂଣୀର ଦେଲେ ଦେବୀ କାତ୍ୟାୟିନୀ
ଶୂଳ ପାଶୁପତ ଆଦି ଦେଲେ ଶୂଳପାଣି ।
ନନ୍ଦିଘୋଷ ରଥ ଗୋଟି ଚାଲେ ଘନ ଘନ
ଗାଣ୍ଡୀବ ଧନୁକୁ ଧରି ବାମେ ଅରଜୁନ ।
ଲକ୍ଷ ଲକ୍ଷ କୋଟି କୋଟି ବିନ୍ଧୁଅଛି ବାଣ
କକଡ଼ା ମାସରେ ଜଳଧାରା ପରମାଣ ।
ଅନୁକ୍ଷଣ ବାଣ ଖସି ପଡ଼ଇ ଗଗନୁ
ରୁଧିରରେ ଜର ଜର ସବୁଙ୍କର ତନୁ ।
ସହି ନ ପାରିଲେ କେହି ରଣେ ଦେଲେ ଭଙ୍ଗ
ରାମ କୃଷ୍ଣ ବ୍ରହ୍ମା ରୁଦ୍ର ପବନ ଅନଙ୍ଗ ।
ତେତିଶକୋଟି ଦେବତା ଦଶ ଦିଗପାଳ
ହନୁ ଜାମ୍ବବ ଅଙ୍ଗଦ ଋଷି କପିବଳ ।
ବିଭୀଷଣ ସହିତରେ ନ ରହନ୍ତି କେହି
ଭୀମ ପଛେ ଧାଇଁଛନ୍ତି ଭୀଷ୍ମ ମୂର୍ତ୍ତି ବହି ।
ଶତଶୃଙ୍ଗ ପ୍ରସାଦରୁ ସମରେ ଅଜୟ
ଗଦା ବୁଲାଇ କରଇ ଗଜଅଶ୍ୱ କ୍ଷୟ ।
ଋକ୍ଷ କପି ନ ରହନ୍ତି କେହି ତାର ଆଗେ
ଦେବ ଦାନବ ଗନ୍ଧର୍ବ କିନ୍ନରହିଁ ନାଗେ ।
ପଳାନ୍ତି ହେ ଯଦୁବଳ ପଛକୁ ନ ଚାହିଁ
ରହ ରହ ବୋଲି ପାର୍ଥ ବୃକୋଦର କହି ।
ଭୀମସେନ ଠାକୁର ହେ ନ କରି ସମର
ସମର କଲେ ଅଧର୍ମ ହୋଇବ ଆମ୍ଭର ।
ଧର୍ମଛଡ଼ା ହେଲେ ଦୁଃଖ ବହୁତ ପାଇବ
ପରଲୋକେ ଯାଇ ପୁଣି ନରକେ ପଡ଼ିବ ।
ସମସ୍ତେ ପଳାଇ ଯାଇ ପୁଣି ହେଲେ ଏକ
ଶୂନ୍ୟରେ ଥାଇ ନାରଦ ବୋଲେ ଧିକ ଧିକ ।
ଭୀମ ଅର୍ଜ୍ଜୁନକୁ ତୁମ୍ଭେ ନ ପାରିଲ ରଣେ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦି ଦେବଗଣେ ।
ନାରଦଙ୍କ ମୁଖୁଁ ଶୁଣି ଏମନ୍ତ ବଚନ
ପୁଣି ସକଳ ଧଇଲେ କରେ ଶରାସନ ।
ଏକମୁଖ ହୋଇ ଚାଲ କରିବା ସମର
ଏକାବେଳକେ କରିବା ଆୟୁଧ ପ୍ରହାର ।
ନିମିଷକେ ରଥ ବାହିନେଲା ଯେ ସାରଥି
ଆକାଶପଥେ ଭେଟିଲା ଶାମ୍ବ ମହାରଥୀ ।
ଦେଖି ଶାମ୍ବ କୋପେ ଏକ ଶକତି ମାଇଲା
ଅଭିମନ୍ୟୁ ସେ ଶକତି କାଟନ୍ତେ ଦେଖିଲା ।
ବାଣ ଏକ ପ୍ରହାରିଲା ଶାମ୍ବ ଛାଡ଼ି ରଡ଼ି
ଚାହୁଁ ଚାହୁଁ କୁହୁଡ଼ି ଯେ ଅଇଲାକ ମାଡ଼ି ।
ଦିଗଭାଗ ନ ଦିଶିଲା ଗଗନ ଅନ୍ଧାର
ଏ ସମୟେ ଶାମ୍ବରଥ ମିଳିଲା ଭୂମିର ।
ଅଭିମନ୍ୟୁ ତିମିରାସ୍ତ୍ରେ କୁହୁଡ଼ି ନିବାରି
ଦେଖିଲା ଶାମ୍ବ ରଥକୁ ଅଛି ବସୁନ୍ଧରୀ ।
ଧନୁଧରି କରୁଅଛି ସଇନ ସଂହାର
କୋପେ ଅଭିମନ୍ୟୁବୀର ଧରିପାଶେ ଶର ।
ଶାମ୍ବ ରଥକୁ ବାନ୍ଧିଲା ନ ପାରିଲା ଚଳି
ରଣସ୍ଥଳେ ଯୁଦ୍ଧ କଲେ ଦୁହେଁ ମହାବଳୀ ।

ରଥ ବନ୍ଧା ହେବା ଦେଖି କୃଷ୍ଣର କୁମର
କ୍ରୋଧଭରେ ପ୍ରହାରିଲା ମନଭେଦୀ ଶର ।
ବୋଇଲା ତୁ ଯାଇ ବାନ୍ଧ ଅଭିମନ୍ୟୁ ରଥ
ସାତତାଳ ବହଳରେ ବାନ୍ଧି ଶରପଥ ।
ଆଜ୍ଞାମାତ୍ରେ ମନଭେଦୀଶର ପଥ କଲା
ଅଭିମନ୍ୟୁ ରହୁବର ଚଳି ନ ପାରିଲା ।
ଦୁହିଁଙ୍କର ରଥ ତହୁଁ ନ ଚଳିଲା କାହିଁ
ଶାମ୍ବବୀର ବୀରଗର୍ବ ମନେ ମନେ ବହି ।
ଗଦାବର ପ୍ରହାରିଲା ରଥପରେ ଥାଇଁ
ଆସନ୍ତେ ସେ ଗଦାଧର ଗଗନ କମ୍ପାଇ ।
ସମରେ ଚତୁର ଅତି ସୁଭଦ୍ର କୁମର
କତୁରୀ ବାଣେ ତା ଖଣ୍ଡ ଖଣ୍ଡ କଲା ବୀର ।
ଗଦା ବ୍ୟର୍ଥ ଯିବା ଦେଖି ଶାମ୍ବ କରି କୋପ
ଶତେ ନାରାଚ ବିନ୍ଧିଲା କରେ ଧରି ଚାପ ।
ଏକବାଣେ କାଟିଲା ତା ଶର ଅଭିମନ୍ୟୁ
ଦୁଇ ବାଣରେ କାଟିଲା ଶାମ୍ବ ହସ୍ତ ଧନୁ ।
ଆନ ଧନୁ ଧରି ଶାମ୍ବ ବାଣେଦେଲା ଛାଇ
ମେଘ ପ୍ରାୟ ବାଣ ଯାଇ ଗଗନ ଘୋଟଇ ।
ଦେଖି ଅଭିମନ୍ୟୁ ବିନ୍ଧି ଅଧାଚନ୍ଦ୍ର ବାଣ
ଆକାଶେ ଭେଟି କାଟିଲା କରି ଛିନ୍ନଭିନ୍ନ ।
ଉଲୁକା ସମାନ ଖସି ତଳେ ପଡ଼ି ଆସି
ବିସ୍ତାରିଲା ପୃଥିବୀର ବକ୍ଷ ଶୋଭାରାଶି ।
ଅଧାଚନ୍ଦ୍ର ବିନ୍ଧି ପୁଣି ମାଇଲା ଶକତି
ଶାମ୍ବର ଦୃଷ୍ଟି ଅଛଇ ଅଧାଚନ୍ଦ୍ର ପ୍ରତି ।
ଏକାଳେ ଶକତି ଗୋଟା ପଡ଼ିଲା ଛାତିରେ
ଉତ୍ତାନଶାୟୀ ହୋଇଲା ରଥର ଉପରେ ।
ଜାଣି ସାରଥି ତା ରଥ ଘେନି ବାହୁଡ଼ିଲା
ଜୟ ଶଙ୍ଖ ଅଭିମନ୍ୟୁ ବୀର ବଜାଇଲା ।
ଜଗତଜନ ନାଥର ଅଭୟ ଚରଣ
ନିରତ ଯେ ଗୋପୀନାଥ ପଶଇ ଶରଣ ।

.....❖.....

## ବୃଷକେତୁ ସହିତ ସାତ୍ୟକିର ଯୁଦ୍ଧ ଓ ପରାଜୟ

କହନ୍ତି ଯେ ଶୁକବ୍ରହ୍ମା ଏଥୁ ଅନନ୍ତରେ
ଶାମ୍ବ ପରାଜୟ ଦେଖି ସାତ୍ୟକି ନେତ୍ରରେ ।
ରଥକେ ଆରୋହୀ ବୀର ଅଇଲେକ ଧାଇଁ
ବୀରନାଦରେ ଆକାଶ ପାତାଳ କମ୍ପଇ ।
ଅଗ୍ନି ତୁଲ୍ୟ ବାଣମାରି ବିନାଶିଲା ସୈନ୍ୟ
ଦୁରୁ ଦେଖି ବୃଷକେତୁ କର୍ଣ୍ଣର ନନ୍ଦନ ।
ରଥ ଚଳାଇଣ ଦେଲା ସାତ୍ୟକି ଛାମୁକୁ
ରହ ରହ କହି ବେଗେ ଧଇଲା ଧନୁକୁ ।
ପଞ୍ଚବାଣେ ତାରଧନୁ କଲା ଖଣ୍ଡ ଖଣ୍ଡ
କାଟି ପକାଇଲା ତାର ସାରଥିର ମୁଣ୍ଡ ।
ହାବୋଡ଼ା ଚକ୍ର ମାରି ତା ରଥ କଲା ଚୂନା
ଅଂଶକୁ ଛେଦିଲା ବାଣମାରି ତୀକ୍ଷ୍ଣ ମୂନା ।
ସମରେ ସାତ୍ୟକୀ ବୀର ଅତ୍ୟନ୍ତ ଚତୁର
ରଥୁ ଡେଇଁ ଛିଡ଼ାହୋଇ ରହିଲା ଭୂମିର ।
ଶକତି ଗୋଟାଏ ବୀର ଧରିଅଛି କରେ
ଜକ ଜକ ଦିଶଇ ସେ ଅଗ୍ନି ପରକାରେ ।
ସେ ଶକତି ଗୋଟା ଘେନି ସାତ୍ୟକୀ ଧାଇଁଲା
କୁରାଳ ଚକ୍ର ପରାୟ ଶୂନ୍ୟେ ବୁଲାଇଲା ।
ଶକତିରତେଜେ ପାଖେ ନ ରହିଲେ କେହି
ଖଣ୍ଡେ ଦୂର ଯାଇ ସର୍ବେ ଚାହିଁଛନ୍ତି ରହି ।
ଦେଖି ଯଦୁବଳଙ୍କର ଆନନ୍ଦ ଅପାର
କୁରୁପାଣ୍ଡବ ଥାଟରେ ପଡ଼େ ହାହାକାର ।
କର୍ଣ୍ଣ ନୟନରୁ ଲୁହ ଗଡ଼ି ପଡ଼େ ଉରେ
ହା ପୁତ୍ର କହି କାନ୍ଦଇ କର ମାରି ଶିରେ ।
ଯେକାଳେ ସାତ୍ୟକୀ ବୀର ମାଇଲା ଶକତି
ଆକାଶ ମାର୍ଗେ ଧରିଲା ଭୀଷଣ ମୂରତି ।
ଏକ ଦୃଷ୍ଟିରେ ଅନାଇଁ ଅଛନ୍ତି ସମସ୍ତେ
ବୃଷକେତୁ ବସିଅଛି ଆପଣାର ରଥେ ।
ବଇଷ୍ଣବୀ ଚକ୍ରକୁ ସେ ହସ୍ତରେ ଧଇଲା
ମନ୍ତ୍ରପଢ଼ି ସାତବାର ତାହାକୁ ମନ୍ତ୍ରିଲା ।
ବୋଇଲା ଏ ଶକତିକି ପକାଯାଇ ଛେଦି
ଏମନ୍ତ କହି ପେଷିଲା ରଥପରେ କୁଦି ।
ପବନହୁଁ ବେଗେ ଗଲା ସେହି ଚକ୍ରବର
ଚନ୍ଦ୍ରକୁ ରାହୁ ଗ୍ରାସଇ ଯେସନ ପ୍ରକାର ।
ଶକତିକି କାଟି ଖଣ୍ଡ ଖଣ୍ଡ କରି ଦେଲା
ଜୟ ଜୟ ନାଦ କୁରୁଥାଟରେ ଉଠିଲା ।
ଶକତି ବିଅର୍ଥ ହେବା ଦେଖିଣ ସାତ୍ୟକୀ
ବୃଷକେତୁ ରହୁବର ଧରି ବେଗେ ଝିଙ୍କି ।

ଲେଉଟାଇ ପକାଇବ ଭାଳିଅଛି ମନେ
ଜାଣି ବୃଷକେତୁ କରେ ପରିଘେକ ଘେନେ
ବୁଲାଇ ପିଟନ୍ତେ ମୋହେ ପଡ଼ିଲା ସାତ୍ୟକୀ
ଦିନରାତି ଗୋପୀନାଥ ଗୋବିନ୍ଦଙ୍କୁ ଡାକି ।

·····※·····

## ଦ୍ରୋଣଙ୍କ ସହିତ ଇନ୍ଦ୍ରଙ୍କର ଯୁଦ୍ଧ ଓ ପରାଜୟ ଏବଂ ଗୋଳଯୁଦ୍ଧ

କହନ୍ତି ହେ ଶୁକବ୍ରହ୍ମା ଶୁଣ ତୁ ନୃପତି
ସାତ୍ୟକୀ ହାରିବା ଦେଖି ଦେବ ଶଚୀପତି ।
ମାତଳିକିବୋଇଲେ ତୁ ମୋର ରଥବାହା
ଆଜି ଯୁଦ୍ଧ ଦେଖୁ ମୋର ରହି ଚଉବାହା ।
ଏମନ୍ତ କହିଣ କରେ ଧଇଲେକ ଧନୁ
ଦେଖି ଆଗେ ଓଗାଳିଲେ ଭରଦ୍ୱାଜ ସୁନୁ ।
ଇନ୍ଦ୍ର ସଙ୍ଗେ ଦ୍ରୋଣଙ୍କର ହେଲା ଘୋରରଣ
ଦୁହେଁ ଧନୁର୍ଦ୍ଧର ଦୁହେଁ ସମରେ ନିପୁଣ ।
ଶକତି ମୂଷଳ ଚକ୍ର ହେଲେ ମରାମରି
ଦ୍ରୋଣଙ୍କର ଶର ଇନ୍ଦ୍ର ସମ୍ଭାଳି ନ ପାରି ।
ପଛଘୁଞ୍ଚା ଦେବାଦେଖି ବୋଇଲେ ଗୋବିନ୍ଦ
ଏକାବେଳକରେ ଉଠି କର ଗୋଳଯୁଦ୍ଧ ।
ନାରଦ ମିଳିଲେ ଆସି ଏକାଳେ ଗଗନେ
ସାନନ୍ଦ ହୁଅନ୍ତି ମୁନି କଳି ଦରଶନେ ।
କଳି ଧୋକଡ଼ି ମୁଣିକି ଝାଡ଼ିଦେଲେ ତହିଁ
ତାଳି ମାରିଣ ନାଚିଲେ ଲାଗୁ ଲାଗୁ କହି ।
ଲାଗିଲା ବିଷମ ଗୋଳ ଯୁଦ୍ଧ ବେନିଥାଟେ
କରନ୍ତି ଯୁଦ୍ଧ ଭେଟନ୍ତି ଯେ ଯାହାକୁ ବାଟେ ।
ରଥୀ ରଥୀ ଗୁଜ ଗୁଜ ପଦାତି ପଦାତି
ଏମନ୍ତ ହୋଇଲା ଘୋର ଯୁଦ୍ଧ ଦିନରାତି ।
କାର୍ତ୍ତିକେୟ ଅରଜୁନ ଭୀମ ହଳଧର
କୃଷ୍ଣ ସଙ୍ଗେ ଅଶ୍ୱତ୍ଥାମା କରଇ ସମର ।
ଘଟୋତ୍କଚ ସଙ୍ଗେ ଯୁଝେ ବୀର ବିଭୀଷଣ
ସାତ୍ୟକୀ ସଙ୍ଗେ ଶଲ୍ୟର ହେଲା ଘୋରରଣ ।
ଦ୍ରୋଣ ସଙ୍ଗେ ଯୁଦ୍ଧକଲେ ଦେବ ମଘବାନ
ବ୍ରହ୍ମା ସଙ୍ଗରେ ଯୁଝଇ ଯୁଧିଷ୍ଠି ରାଜନ ।
ଏମନ୍ତ ବିଚାରି ସର୍ବେ ଲେଉଟିଲେ ପୁଣି
ରଣକ୍ଷେତ୍ରେ ରହିଛନ୍ତି ଭୀମ ଫାଲ୍‌ଗୁନୀ ।

ଏକମୁଖ ହୋଇ ବାଣ ବରଷିଲେ କୋପେ
ବୃକ୍ଷ ପଥର ମାରନ୍ତି କେହି ବୀର ଦର୍ପେ ।
କେ ଶର ବିନ୍ଧନ୍ତି କେହି ମାରନ୍ତି ଶକତି
ଗଦା ମୁଦ୍‌ଗୁର ଶାବେଳୀ ପରିଘ ଯେ କାତି ।
ଦେବଅସ୍ତ୍ର ଗନ୍ଧର୍ବାସ୍ତ୍ର ଦାନବାସ୍ତ୍ର ପଡ଼େ
ଦେଖି କୋପେ ଭୀମସେନ ସିଂହରଡ଼ି ଛାଡ଼େ ।
ଗଦା ବୁଲାଇ ସକଳ କରେ ନିବାରଣ
ଘୋଟକୀ ଉପରେ ବସି ଦଣ୍ଡୀ ନୃପରାଣ ।
ଧନୁ ଧରି ଅନୁକ୍ଷଣେ ବାଣ ନିବାରଇ
କୋପେ ଅର୍ଜ୍ଜୁନ ଗାଣ୍ଡୀବ ଧନୁକୁ ଧରଇ ।
କାହାକୁ ମାରଇ ପାଞ୍ଚ କାହାକୁ ପନ୍ଦର
କାହାକୁ ସାତ ପଚିଶ ବିଂଶ ଦଶ ବାର ।
ଅନୁକ୍ଷଣେ ବାଣ ପଡ଼େ କୋଟି କୋଟି ଯାଇ
ରୁଧିରରେ ଜର ଜର ସବୁଙ୍କର ଦେହୀ ।
ସଂଗ୍ରାମରେ ଅସକତ ହେଲେ ସବୁ ବୀରେ
ଆୟୁଧମାନଙ୍କୁ ଧରି ନ ପାରିଲେ କରେ ।
କୁରୁପାଣ୍ଡବେ ପଳାଇ ଖଣ୍ଡେ ଦୂରେ ରହି
ଯୁଦ୍ଧ ଦେଖୁଛନ୍ତି ଡରେ ନ ପଶନ୍ତି କେହି ।
ବେଳୁବେଳ ଭୀମର ଯେ କୋପ ଗୁରୁତର
ଗଦା ପିଟି ଗୁଜ ଅଶ୍ୱ କରଇ ସଂହାର ।
ଅର୍ଜ୍ଜୁନର ବାଣ ଆସି ପଡ଼େ ଘନ ଘନ
ସହି ନ ପାରି ସକଳେ କଲେ ପଳାୟନ ।
ପୁଣି ଏକାଠି ହୋଇଣ କରନ୍ତି ବିଚାର
ଧିକ ଧିକ ବୀରପଣ ଅଟଇ ଆମ୍ଭର ।
ନିଜ ନିଜ ଅସ୍ତ୍ରେ ଚାଲ ପାଣ୍ଡବ ମାରିବା
ଧର୍ମ ଅଧର୍ମ ବିଚାର କିଛି ନ କରିବା ।
ଭୀମ ଅର୍ଜ୍ଜୁନକୁ ଯେବେ ନ ପାରିବା ମାରି
ଦେଖାଇବା ଏ ନିର୍ଲ୍ଲଜ ମୁଖକୁ କିପରି ।
ଶ୍ରୀକୃଷ୍ଣ ଧଇଲେ କରେ ଚକ୍ର ସୁଦର୍ଶନ
ରୁଦ୍ରକରେ ପାଶୁପତ ଶରଙ୍କ ପ୍ରଧାନ ।
ବ୍ରହ୍ମାଙ୍କ କରେ ବିରାଜୁଅଛି ବ୍ରହ୍ମଶର
କୁବେର ଅସ୍ତ୍ରକୁ କୋପେ ଧଇଲା କୁବେର ।
ପବନ ପବନାଶର ଧରି ହେଲେ ଉଭା
ହଳମୂଷଳ ରାମଙ୍କ କରେ ପାଏ ଶୋଭା ।
ଅଗ୍ନିଶର ବୈଶ୍ୱାନର କରେ ବିରାଜଇ
ଯମକରେ କାଳଚକ୍ର ଗୋଟା ଶୋଭାପାଇ ।

ସୂର୍ଯ୍ୟାବର୍ତ୍ତ ଚକ୍ର ଅଛି ଆଦିତ୍ୟଙ୍କ କରେ
ନାଗଫାଶ ଶର ଅଛି ବାସୁକି ହସ୍ତରେ ।
ଇନ୍ଦ୍ରଶର ଇନ୍ଦ୍ର କରେ ପାଉଅଛି ଶୋଭା
ଶକ୍ତିଘେନି କାର୍ତ୍ତିକେୟ କୋପେ ହେଲେ ଉଭା
ଏମନ୍ତେ ଦେବ ଗନ୍ଧର୍ବ ଉରଗ କିନ୍ନର
ନିଜ ନିଜ ଅସ୍ତ୍ର ଧରି ହେଲେ ଆଗଭର ।
ଦେଖି ମହାଭୟ କଲେ ଯୁଧିଷ୍ଠିର ରାୟ
ଦ୍ରୋଣ ବିଦୁର ଆବର ଗଙ୍ଗାର ତନୟ ।
ବିଚାରନ୍ତି ଭୀମାର୍ଜ୍ଜୁନ ନ ବର୍ତ୍ତନ୍ତି ଆଉ
ଚକ୍ରେ ଛେଦିବ ନିଶ୍ଚୟ ଆଜି ମହାବାହୁ ।
ଧର୍ମରାଜ ନୟନରୁ ଅଶ୍ରୁଜଳ ଗଳେ
ଭୀଷ୍ମ ଦ୍ରୋଣ ଆଦି ବୀରେ କାନ୍ଦନ୍ତି ବିକଳେ
ଦୀନ ଗୋପୀନାଥ ବୋଲେ ବୋଲ ହରି ହରି
ହରି ବୋଇଲେ ବିପଦୁଁ ବେଳେ ଯିବ ତାରି ।

.....❋.....

## ଅଷ୍ଟ ଶକ୍ତିଙ୍କର ଆଗମନ

ଏଥୁ ଅନନ୍ତରେ କହେ ଶୁକ ମହାଯତି
ଯୁଦ୍ଧ ଦେଖୁଥିଲେ ରଥେ ସୁଭଦ୍ରା ଯେ ସତୀ ।
ଅନୀତି ସଂଗ୍ରାମ ଦେଖି ମନେ ପାଇ ଭୟ
ରୁକ୍ମିଣୀ ଦେବୀଙ୍କ ପାଦେ ଲଗାଇଲେ ଲୟ
ରୁକ୍ମିଣୀ ଦେବୀ ଯେ ଥିଲେ ଦ୍ୱାରାବତୀ ପୁରେ
ଜାଣିଲେ ଆପଦେ ମୋତେ ସୁଭଦ୍ରା ସୁମରେ ।
ତେଣୁ ମୋହର ଆସନ କମ୍ପେ ଘନ ଘନ
ସୁଭଦ୍ରାଙ୍କୁ କରିଅଛି ଅଭୟ ପ୍ରଦାନ ।
ଏତେବେଳେ ଯେବେ ମୁହିଁ ନ ପାରିବି ରଖି
କି ବୋଲି ବୋଲିବେ ମତେ ପ୍ରଭୁ ପଦ୍ମ ଆଖି ।
ଉପହାସ କରିବେ ମୁଁ ନ ପାରିବି ସହି
ଏମନ୍ତ ବିଚାରି ଲୟ ଲଗାଇଲେ ତହିଁ ।
କେଣେ ଅଛୁ ମାତ ବେଗେ ଆସ ମାହେଶ୍ୱରୀ
ବର ଦେଇ ରହିଲୁ କି ସୁଖେ ତୋର ପୁରୀ ।
କଇଲାସ ପୁରେ ଥିଲେ ଦେବୀ ମାହେଶ୍ୱରୀ
ଆସନ ଟଳନ୍ତେ ପଦ୍ମାଦେବୀକି ପଚାରି ।
କି ନିମନ୍ତେ ଘନ ଘନ କମ୍ପଇ ଆସନ
ପଦ୍ମା ବୋଇଲେ ହସ୍ତିନାପୁରେ ତ୍ରିଲୋଚନ ।
ତେତିଶ କୋଟି ଦେବତା ଗୋବିନ୍ଦ ସହିତେ
ପାଣ୍ଡବଙ୍କ ସଙ୍ଗେ ରଣ ଘୋଟକୀ ନିମନ୍ତେ ।
ରଣ ଭୂମିରେ ବିପଦ ପଡ଼ିଲା କି ମାତ
ଏମନ୍ତ ଶୁଣି ଯୋଗରେ ବସିଲେ ମୁହୂର୍ତ୍ତ ।
ଜାଣିଲେ ରୁକ୍ମିଣୀ ଦେବୀ କରେ ସୁମରଣା
ପଦ୍ମାକୁ ବୋଇଲେ ଉଠ ଯିବା ଗୋ ହସ୍ତିନା
ମୋର ସେନାଗଣ ସାଜି ଆଣ ଲୋ ବହନ
ଦେଖିବା କେମନ୍ତେ ଯୁଦ୍ଧ ହୁଏ ତହିଁ ପୁଣ ।
ନାରାୟଣୀକି କହ ସେ ଆସୁ ବେଗ ହୋଇ
ବ୍ରାହ୍ମଣୀକି ଡାକିଆଣ ବେଗେ ତୁ ଲୋ ଯାଇ ।
ନାରସିଂହୀ କଉମାରୀ ବାରାହି ଆବର
ଚାମୁଣ୍ଡା ଅପରାଜିତା ଇନ୍ଦ୍ରାଣି ହେ ମୋର ।
ଏ ଆଠଶକ୍ତି ଆସନ୍ତୁ ସାଜିଣ ସଇନି
ମୁହିଁ ଯାଉଅଛି ମୋର ସୈନ୍ୟ ସଙ୍ଗେ ଘେନି ।
ଏମନ୍ତ ଆଜ୍ଞା ଘେନିଣ ପଦ୍ମାଦେବୀ ଗଲେ
ବାରତା ଦେଇ ତକ୍ଷଣେ ଲେଉଟି ଅଇଲେ ।
ଶୁଣି ବ୍ରାହ୍ମଣୀ ବସିଲେ ହଂସର ପଠିରେ
ପାଞ୍ଚକୋଟି ଦେବୀଗଣ ଘେନି ସଙ୍ଗତରେ ।
ଅକ୍ଷସୂତ୍ର କମଣ୍ଡଳୁ ଧରିଛନ୍ତି ହସ୍ତେ
ଅଙ୍ଗ ଭୂଷଣ ବିରାଜୁଅଛି ଯେଝାମତେ ।
ବ୍ରହ୍ମ ଶକତି ଆୟୁଧ ସବୁ ଦେବୀଙ୍କର
ବେଗେ ମିଳିଲେ ସେ ଆସି କଇଳାସପୁର ।
ଦଶପଦ୍ମ ଦେବୀଗଣ ଘେନି ନାରାୟଣୀ
ଗରୁଡ଼ ପୃଷ୍ଠରେ ଚଢ଼ି ଆସନ୍ତି ସେ ପୁଣି ।
ଶଙ୍ଖ ଚକ୍ର ଗଦାପଦ୍ମ ଶୋହେ ଚାରିକରେ
ଦିଗ ଉଜ୍ଜ୍ୱଳ ଦିଶଇ ଅଙ୍ଗ ଭୂଷଣରେ ।
ବୈଷ୍ଣବୀ ଶକତି ଗୋଟା ଆୟୁଧ ତାଙ୍କର
ତୁରିତେ ଆସି ମିଳିଲେ କଇଳାସ ପୁର ।
ମୟୂର ପୃଷ୍ଠରେ ବିଜେ କରି କଉମାରୀ
ପଞ୍ଚ ଅୟୁତ ସଇନି ସମସ୍ତେ କୁମାରୀ ।
ଅଙ୍ଗ ଭୂଷଣ ତାଙ୍କର ନିନ୍ଦେ ଚନ୍ଦ୍ର ଜ୍ୟୋତି
ଶକତି ଆୟୁଧ କରେ ଧରିଣ ଅଛନ୍ତି ।
ତେତିଶକୋଟି ସଇନି ଅପୂର୍ବ ସୁନ୍ଦରୀ
ଅଙ୍ଗଭୂଷଣ ତାଙ୍କର ଦିଶେ ତାରାପରି ।
ତାହାଙ୍କୁ ସଙ୍ଗରେ ଘେନି ଆସନ୍ତି ଇନ୍ଦ୍ରାଣି
ଐରାବତ ଗଜ ଚଢ଼ି ବଜ୍ର ଶକ୍ତି ଘେନି ।
ବିଜେକଲେ ଯହିଁଛନ୍ତି ଦେବୀ ମାହେଶ୍ୱରୀ
ଏଥୁ ଅନନ୍ତରେ ତୁହୋ ଶୁଣ ଦଣ୍ଡଧାରୀ ।

ନାରସିଂହୀ ସଙ୍ଗେ ଘେନି ନୃସିଂହ ଶକତି
ଏକପଦ୍ମ ଦେବୀ ତାଙ୍କ ସଙ୍ଗତେ ଅଛନ୍ତି ।
ମହା ମହା ତୀକ୍ଷ୍ଣ ନଖ ଆୟୁଧ ତାଙ୍କର
ଦିଶନ୍ତିସେ ଦେବୀଗଣ ଅତି ଭୟଙ୍କର ।
ବରାହ ଶକତି ଘେନି ବାରାହୀ ଅଇଲେ
ଗୋଟିଏ ଦେବୀ ଅଛନ୍ତି ତାଙ୍କ ସଙ୍ଗତରେ ।
ସ୍ଥୂଳ ତୀକ୍ଷ୍ଣ ଦନ୍ତ ଅଟେ ଆୟୁଧ ତାଙ୍କର
ତାହାଙ୍କ ଗର୍ଜନ ନାଦେ କମ୍ପେ ତିନିପୁର ।
ଭୈରବ ଶକତି ଘେନି ଚାମୁଣ୍ଡା ଅଇଲେ
ବାରକୋଟି ଦେବୀ ତାଙ୍କ ସଙ୍ଗତରେ ଥିଲେ ।
ସମସ୍ତଙ୍କ ଗଳେ ମୁଣ୍ଡମାଳା ବିରାଜଇ
ଶିବ ବାହନରେ ବିଜେ କଲେ ମହାମାଈ ।
ଅପରାଜିତା ଅଇଲେ ଘେନି ଶିବ ଶକ୍ତି
ଶିବଗଣ ତାହାଙ୍କର ସଙ୍ଗରେ ଅଛନ୍ତି ।
ଶୂଳ ଶକତି ଆୟୁଧ ଅଟେ ତାହାଙ୍କର
ଦିଶନ୍ତି ଯେ ଦେବୀଗଣ ମହା ଭୟଙ୍କର ।
ମାହେଶ୍ୱରୀ ବିଜେ କଲେ ସିଂହର ଉପରେ
ଚଉଷଠୀ କୋଟି ଯୋଗ୍ନୀଗଣ ସଙ୍ଗତରେ ।
ଭୂତ ପ୍ରେତ ପିଶାଚୁଣୀ ଡାକିନୀ ଶାକିନୀ
ଛିନ୍ନମସ୍ତା ଉଗ୍ରଚଣ୍ଡୀ କାଳୀ କାତ୍ୟାୟିନୀ ।
ଏକଭୁଜା ଦ୍ୱିଭୁଜା କେ ତ୍ରିଭୁଜା ଅଟଇ
ଚତୁର୍ଭୁଜା ପଞ୍ଚଭୁଜା କେଉଁ ଦେବୀ ହୋଇ ।
କିଳିକିଳା ନାଦ କରି ଧାମନ୍ତି ନାଚନ୍ତି
ତାଳିମାରି ହୁଳହୁଳି ଦେଇ କେ ଆସନ୍ତି ।
ତ୍ରିନୟନା ଦ୍ୱିନୟନା ବହୁତ ନୟନା
କେହି କଙ୍କାଳ ଧାରିଣୀ କେହି ଶବାସନା
ରୁଧିର ମାଂସ ଆହାର ଅଟଇ କାହାର
କାହା ହସ୍ତେ କାତି କାହା ହସ୍ତରେ ଖର୍ପର ।
କାହା ହସ୍ତେ ଧନୁଶର କାହା ହସ୍ତେ ପାଶ
କାହାର ହସ୍ତେ ମୁଦ୍‌ଗର କା ହସ୍ତେ ଅଙ୍କୁଶ ।
କେହି ଖଡ଼ଗ ଧରିଣ ଶୂନ୍ୟେ ମାରେଚିରା
କାହାର କେଶ ମୁକୁଳା ଆବର ନୁଖୁରା ।
ଶଙ୍ଖ ଡମ୍ବରୁ କାହାଳୀ ଘୁମୁରା ବଜାଇ
ଖେମଟା ନାଚରେ ଆଗଭର ହୋଇଯାଇ ।
ଟହ ଟହ କହ କହ ନାଦ ଅଟେ କାର
କାହାର ବଦନ ଗୋଟା ଅତି ଭୟଙ୍କର ।

ଦେବୀଗଣ ଆସୁଛନ୍ତି ଶୂନ୍ୟପୁର ଘୋଟି
କ୍ଷଣକେ କି ସଂହାରିବେ ନବକୋଟି ସୃଷ୍ଟି ।
ସୂର୍ଯ୍ୟ ଦେବତା ଭୟରେ ଲୁଚିଲେ ଗଗନେ
ଶରଣ ମୁଁ ଗୋପୀନାଥ ସେ ଦେବୀ ଚରଣେ ।

.....*.....

## ଅର୍ଜ୍ଜୁନଙ୍କ ସହିତ କୃଷ୍ଣ ପ୍ରଭୃତିଙ୍କର ଯୁଦ୍ଧ ଓ ପରାଜୟ

କହନ୍ତି ଯେ ଶୁକବ୍ରହ୍ମା ଶୁଣ ଦଣ୍ଡଧର
ହର ବ୍ରହ୍ମା ରାମକୃଷ୍ଣ ବାସବ କୁବେର ।
ଯମ ସୋମ ନଇର୍ରତ ବରୁଣ ପବନ
ବୈଶ୍ୱାନର ଦେବତା ଯେ ଗନ୍ଧର୍ବ ତପନ ।
ବାସୁକି ଜାମ୍ବବ ହନୁ ଅଙ୍ଗଦ ସହିତେ
ନିଜ ନିଜ ଅସ୍ତ୍ର ଘେନି ଉଠିଲେ ସମସ୍ତେ ।
ନନ୍ଦିଘୋଷ ରଥେ ଥାଇ ଦେଖଇ ଅର୍ଜ୍ଜୁନ
ଯୋଗାସନେ ବସି କଲା ଅନଳକୁ ଧ୍ୟାନ ।
କରଯୋଡ଼ି ବୋଲଇ ହେ ଅନଳ ଦେବତା
ତୋହର ମହିମା କେତେ ନ ଜାଣଇ ଧାତା ।
ତୁ ଯଜ୍ଞପୁରୁଷ ମେଷ ବାହନ ତୋହର
ତୁ ଅନାଦି ବ୍ରହ୍ମା ତୋର ନାହିଁ ପରାପର ।
ଖାଣ୍ଡବ ବନ ଦହନେ ଦେଇଥିଲୁ ବର
ତୋତେ ଜିଣି ନ ପାରିବେ ବ୍ରହ୍ମା ବିଷ୍ଣୁ ହର ।
ସବୁ ଅସ୍ତ୍ରଙ୍କର ମନ୍ତ୍ର କହିଦେଲୁ ମୋତେ
ଆବର କହିଲୁ ତୁହି ବସି ଶୁଦ୍ଧ ଚିତ୍ତେ ।
ଗୋଟି ଗୋଟି କରି ମନ୍ତ୍ର କଲେ ତୁହି ଜପ
ସକଳ ଅସ୍ତ୍ର ଆସିବ ତୋହର ସମୀପ ।
ତୋହର କଥାକୁ ଦେବ ଗୁରୁଜ୍ଞାନ କରି
ଜପୁଅଛି ଅସ୍ତ୍ର ପ୍ରାପ୍ତହେଉ ଆସି କରି ।
ଏତେ କହି ବ୍ରହ୍ମ ମନ୍ତ୍ର ଜପିଲା ବାସବୀ
ସୁରରାଜର ହସ୍ତରୁ ଅଇଲା ଯେ ପବି ।
ବ୍ରହ୍ମା ହସ୍ତୁ ବ୍ରହ୍ମଶର ରୁଦ୍ର ପାଶୁପତ
ସୂର୍ଯ୍ୟାବର୍ତ୍ତ ଚକ୍ର ଘେନି ଥିଲେ ଯେ ଆଦିତ୍ୟ ।
ସେ ଅଇଲା ନ ରହିଲା ତାହାଙ୍କର କରେ
ବରୁଣର ପାଶ ଅସ୍ତ୍ର ଆସେ ଧୀରେ ଧୀରେ ।
କୁବେର ହସ୍ତରେ ଅସ୍ତ୍ର ନ ରହି ଆସିଲା
ଯମ କାଳଦଣ୍ଡ ଗୋଟା କରେ ଧରିଥିଲା ।

ନ ରହିଲା ସେ ଅଇଲା ଅର୍ଜୁନର ପାଶ
ବାସୁକି ନାଗ ହସ୍ତରୁ ଆସେ ନାଗପାଶ ।
ଅଗ୍ନି ହସ୍ତୁ ଅଗ୍ନିଶର ଗଦା କୁବେରର
ଚନ୍ଦ୍ର କରୁ ଅଧାଚନ୍ଦ୍ର ମେଘୁଁ ମେଘଶର ।
ପର୍ବତ କରୁ ପର୍ବତ ଅସ୍ତ୍ର ଯେ ଅଇଲା
ତେତିଶ କୋଟି ଦେବଙ୍କ ଆୟୁଧ ଯେ ଥିଲା ।
ସକଳେ ଆସି ମିଳିଲେ ଅର୍ଜୁନର ରଥେ
ଯକ୍ଷ ଗନ୍ଧର୍ବ କିନ୍ନର ଅସ୍ତ୍ରଧାରୀ ଯେତେ ।
ସମସ୍ତ ଅଇଲା ମନ୍ତ୍ର ବଳେ ପାର୍ଥକତି
କାର୍ତ୍ତିକେୟଙ୍କ ହସ୍ତରୁ ଅଇଲା ଶକତି ।
ପାଶ ଅଙ୍କୁଶ ଅଇଲା ଗଣେଶଙ୍କ କରୁ
ନାରାୟଣ ଅସ୍ତ୍ର ଆସେ ଶ୍ରୀ ବିଷ୍ଣୁ ହସ୍ତରୁ ।
ଆୟୁଧରେ ନନ୍ଦିଘୋଷ ରଥ ଗଲା ପୂରି
ହରି ଏକା ସୁଦର୍ଶନ ଚକ୍ର ଅଛି ଧରି ।
ତାହା ଭିନ୍ନ କିଛି ନାହିଁ ଗୋବିନ୍ଦ ହସ୍ତରେ
ଲଙ୍ଗଳ ଗୋଟି ବିରାଜେ ବଳରାମ କରେ ।
ହନୁମାନ କରେ ଅଛି ଏକଇ ପର୍ବତ
ଶାଳବୃକ୍ଷଧରି ଅଛି ବୀର ବାଳିସୁତ ।
ଜାମ୍ବବ ଧରି ଅଛଇ ଜାମୁଗଛ ଗୋଟା
ନାରଦ ବୋଇଲେ ତୁମ୍ଭେ ହେଲ ହଟହଟା ।
ନିରସ୍ତ୍ର ନିଶତ ହୋଇ ରହିଛ କିମ୍ପାଇଁ
ଅର୍ଜୁନ ତ ଅସ୍ତ୍ରଯାକ ନେଲାଣି ଛଡ଼ାଇ ।
ନିର୍ଲ୍ଲଜ ମୁଖ ଦେଖାଇ ରହିଛି କେମନ୍ତେ
ଆସିଥିଲ ଯୁଝିବାକୁ ଅର୍ଜୁନ ସଙ୍ଗତେ ।
ଏକା ବାଣକେ ସବୁରି ପ୍ରାଣ ନେବ ହରି
ଧର୍ମବନ୍ତ ପ୍ରାଣୀ ଅଟେ ସେ ଗାଣ୍ଡୀବଧାରୀ ।
ନିରସ୍ତ୍ର ନିଶତ ଦେଖି ନ ମାରେ ତୁମ୍ଭଙ୍କୁ
ଗୋବିନ୍ଦ ଭୀତେ କି ଜାଣିପାରେ ପାଣ୍ଡବଙ୍କୁ ।
ନ ଜାଣି କି ଭୀମ ଘରେ ଘୋଟକୀ ରଖିଲା
କାହାରି ମୁଖରୁ କିଛି ବାକ୍ୟ ନ ସ୍ଫୁରିଲା ।
ହେଠ ବଦନେ ଅଛନ୍ତି କେଡ଼େ ବଡ଼ ଥାଟ
ଦେଖି ଆନନ୍ଦ ହୋଇଲେ ଧର୍ମଙ୍କର ଚାଟ ।
ଭୀଷ୍ମ ଦ୍ରୋଣ ବୋଇଲେରେ ଧନ୍ୟ କୁନ୍ତୀସୁତ
କି ଲକ୍ଷଣେ ହୋଇଥିଲୁ ବାବୁ ତୁହି ଜାତ ।
ତିନି ଭୁବନ ମଧ୍ୟରେ ଏକା ତୁହି ବୀର
ବହୁତ ପ୍ରଶଂସା ପୁଣି କଲେକ ବିଦୁର ।

ଦୁର୍ଯ୍ୟୋଧନ ଆଦିଙ୍କର ମୁଖ ଗଲା ଶୁଖି
ସଞ୍ଜୟଙ୍କୁ ପଚାରନ୍ତି ଧୃତରାଷ୍ଟ୍ର ଡାକି ।
ଯୁଦ୍ଧର ଯେ ସମାଚାର କହନ୍ତି ସଞ୍ଜୟ
ଶୁଣି ଅନ୍ଧ ନୃପବର ଆକୁଳ ହୃଦୟ ।
ବାହାର ମନେ ପ୍ରଶଂସା କରଇ ବହୁତ
ଏଥୁ ଅନନ୍ତରେ ତୁହେ। ଶୁଣ ପରୀକ୍ଷିତ ।
ନାରଦଙ୍କ କଟୁବାଣୀ ନ ସହିଣ ହରି
ରଥରୁ ଡେଇଁ ପଡ଼ିଲେ କରେ ଚକ୍ରଧାରୀ ।
ଆଜି ଅପାଣ୍ଡବା ମୁହିଁ କରିବି ମେଦିନୀ
ଏମନ୍ତ କହି ଧାମନ୍ତି ଦେବ ଚକ୍ରପାଣି ।
ବଳରାମ ଅଛନ୍ତି ଯେ ତାଙ୍କ ସଙ୍ଗତରେ
ହନୁ ଅଙ୍ଗଦ ଜାମ୍ବବ ଧାମନ୍ତି ପଛରେ ।
ବୋଇଲେରେ ପାର୍ଥ ତୁହି ଅଛୁ ରଥପରେ
ଆବର ସକଳ ଅସ୍ତ୍ର ରଖିଛୁ ରଥରେ ।
ଘେନ ତୋର ଧନୁ ବେଗେ ବିଳମ୍ବ ନକର
ଯେତେ ଅସ୍ତ୍ର ଅଛି ସବୁ ଆଗ ମାରି ସାର ।
ଦେଖିବା ତୋ ବୀରପଣ ଆଜିର ସମରେ
ତୋହର ଶିର କାଟିବି ଆଜି ଏ ଚକ୍ରରେ ।
ପଛେ ଭୀମ ମୁଣ୍ଡକାଟି ପକାଇବି ଯାଇଁ
କୁରୁକୁଳରେ ଗୋଟିଏ ନ ରହିବେ କେହି ।
ଏମନ୍ତ କହି ଦିଅନ୍ତି ମହା ଭୟଙ୍କର
ଗାଣ୍ଡୀବ ରଖି ଅର୍ଜୁନ ଯୋଡ଼ି ବେନିକର ।
ବୋଇଲେ ହେ ନାଥ ତୁମ୍ଭେ ଜଗତର ପତି
ଚାରିଖାନି ଜୀବ ହେଲେ ତୋ ଦେହୁ ଉତ୍ପତ୍ତି ।
ମାରୁ ତାରୁ ଏକା ତୁହି ତୋ ବିନା କେ ନାହିଁ
ଚାହିଁଲେ ସ୍ୱାମୀ ପ୍ରଳୟ କରି ପାରୁ ତୁହି ।
ଯେତେ ଅସ୍ତ୍ର ଶସ୍ତ୍ର ଅଛି ଏ ସବୁ ତୋହର
ସୁଦର୍ଶନ ଚକ୍ରକୁ ତୁ ଧରିଅଛୁ କର ।
ସେ ଚକ୍ର ବହିଛୁ ଦୁଷ୍ଟ ନିବାରିବା ପାଇଁ
ଧର୍ମବନ୍ତ ପ୍ରାଣୀଙ୍କର ପାଖକୁ ନ ଯାଇ ।
ମୋହର ଅଛଇ ନାଥ ଏକ ଅସ୍ତ୍ରବର
ତାକୁ ତ ଜିଣି ପାରିବ ଚକ୍ର ଯେ ତୋହର ।
ଏ ଅସ୍ତ୍ରର ନାମ ସ୍ୱାମୀ କହୁଅଛି ଶୁଣ
ତାର ନାମ ଭକ୍ତିଅସ୍ତ୍ର ଜାଣ ନାରାୟଣ ।
ଚକ୍ର ବକ୍ର ଦେହ ଦା[illegible] ସେ ଅସ୍ତ୍ରରେ ନାଥ
ଏଣୁ ମୁଁ କହୁଛି ବାରେ [illegible] ଶାନ୍ତ ।

ତାହାର ଆଜ୍ଞାକୁ ନାଥ କର ତ ପାଳନ
ବୋଲିଛୁ ଯେ ଭକତ ସେ ମୋହର ଜୀବନ
ଏମନ୍ତ କହିଣ ପାର୍ଥ ହୋଇଲେକ ତୁନି
ଦିନରାତି ଗୋପୀନାଥ ଡାକେ ଚକ୍ରପାଣି ।

.....❋.....

## ଉର୍ବଶୀ ଶାପ ମୋଚନ

ଏଥୁ ଅନନ୍ତରେ ଶୁଣ ହସ୍ତିନାର ରାୟ
ଏ କୂର୍ମ ପୁରାଣ ସ୍ୱାଦୁ ରସ ସୁଧାମୟ ।
ଅଷ୍ଟ ଶକତିଙ୍କି ଘେନି ଦେବୀ ମାହେଶ୍ୱରୀ
ଯୁଦ୍ଧ ଭୂମିରେ ମିଳନ୍ତେ କମ୍ପେ ବସୁନ୍ଧରୀ ।
ଅକଳିତ ଦେବୀଗଣ ସଙ୍ଗରେ ଅଛନ୍ତି
ଦେଖିଲେ ରଥରେ ଅଛି ପାର୍ଥ ମହାରଥୀ ।
ଉଚ୍ଚରେ ବୋଇଲେ ଆରେ ପୁତ୍ର ଧନଞ୍ଜୟ
ଭୟ ନ କର ମୁଁ ତୋତେ ଦେବଇଁ ଅଭୟ ।
ଦେବୀଙ୍କ ମୁଖୁଁ ଏମନ୍ତ ଶୁଣି ରାମହରି
ବିସ୍ମୟ ହୋଇ ରହିଲେ କୋପକୁ ସଂହାରି ।
ଅବନ୍ତୀ ନାଥ ଯେ ଥିଲା ଘୋଟକୀ ଉପରେ
ଅଷ୍ଟଶକତି ଏକାଠି ହୁଅନ୍ତେ ସେଠାରେ ।
ଶାପୁ ମୁକତି ହୋଇଣ ହେଲା ଦିବ୍ୟନାରୀ
ଆକାଶ ମାର୍ଗରେ ରହି ଉର୍ବଶୀ ସୁନ୍ଦରୀ ।
କରଯୋଡ଼ି ଆରମ୍ଭିଲା ଦେବୀଙ୍କର ସ୍ତୁତି
ଜୟ ତୁ ଜୟ ତୁ ମାତ ଅନନ୍ତ ମୂରତି ।
ସୃଷ୍ଟି ସ୍ଥିତି ଲୟ ଅଛି ଏ ତୋହର ହସ୍ତେ
ଏମନ୍ତ ବହୁତ ସ୍ତୁତି ଉର୍ବଶୀ କରନ୍ତେ ।
ଏ ରୂପ ଦେଖି ସମସ୍ତେ ହେଲେ ଆଚମ୍ୱିତ
କହିଲେ ତହିଁ ନାରଦ ମୁନି ତପୋବନ୍ତ ।
ଯେଉଁ ଘୋଟକୀ ନିମନ୍ତେ ହେଲା ଏତେ କଥା
ସେହି ସ୍ୱର୍ଗପୁର ଗଲା ଛାଡ଼ି ମନୁ ବ୍ୟଥା ।
ଏମନ୍ତ କହି ନାରଦ ଭାଙ୍ଗିଦେଲେ କଳି
ଯେ ଯହୁଁ ଆସିଥିଲେ ସେ ଗଲେ ତହୁଁ ଚଳି ।
ଶ୍ରୀକୃଷ୍ଣ ଯାଇଁ ଯୁଧିଷ୍ଠି ପୁରରେ ରହିଲେ
ଅବନ୍ତୀ ନାଥ ଅବନ୍ତୀ ପୁରକୁ ଚଳିଲେ ।
ଏ କୂର୍ମ ପୁରାଣ ରସ ତୃତୀୟ ଖଣ୍ଡର
ଯେ ଶୁଣିବ ଶୁଣାଇବ ଯିବ ସ୍ୱର୍ଗପୁର ।
ହରି ଭକ୍ତି ରସ ସାର ଅଟଇ ଏ ଗୀତ
ଅଚ୍ୟୁତ ପୟରେ ରହୁ ଗୋପୀନାଥ ଚିତ୍ତ ।

.....❋.....

**କୂର୍ମ ପୁରାଣ ତୃତୀୟ ଖଣ୍ଡ ସମ୍ପୂର୍ଣ୍ଣ**



ମୁଦ୍ରଣ : କେ.ଜେ.ପି. ପ୍ରିଣ୍ଟିଂ ୱାର୍କ୍ସ, ଅଲିଶାବଜାର, କଟକ-୨
ଫୋନ୍ : (୦୬୭୧) ୨୬୦୭୯୨୨

